# ଉତ୍କଳୀୟ-ଧର୍ମଶାସ୍ତ୍ର

ଡକ୍ଟର : ଭଗବାନ ପଣ୍ଡା, ଏମ୍. ଏ., ପିଏଚ୍. ଡି.,

ସାହିତ୍ୟାଚାର୍ଯ୍ୟ

ସମ୍ପାଦକ, ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ବିଭାଗ ନିର୍ଦ୍ଦେଶାଳୟ,

ଭୁବନେଶ୍ୱର

UTKALIYA DHARMASASTRA

(Orissan School of Dharmasastra).

By Dr. Bhagaban Panda,

Editor, Directorate of Tourism, Sports & Culture,

Orissa, Bhubaneswar.

First Edition : December, 1985.

Price : Rs. 50-00

ପ୍ରକାଶିକା : ଶ୍ରୀମତୀ ଭାର୍ଗବୀ ପଣ୍ଡା

ଡି. 64, ବି. ଜେ. ବି. ଫ୍ଲାଟ୍, ଭୁବନେଶ୍ୱର-6

ମୁଦ୍ରଣ : ଜୟୁରମ ମହାପାତ୍ର

ଗ୍ର ନ୍ଥ ପ୍ର କା ଶି ନୀ, ସୂତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ଡିସେମ୍ବର, ୧୯୮୫

ମୂଲ୍ୟ : ଟ ୫୦-୦୦

ମୋର ପରମାରାଧ୍ୟ ପିତୃଦେବ ଓ ସ୍ନେହମୟୀ ଜନନୀ
ସ୍ୱର୍ଗତ ବୃନ୍ଦାବନଚନ୍ଦ୍ର ଓ ଶ୍ରୀମତୀଙ୍କ
ଚରଣକମଳରେ
ଭକ୍ତି ଅର୍ଘ୍ୟର ନିଦର୍ଶନ ସ୍ୱରୂପ 'ଉତ୍କଳୀୟ ଧର୍ମଶାସ୍ତ୍ର'
ଶୀର୍ଷକ ଗ୍ରନ୍ଥଟି ସମର୍ପଣ କରୁଛି ।

ବିନୟାବନତ
ଭଗବାନ

# ମୁଖବନ୍ଧ

ବିଗତ ଶହେ ବର୍ଷ ମଧ୍ୟରେ ପ୍ରାଚୀନ ଭାରତର ସଭ୍ୟତା-ସଂସ୍କୃତି-ବିଷୟକ ବହୁ ଆଲୋଚନା ଗ୍ରନ୍ଥ ଭାରତୀୟ ତଥା ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ ଅଧିକାଂଶ ଗ୍ରନ୍ଥରେ ଭାରତୀୟ ଜନତାର ଜୀବନଯାପନ ପ୍ରଣାଳୀ, ଧାର୍ମିକ, ସାମାଜିକ, ଅର୍ଥନୈତିକ ଓ ପାରିବାରିକ ଅବସ୍ଥା ଓ ବ୍ୟବସ୍ଥା ଉପରେ ଆଲୋଚନା କରାଯାଇଛି । ବହୁ-ସଂଖ୍ୟକ ଲୁପ୍ତପ୍ରାୟ ଉପାଦେୟ ଗ୍ରନ୍ଥର ପୁନରୁଦ୍ଧାର କାର୍ଯ୍ୟ ଏ ମଧ୍ୟରେ ସମ୍ପାଦିତ ହୋଇଛି । ବୈଦିକ ସାହିତ୍ୟ ଓ ସଂସ୍କୃତିର ଉପାଦେୟ ତଥ୍ୟ ଲୋକଲୋଚନକୁ ଆଣିବାରେ ଯେଉଁ ବୈଦେଶିକ ପଣ୍ଡିତଗଣ ଆଜୀବନ ଉଦ୍ୟମ କରିଛନ୍ତି, ସେମାନଙ୍କ ମଧ୍ୟରେ ମାକ୍ସମୁଲର୍, ଆର୍ଥର ଆନ୍ତାଲନ, ଏମ୍. ବ୍ଲୁମ୍‌ଫିଲ୍ଡ୍, ଜି. ବୁହ୍ଲର, କୋଲବ୍ରୁକ୍, ଇ. ବି. କୋଏଲ୍, ଏ. ବି. କୀଥ୍, ଫ୍ଲିଟ୍, ଗାର୍ବଟ୍, ହୋପ୍‌କିନ୍‌ସ, ଆର. ଇ. ହ୍ୟୁମ୍, ଜି. ଏ. ଜାକବ୍, ଜଲି, କଲ୍‌ହର୍ଣ୍ଣ, ଷ୍ଟେନ୍ କୋନୋ, ସିଲ୍‌ଭାନ୍ ଲେଭି, ଲୁଡ୍‌ସ, ମାକ୍‌ଡୋନେଲ୍ ହାରମାନ୍, ଓଲେନ୍‌ହନ୍‌ବର୍ଗ, ପିଟରସନ୍, ଭି. ଏ. ସ୍ମିଥ୍, ମୋନିଆର ଉଇଲିୟମ୍, ଉଇଲ୍‌ସନ୍, ଉଇଣ୍ଟର୍‌ନିଜ, ଏ. ଏଲ୍. ବାସମ୍ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ । କେବଳ ବୈଦିକ ସାହିତ୍ୟ ନୁହେଁ, ପ୍ରାଚୀନ ଭାରତର ସାହିତ୍ୟ ଓ ସଂସ୍କୃତିର ବିଭିନ୍ନ ବିଭାବକୁ ଏହି ମନୀଷୀମାନଙ୍କର ଅବଦାନ ଅବିସ୍ମରଣୀୟ ।

ଭାରତୀୟ ପଣ୍ଡିତମାନଙ୍କ ମଧ୍ୟରେ କୃଷ୍ଣ ଆୟାଙ୍ଗାର, କେ. ଭି. ଆର. ଆୟାଙ୍ଗାର, ଡକ୍ଟର ଆଲ୍‌ଟେକର, ଡକ୍ଟର ଆର. ଜି. ଭଣ୍ଡାରକର, ଡକ୍ଟର ଭବତୋଷ ଭଟ୍ଟାଚାର୍ଯ୍ୟ, ଚନ୍ଦ୍ରାହରଣ ଚକ୍ରବର୍ତ୍ତୀ, କେ. ଏଲ୍. ଦପ୍ତରୀ, ଆର୍. ଏନ୍. ଦଣ୍ଡେକର, ଏସ୍. କେ. ଦେ, ଆର୍. ଆର୍. ଦିବାକର, ଟି. ଗଣପତି ଶାସ୍ତ୍ରୀ, ଜି. ଏସ୍. ଗୋରେ, ପି. କେ. ଗୋଡ଼େ, ଆର୍. ସି. ହାଜରା, ମହାମହୋପାଧ୍ୟାୟ ଗୋପୀନାଥ କବିରାଜ, ଏମ୍. ହିରିଆନା, କେ. ପି. ଜୟସ୍ୱାଲ୍, ଗଙ୍ଗାନାଥ ଝା, ଏସ୍. ଏଲ୍. କାତ୍ରେ, ଜି. ଖାରେ, ଆର୍ ସି. ମଜୁମ୍‌ଦାର୍, ଡକ୍ଟର ଆର୍. କେ. ମୁଖାର୍ଜି, ଡକ୍ଟର ଭି. ଭି. ମିରାଶି, ଡକ୍ଟର ଏ. ଡି. ପୁସଲ୍‌କର୍, ଡକ୍ଟର ଏସ୍. ରାଧାକୃଷ୍ଣନ୍, ଡକ୍ଟର ଭି. ରାଘବନ୍, ପଣ୍ଡିତ ଏସ୍. ଡି. ସାତବଲେକର୍, ଡକ୍ଟର ଭି. ଏସ୍. ସୁକ୍ଥାଙ୍କର୍, ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ ଦାସ, ମହାମହୋପାଧ୍ୟାୟ ଦାମୋଦର ଶାସ୍ତ୍ରୀ, ଐତିହାସିକ କେଦାରନାଥ ମହାପାତ୍ର, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ନୀଳମଣି ମିଶ୍ର, ପଣ୍ଡିତ

କୁଳମଣି ମିଶ୍ର ପ୍ରମୁଖ ବେଦ, ବେଦାଙ୍ଗ, ଧର୍ମଶାସ୍ତ୍ର ଓ ନିବନ୍ଧ ସାହିତ୍ୟର ତଥ୍ୟପୂର୍ଣ୍ଣ ଆଲୋଚନାମାନ ଲେଖିଛନ୍ତି ।

ଚଳିତ ଶତାବ୍ଦୀରେ ଧର୍ମଶାସ୍ତ୍ର ସମ୍ବନ୍ଧୀୟ ଯେଉଁ ଗବେଷଣାତ୍ମକ ଗ୍ରନ୍ଥମାନ ଭାରତର ବିଭିନ୍ନ ପ୍ରାନ୍ତରେ ପ୍ରଣୀତ ହୋଇଛି, ତନ୍ମଧ୍ୟରେ ମହାମହୋପାଧ୍ୟାୟ ପାଣ୍ଡୁରଙ୍ଗ ବାମନ କାଣେଙ୍କ ପ୍ରଣୀତ 'ଧର୍ମଶାସ୍ତ୍ରର ଇତିହାସ (History of Dharmashastra) ଗ୍ରନ୍ଥ ସର୍ବୋତ୍ତମ । ଏହା ପାଞ୍ଚ ଭାଗରେ ଓ ସାତ ଖଣ୍ଡରେ ବିଭକ୍ତ । ପ୍ରଥମ ଭାଗରେ ଧର୍ମର ଅର୍ଥ ଓ ମୂଳସ୍ରୋତ, ଧର୍ମଶାସ୍ତ୍ରର ରଚନାକାଳ, ବିଭିନ୍ନ ଧର୍ମସୂତ୍ର ଓ ସ୍ମୃତି, ମହାଭାରତ ଓ ରାମାୟଣ, ପୁରାଣ ଓ ପରବର୍ତ୍ତୀ କାଳର ସ୍ମୃତି, ନିବନ୍ଧଗ୍ରନ୍ଥ ବିଷୟ ଆଲୋଚନା କରାଯାଇଛି । ଦ୍ୱିତୀୟ ଭାଗର ପ୍ରଥମ ଖଣ୍ଡରେ ଧର୍ମଶାସ୍ତ୍ରର ବିଭାଗ, ବର୍ଣ୍ଣଧର୍ମ, ଅସ୍ପୃଶ୍ୟତା, ଦାସତ୍ୱ, ସଂସ୍କାର, ଉପନୟନ, ଆଶ୍ରମ, ବିବାହ, ମଧୁପର୍କ, ବୈଧବ୍ୟଧର୍ମ, ନିୟୋଗ, ପୁନର୍ବିବାହ, ସତୀପ୍ରଥା, ବେଶ୍ୟା, ଆହ୍ନିକ, ଆଚାର ଓ ପଞ୍ଚମହାଯଜ୍ଞ ଏବଂ ଦ୍ୱିତୀୟ ଖଣ୍ଡରେ ଭୋଜନ, ଉପାକର୍ମ, ଗୃହ୍ୟବିଧି, ଦାନ ପ୍ରତିଷ୍ଠା ଓ ଉତ୍ସର୍ଗ, ବାନପ୍ରସ୍ଥ, ସନ୍ନ୍ୟାସ, ଶ୍ରୌତଯଜ୍ଞ ବିଧି, ସୌତ୍ରାମଣୀ ଓ ବିଭିନ୍ନ ଯଜ୍ଞବିଧି ପର୍ଯ୍ୟାଲୋଚିତ ହୋଇଛି । ତୃତୀୟ ଭାଗରେ ରାଜଧର୍ମ, ବ୍ୟବହାର ଓ ସଦାଚାର ଏବଂ ଚତୁର୍ଥ ଭାଗରେ ପାତକ, ପ୍ରାୟଶ୍ଚିତ୍ତ, କର୍ମବିପାକ, ଅନ୍ତ୍ୟେଷ୍ଟି, ଶୁଦ୍ଧି, ଶ୍ରାଦ୍ଧ ଓ ତୀର୍ଥଯାତ୍ରାର ତଥ୍ୟପୂର୍ଣ୍ଣ ସମୀକ୍ଷା କରାଯାଇଛି । ପଞ୍ଚମ ଭାଗର ପ୍ରଥମ ଖଣ୍ଡରେ ବ୍ରତ ଓ କାଳ ଏବଂ ଦ୍ୱିତୀୟ ଖଣ୍ଡରେ ଶାନ୍ତି, ଧର୍ମଶାସ୍ତ୍ର ସହିତ ପୁରାଣ, ଉପନିଷଦ୍, ବୌଦ୍ଧଧର୍ମ, ତନ୍ତ୍ର ଓ ଷଡ୍‌ଦର୍ଶନର ସମ୍ପର୍କ ଓ ପ୍ରଭାବର ତାତ୍ତ୍ୱିକ ବ୍ୟାଖ୍ୟା ରହିଛି । ତଦ୍‌ବ୍ୟତୀତ ପ୍ରଥମ ଭାଗର ଶେଷରେ ଭାରତୀୟ ସ୍ମୃତି ଓ ସ୍ମୃତିକାରମାନଙ୍କର ଏକ ବିସ୍ତୃତ ତାଲିକା ଦିଆଯାଇଛି ।

ଏହି ବିରାଟ ଗ୍ରନ୍ଥର ପ୍ରାୟ ସାର୍ଦ୍ଧ ଛ' ହଜାର ପୃଷ୍ଠା ମଧ୍ୟରେ ଭାରତର ଅନ୍ୟାନ୍ୟ ଅଞ୍ଚଳର ସ୍ମୃତି ଓ ସ୍ମୃତିକାରମାନଙ୍କ ସମ୍ବନ୍ଧରେ ବିଶଦ ପର୍ଯ୍ୟାଲୋଚନା କରାଯାଇଥିଲେ ମଧ୍ୟ ଓଡ଼ିଶାର ସ୍ମୃତିଶାସ୍ତ୍ର ବିଶେଷ ଅବହେଳିତ ହୋଇଥିବାର ଦେଖାଯାଏ । ଭାରତବିଖ୍ୟାତ ଉତ୍କଳୀୟ ସ୍ମୃତିକାରମାନଙ୍କ ମଧ୍ୟରୁ ଶତାନନ୍ଦ, ଶଙ୍ଖଧର, ଶମ୍ଭୁକର, ବିଦ୍ୟାକର, ନରସିଂହ, ଗୋଦାବର ମହାପାତ୍ର, ଗଜପତି ପ୍ରତାପରୁଦ୍ର ଦେବ, ବିଶ୍ୱନାଥ ମିଶ୍ର, ଦିବ୍ୟସିଂହ ମହାପାତ୍ର, ଗଦାଧର ମହାପାତ୍ର, ବାସୁଦେବ ରଥ ପ୍ରଭୃତି ମୁଷ୍ଟିମେୟ ସ୍ମୃତିକାର ଓ ସେମାନଙ୍କ ଗ୍ରନ୍ଥର ନାମୋଲ୍ଲେଖ ଥିଲେ ମଧ୍ୟ ସେଗୁଡ଼ିକର ବିସ୍ତୃତ ବିବରଣୀ ଦିଆଯାଇନାହିଁ । ତଦ୍‌ବ୍ୟତୀତ ଓଡ଼ିଶାର ଆହୁରି ଅନେକ ସ୍ମୃତିକାର ଓ ସେମାନଙ୍କ ପ୍ରଣୀତ ବହୁ ଗ୍ରନ୍ଥ ଆଲୋଚକମାନଙ୍କର ହସ୍ତଗତ ହୋଇଅଛି । ସେମାନଙ୍କ ସମ୍ବନ୍ଧରେ ଏପର୍ଯ୍ୟନ୍ତ ବିଧିବଦ୍ଧ ଗବେଷଣା କରାଯାଇ ନାହିଁ ।

ଖ୍ରୀଷ୍ଟୀୟ ୧୯୫୭ଠାରୁ ୧୯୭୪ ମଧ୍ୟରେ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ଧର୍ମଶାସ୍ତ୍ର ସମ୍ପର୍କିତ ବହୁ ଗବେଷଣାତ୍ମକ ନିବନ୍ଧ ସ୍ୱୀକୃତି ଲାଭ କରିଛି । ତନ୍ମଧ୍ୟରେ ବେଦ, ବ୍ରାହ୍ମଣ,

ଉପନିଷଦ୍, ପୁରାଣ ଓ ସୂତ୍ର ସାହିତ୍ୟର ଆଲୋଚନା ସହିତ ବିବାହ, ସଂସ୍କାର, ରାଜଧର୍ମ, ସ୍ତ୍ରୀଧନ ଦାନ, ପ୍ରାୟଶ୍ଚିତ୍ତ, ବ୍ୟବହାର ପ୍ରଭୃତି ସ୍ମୃତିଶାସ୍ତ୍ର ବା ଧର୍ମଶାସ୍ତ୍ର ସମ୍ବନ୍ଧୀୟ ଯେଉଁ କେତୋଟି ସନ୍ଦର୍ଭ ପ୍ରଣୀତ ହୋଇଛି ସେଥିରେ ଉତ୍କଳୀୟ ସ୍ମୃତିଶାସ୍ତ୍ରର ଆଲୋଚନା ସ୍ଥାନ ପାଇ-ନାହିଁ ।

ଖ୍ରୀଷ୍ଟୀୟ ୧୯୭୪ ପରଠାରୁ ସର୍ବଭାରତୀୟ ସ୍ତରରେ ପ୍ରକାଶିତ ଆଲୋଚନା ଗ୍ରନ୍ଥ ଓ ପ୍ରବନ୍ଧ-ଗୁଡ଼ିକରେ ଅଦ୍ୟାବଧି ଲୋକଲୋଚନକୁ ଆସିଥିବା ଓଡ଼ିଶାର ସ୍ମୃତିଶାସ୍ତ୍ର ଆଦୌ ଆଲୋଚିତ ହୋଇନାହିଁ । ଯେଉଁ କେତେକ ଆଲୋଚନାରେ ପ୍ରସଙ୍ଗତଃ ଓଡ଼ିଶାର ସ୍ମୃତି ଓ ସ୍ମୃତିକାରଙ୍କ ବିଷୟ ଉଲ୍ଲିଖିତ ହୋଇଛି; ସେଥିରୁ ଗବେଷକ ତଥା ସାଧାରଣ ପାଠକଙ୍କର ଜିଜ୍ଞାସା ପୂରଣ ହୋଇପାରୁନାହିଁ । ଓଡ଼ିଶାର ଆଲୋଚକମାନେ ଉତ୍କଳୀୟ ସ୍ମୃତିଶାସ୍ତ୍ର ସମ୍ବନ୍ଧରେ ଯେଉଁ ବିବରଣାତ୍ମକ ଗ୍ରନ୍ଥ ଓ ତତ୍ସମ୍ପର୍କିତ ଗବେଷଣାମୂଳକ ପ୍ରବନ୍ଧମାନ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶ କରିଛନ୍ତି, ତାହା ମଧ୍ୟ ଆଲୋଚନା ଦିଗରୁ ଯଥେଷ୍ଟ ମନେହୁଏନାହିଁ ।

ସ୍ମୃତିଗ୍ରନ୍ଥଗୁଡ଼ିକର ପ୍ରତିପାଦ୍ୟ ବିଷୟ ସମ୍ବନ୍ଧରେ ଉକ୍ତ ପ୍ରବନ୍ଧ ବା ପୁସ୍ତକଗୁଡ଼ିକ ପାଠକର ବିଶେଷ ଆକାଂକ୍ଷା ପୂରଣ କରିପାରୁନାହିଁ । ଯେଉଁ ସ୍ମୃତି ଗ୍ରନ୍ଥଗୁଡ଼ିକ ଶହ ଶହ ବର୍ଷଧରି ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନକୁ ନିୟନ୍ତ୍ରଣ କରିଆସିଛି, ଜାତୀୟ ଜୀବନକୁ ଉଦ୍‌ବୁଦ୍ଧ ଓ ହିନ୍ଦୁ ସଂସ୍କୃତିକୁ ସମୃଦ୍ଧ କରିଛି, ତାହାର ସମ୍ୟକ୍ ଆଲୋଚନା ଏପର୍ଯ୍ୟନ୍ତ କରାଯାଇ ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ପାରିପାର୍ଶ୍ୱିକ ଅବସ୍ଥାରେ ବ୍ୟକ୍ତି ଓ ସମାଜଜୀବନରେ ଯେଉଁ ପରିବର୍ତ୍ତନ ଘଟେ, ସେ ସମସ୍ତ ସ୍ମୃତିଶାସ୍ତ୍ରରେ ଲିପିବଦ୍ଧ ହୋଇଥାଏ । ସମାଜ ଓ ସାମାଜିକ ଜୀବନଧାରାର କି ପ୍ରକାର ଅବସ୍ଥାକୁ ଆଧାର କରି ସ୍ମୃତିକାରମାନେ ଗ୍ରନ୍ଥ ରଚନା କରିଥିଲେ, ଆଜିର ସମାଜରେ ତନ୍ମଧ୍ୟରୁ କେଉଁଗୁଡ଼ିକ ଗ୍ରହଣୀୟ ବା ବର୍ଜନୀୟ ତାହାର ମୂଲ୍ୟାୟନ ଗ୍ରନ୍ଥବର୍ଣ୍ଣିତ ବିଷୟବସ୍ତୁର ବିସ୍ତୃତ ଆଲୋଚନା ବ୍ୟତୀତ ସମ୍ଭବ ନୁହେଁ । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀଠାରୁ ଆରମ୍ଭ କରି ଧାରାବାହିକ ଭାବରେ ଅଷ୍ଟାଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସମୟର ପରିବର୍ତ୍ତନ ଅନୁଯାୟୀ ଓଡ଼ିଶାରେ ବହୁ ସ୍ମୃତିଗ୍ରନ୍ଥ ରଚିତ ହୋଇଛି । ଓଡ଼ିଶାବାସୀ ଆଜିପର୍ଯ୍ୟନ୍ତ ଉତ୍କଳୀୟ ସ୍ମୃତିବିଧାନ ଅନୁଯାୟୀ ଅଶୌଚ, ଆଚାର, ଦାନ, ପ୍ରାୟଶ୍ଚିତ୍ତ, ଯଜ୍ଞ ଓ ବ୍ରତାଦି ବିଧିବିଧାନ ସମ୍ୟକ୍ ରୂପେ ପାଳନ କରୁଛନ୍ତି । ତେଣୁ ସେହିସବୁ ବିଷୟବସ୍ତୁର ବିଶଦ ଆଲୋଚନା ବ୍ୟତୀତ ତତ୍କାଳୀନ ସାମାଜିକ ସ୍ଥିତି ସମ୍ପର୍କରେ ଧାରଣା କରିହେବ ନାହିଁ । ସେହି ଦୃଷ୍ଟିରୁ ଆଚାର୍ଯ୍ୟ ଶତାନନ୍ଦଙ୍କଠାରୁ ଆରମ୍ଭ କରି ବାଲୁଙ୍କି ପାଠୀଙ୍କ ପର୍ଯ୍ୟନ୍ତ ଓଡ଼ିଶାର ସ୍ମୃତିକାରମାନେ କିଏ କେଉଁ ବିଷୟ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି, ତଦ୍ଦ୍ୱାରା ସମାଜର କି କଲ୍ୟାଣ ସାଧିତ ହୋଇଛି, ତତ୍‌ସମ୍ପର୍କୀୟ ଆଲୋଚନାହିଁ ଏହି ସନ୍ଦର୍ଭ ରଚନାର ମୂଳ ଲକ୍ଷ୍ୟ ।

ଓଡ଼ିଶାର ଗବେଷଣା କ୍ଷେତ୍ରରେ ଧର୍ମଶାସ୍ତ୍ର ବା ସ୍ମୃତିଶାସ୍ତ୍ରର ଆଲୋଚନା ଅଦ୍ୟାପି ଅବହେଳିତ ଅବସ୍ଥାରେ ରହିଅଛି । ଆଧୁନିକ ଯୁଗରେ ଧର୍ମଶାସ୍ତ୍ରର ବିଶେଷ ଆବଶ୍ୟକତା ଅନୁଭୂତ ହେଉନାହିଁ । କିନ୍ତୁ ତା' ଫଳରେ ଧର୍ମଶାସ୍ତ୍ରର ଉପାଦେୟତା ଆଦୌ ଊଣା ହୋଇନାହିଁ । ଶତ ଶତ ବର୍ଷଧରି ସମଗ୍ର ହିନ୍ଦୁ ସମାଜ ଯାହା ଉପରେ ନିର୍ଭରଶୀଳ ହୋଇଆସିଛି, ତା'ର ପ୍ରଭାବ ଅଦ୍ୟାପି ଏହି ସମାଜର ଦୈନନ୍ଦିନ ଜୀବନକୁ ପ୍ରଭାବିତ କରୁଅଛି । ତେଣୁ ସ୍ମୃତିଶାସ୍ତ୍ରର ବିଭିନ୍ନ ଆଭିମୁଖ୍ୟ ହୃଦୟଙ୍ଗମ କରିବା ଆଜି ସମାଜର ଗବେଷକମାନଙ୍କ ପକ୍ଷେ ଆବଶ୍ୟକ ହୋଇପଡ଼ିଛି । ଏ କ୍ଷେତ୍ରରେ ଆଲୋଚ୍ୟ ସନ୍ଦର୍ଭଟି ଓଡ଼ିଶାରେ ସର୍ବପ୍ରଥମ ଉଦ୍ୟମ ବୋଲି କୁହାଯାଇପାରେ ।

ପ୍ରସ୍ତୁତ 'ଉତ୍କଳୀୟ ଧର୍ମଶାସ୍ତ୍ର' ଗ୍ରନ୍ଥ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନଯାତ୍ରାର ଶାସ୍ତ୍ରୀୟ ବିଧିବିଧାନାତ୍ମକ ସମୀକ୍ଷାକୁ ନେଇ ପ୍ରଣୀତ ହୋଇଅଛି । ଏହା ସାତୋଟି ଅଧ୍ୟାୟରେ ବିଭକ୍ତ । ଏଥିରେ ଯଥାକ୍ରମେ ସ୍ମୃତିଶାସ୍ତ୍ରର ଭୂମିକା, ସ୍ମୃତି-ଶାସ୍ତ୍ରର କ୍ରମବିକାଶ, ଉତ୍କଳୀୟ ସ୍ମୃତି ଓ ସ୍ମୃତିକାରଙ୍କ ପରିଚୟ, ଉତ୍କଳୀୟ ସ୍ମୃତି ବିଭାଗ ଓ ସମୀକ୍ଷା ଏବଂ ସ୍ମୃତିଶାସ୍ତ୍ରର ଉପାଦେୟତା, ପ୍ରଭାବ ଓ ବୈଶିଷ୍ଟ୍ୟ ବିଷୟମାନ ଆଲୋଚିତ ହୋଇଅଛି ।

ପ୍ରଥମ ଅଧ୍ୟାୟରେ ଉତ୍କଳର ଧାର୍ମିକ ପରମ୍ପରା ସମ୍ବନ୍ଧରେ ସଂକ୍ଷିପ୍ତ ପରିଚୟ ଦିଆଯାଇଛି । ଧର୍ମଧାରଣାର ମୂଳ ଉତ୍ସ ରୂପେ ବେଦ, ସ୍ମୃତି, ପୁରାଣ, ଟୀକା ଗ୍ରନ୍ଥ, ନିବନ୍ଧ ଗ୍ରନ୍ଥ ଓ ଦର୍ଶନର ଅବଦାନ ସହିତ ସଦାଚାର, ଆତ୍ମତୁଷ୍ଟି ଓ ଧର୍ମ-ପରିଷଦର ସମ୍ୟକ୍ ଆଲୋଚନା କରାଯାଇଅଛି ।

ଦ୍ୱିତୀୟ ଅଧ୍ୟାୟରେ ଧର୍ମସୂତ୍ର, ମହାଭାରତ, ରାମାୟଣ, ପୁରାଣ ଓ ସ୍ମୃତିଗ୍ରନ୍ଥରେ ଧର୍ମସମ୍ବନ୍ଧୀୟ ବିଚାରଧାରାର କ୍ରମବିକାଶ ଉପରେ ଆଲୋକପାତ କରାଯାଇଛି ।

ତୃତୀୟ ଅଧ୍ୟାୟରେ ଉତ୍କଳୀୟ ସ୍ମୃତିକାରମାନଙ୍କ ସମ୍ବନ୍ଧରେ ସମୟାନୁକ୍ରମିକ ପରିଚୟ ଓ ସେମାନଙ୍କ ପ୍ରଣୀତ ଗ୍ରନ୍ଥଗୁଡ଼ିକର ପ୍ରତିପାଦ୍ୟ ବିଷୟ ବିଶ୍ଳେଷଣ କରାଯାଇଛି । ଗ୍ରନ୍ଥବର୍ଣ୍ଣିତ ବିଷୟଗୁଡ଼ିକ ପରିଶିଷ୍ଟରେ ଅକାରାଦିକ୍ରମେ ଦିଆଯାଇଛି ।

ଚତୁର୍ଥ ଅଧ୍ୟାୟରେ ଓଡ଼ିଶାର ସ୍ମୃତିଶାସ୍ତ୍ରବର୍ଣ୍ଣିତ ବିଷୟକୁ ପନ୍ଦରଟି ପ୍ରକରଣରେ ବିଭକ୍ତ କରାଯାଇ ପ୍ରତ୍ୟେକର ଔଚିତ୍ୟ, କ୍ରମପରିଣାମ ଓ ଉତ୍କଳୀୟ ବୈଶିଷ୍ଟ୍ୟର ସୂଚନା ଦିଆଯାଇଛି ।

ପଞ୍ଚମ ଅଧ୍ୟାୟରେ ସ୍ମୃତିଶାସ୍ତ୍ରର ଐତିହାସିକତା, ଉପାଦେୟତା ଓ ଓଡ଼ିଶାର ଲୋକାଚାର ବିଷୟ ପର୍ଯ୍ୟାଲୋଚିତ ହୋଇଛି ।

ଷଷ୍ଠ ଅଧ୍ୟାୟରେ ଚତୁର୍ଦ୍ଦଶ ଶତାବ୍ଦୀଠାରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ପ୍ରଣୀତ ପ୍ରମୁଖ

ଓଡ଼ିଆ ରଚନାକୁ ଆଧାର କରି "ଓଡ଼ିଆ ସାହିତ୍ୟରେ ସ୍ମୃତିଶାସ୍ତ୍ରର ପ୍ରଭାବ" ପ୍ରସଙ୍ଗ ଆଲୋଚନା କରାଯାଇଛି ।

ସପ୍ତମ ଅଧ୍ୟାୟରେ ଉତ୍କଳୀୟ ସ୍ମୃତି ଓ ସ୍ମୃତିକାରଙ୍କ ବୈଶିଷ୍ଟ୍ୟ ଏବଂ ସମୀକ୍ଷାର ଲକ୍ଷ୍ୟ ଓ ପ୍ରତିପାଦ୍ୟ ବିଷୟର ସୂଚନା ଦ୍ୱାରା ଗ୍ରନ୍ଥର ଉପସଂହାର କରାଯାଇଛି । ପରିଶେଷରେ ଛଅଟି ପରିଶିଷ୍ଟରେ ଯଥାକ୍ରମେ ଉତ୍କଳୀୟ ସ୍ମୃତି ବିଷୟାନୁକ୍ରମଣିକା, ଉତ୍କଳୀୟ ସ୍ମୃତି ସମ୍ପୃକ୍ତ ପ୍ରାଚୀନ ଶାସ୍ତ୍ର ଓ ଶାସ୍ତ୍ରକାର, ଓଡ଼ିଶାର ପୂଜା, ବ୍ରତ ଓ ପର୍ବପର୍ବାଣି, ସମୟାନୁକ୍ରମିକ ଉତ୍କଳୀୟ ସ୍ମୃତି ଓ ସ୍ମୃତିକାର, ଉତ୍କଳୀୟ ସ୍ମୃତିଗ୍ରନ୍ଥାନୁକ୍ରମଣିକା ଏବଂ ନିର୍ବାଚିତ ଶବ୍ଦାର୍ଥସୂଚୀ ଦିଆଯାଇଛି ।

ଓଡ଼ିଶାର ସ୍ମୃତିଶାସ୍ତ୍ର ମଧ୍ୟରେ ମୁଷ୍ଟିମେୟ ଗ୍ରନ୍ଥ ବ୍ୟତୀତ ଅନ୍ୟଗୁଡ଼ିକ ଅଦ୍ୟାବଧି ଅପ୍ରକାଶିତ ରହିଛି । ତେଣୁ ଆବଶ୍ୟକ ସ୍ଥଳେ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ଗ୍ରନ୍ଥାଗାରରେ ଥିବା ମୂଳ ପୋଥିରୁ ଗ୍ରନ୍ଥର ପ୍ରତିପାଦ୍ୟ ବିଷୟବସ୍ତୁ ଓ ସମ୍ପୃକ୍ତ ଅଂଶ ଉଦ୍ଧାର କରାଯାଇଛି ।

ଧର୍ମଶାସ୍ତ୍ରର ପରିସର ଅତ୍ୟନ୍ତ ବ୍ୟାପକ । ଏହାର ବହୁ ବିସ୍ତୃତ ମଧ୍ୟରୁ ଓଡ଼ିଶାର ସ୍ମୃତିଶାସ୍ତ୍ର ସମ୍ପର୍କିତ ବିଷୟଗୁଡ଼ିକର ଆଲୋଚନାକୁ ଯଥାସମ୍ଭବ ସଂକ୍ଷିପ୍ତ କରାଯାଇଛି । ସେହି ଦୃଷ୍ଟିରୁ ସନ୍ଦର୍ଭର ପ୍ରତ୍ୟେକ ଅଧ୍ୟାୟକୁ ମଧ୍ୟ ସୀମିତ ରଖାଯାଇଛି । ଭାରତୀୟ ସ୍ମୃତିଶାସ୍ତ୍ରକୁ ଓଡ଼ିଶାର ଅବଦାନ ସମ୍ବନ୍ଧରେ ଏହି ସନ୍ଦର୍ଭଟି ଜିଜ୍ଞାସୁ ପାଠକମାନଙ୍କର ସହାୟକ ହେବାର ଆଶା ।

ଉତ୍କଳ ବିଶ୍ୱବିଦ୍ୟାଳୟର ୧୯୮୧ ମସିହା ପି.ଏଚ୍.ଡି. ଉପାଧି ନିମିତ୍ତ ଗୃହୀତ 'ଉତ୍କଳୀୟ ସ୍ମୃତି ଓ ସ୍ମୃତିକାର : ଏକ ସମୀକ୍ଷା' ଶୀର୍ଷକ ସନ୍ଦର୍ଭଟି ସାଧାରଣ ସୁଧୀପାଠକମାନଙ୍କ ସୁବିଧା ପାଇଁ ଆବଶ୍ୟକସ୍ଥଳେ ପରିବର୍ତ୍ତନ ଓ ପରିବର୍ଦ୍ଧନ କରାଯାଇଛି । ଏହାର ରଚନା ନିମିତ୍ତ ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ ବିଶେଷକରି ମହାମହୋପାଧ୍ୟାୟ ପାଣ୍ଡୁରଙ୍ଗ ବାମନ କାଣେଙ୍କ 'ଧର୍ମଶାସ୍ତ୍ରର ଇତିହାସ', ଐତିହାସିକ କେଦାରନାଥ ମହାପାତ୍ରଙ୍କ ସମ୍ପାଦିତ 'ସଂସ୍କୃତ ଗ୍ରନ୍ଥ ବିବରଣ ତାଲିକା'ର ପ୍ରଥମ ଭାଗ ଓ ପଣ୍ଡିତ ନୀଳମଣି ମିଶ୍ର ସମ୍ପାଦିତ 'ସଂସ୍କୃତ ଗ୍ରନ୍ଥ ବିବରଣ ତାଲିକା' ସପ୍ତମ ଭାଗର ସହାୟତା ନେଇଥିବାରୁ ମୁଁ ସେମାନଙ୍କଠାରେ ଚିରକୃତଜ୍ଞ ।

ପ୍ରସ୍ତୁତ ସନ୍ଦର୍ଭ ଗ୍ରନ୍ଥର ରଚନାକାଳରେ ସର୍ବତୋଭାବେ ପ୍ରେରଣା ଦେଇଥିବାରୁ ମୋର ଗୁରୁ ଓ ନିର୍ଦ୍ଦେଶକ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କଠାରେ ମୁଁ ଆଜୀବନ ଋଣୀ । ବିଭିନ୍ନ ସମୟରେ ଯେଉଁମାନେ ନାନାଭାବରେ ମୋତେ ସାହାଯ୍ୟ ଓ ପରାମର୍ଶ ଦେଇଥିଲେ, ସେମାନଙ୍କ ମଧ୍ୟରେ ପ୍ରଫେସର ଶ୍ରୀ ସର୍ବେଶ୍ୱର ଦାଶ, ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ନାରୀ-କବି ଶ୍ରୀମତୀ ପ୍ରେମଲତା ଦାଶ, ଡକ୍ଟର ଆଶୁତୋଷ ପଟ୍ଟନାୟକ, ଡକ୍ଟର ଉପେନ୍ଦ୍ରନାଥ ଧଳ, ପଣ୍ଡିତ ଶ୍ରୀ କୁଳମଣି ମିଶ୍ର, ଶ୍ରୀ ସୋମନାଥ ଦାଶ ଓ ଶ୍ରୀ ନୀଳମଣି ଦାଶ, ଡକ୍ଟର ମହେଶ

ପ୍ରସାଦ ଦାଶ, ଶ୍ରୀମତୀ ପ୍ରମିଳା ମିଶ୍ର, ଡକ୍ଟର ଦୀନନାଥ ପାଠୀ, ଡକ୍ଟର ହରିଶ୍ଚନ୍ଦ୍ର ଦାସ, ଶ୍ରୀମାନ୍ କରୁଣାକର ବଡ଼ପୋଇ, ଶ୍ରୀମତୀ ମମତା ମିଶ୍ର ଓ ଗ୍ରନ୍ଥାଗାରିକ ସ୍ୱର୍ଗତ ଦାଶରଥି ପଣ୍ଡାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ଏହି ଗ୍ରନ୍ଥର ପାଣ୍ଡୁଲିପି ପ୍ରସ୍ତୁତିରେ ଅକୁଣ୍ଠ ଶ୍ରମ ଓ ସାହାଯ୍ୟ ପ୍ରଦାନ କରିଥିବାରୁ ଶ୍ରୀମାନ୍ ସୁରେଶ ଚନ୍ଦ୍ର ଜେନା, ଶ୍ରୀମତୀ ଶକୁନ୍ତଳା ପଣ୍ଡା ଓ ମୋର ଜ୍ୟେଷ୍ଠପୁତ୍ର ଶ୍ରୀମାନ୍ ବିଜୟ କୁମାର ପଣ୍ଡାଙ୍କୁ ଆଶୀର୍ବାଦ ଓ ଆନ୍ତରିକ ଶୁଭେଚ୍ଛା ଜଣାଉଛି । ଦୀର୍ଘକାଳଧରି ଗବେଷଣା କାର୍ଯ୍ୟରେ ବ୍ୟାପୃତ ଥିବାବେଳେ ମୋର ପତ୍ନୀ ଶ୍ରୀମତୀ ଭାର୍ଗବୀ ପଣ୍ଡା ଅସୀମ ଧୈର୍ଯ୍ୟ ଓ ତ୍ୟାଗ ସ୍ୱୀକାର କରି ମୋତେ ଅଧ୍ୟୟନର ସମସ୍ତ ସୁବିଧା ଦେଇଛନ୍ତି । ସେଥିପାଇଁ ତାଙ୍କ ଋଣ ଏ ଜୀବନରେ ପରିଶୋଧ କରିହେବନାହିଁ ।

ଓଡ଼ିଶାର ଧର୍ମଶାସ୍ତ୍ର ଅଧ୍ୟୟନ କ୍ଷେତ୍ରରେ ଏହା ଏକ ପ୍ରାଥମିକ ଉଦ୍ୟମ ହୋଇଥିବାରୁ ସମସ୍ତ ପ୍ରକାର ତ୍ରୁଟିବିଚ୍ୟୁତି କ୍ଷମଣୀୟ । ସାଧାରଣ ସଜ୍ଜନ ପାଠକସମାଜରେ ଏହି ଗ୍ରନ୍ଥ ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ବିନୀତ
**ଭଗବାନ ପଣ୍ଡା**

# ବିଷୟ ସୂଚୀ

# ପ୍ରଥମ ଅଧ୍ୟାୟ

## ସ୍ମୃତିଶାସ୍ତ୍ରର ଭୂମିକା

### ଉତ୍କଳର ଧାର୍ମିକ ପରମ୍ପରା

ଭାରତର ପୂର୍ବ ଉପକୂଳରେ ଅବସ୍ଥିତ ଆଧୁନିକ ଓଡ଼ିଶା ପୂର୍ବେ ଉତ୍କଳ, କଳିଙ୍ଗ, ଉଡ୍ର ଓ କୋଶଳ ନାମରେ ଅଭିହିତ ହେଉଥିଲା । ତନ୍ମଧ୍ୟରେ 'ଉତ୍କଳ' ନାମଟି ପ୍ରାଚୀନତମ ।୧। ଉତ୍ତରରେ କପିଶାଠାରୁ ଦକ୍ଷିଣରେ ବୈତରଣୀ ନଦୀ ଏବଂ ପଶ୍ଚିମରେ ନାଗପୁରଠାରୁ ପୂର୍ବରେ ସାଗର ପର୍ଯ୍ୟନ୍ତ ଅଞ୍ଚଳ ଉତ୍କଳ ରାଷ୍ଟ୍ରର ଅନ୍ତର୍ଗତ ଥିଲା ।୨। ମହର୍ଷି ଦୀର୍ଘତମାଙ୍କ ପଞ୍ଚପୁତ୍ର ମଧ୍ୟରେ କଳିଙ୍ଗ ଥିଲେ ଅନ୍ୟତମ ।୩। ବୈତରଣୀଠାରୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ଭୂମି କଳିଙ୍ଗ ନାମରେ ପରିଚିତ ହେଉଥିଲା ।୪। ଉଡ୍ର ଥିଲେ ଦୀର୍ଘତମାଙ୍କ ଷଷ୍ଠ ପୁତ୍ର । ଆଧୁନିକ ମେଦିନୀପୁରର ପଶ୍ଚିମାଂଶ ପୂର୍ବ-ସିଂହଭୂମି ଓ ଦକ୍ଷିଣ ବାଙ୍କୁଡ଼ାକୁ ନେଇ ଉଡ୍ର ରାଷ୍ଟ୍ର ପରିଚିତ ହୋଇଥିଲା ।୫। ପରବର୍ତ୍ତୀ କାଳରେ ଉଡ୍ର ଓ ଉତ୍କଳ ଏକ ରାଷ୍ଟ୍ରକୁ ବୁଝାଉଥିଲା ।୬। ରାମାୟଣର ଉଲ୍ଲେଖ ଅନୁସାରେ ଶ୍ରୀରାମଚନ୍ଦ୍ର ଯେଉଁଠାରେ ଦୀର୍ଘ ଦଶ ବର୍ଷ କାଳ ଅବସ୍ଥାନ କରିଥିଲେ, ତାହା କୋଶଳ ବା ଦକ୍ଷିଣ-କୋଶଳ ନାମରେ ଅଭିହିତ ହୋଇଥିଲା ।୭। ଓଡ଼ିଶାର ପଶ୍ଚିମାଞ୍ଚଳ ହିଁ କୋଶଳ ନାମରେ ପରିଚିତ । ପ୍ରାଚୀନ ଉତ୍କଳର ଉକ୍ତ ଗୃରୋଟି ରାଜ୍ୟ ମଧ୍ୟରେ କଳିଙ୍ଗ ଥିଲା ଶକ୍ତିଶାଳୀ । ଉତ୍ତର-ଦକ୍ଷିଣରେ ଗଙ୍ଗାଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବ-

---

୧ । Buddhism in Orissa—Dr. N. K. Sahu, P. 7

୨ । Study of Markandeya Purana—Porgitor—P. 327

୩ । Ancient Indian Historical Tradition—Porgitor—P. 158.

୪ । ଶକ୍ତିସଙ୍ଗମ ତନ୍ତ୍ର (Gos. vol. III) ସପ୍ତମ ପଟଳ-ଶ୍ଳୋକ-୧୮-୧୯ ।

୫ । ଓଡ଼ିଶା ଇତିହାସ—ଡକ୍ଟର ହରେକୃଷ୍ଣ ମହତାବ, ପୃ-୨

୬ । ତ୍ରିକାଣ୍ଡଶେଷ—ପୁରୁଷୋତ୍ତମ ଦେବ, ପୃ-୩୧

୭ । ରାମାୟଣ—୭-୧୨୦

ପଶ୍ଚିମରେ ମହୋଦଧିଠାରୁ ଅମରକଣ୍ଟକ ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡ ପରବର୍ତ୍ତୀ କାଳରେ କଳିଙ୍ଗ ରାଷ୍ଟ୍ର ରୂପେ ପରିଚିତ ହୋଇଥିଲା ।୮। କଳିଙ୍ଗର ରାଜଧାନୀ କଳିଙ୍ଗନଗରରୁ କଟକକୁ ସ୍ଥାନାନ୍ତରିତ ହେବାପରେ କଳିଙ୍ଗ ନାମ ପରିବର୍ତ୍ତେ ଏ ଦେଶର ନାମ ହେଲା ଉତ୍କଳ ବା ଉଡ୍ର ଏବଂ କାଳକ୍ରମେ 'ଓଡ଼ିଶା' ନାମ ପ୍ରଚଳିତ ହେଲା ।୯।

ଐତିହାସିକ ବିବରଣୀରୁ ଜଣାଯାଏ ଯେ, ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କ ପର୍ଯ୍ୟନ୍ତ କଳିଙ୍ଗ ଅବିଜିତ ଥିଲା । କଳିଙ୍ଗ ଯୁଦ୍ଧରେ (୨୬୧-ଖ୍ରୀ: ପୂ: ) କଳିଙ୍ଗବାସୀଙ୍କ ଅସୀମ ଧୈର୍ଯ୍ୟ ଓ ସାହସ ଦେଖି ବିଜୟୀ ଅଶୋକ ନିଜର ବିଜୟ ଗୌରବକୁ ଚରମ ଆତ୍ମପରାଜୟ ରୂପେ ସ୍ୱୀକାର କରିଥିଲେ ।୧୦। ଏହି କଳିଙ୍ଗ ଭୂମିରେ ଚଣ୍ଡାଶୋକ ଧର୍ମାଶୋକ ଭାବେ ପରିବର୍ତ୍ତିତ ହୋଇଥିଲେ । ପ୍ରିୟଦର୍ଶୀ ଅଶୋକ କଳିଙ୍ଗର ଯେଉଁ ବିହାରରେ ଶେଷ ଜୀବନ କଟାଇଥିଲେ, ତାହା 'ତୋଷଳକଗିରି ବିହାର' ନାମରେ ପ୍ରସିଦ୍ଧି ଅର୍ଜନ କରିଥିଲା ।୧୧। ତିସ୍ସଙ୍କ ଗୁରୁ ଧର୍ମ-ରକ୍ଷିତ ସେହି ବିହାରରେ ରହି ଥେରବାଦର ପ୍ରଚାର କରିଥିଲେ । ବୌଦ୍ଧ ଉପଗୁପ୍ତଙ୍କ ଶିଷ୍ୟ ଧିତିକ କୁମାରଙ୍କ ସର୍ବାସ୍ତିବାଦ ଏବଂ ଆଚାର୍ଯ୍ୟ ମହାଦେବଙ୍କ ମହାସଂଘିକ ବୌଦ୍ଧଧର୍ମରେ କଳିଙ୍ଗ-ବାସୀ ଉଦ୍‌ବୁଦ୍ଧ ହୋଇଥିଲେ । କିନ୍ତୁ କଳିଙ୍ଗରେ ବୌଦ୍ଧ ସର୍ବାସ୍ତିବାଦ ଅଧିକ ଲୋକପ୍ରିୟତା ଅର୍ଜନ କରିଥିଲା । ଏ କ୍ଷେତ୍ରରେ ଧିତିକଙ୍କ ପରେ ତାଙ୍କ ଶିଷ୍ୟ ଆଚାର୍ଯ୍ୟ କାଲ (କୃଷ୍ଣ) ଓ ପ୍ରଶିଷ୍ୟ ପୋସାତିଙ୍କ ଅବଦାନ ସ୍ମରଣୀୟ ।୧୨। ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ପରେ ଚେଦୀ-ବଂଶୀୟ ତୃତୀୟ ନରପତି ସମ୍ରାଟ୍ ଖାରବେଳଙ୍କ (୧ମ-ଖ୍ରୀ: ପୂ:) ଶାସନରେ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ କଳିଙ୍ଗ ବିଶେଷ ଉନ୍ନତି ଲାଭକରିଥିଲା ।୧୩। ମଗଧରାଜ ବୃହସ୍ପତି ମିତ୍ରଙ୍କୁ ଯୁଦ୍ଧରେ ହରାଇ ମହାପଦ୍ମନନ୍ଦ ନେଇଯାଇଥିବା 'ଜିନାସନ'କୁ ସମ୍ରାଟ୍ ଖାରବେଳ ଖୁବ୍ ଆଡ଼ମ୍ବର ସହକାରେ କଳିଙ୍ଗକୁ ଫେରାଇ ଆଣିଥିଲେ ।୧୪। ଧର୍ମମତ ନିର୍ବିଶେଷରେ ଯୋଗୀ ଋଷିଙ୍କ ସହିତ ଜୈନ ଅର୍ହତ୍‌ମାନଙ୍କ ବ୍ୟବହାର ନିମିତ୍ତ ସେ କୁମାର ଓ କୁମାରୀ ପର୍ବତ ବା ଆଧୁନିକ ଖଣ୍ଡଗିରି-ଉଦୟଗିରିରେ ଗୁମ୍ଫାମାନ ନିର୍ମାଣ କରାଇଥିଲେ । ସେହି ଗୁମ୍ଫାଗୁଡ଼ିକର ଦ୍ୱାରଦେଶ ତଥା ଗର୍ଭଗୃହରେ ଜୈନ ପୁରାଣସମ୍ମତ ବହୁ ଆଖ୍ୟାୟିକାର ଦୃଶ୍ୟାବଳୀ ସହିତ ଜୈନ ଅଷ୍ଟମଙ୍ଗଳ, ଚତୁର୍ବିଂଶତି ତୀର୍ଥଙ୍କର ଓ ଚତୁର୍ବିଂଶତି ଶାସନ ଦେବୀଙ୍କ ମୂର୍ତ୍ତିମାନ

---

୮ । History of Orissa.—Dr. N. K. Sahu—Vol, I. P. 76

୯ । ଓଡ଼ିଶା ଇତିହାସ—ଡକ୍ଟର ହରେକୃଷ୍ଣ ମହତାବ, ପୃ-୩

୧୦ । ଧଉଳିର ଇତିହାସ—କେଦାରନାଥ ମହାପାତ୍ର, ପୃ-୩୯

୧୧ । Dictionary of Pali Proper Names—Mallalasekhar.

୧୨ । Buddhism in Orissa, P. 23-24.

୧୩ । ଶ୍ରୀ ଖାରବେଳ—କେଦାରନାଥ ମହାପାତ୍ର, ପୃ-୨୫

୧୪ । ଓଡ଼ିଶାରେ ଜୈନଧର୍ମ—ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ପୃ-୩୦୭

ଖୋଦିତ ହୋଇଅଛି । ମହାମେଘବାହନ ସମ୍ରାଟ୍ ଖାରବେଳଙ୍କ ସମୟକୁ କଳିଙ୍ଗ ଜୈନଧର୍ମର ସ୍ୱର୍ଣ୍ଣଯୁଗ ରୂପେ ଅଭିହିତ କରାଯାଇପାରେ ।

ଖାରବେଳଙ୍କ ପରେ କଳିଙ୍ଗ ସପ୍ତମ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଗୁପ୍ତ ଓ ହର୍ଷବର୍ଦ୍ଧନଙ୍କ ଶାସନାଧୀନ ହୋଇଥିଲା । ଏହି ସମୟରେ ମାଠରବଂଶୀୟ ବୈଷ୍ଣବ ରାଜାଗଣ (୩୧୪-୫୩୬ ଖ୍ରୀ: ଅ:) ଦକ୍ଷିଣ ଓଡ଼ିଶା, ପିଷ୍ଟଭକ୍ତ ଓ ନଳରାଜାମାନେ (୪୦୦-୬୦୦ ଖ୍ରୀ: ଅ:) ଉତ୍ତର ଓଡ଼ିଶା ଏବଂ ଶୈବଧର୍ମାବଲମ୍ବୀ ଶୈଳୋଦ୍ଭବ ରାଜାମାନେ (୫୬୫-୮୩ ଖ୍ରୀ: ଅ:) ପୂର୍ବ ବା ମଧ୍ୟଓଡ଼ିଶାରେ ରାଜତ୍ୱ କରୁଥିଲେ ।୧୫। ଭୌମକରବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ (୭୩୬-୯୫୦ ଖ୍ରୀ: ଅ:) ଶୈବ, ଶାକ୍ତ ଓ ବୌଦ୍ଧ-ଧର୍ମର ସ୍ମାରକୀ ସ୍ୱରୂପ ବହୁ ମନ୍ଦିର ଓ ବିହାର ନିର୍ମିତ ହୋଇଥିଲା । ରତ୍ନଗିରି ଓ ଉଦୟଗିରି ବିହାର ସହିତ ତୋଷାଳି ଓ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ଭୌମ ରାଜତ୍ୱ କାଳର ଉଲ୍ଲେଖଯୋଗ୍ୟ ବୌଦ୍ଧକୀର୍ତ୍ତି । ଭୌମ ରାଜତ୍ୱ କାଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ତୁଙ୍ଗ, ଭଞ୍ଜ, ମୟୂର, ଧବଳ, ବିରାଟ ବଂଶୀୟ ସାମନ୍ତ ରାଜାଗଣ ରାଜତ୍ୱ କରୁଥିଲେ । ସୋମବଂଶର ରାଜତ୍ୱ କାଳରେ (୯୫୦-୧୧୧୨ ଖ୍ରୀ: ଅ:) ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ହୋଇଥିଲା । ତ୍ରିକଳିଙ୍ଗାଧିପତି ଯଯାତି କେଶରୀ ଥିଲେ ମହାନ୍ ଶୈବ । ତାଙ୍କର ସମୟରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, ଦଶାଶ୍ୱମେଧ ଘାଟ ପ୍ରଭୃତି ନିର୍ମିତ ହୋଇଥିଲା । ଏହାପରେ ଗଙ୍ଗବଂଶୀୟ ରାଜାମାନଙ୍କ ଦୀର୍ଘ ଏକହଜାର ବର୍ଷର ରାଜତ୍ୱ କାଳରେ (୪୯୭-୧୧୧୨ ଓ ୧୧୧୨-୧୪୩୫ ଖ୍ରୀ: ଅ:) ଓଡ଼ିଶୀ ଶିଳ୍ପକଳାନୈପୁଣ୍ୟର ଚରମ ନିଦର୍ଶନ ରୂପେ ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟ-ମନ୍ଦିର, ଭୁବନେଶ୍ୱରର ରାଜାରାଣୀ (ଇନ୍ଦ୍ରେଶ୍ୱର) ମନ୍ଦିର, ଶୋଭନେଶ୍ୱର, ମେଘେଶ୍ୱର ମନ୍ଦିର ପ୍ରଭୃତି ନିର୍ମିତ ହୋଇଥିଲା । ଏହି ସମୟରେ ବ୍ରାହ୍ମଣ୍ୟଧର୍ମର ପୁନଃ ପରିପ୍ରସାର ଘଟିଥିଲା, ପ୍ରସିଦ୍ଧ ସ୍ମୃତି-ଜ୍ୟୋତିଷ ଗ୍ରନ୍ଥମାନ ପ୍ରଣୀତ ହୋଇଥିଲା । ଗଙ୍ଗ ରାଜତ୍ୱକୁ ଓଡ଼ିଶାର 'ସ୍ୱର୍ଣ୍ଣଯୁଗ' ରୂପେ ଅଭିହିତ କରାଯାଇଥାଏ ।

ସୂର୍ଯ୍ୟବଂଶୀୟ ରାଜାମାନଙ୍କର ମାତ୍ର ଶହେ ବର୍ଷର ରାଜତ୍ୱ କାଳରେ (୧୪୩୫-୧୫୩୫ ଖ୍ରୀ: ଅ:) ଓଡ଼ିଶାର କଳା, ସ୍ଥାପତ୍ୟ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ସହିତ ବିଶେଷ କରି ସ୍ମୃତି ବା ଧର୍ମଶାସ୍ତ୍ରର ଚରମ ଉନ୍ନତି ସାଧିତ ହୋଇଥିଲା । ଏହାପରେ ରାଜନୈତିକ ଅସ୍ଥିରତା ହେତୁ ଗଜପତି ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ (୧୫୩୫-୧୫୬୮ ଖ୍ରୀ: ଅ:) ବହୁ ରାଜା ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ । ଖୋର୍ଦ୍ଧାର ଭୋଇବଂଶୀୟ ରାଜାମାନେ (୧୫୬୮-୧୮୦୩ ଖ୍ରୀଷ୍ଟାବ୍ଦ), ଆଫଗାନ ସୁଲତାନ (୧୫୬୮-୧୫୯୨ ଖ୍ରୀ: ଅ:), ମୋଗଲ (୧୫୯୨-୧୭୦୭ ଖ୍ରୀ: ଅ:) ଓ ମରହଟ୍ଟାଙ୍କ (୧୭୦୭-୧୮୦୩ ଖ୍ରୀ: ଅ:) ଅଧୀନରେ ଶାସନକାର୍ଯ୍ୟ ଚଳାଇଥିଲେ । ପରିଶେଷରେ ୧୮୦୩ରୁ ୧୯୪୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ଇଂରେଜ ଶାସନାଧୀନ ହୋଇଥିଲା ।

---

୧୫ । Inscriptions of Orissa—S N. Rajaguru—Vol-I, Part-II

ଧର୍ମବିଶ୍ୱାସ ଦୃଷ୍ଟିରୁ ପଞ୍ଚଦେବତାଙ୍କ ଅନୁସାରେ ଓଡ଼ିଶା ପାଞ୍ଚଟି ଅଂଶରେ ବିଭକ୍ତ ହୋଇଥିଲା । ତନ୍ମଧ୍ୟରେ ଅଧୁନିକ ଚଣ୍ଡୀଖୋଲ ଅଞ୍ଚଳ ବିନାୟକକ୍ଷେତ୍ର, କୋଣାର୍କ ଅର୍କ-କ୍ଷେତ୍ର, ପୁରୀ ବୈଷ୍ଣବକ୍ଷେତ୍ର, ଭୁବନେଶ୍ୱର ଶୈବକ୍ଷେତ୍ର ଓ ଯାଜପୁର ବିରଜା (ଶକ୍ତି) କ୍ଷେତ୍ର ରୂପେ ଖ୍ୟାତିଲାଭ କରିଥିଲା । ୧୬ । ଶ୍ରୀକ୍ଷେତ୍ର-ପୁରୀ ଭାରତର ଅନ୍ୟତମ ତୀର୍ଥକ୍ଷେତ୍ର ଭାବେ ଏବଂ ଭାରତୀୟ ଚତୁର୍ଦ୍ଧାମ ମଧ୍ୟରେ ଅନ୍ୟତମ ଧାମ ବା ଶ୍ରୀଜଗନ୍ନାଥଧାମ ରୂପେ ପ୍ରତିଷ୍ଠିତ । ଏହି ଶ୍ରୀଜଗନ୍ନାଥଧାମ ଯୁଗ ଯୁଗ ଧରି ବିଭିନ୍ନ ଧର୍ମଧାରାର ପ୍ରଚାର କେନ୍ଦ୍ର ହୋଇଆସିଥିଲା । ବିଭିନ୍ନ ବିଶ୍ୱାସ ଓ ମତବାଦର ସମନ୍ୱୟ ଘଟିଥିଲା ଶ୍ରୀଜଗନ୍ନାଥଙ୍କଠାରେ । ୧୭ । ବୈଦିକ ଯୁଗରୁ ଆରମ୍ଭ କରି ଓଡ଼ିଶାରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଧର୍ମର ଅଭ୍ୟୁତ୍ଥାନ ଘଟିଥିବାରୁ ବୈଦିକ ବ୍ରାହ୍ମଣ୍ୟଧର୍ମ, ଜୈନଧର୍ମ, ବୌଦ୍ଧଧର୍ମ, ଶୈବ, ପାଶୁପତ ଓ ଶାକ୍ତଧର୍ମ, ସୌର, ନାଗ ଓ ଗାଣପତ୍ୟ ମତବାଦ ସହିତ ବୈଷ୍ଣବଧର୍ମ କାଳକ୍ରମେ ସମନ୍ୱିତଭାବେ ଜଗନ୍ନାଥଧର୍ମରେ ବିବର୍ତ୍ତିତ ହେଲା । ତେଣୁ ଶ୍ରୀଜଗନ୍ନାଥ ହିଁ ଉତ୍କଳୀୟ ଧର୍ମଧାରଣା ଓ ସଂସ୍କୃତିର ସମନ୍ୱୟାତ୍ମକ ପ୍ରତୀକ ଭାବେ ବିବେଚିତ । ଶ୍ରୀଜଗନ୍ନାଥ ଏକରେ ଅନେକ ଓ ଅନେକର ଏକମାତ୍ର ଉତ୍ସ ରୂପେ ଯୁଗ ଯୁଗ ଧରି ଅରାଧିତ ହୋଇଅସୁଛନ୍ତି । ୧୮ । ଶ୍ରୀମନ୍ଦିରରେ ଅନୁଷ୍ଠିତ ଯାତ୍ରା, ପର୍ବ, ବ୍ରତ ପ୍ରଭୃତି ଓଡ଼ିଶା ତଥା ଭାରତର ହିନ୍ଦୁ ସମାଜରେ ପାଳିତ ହୁଏ । ତେଣୁ ଓଡ଼ିଶାର ଅଧିକାଂଶ ସ୍ମୃତିକାର ସ୍ୱ-ସ୍ୱ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟଦେବ ରୂପେ ବନ୍ଦନା କରିଛନ୍ତି ଶ୍ରୀଜଗନ୍ନାଥଙ୍କ ପୂଜା, ଉତ୍ସବ ଓ ବ୍ରତାଦିକୁ ନେଇ ସ୍ମୃତିଗ୍ରନ୍ଥମାନ ରଚନା କରିଛନ୍ତି ।

## ଧର୍ମଧାରଣାର ଉତ୍ସ

ଭାରତରେ ଯୁଗ ଯୁଗ ଧରି ଅନୁଶୀଳିତ ହୋଇ ଅସୁଥିବା ଶ୍ରୁତି, ସ୍ମୃତି, ଇତିହାସ ଓ ପୁରାଣାଦି ଶାସ୍ତ୍ରମାନ ଭାରତୀୟ ଜନତାର ଧାର୍ମିକ ଓ ସାମାଜିକ ଜୀବନର ମୌଳିକ ଭିତ୍ତିଭୂମି ରୂପେ ପରିଚିତ । ଶାସ୍ତ୍ରୀୟ ବିଧାନ ସହିତ ପ୍ରଚଳିତ ପରମ୍ପରା, ଲୋକାଚାର ଓ ବିଚାର ତଥା ବ୍ୟବହାର ଦ୍ୱାରା ଧର୍ମଶାସ୍ତ୍ରର ଆଙ୍ଗିକ ଓ ଆତ୍ମିକ ରୂପ ସମୟକ୍ରମେ ପରିମାର୍ଜିତ ଓ ଉତ୍ତରୋତ୍ତର ପରିପୁଷ୍ଟ ହୋଇଆସିଛି । ସମାଜ ଓ ସାମାଜିକ ଜୀବନଧାରାର ପରିବର୍ତ୍ତନ ସହିତ ଧର୍ମଶାସ୍ତ୍ରର ନିୟମମାନ କ୍ରମଶଃ ସରଳତର ଭାବେ ଲିପିବଦ୍ଧ କରାଯାଇଛି । ଆବଶ୍ୟକସ୍ଥଳେ ବିବାଦୀୟ ବିଷୟର ସିଦ୍ଧାନ୍ତ ନିମିତ୍ତ ବିଜ୍ଞମଣ୍ଡଳୀ ଗଠିତ ହୋଇଛି ।

ବ୍ୟକ୍ତି ଓ ସମାଜର ଚରିତ୍ର ଗଠନ ଓ ଜୀବନର ମହତ୍ ଉଦ୍ଦେଶ୍ୟ ସାଧନ ନିମିତ୍ତ ମାର୍ଗ-ନିର୍ଦ୍ଦେଶ ହିଁ ଧର୍ମଶାସ୍ତ୍ରର ଲକ୍ଷ୍ୟ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳତ୍ରୟର ସମ୍ପର୍କ ପରସ୍ପର

---

୧୬ । History of Orissa—Vol·I, P-4

୧୭ । The Cult of Jagannath—Dr. K. C. Mishra, P-26.

୧୮ । History of Oriya Literature—Dr. M. Manasing, P· 2

ସମ୍ବନ୍ଧିତ । ଏହି କାଳଜୟୀ ସହିତ ମଣିଷର ସମ୍ପର୍କ ଅତି ନିବିଡ଼ । ତେଣୁ ମାନବର ବ୍ୟକ୍ତିଗତ ଓ ସମଷ୍ଟିଗତ ଜୀବନ, ସାମାଜିକ ଓ ସାଂସ୍କୃତିକ ଜୀବନଧାରାର ପର୍ଯ୍ୟାଲୋଚନା ନିମିତ୍ତ ଧର୍ମ-ଶାସ୍ତ୍ରର ଆବଶ୍ୟକତା ସର୍ବଦା ସ୍ୱୀକାର୍ଯ୍ୟ । ଜୀବନଦର୍ଶନର ଲକ୍ଷ୍ୟ ଓ କାର୍ଯ୍ୟ ଧର୍ମଶାସ୍ତ୍ରର ବିଧି ଓ ନିଷେଧ ମଧ୍ୟରେ ନିୟନ୍ତ୍ରିତ । ତେଣୁ ଧର୍ମ ଓ ଧର୍ମଶାସ୍ତ୍ରର ପାରମ୍ପରିକ ଦୃଷ୍ଟିକୋଣ ଓ ବିଚାରଧାରା ଯୁଗେ ଯୁଗେ ମାନବଜାତିକୁ ମାର୍ଗନିର୍ଦ୍ଦେଶ କରିଆସିଛି । ୧୯ ।

ଧର୍ମର ବିବିଧ ଅର୍ଥ ପ୍ରଚଳିତ ଥିବାର ଦେଖାଯାଏ । ବେଦରେ 'ଧର୍ମ' ଶବ୍ଦ ବିଭିନ୍ନ ଭାବେ ଅନ୍ତତଃ ଶହେଚଉତିରିଶ ଥର ବ୍ୟବହୃତ ହୋଇଅଛି । ୨୦ । ପ୍ରକୃତି, ଅନ୍ତର୍ନିହିତ ଗୁଣ, ସାମାଜିକ ଓ ନୈତିକ ନିୟମ, ନ୍ୟାୟ, ସତ୍ୟ, ବ୍ରତ, ପ୍ରତିଜ୍ଞା, କର୍ତ୍ତବ୍ୟ, ଦେବତା, ନୈତିକତା ଆଦି ଅର୍ଥରେ ଧର୍ମ ଶବ୍ଦର ତର୍ଜମା କରାଯାଇଅଛି । ଏସବୁ ଅର୍ଥ ମଧ୍ୟରେ ଧର୍ମ ମୁଖ୍ୟତଃ ଏକତା, ଐଶ୍ୱରିକତା ଓ ଜୀବନର ସତ୍ୟକୁ ବୁଝାଇଥାଏ । କିନ୍ତୁ ଧର୍ମକୁ ଏପରି କେତୋଟି ଶବ୍ଦ ମଧ୍ୟରେ ସୀମିତ ରଖିବା ଯୁକ୍ତିଯୁକ୍ତ ମନେହୁଏନାହିଁ; କାରଣ ବ୍ୟକ୍ତିର ନୈମିତ୍ତିକ ଜୀବନରେ ଧର୍ମକୁ ଅନୁଭବ କରାଯାଇପାରେ । ଜୀବନର ସ୍ୱରୂପ, ଫଳ, ପ୍ରମାଣ ଓ ନିମିତ୍ତଦ୍ୱାରା ଧର୍ମ ନିର୍ଣ୍ଣୟ ସମ୍ଭବ ହୋଇଥାଏ । ଏ ବିଷୟରେ ଆପସ୍ତମ୍ବ ଓ ଲକ୍ଷ୍ମୀଧର ଭଟ୍ଟ ପ୍ରଭୃତିଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ପର୍ଯ୍ୟାଲୋଚନା ଗ୍ରହଣୀୟ । ମୀମାଂସକମାନେ ଅର୍ଥଚୋଦନାକୁ ଏବଂ ବୈଶେଷିକମାନେ ଅଭ୍ୟୁଦୟ ଓ ନିଃଶ୍ରେୟସକୁ ଧର୍ମ ବୋଲି କହନ୍ତି । ୨୧ । ମାନବ ଜୀବନର ଚରମ ଓ ପରମ ସାର୍ଥକତା ଚତୁର୍ବର୍ଗ ମଧ୍ୟରେ ସନ୍ନିହିତ । ଏହି ଚତୁର୍ବର୍ଗ ମଧ୍ୟରେ ଧର୍ମ ପ୍ରଥମ ସ୍ଥାନ ଅଧିକାର

---

୧୯ । Some aspects of the Hindu view of life according to Dharma Shastra—K. V. Rangaswami Aiyangar, 1952—P. 23.

୨୦ । History of Dharma Shastra—Vol-I-part-I, P. 1.

୨୧ । (କ) ନ ଧର୍ମାଧର୍ମୌ ଚରତଃ ଆବାଂ ସ୍ୱ ଇତି ନ ଦେବା ନ ଗନ୍ଧର୍ବା
ନ ପିତରଃ ଇତ୍ୟାଚକ୍ଷତେଽୟଂ ଧର୍ମୋଽୟମଧର୍ମ ଇତି ॥
(ଆପସ୍ତମ୍ବ-ଧର୍ମସୂତ୍ର—୧-୨୦-୬)

(ଖ) ତତ୍ର କୋ ଧର୍ମ ଇତ୍ୟପେକ୍ଷାୟାଂ ଧର୍ମସ୍ୱରୂପଫଳପ୍ରମାଣନିମିତ୍ତୈଃ
ପ୍ରବୃତ୍ତ୍ୟୌପୟିକଂ ଧର୍ମନିରୂପଣମ୍ ॥ (ବ୍ରହ୍ମଚାରୀକାଣ୍ଡ—୫)

(ଗ) ଚୋଦନା ଲକ୍ଷଣୋ ଧର୍ମଃ ॥ (ଜୈମିନିସୂତ୍ର—୧-୧-୧)

(ଘ) ଯତୋଽଭ୍ୟୁଦୟନିଃଶ୍ରେୟସସିଦ୍ଧିଃ ସ ଧର୍ମଃ ॥ (ବୈଖାନସ-ଧର୍ମସୂତ୍ର—୧-୧-୧)

କରିଛି । ଅର୍ଥ ଓ କାମ ମଧ୍ୟମ ଓ ମୋକ୍ଷ ସର୍ବୋତ୍ତମ । ଧର୍ମର ଚରମ ଲକ୍ଷ୍ୟ ମୋକ୍ଷ ବା ପୁରୁଷାର୍ଥ ଲାଭ । ୨୨ ।

ଧର୍ମ ମୁଖ୍ୟତଃ ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ବର୍ଣ୍ଣାଶ୍ରମଧର୍ମ, ଗୁଣଧର୍ମ ଓ ନିମିତ୍ତଧର୍ମ ରୂପେ ପାଞ୍ଚ ଭାଗରେ ବିଭକ୍ତ । ୨୩ । ତଦ୍‌ବ୍ୟତୀତ ପ୍ରବୃତ୍ତିଧର୍ମ, ନିବୃତ୍ତିଧର୍ମ, ଇଷ୍ଟଧର୍ମ, କୁଳଧର୍ମ, ଅହିଂସାଧର୍ମ, ଗୃହସ୍ଥଧର୍ମ, ସାଧାରଣ ଧର୍ମ, ସ୍ନାତକ ଧର୍ମ, ସ୍ୱଧର୍ମ, ଆପଦ ଧର୍ମ, ସଂସ୍କାର ଧର୍ମ ପ୍ରଭୃତି ବହୁବିଧ ଧର୍ମମାର୍ଗର ପର୍ଯ୍ୟାଲୋଚନା ମଧ୍ୟରେ ଧର୍ମ ନିର୍ଣ୍ଣୟ କରାଯାଇଛି । ବେଦ ହିଁ ଧର୍ମର ମୂଳସ୍ରୋତ ବୋଲି ଧର୍ମଶାସ୍ତ୍ରକାରଗଣ ସମସ୍ତେ ଏକମତ । ତେଣୁ ଧର୍ମର ଉତ୍ସଭାବେ ବେଦ ସହିତ ସ୍ମୃତି, ପୁରାଣ, ନ୍ୟାୟ, ମୀମାଂସା, ଆଚାର ପ୍ରଭୃତିର ଆନୁଷଙ୍ଗିକ ଆଲୋଚନା କରାଯାଇପାରେ ।

(୧) **ବେଦ**—ପ୍ରାଚୀନ ଧର୍ମଶାସ୍ତ୍ରକାରଙ୍କ ସହିତ ପରବର୍ତ୍ତୀ ନିବନ୍ଧକାରମାନେ ଶ୍ରୁତିକୁ ଧର୍ମର ମୂଳ ବୋଲି ସ୍ୱୀକାର କରିଛନ୍ତି । କୌଣସି ପରିସ୍ଥିତିରେ ସ୍ମୃତି, ପୁରାଣ ବା ସଦାଚାର ଦ୍ୱାରା ଶ୍ରୁତିର ପ୍ରମାଣକୁ ଅସ୍ୱୀକାର କରାଯାଇନପାରେ; କାରଣ ଶ୍ରୁତି ହେଉଛି ସର୍ବପ୍ରାଚୀନ । ଏହା ଭଗବଦ୍ ବ୍ରହ୍ମମୁଖନିଃସୃତ ବୋଲି ବେଦାନ୍ତରେ ବର୍ଣ୍ଣିତ ହୋଇଛି ।୨୪। ବେଦ ହିଁ ଧର୍ମ-ନୀତି, ସଦାଚାର ଓ ସାମାଜିକ ନିୟମର ମୂଳସୂତ୍ର ରୂପେ ଗୃହୀତ । ତେଣୁ ଗୌତମ, ଆପସ୍ତମ୍ବ, ବଶିଷ୍ଠ, ମନୁ, ଯାଜ୍ଞବଲ୍କ୍ୟ ପ୍ରଭୃତି ମହର୍ଷିଗଣ ବେଦ, ବେଦାଙ୍ଗ, ସ୍ମୃତି, ସଦାଚାର, ଆତ୍ମତୁଷ୍ଟି, ପରମ୍ପରା ଆଦିକୁ ଧର୍ମର ମୂଳରୂପେ ଗ୍ରହଣ କରିଛନ୍ତି ।୨୫। ବୈଦିକ ସମାଜରେ ପ୍ରଚଳିତ

---

୨୨ । ଊର୍ଦ୍ଧ୍ୱବାହୁର୍ବିରୌମ୍ୟେଷ ନ କଶ୍ଚିତ୍ ଛୁଣୋତି ମାମ୍ ।
ଧର୍ମାଦର୍ଥଶ୍ଚ କାମଶ୍ଚ ସ କିମର୍ଥଂ ନ ସେବ୍ୟତେ ॥
(ମହାଭାରତ—ସ୍ୱର୍ଗାରୋହଣ ପର୍ବ—୫, ୬୨)

୨୩ । ମନୁସ୍ମୃତି—୨-୨୫

୨୪ । History of Dharmashastra—Vol-V, Pt-II, P. 1202

୨୫ । (କ) ବେଦୋଧର୍ମମୂଳମ୍ । ତଦ୍‌ବିଦାଂ ଚ ସ୍ମୃତିଶୀଲେ ।
(ଗୌତମ-ଧର୍ମସୂତ୍ର-୧-୧-୨)

(ଖ) ଧର୍ମଜ୍ଞ ସମୟଃ ପ୍ରମାଣଂ ବେଦାଶ୍ଚ ॥ (ଆପସ୍ତମ୍ବ-ଧର୍ମସୂତ୍ର-୧-୧-୧-୨)

(ଗ) ଶ୍ରୁତି ସ୍ମୃତିବିହିତୋ ଧର୍ମଃ । ତଦଲାଭେ ଶିଷ୍ଟାଚାରଃ ପ୍ରମାଣମ୍ ।
ଶିଷ୍ଟଃ ପୁନରକାମାତ୍ମ ॥ (ବଶିଷ୍ଠ-ଧର୍ମସୂତ୍ର-୧-୪-୬)

(ଘ) ବେଦୋଽଖିଲୋ ଧର୍ମମୂଳଂ ସ୍ମୃତିଶୀଲେ ଚ ତଦ୍‌ବିଦାମ୍ ।
ଆଚାରଶ୍ଚୈବ ସାଧୂନାମାତ୍ମନ ସ୍ତୁଷ୍ଟିରେବ ଚ ॥ (ମନୁ-୨-୬)

(ଙ) ଶ୍ରୁତିଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।
ସମ୍ୟକ୍ ସଂକଳ୍ପଜଃ କାମୋ ଧର୍ମମୂଳମିଦଂ ସ୍ମୃତମ୍ ॥ (ଯାଜ୍ଞ-୧-୭)

ବିବାହ, ପୁତ୍ରଗ୍ରହଣ, ସମ୍ପତ୍ତି ବିଭାଜନ, ଶ୍ରାଦ୍ଧ, ସ୍ତ୍ରୀଧନ, ଭ୍ରାତୃହୀନା କନ୍ୟାର ପାଣିଗ୍ରହଣ ନ କରିବା ଆଦି ପ୍ରଥା ଯାଜ୍ଞବଲ୍କ୍ୟଙ୍କ ସ୍ମୃତିରେ ଉଲ୍ଲିଖିତ ଅଛି ।୨୬।

ପ୍ରାଚୀନ ଗ୍ରନ୍ଥକାରମାନେ ପ୍ରାଚୀନତମ ସଂସ୍କୃତ ରଚନାକୁ ତିନି ଭାଗରେ ବିଭକ୍ତ କରିଛନ୍ତି । ପ୍ରଥମ ଭାଗରେ ଋଗ୍‌ବେଦ, ଦ୍ୱିତୀୟ ଭାଗରେ ବୃହଦାରଣ୍ୟକାଦି ପ୍ରାଚୀନ ଉପନିଷଦ୍ ଓ ବ୍ରାହ୍ମଣ-ସାହିତ୍ୟ ଏବଂ ତୃତୀୟ ଭାଗରେ ସୂତ୍ର-ସାହିତ୍ୟର ଉଲ୍ଲେଖ କରାଯାଇଛି । ପ୍ରଥମ ଦୁଇଟି ବେଦ ବା ଶ୍ରୁତି ନାମରେ ଅଭିହିତ, ତୃତୀୟଟି ବେଦାଙ୍ଗ ସାହିତ୍ୟରୂପେ ପରିଚିତ । ଏହା ଛଅ ଭାଗରେ ବିଭକ୍ତ ।୨୭। ତନ୍ମଧ୍ୟରେ କଳ୍ପ ହେଉଛି ଅନ୍ୟତମ । ଏହି କଳ୍ପ, ଶ୍ରୌତ, ଗୃହ୍ୟ ଓ ଧର୍ମସୂତ୍ର ରୂପେ ତିନି ଭାଗରେ ବିଭକ୍ତ । ଏଗୁଡ଼ିକ ବେଦ ସହିତ ଘନିଷ୍ଠଭାବେ ସଂପୃକ୍ତ ।

ମନ୍ତ୍ର, ନାମଧେୟ ଓ ଅର୍ଥବାଦର ସମ୍ମିଳିତ ରୂପ ହେଉଛି ବେଦ ।୨୮। 'ବେଦ' ଶବ୍ଦର ପ୍ରାଚୀନତା ଓ ଅର୍ଥପ୍ରାଧାନ୍ୟ ଦୃଷ୍ଟିରୁ ଚିକିତ୍ସା-ମୂର୍ତ୍ତି-ସାହିତ୍ୟ-ସଙ୍ଗୀତଶାସ୍ତ୍ର ସହିତ ମହାଭାରତ ମଧ୍ୟ ବେଦ ନାମରେ ନାମିତ । ସୂତ୍ର ସାହିତ୍ୟ, ରାମାୟଣ, ମହାଭାରତ, ସ୍ମୃତି, ପୁରାଣ ଓ ନିବନ୍ଧ ଗ୍ରନ୍ଥରେ ବେଦକୁ ସର୍ବପ୍ରାମାଣ୍ୟଭାବେ ସ୍ୱୀକାର କରାଯାଇଛି । ଧର୍ମର ଚତୁର୍ଦ୍ଦଶବିଧ ମୂଳସ୍ରୋତ ମଧ୍ୟରେ ଏଗୁଡ଼ିକର ନାମୋଲ୍ଲେଖ ଅଛି ।୨୯। ବେଦକୁ ଅପୌରୁଷେୟ ଓ ଐଶ୍ୱରୀୟ ବାକ୍ୟରୂପେ ଗ୍ରହଣ କରାଯାଇଥିବାରୁ ବୈଦିକ ଅନୁଷ୍ଠାନମାନ ଧର୍ମଶାସ୍ତ୍ରରେ ବିଶେଷଭାବେ ପର୍ଯ୍ୟାଲୋଚିତ ହୋଇଛି । ସ୍ମୃତିଶାସ୍ତ୍ରରେ ବୈଦିକ ପଞ୍ଚମହାଯଜ୍ଞ, ବିବିଧ ସଂସ୍କାର, ଚତୁର୍ବିଧ ଆଶ୍ରମଧର୍ମ, ବର୍ଣ୍ଣଧର୍ମ, ପ୍ରାୟଶ୍ଚିତ୍ତ, ରାଜଧର୍ମ, ବ୍ୟବହାର, ସମାଜନୀତି, ଦଣ୍ଡନୀତି ପ୍ରଭୃତି ବିଷୟମାନ ଆଲୋଚନା କରାଯାଇଛି । ତନ୍ମଧ୍ୟରେ ଆଶ୍ରମଧର୍ମ ଓ ଜାତିଭେଦ ବିଷୟ ବେଦରେ ଉଲ୍ଲେଖ ନଥିଲେ ମଧ୍ୟ ସ୍ମୃତିକାରମାନେ ବେଦକୁ ହିଁ ପ୍ରମାଣରୂପେ ଗ୍ରହଣ କରିଛନ୍ତି । କାରଣ ଶ୍ରୁତି ବା ବେଦ ପର୍ଯ୍ୟାୟ ମଧ୍ୟରେ ବେଦ, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ ଗୃହୀତ ହୁଏ । ଉଦାହରଣ ସ୍ୱରୂପ "ମନୁ ନିଜର ଦଶପୁତ୍ର ମଧ୍ୟରେ ସମ୍ପତ୍ତି ବିଭାଜନ କରିଥିଲେ" ବୋଲି ଯେଉଁ କାହାଣୀ ପ୍ରଚଳିତ ଅଛି ତାହା ପ୍ରଥମେ ତୈତ୍ତିରୀୟ ସଂହିତାରେ ବର୍ଣ୍ଣିତ ହୋଇଥିବାରୁ ଏହାକୁ ସ୍ମୃତିକାରମାନେ ବେଦ ପ୍ରମାଣ ରୂପେ ଗ୍ରହଣ କରିଛନ୍ତି ।୩୦। ସେହିପରି କାଠକ ସଂହିତାରେ ଥିବା ସଂପତ୍ତି ବିଭାଜନ କଥା,

---

୨୬ । History of Dharmashastra—Vol-I, pt. I, P. 7-91

୨୭ । ଶିକ୍ଷାକଳ୍ପୋ ବ୍ୟାକରଣଂ ନିରୁକ୍ତଂ ଛନ୍ଦ ଏବ ଚ ।
ଜ୍ୟୋତିଃ ଶାସ୍ତ୍ରଂ ଚ ବେଦାନାଂ ଷଡ଼ଙ୍ଗାନି ପ୍ରଚକ୍ଷତେ ॥ (ଆଗ୍ନିରସାର-ପୃ-୧)

୨୮ । Some aspects of the Hindu view of life—P. 73.

୨୯ । ପୁରାଣ-ନ୍ୟାୟ-ମୀମାଂସା-ଧର୍ମଶାସ୍ତ୍ରାଙ୍ଗମିଶ୍ରିତାଃ ।
ବେଦାଃ ସ୍ଥାନାନି ବିଦ୍ୟାନାଂ ଧର୍ମସ୍ୟ ଚ ଚତୁର୍ଦ୍ଦଶ ॥ (ଯାଜ୍ଞ-୧-୩-୭)

୩୦ । ତୈତ୍ତିରୀୟ ସଂହିତା—୩-୧-୪-୫ ।

କଠୋପନିଷଦ୍‌ର ନଚିକେତା ଉପାଖ୍ୟାନ ବର୍ଣ୍ଣିତ ପିତୃ ଅଧିକାର ଓ ଅନ୍ୟାନ୍ୟ ବିଧି-ବ୍ୟବସ୍ଥାମାନ ବୈଦିକ ପ୍ରମାଣରୂପେ ସ୍ୱୀକୃତ ହୋଇଛି ।୩୧। ସ୍ମୃତିର ନିୟମକୁ ପ୍ରମାଣିତ କରିବାପାଇଁ ବେଦର ମୂଳ ଉକ୍ତି ବା ଉକ୍ତିର ସାରାଂଶ ଦିଆଯିବାଦ୍ୱାରା ତାହାର ପ୍ରାମାଣିକତା ସ୍ୱୀକୃତ ହୁଏ ବୋଲି କୁମାରିଲ କହିଛନ୍ତି ।୩୨।

ସ୍ମୃତିକାରମାନେ ବେଦର ପ୍ରମାଣ ଉଲ୍ଲେଖ କରିନାହାନ୍ତି । ମନୁସ୍ମୃତିରେ ଥରେ ମାତ୍ର ବେଦମନ୍ତ୍ରର ଉଲ୍ଲେଖ ଅଛି ।୩୩। ନିବନ୍ଧ ଗ୍ରନ୍ଥଗୁଡ଼ିକରେ ସ୍ମୃତି, ପୁରାଣ, ରାମାୟଣ ତଥା ମହାଭାରତର ଉଦ୍ଧୃତି ବ୍ୟତୀତ ବେଦର ଉଦ୍ଧୃତି ବିରଳ ବୋଲି କୁହାଯାଇପାରେ । କାରଣ ସ୍ମୃତି ସାହିତ୍ୟ ରଚନା ବେଳକୁ (୨୦୦ ଖ୍ରୀ: ପୂ:—୫୦୦ ଖ୍ରୀ: ଅ:) ବୈଦିକ ଧର୍ମର ପ୍ରଭାବ ଓ ବେଦମନ୍ତ୍ରର ଅବବୋଧ ଶକ୍ତି ଯଥେଷ୍ଟ ହ୍ରାସପାଇସାରିଥିଲା । ଖୁବ୍ ଅଳ୍ପଲୋକ ବେଦମନ୍ତ୍ର ଓ ବ୍ରାହ୍ମଣ ଗ୍ରନ୍ଥର ଅର୍ଥ ବୁଝୁଥିଲେ । ନୂତନ ବିଶ୍ୱାସ, ନୂଆ ଆଚାର-ବିଚାର ତଦାନୀନ୍ତନ ସମାଜରେ ସ୍ୱୀକୃତି ଲାଭ କରିସାରିଥିଲା ।୩୪। ତେଣୁ ସ୍ମୃତିକାରମାନେ ସମୟୋପଯୋଗୀ ଚିନ୍ତାକୁ ସ୍ୱୀକାର କରି ବେଦମନ୍ତ୍ରର କଠୋର ବିଧି-ବ୍ୟବସ୍ଥାକୁ ଅଧିକ ସରଳ ଓ ସାମାଜିକ କରିଥିଲେ । କିନ୍ତୁ ନିବନ୍ଧ ରଚନାର ଶେଷ ପର୍ଯ୍ୟନ୍ତ (୧୮୦୦ ଖ୍ରୀଷ୍ଟାବ୍ଦ) ଶ୍ରୁତି ପ୍ରମାଣକୁ ଗ୍ରହଣ କରାଯାଉଥିଲେ ମଧ୍ୟ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠାରୁ ଏ ପ୍ରକାର ଚିନ୍ତା କ୍ରମଶଃ ହ୍ରାସ ପାଇ ଆସୁଥିଲା ।୩୫।

---

୩୧ । (କ) ଯଦ୍‌ବୈ ପୁତ୍ରୌ ଯୁଧ୍ୟେତେ ପିତା ତାଭ୍ୟାଂ କଳ୍ପୟତି ।
ସ ଏବୈତୌ ଲୋକେ ସ୍ୱେନ ଭାଗଧେୟେନ ପିତା ଶମୟତି ॥
(କାଠକ-ସଂହିତା — ୨୧-୫)

(ଖ) କଠୋପନିଷଦ୍ — ୧-୧

୩୨ । ବେଦୋ ହ୍ୟଦୃଶ ଏବାସ୍ୟଂ ପୁରୁଷୈର୍ଯଃ ପ୍ରକାଶ୍ୟତେ ।
ସ ପଠଦ୍‌ଭିଃ ପ୍ରକାଶ୍ୟେତ ସ୍ମରଦ୍‌ଭିର୍ବେତି ଭୂଲ୍ୟଭାକ୍ ॥
ଅନୁସ୍ମରଣ କାଲେ ଚ ସଂସ୍କାରୈରେବ କେବଲୈଃ ।
ତତ୍‌କୃତ ସ ରଣୈବାସ୍ୟଂ ବେଦୋଽଧ୍ୟେତୃଷୁ ତିଷ୍ଠତି ॥
ତେନାର୍ଥଂ କଥୟଦ୍‌ଭର୍ଯା ସ୍ମୃତାର୍ଥା କଥ୍ୟତେ ଶ୍ରୁତିଃ ।
ପଠିତାଭିଃ ସମାନାସୌ କେନ ନ୍ୟାୟେନ ବାଧ୍ୟତେ ॥ (ତନ୍ତ୍ରବାର୍ତ୍ତିକ--ପୃ-୧୦୭)

୩୩ । ଯନ୍ମେ ମାତା ପ୍ରଲୁଲୁଭେ ବିଚରନ୍ତ୍ୟ ପତିବ୍ରତା ।
ତନ୍ମେରେତଃ ପିତା ବୃଙ୍କ୍ତାମିତ୍ୟସ୍ୟୈତନ୍ନିଦର୍ଶନମ୍ ॥ (ମନୁସ୍ମୃତି—୯-୨୦)

୩୪ । ଯଥା ସୌତ୍ରାମଣ୍ୟାଂ ସୁରାଗ୍ରହାନ୍ ଗୃହ୍ଣୀତ ଇତି ପ୍ରତ୍ୟେକଶ୍ରୁତେରପି ।
କଲୌ ଯୁଗେତ୍ୱିମାନ୍ ଧର୍ମାନ୍ ବର୍ଜ୍ୟାନାହୁର୍ମନୀଷିଣଃ ॥ (ଆଚାରସାର, ପୃ. ୭)

୩୫ । Sourcees of Hindudharma (S. H. D.)—
A. S. Altekar, p. 10.

(୨) **ସ୍ମୃତି**—ଧର୍ମଶାସ୍ତ୍ର-ସାହିତ୍ୟରେ ଶ୍ରୁତି ସହିତ ସ୍ମୃତିକୁ ଧର୍ମର ମୂଳଉତ୍ସ ବୋଲି ଉଲ୍ଲେଖ କରାଯାଇଛି । ମହର୍ଷି ମନୁଙ୍କ ଅନୁସାରେ ଶ୍ରୁତି ଓ ସ୍ମୃତି ସମାନାର୍ଥକ । ବୈଦିକ ଆଚାର ଓ ସ୍ମରଣ ହିଁ ଧର୍ମଶାସ୍ତ୍ରର ମୂଳ । ୩୬ । ଏହି ବିଷୟରେ ଗୌତମ ମଧ୍ୟ ଏକମତ ଥିବାର ଦେଖାଯାଏ । ୩୭ । ଧର୍ମର ପ୍ରାମାଣ୍ୟ ରୂପେ ଯଥାକ୍ରମେ ବେଦ, ବୈଦିକ ପରମ୍ପରା, ପ୍ରଥା, ସ୍ମୃତି ଓ ଶୀଳକୁ ସ୍ୱୀକାର କରାଯାଇଛି । ପରମ୍ପରା ଓ ସାମାଜିକ ପ୍ରଥାକୁ ସ୍ମୃତିରୂପେ ବର୍ଣ୍ଣନା କରାଯାଇଛି । ସ୍ମୃତିର ପ୍ରଚଳନ ପରବର୍ତ୍ତୀ କାଳରେ ହୋଇଥିବାର ଜଣାଯାଏ; କାରଣ ଆପସ୍ତମ୍ବ ଓ ଗୌତମଙ୍କ ବେଳକୁ ଧର୍ମଶାସ୍ତ୍ରର ରଚନା ହୋଇନଥିଲା । ସେମାନଙ୍କ ପ୍ରଣୀତ ଧର୍ମସୂତ୍ର ହିଁ ଏ ବିଷୟରେ ପ୍ରଥମ ରଚନା । ୩୮ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଆଡ଼କୁ ଧର୍ମଶାସ୍ତ୍ର ରଚନା ଆରମ୍ଭହେଲା । ତତ୍ପୂର୍ବରୁ ଧର୍ମୀୟ ନିୟମସମୂହମାନ, ବୈଦିକ ପରମ୍ପରା, ସାମାଜିକ ଆଚାର ଓ ଲୋକସ୍ମୃତିରେ ପର୍ଯ୍ୟବସିତ ଥିଲା । ତେଣୁ ଏସବୁ ସଂଗୃହୀତ ହୋଇଥିବା ଗ୍ରନ୍ଥ ସ୍ମୃତିରୂପେ ପରିଚିତ ହେଲା । ଧର୍ମସୂତ୍ର ପ୍ରଣେତାଗଣ ଓ ସ୍ମୃତିକାର ମନୁ, ଯାଜ୍ଞବଲ୍କ୍ୟ ପ୍ରମୁଖ ସ୍ମୃତିକୁ ପୌରୁଷେୟ ବୋଲି ସ୍ୱୀକାର କରିଛନ୍ତି । ୩୯ । କାଳକ୍ରମେ ଧର୍ମଶାସ୍ତ୍ର ବିଷୟରେ ବହୁ ଗ୍ରନ୍ଥ ପ୍ରଣୀତ ହେଲା । ପ୍ରାଚୀନ ଶାସ୍ତ୍ରକାରଗଣ ପରବର୍ତ୍ତୀ ଶହ ଶହ ବର୍ଷ ପରେ ମୁନି-ଋଷିଭାବରେ ସମାଜରେ ସମ୍ମାନିତ ହେଲେ । ସେମାନଙ୍କ ବାକ୍ୟାବଳୀ ଆର୍ଷ ପ୍ରମାଣ ଭାବେ ସ୍ୱୀକୃତି ଲାଭକଲା । କିନ୍ତୁ ସେହି ଗ୍ରନ୍ଥବର୍ଣ୍ଣିତ ବିଷୟବସ୍ତୁରେ ତଥା ସମାଜ ଓ ସାମାଜିକ ବିଧିବ୍ୟବସ୍ଥାରେ ବୈଦିକ ପ୍ରଭାବ ହ୍ରାସ ପାଇଆସୁଥିଲା । କ୍ରମଶଃ ସ୍ମୃତିଶାସ୍ତ୍ର ଲୋକସାଧାରଣଙ୍କ ସ୍ୱୀକୃତି ଲାଭକଲା । ସମୟକ୍ରମେ ଗୀତା, ମହାଭାରତ ଓ ବିଷ୍ଣୁସହସ୍ରନାମ ଭଳି ଗ୍ରନ୍ଥ ମଧ୍ୟ ସ୍ମୃତିର ଅନ୍ତର୍ଗତ ହେଲା । ଧର୍ମଶାସ୍ତ୍ରରେ ଧର୍ମସୂତ୍ର, ସ୍ମୃତି, ବ୍ୟାଖ୍ୟାଗ୍ରନ୍ଥ, ନିବନ୍ଧଗ୍ରନ୍ଥ ଓ ଗୃହ୍ୟସୂତ୍ରର ସଂସ୍କାର ଅଂଶମାନ ସନ୍ନିବେଶିତ କରାଗଲା ।

ପ୍ରାଚୀନ ମୁନିଋଷିମାନଙ୍କ ମତରେ ଶ୍ରୁତି ଓ ସ୍ମୃତିର ପାରସ୍ପରିକ ସମ୍ପର୍କ ବିଷୟରେ କୌଣସି ମତଦ୍ୱୈଧ ନଥିଲା । ଆପସ୍ତମ୍ବଙ୍କ ଅନୁସାରେ ସ୍ମୃତି ଅପେକ୍ଷା ଶ୍ରୁତିକୁ ଅଧିକ ପ୍ରମାଣ

---

୩୬ । (କ) ବେଦୋଽଖିଲୋ ଧର୍ମମୂଳଂ ସ୍ମୃତିଶୀଲେ ଚ ତଦ୍‌ବିଦାମ୍ ॥ (ମନୁ—୨-୬)
(ଖ) ସ୍ମୃତିସ୍ତୁ ଧର୍ମୋ ବିଜ୍ଞେୟୋ ଧର୍ମଶାସ୍ତ୍ରଂ ତୁ ବୈ ସ୍ମୃତିଃ ॥ (ମନୁ—୨-୧୧)

୩୭ । ବେଦୋ ଧର୍ମମୂଳଂ ତଦ୍‌ବିଦାଂ ଚ ସ୍ମୃତିଶୀଲେ ॥
(ଗୌତମ-ଧର୍ମସୂତ୍ର—୧-୧-୨)

୩୮ । Sources of Hindudharma—p. 12.

୩୯ । (କ) ଅଥାତଃ ସାମୟାଚାରିକାନ୍ ଧର୍ମାନ୍ ବ୍ୟାଖ୍ୟାସ୍ୟାମଃ ॥
(ଆପସ୍ତମ୍ବ-ଧର୍ମସୂତ୍ର—୧-୧-୧)
(ଖ) ସମୟଃ ସମୟମୂଳ ଆଚାରଃ ତେଷୁ ଭବା ସାମୟାଚାରିକାଃ । ଏବଂ ଭୂତାନ୍ ଧର୍ମାନ୍ । ସାମୟାଚାରିକଃ ପୌରୁଷେୟୀ ବ୍ୟବସ୍ଥା ॥
(ଆପସ୍ତମ୍ବ-ଧର୍ମସୂତ୍ର ଟୀକା—ହରଦତ୍ତ—ପୃ. ୨)

ରୂପେ ଗ୍ରହଣ କରାଯାଉଥିଲା । ୪୦ । ଜୈମିନିଙ୍କ (୧୦୦ ଖ୍ରୀଷ୍ଟପୂର୍ବ) ଉଲ୍ଲେଖ ଅନୁସାରେ ଶ୍ରୁତିର ବିରୋଧାଚରଣ କରୁଥିବା ସ୍ମୃତି ମୂଲ୍ୟହୀନ । ୪୧ । ଜାବାଳି ସ୍ମୃତି ଅପେକ୍ଷା ଶ୍ରୁତିର ପ୍ରାଧାନ୍ୟ ସ୍ୱୀକାର କରିଛନ୍ତି । ସ୍ମୃତି ସର୍ବଦା ଶ୍ରୁତିର ଅନୁଗାମୀ । ବୈଦିକ ନୀତିନିୟମମାନ ବିକ୍ଷିପ୍ତ ଅବସ୍ଥାରେ ଥିବାରୁ ସ୍ମୃତିରେ ସେଗୁଡ଼ିକ ବିଧିବଦ୍ଧଭାବେ ସଂଗୃହୀତ ଓ ସଂକଳିତ ହୋଇଛି । ୪୨ । ପୁଣି ପ୍ରଚଳିତ ସାମାଜିକ ଆଚାର-ବିଚାରଗୁଡ଼ିକ ସ୍ମୃତିର ଯେଉଁ ଯେଉଁ କ୍ଷେତ୍ରରେ ଅନ୍ତର୍ଗତ ହୋଇଛି, ସେଠାରେ ବେଦ ପ୍ରମାଣର ଆବଶ୍ୟକତାକୁ ଚତୁରତାର ସହିତ ଆଡ଼େଇଦିଆଯାଇଛି । ୪୩ । ତେଣୁ ଶ୍ରୁତିରେ ସନ୍ଦେହର ଅବକାଶ ନଥିଲେ ମଧ୍ୟ ସ୍ମୃତିରେ ଉଲ୍ଲିଖିତ ଥିବା ବିଧିବ୍ୟବସ୍ଥାକୁ ବିଶ୍ୱାସ କରିବାରେ କେତେକ ସନ୍ଦେହ ରହିଯାଏ । ୪୪ ।

କାଳକ୍ରମେ ଶ୍ରୁତି ଅପେକ୍ଷା ସ୍ମୃତିକୁ ଲୋକେ ଅଧିକ ଆଦର କଲେ । ଶ୍ରୁତି କ୍ରମଶଃ ଅବୋଧ୍ୟ ହୋଇ ରହିଲା । ଶ୍ରୁତି ତୁଳନାରେ ସ୍ମୃତି ଅଧିକ ସରଳ ଓ ସୁବୋଧ ହେଲା । ମନୁ, ଯାଜ୍ଞବଲ୍କ୍ୟ ପ୍ରଭୃତି ସ୍ମୃତିକାରମାନେ ବୈଦିକ ଋଷିମାନଙ୍କ ଭଳି ସମ୍ମାନିତ ହେଲେ । ବୃହସ୍ପତିଙ୍କ ଉଲ୍ଲେଖ ଅନୁସାରେ ଶ୍ରୁତି ଓ ସ୍ମୃତି ବ୍ରାହ୍ମଣର ଦୁଇ ଚକ୍ଷୁ । ସ୍ମୃତିର ଅଧ୍ୟୟନ ବିନା ପାଣ୍ଡିତ୍ୟ ପରିପୂର୍ଣ୍ଣ ହୁଏନାହିଁ । ୪୫ । ଅତ୍ରି ମଧ୍ୟ ସ୍ମୃତି ଅଧ୍ୟୟନ ବ୍ୟତୀତ ବେଦବିତ୍ ଏକୋଇଶବାର ପଶୁଯୋନିରେ ଜନ୍ମ ହୁଏ ବୋଲି ଉଲ୍ଲେଖ କରିଛନ୍ତି । ୪୬ । ରାଜଧର୍ମ ଓ ବ୍ୟବହାରର ନୀତି ନିର୍ଣ୍ଣୟରେ ବେଦ ପ୍ରମାଣର ଆବଶ୍ୟକତାକୁ ଅସ୍ୱୀକାର କରାଯାଇଛି । ଫଳରେ ନୂତନଭାବେ ପରିବର୍ତ୍ତିତ ପରିସ୍ଥିତିକୁ ଖାପ ଖୁଆଇ ସମ୍ପୃକ୍ତିଲାଭ କରୁଥିବା ସ୍ମୃତି ସମାଜରେ ବିଶେଷ ଆଦୃତ ହୋଇଥିଲା ।

ସ୍ମୃତି-ଶାସ୍ତ୍ରର ଅନୁଶୀଳନରୁ ସ୍ମୃତି ଅନେକ କ୍ଷେତ୍ରରେ ଶ୍ରୁତିର ନିୟମକୁ ପ୍ରତ୍ୟାଖ୍ୟାନ

---

୪୦ । ଶ୍ରୁତିର୍ହି ଗରୀୟସୀ ଆନୁମାନିକାଦାଚାରାତ୍ ॥ (ଆପସ୍ତମ୍ବ-ଧର୍ମସୂତ୍ର—୧-୧-୪-୮)

୪୧ । ବିରୋଧେତ୍ୱନପେକ୍ଷଂ ସ୍ୟାଦସତି ହ୍ୟନୁମାନମ୍ ॥ (ଜୈମିନି—୧-୩-୩)

୪୨ । ଦୁର୍ବୋଧା ବୈଦିକାଃ ଶବ୍ଦା ପ୍ରକୀର୍ଣ୍ଣତ୍ୱାଚ୍ଚ ଯେଽଖିଲାଃ ।
ତଜ୍ଜ୍ଞୈସ୍ତୁ ଏବ ସ୍ପଷ୍ଟାର୍ଥାଃ ସ୍ମୃତିତନ୍ତ୍ରେ ପ୍ରତିଷ୍ଠିତାଃ ॥
(ମରିଚ— S H D.—p-60, N-12.)

୪୩ । ଶଂଖୋଽପି ବେଦମୂଳାଃ ସ୍ମୃତୟ ଇତି । ତଦଦୃଷ୍ଟାର୍ଥାନାଂ ନ ପୁନର୍ଦୃଷ୍ଟାର୍ଥାନାମ୍ ।
ତଥା ଚ ପୁରାଣଂ ସର୍ବା ଏତା ବେଦମୂଳା ଦୃଷ୍ଟାର୍ଥା ପରିହୃତ୍ୟତୁ ॥ (Ibid—N.13).

୪୪ । Tantravartika – Mm. G. Jha—p. 105

୪୫ । ଶ୍ରୁତିସ୍ମୃତୀ ଦ୍ୱେ ବିପ୍ରାଣାଂ ଚକ୍ଷୁଷୀ ପରମେ ମତେ ।
କାଣସ୍ତତ୍ରୈକୟା ହୀନୋ ଦ୍ୱାଭ୍ୟାମନ୍ଧଃ ପ୍ରକୀର୍ତ୍ତିତଃ ॥ (S H.D. p. 60-N.15.)

୪୬ । ବେଦଂ ଗୃହୀତ୍ୱା ଯଃ କଶ୍ଚିତ୍ ଶାସ୍ତ୍ରଂ ଚୈବାବମନ୍ୟତେ ।
ସ ସଦ୍ୟଃ ପଶୁତାଂ ଯାତି ସମ୍ଭବାନେକବିଂଶତିମ୍ ॥ (ଅତ୍ରିସ୍ମୃତି - ଶ୍ଲୋକ-୭୪)

କରିଥିବାର ଦେଖାଯାଏ । ଜଣେ ସ୍ନାତକ ସଙ୍ଗୀତ ଓ ନୃତ୍ୟରେ ଭାଗ ନେଇପାରିବାର ଉଲ୍ଲେଖ ବେଦରେ ଥିଲେ ମଧ୍ୟ ପାରସ୍କର ଗୃହ୍ୟସୂତ୍ରରେ ଏହା ନିଷେଧ କରାଯାଇଛି । ୪୭ । ବେଦରେ ପୋଷ୍ୟପୁତ୍ର ଗ୍ରହଣର ବିରୋଧ ଥିଲେ ମଧ୍ୟ ସ୍ମୃତିରେ ଏହା ସ୍ୱୀକୃତ ହୋଇଅଛି । ୪୮ । ତେଣୁ ବେଦବିଧି ଓ ସ୍ମୃତିବିଧିର ବିରୋଧାତ୍ମକ ଭାବନା ସମାଜର ଆବଶ୍ୟକତାକୁ ନେଇ ସୃଷ୍ଟି ହୋଇଥିବାର ଦେଖାଯାଏ । ବେଦରେ 'ସତୀ' ବିଧିକୁ ବିରୋଧ କରାଯାଇଥିଲେ ମଧ୍ୟ ସ୍ମୃତିକାରମାନେ ସାଧାରଣ ଆତ୍ମହତ୍ୟାକୁ ନିଷେଧ କରିବା ସଙ୍ଗେ ସଙ୍ଗେ ବିଶେଷ କ୍ଷେତ୍ରରେ ତାହାକୁ ଅନୁମୋଦନ କରିଛନ୍ତି । ୪୯ । ସମାଜର ପରିବର୍ତ୍ତିତ ଦୃଷ୍ଟିକୋଣ, ଆଚାର ତଥା ବ୍ୟବହାର ହିଁ ଏପ୍ରକାର ପରିବର୍ତ୍ତନର ମୂଳ କାରଣ । ପୁନଶ୍ଚ, ବେଦାଧ୍ୟୟନ (ସ୍ୱାଧ୍ୟାୟ) ଦୁର୍ଦ୍ଦିନ ତଥା ପୂର୍ଣ୍ଣିମାରେ କରାଯାଇପାରିବ ବୋଲି ବର୍ଣ୍ଣନା ଥିଲେ ମଧ୍ୟ ସ୍ମୃତିରେ ଏହା ନିଷେଧ କରାଯାଇଛି । ବୈଦିକ ମନ୍ତ୍ରାଭ୍ୟାସ ଅପେକ୍ଷା ପଞ୍ଚମହାଯଜ୍ଞର ଅଧିକ ପ୍ରଚାର ସ୍ମୃତି କାଳରେ ହୋଇଥିଲେ ମଧ୍ୟ ବେଦରେ ଏହା ସାମୟିକ କରଣୀୟ ବୋଲି ଉଲ୍ଲେଖ ରହିଛି । ଶୂଦ୍ରମାନେ ବେଦାଧ୍ୟୟନ କରିପାରିବେନାହିଁ ବୋଲି ନିଷେଧକୁ ସ୍ମୃତିରେ ପ୍ରତ୍ୟାଖ୍ୟାନ କରାଯାଇଛି । ୫୦ । ତେଣୁ ବେଦ ପ୍ରମାଣ ସାର୍ବଜନୀନ ଓ ସର୍ବମୁଖ୍ୟ ରୂପେ ସ୍ୱୀକୃତି ଲାଭ କରିଥିଲେ ମଧ୍ୟ ସମାଜରେ ସ୍ମୃତିର ଦୃଷ୍ଟିକୋଣ ଅଧିକ ଆଦୃତ ହେଲା । କାରଣ ସମାଜର ପରିବର୍ତ୍ତିତ ଅବସ୍ଥା ସ୍ମୃତିରେ ରୂପାୟିତ ହେଉଥିଲା । ଏହାଦ୍ୱାରା ଶ୍ରୁତିର ପ୍ରମାଣ ପୂରାପୂରି ଅସ୍ୱୀକୃତ ହେଲାନାହିଁ; ମାତ୍ର ତାହାର ବ୍ୟାଖ୍ୟା ନୂତନ ରୂପରେ କରାଗଲା ।

ପ୍ରାୟ ୬୦୦ ଖ୍ରୀଷ୍ଟାବ୍ଦଠାରୁ ଭାରତୀୟ ସମାଜରେ ସ୍ମୃତିଶାସ୍ତ୍ର ସ୍ୱୀକୃତିଲାଭ କରିଥିଲା । ଏହା ଫଳରେ ଶହଶହ ସ୍ମୃତିଗ୍ରନ୍ଥ ପ୍ରଣୀତ ହେଲା । ସ୍ମୃତିସଂଖ୍ୟା ମୂଳତଃ ଅଠର, କୋଡ଼ିଏ ବା

---

୪୭ । ନୃତ୍ୟବାଦିତ୍ରଗୀତାନି ନ କୁର୍ଯାନ୍ନ ଚ ଗଚ୍ଛେତ୍ ।
କାମଂ ତୁ ଗୀତଂ ଗାୟତ ବୈବଗୀତେ ରମତେ ଇତି ଶ୍ରୁତେର୍ହି ଅପରମ୍ ॥
(ପାରସ୍କର ଗୃହ୍ୟସୂତ୍ର—୧୧-୭)

୪୮ । ନ ହି ଗ୍ରଭାୟାରଣଃ ସୁଶେବଃ ଅନ୍ୟୋଦର୍ଯୋମନସାମନ୍ତବାତ୍ ॥
(ଋଗ୍‌ବେଦ—୭-୪-୮)

୪୯ । ନ ଭୃଗ୍ୱାରୋହଣସ୍ତୃତାନାଂ ତସ୍ମାଦୁହ ନ ପୁରାୟୁଷଃ ସ୍ୱଃକାମୀ
ପ୍ରେୟାଦିତି ଶ୍ରୁତିବିରୋଧୋ ବାଚ୍ୟଃ । ସାମାନ୍ୟେବ ଶ୍ରୁତିଃ ସ୍ୱେଚ୍ଛୟା ମରଣଂ
ନିଷେଧତି । ସ୍ମୃତିସ୍ତୁ ମୃତେ ଭର୍ତ୍ତରି ବହ୍ନିପ୍ରବେଶମରଣବିଶେଷଂ ବିଧତ୍ତେ ।
(ଯାଜ୍ଞବଲ୍କ୍ୟ ଅପରାର୍କ -- ୧-୨୭)

୫୦ । ପ୍ରାରବ୍ଧ ଶ୍ରୌତକର୍ମାପେକ୍ଷୟା ସ୍ମାର୍ତ୍ତସ୍ୟାପି କର୍ମଣୋ ବଲବତ୍ତ୍ୱମ୍ । ଶ୍ରୁତିସ୍ମୃତିରୂପ-
ପ୍ରମାଣଦ୍ୱୟବିଚାରେ ସ୍ମୃତେର୍ଦୁର୍ବଲତ୍ୱେଽପି କର୍ମଧର୍ମାପେକ୍ଷୟା କର୍ମଣୋ ବଲବତ୍ତ୍ୱାତ୍ ।
(ସଂସ୍କାର ପ୍ରକାଶ—ପୃ. ୬୭୭)

ଛିଡ଼ଶ ବୋଲି ଜଣାଯାଏ । ସ୍ମୃତିକାର ହେମାଦ୍ରିଙ୍କ 'ଦାନକାଣ୍ଡ', ମିତ୍ର ମିଶ୍ରଙ୍କ 'ବୀରମିତ୍ରୋଦୟ', ନୀଳକଣ୍ଠଙ୍କ 'ମୟୂଖ', ଅନନ୍ତ ଦେବଙ୍କ 'ସଂସ୍କାର କୌସ୍ତୁଭ' ଏବଂ କମଳାକର ଭଟ୍ଟଙ୍କ 'ନିର୍ଣ୍ଣୟସିନ୍ଧୁ'ରେ ଯଥାକ୍ରମେ ପଞ୍ଚାବନ, ସତାବନ, ସନ୍ତାନବେ, ଶହେଦୁଇ ଓ ଶହେ ଏକତିରିଶ ସ୍ମୃତିକାରଙ୍କ ନାମୋଲ୍ଲେଖ ଅଛି । ଧର୍ମଶାସ୍ତ୍ରକାରମାନଙ୍କ ମଧ୍ୟରେ ଋଷ୍ୟଶୃଙ୍ଗ, କଣ୍ୱ, କୌଣ୍ଡିନ୍ୟ, ଗର୍ଗ, ଗାଲବ, ଚ୍ୟବନ, ଲୁଗଲେୟ, ବାମନ, ବିଶ୍ୱାମିତ୍ର, ବ୍ୟାଘ୍ର, ଶମ୍ଭୁ, ସତ୍ୟାୟନ, ଶାଲଙ୍କ୍ୟାୟନ, ସତ୍ୟବ୍ରତ ପ୍ରଭୃତିଙ୍କ ଗ୍ରନ୍ଥମାନ କାଳଗର୍ଭରେ ବିଲୀନ ହୋଇଛି । ସେହିପରି ବୃଦ୍ଧ ମନୁ, ବୃହନ୍ମନୁ, ବୃଦ୍ଧ ପରାଶର, ବୃହତ୍ପରାଶରଙ୍କ ଗ୍ରନ୍ଥ ମଧ୍ୟ ଉପଲବ୍ଧ ହୁଏନାହିଁ ।

ଖ୍ରୀଷ୍ଟପୂର୍ବ ୬୦୦-୮୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ବହୁ ସ୍ମୃତିଗ୍ରନ୍ଥ ରଚିତ ହୋଇଥିଲା । କାରଣ ସେତେବେଳେ ଧର୍ମଶାସ୍ତ୍ରକାର ବା ତାଙ୍କର ଉତ୍ତରଦାୟାଦଙ୍କ କୌଣସି ପ୍ରକାର ଆର୍ଥିକ ଲାଭ, ଯଶ ବା ସୁନାମର ଆଶା ନ ଥିଲା । ପ୍ରାଚୀନ ସ୍ମୃତିଗ୍ରନ୍ଥ ଆଦୃତ ହେଉଥିଲା । ନୂତନ ଗ୍ରନ୍ଥର ଗ୍ରନ୍ଥକାରମାନେ ମୃତ୍ୟୁ ପରେ ହିଁ ସ୍ୱୀକୃତି ଲାଭ କରୁଥିଲେ । ତେଣୁ ସ୍ମୃତିଗ୍ରନ୍ଥର ସାହିତ୍ୟିକ ଆକାଂକ୍ଷା ବହୁ ସ୍ମୃତିଗ୍ରନ୍ଥ ରଚନାର କାରଣ ନଥିଲା । ସମାଜର ସାମାଜିକ ସ୍ଥିତିନୀତିର କ୍ରମ ପରିବର୍ତ୍ତନ ଫଳରେ ନୂତନ ସ୍ମୃତିଗ୍ରନ୍ଥର ଅଭ୍ୟୁଦୟ ହେଉଥିଲା । ଉଦାହରଣ ସ୍ୱରୂପ ଗୋଭିଲ ସ୍ମୃତିର ସଂଯୋଜକରୂପେ କାତ୍ୟାୟନ ସ୍ମୃତିଗ୍ରନ୍ଥ ରଚିତ ହେଲା । ଦେବଲ ସ୍ମୃତିରେ ତତ୍କାଳୀନ ସ୍ଥିତିନୀତି ସବୁ ସ୍ଥାନ ପାଇଲା । ମୁସଲମାନମାନଙ୍କ ପ୍ରଭାବ ଫଳରେ ସିନ୍ଧୁ ପ୍ରଦେଶରେ ଯେଉଁ ସାମାଜିକ ସମସ୍ୟା ଦେଖାଦେଲା, ତାହାର ସମାଧାନ ହିଁ ଦେବଲ ସ୍ମୃତି ପ୍ରଣୟନର ମୂଳ କାରଣ । ସେହିପରି ପ୍ରାଚୀନ ବିଧାନର ସଂଶୋଧିତ ରୂପ ନେଇ ଶ୍ରାଦ୍ଧ ବିଷୟରେ 'ପ୍ରଜାପତି ସ୍ମୃତି' ଏବଂ କଳାପ ନଗରର ଆଗ୍ରହ-ବ୍ୟବହାରକୁ ଆଧାର କରି 'ଲଘୁ ବିଷ୍ଣୁ ସ୍ମୃତି' ରଚିତ ହେଲା ।

ସଦାଚାର ବିଷୟରେ ଦେଶ ଓ କାଳ ଭେଦରେ ପାର୍ଥକ୍ୟ ରହିଛି । ପୂର୍ବଭାରତରେ ମତ୍ସ୍ୟଭକ୍ଷଣ, ଉତ୍ତର-ଭାରତରେ ମଦ୍ୟପାନ ସହିତ ନିଯୋଗ ପ୍ରଥା, ଦକ୍ଷିଣରେ ମାତୁଳକନ୍ୟା ବିବାହ ଓ ନାରୀର ପ୍ରାଧାନ୍ୟ ପ୍ରଭୃତି ଏହାର ଉଦାହରଣ । ୬୧ । ସମଗ୍ର ଭାରତରେ ମିତାକ୍ଷରା ଅନୁଯାୟୀ ଉତ୍ତରାଧିକାର ବ୍ୟବସ୍ଥା ପ୍ରଚଳିତ ଥିଲେ ମଧ୍ୟ ବଙ୍ଗଳାରେ 'ଦାୟଭାଗ'ର ପ୍ରାଧାନ୍ୟ ସ୍ୱୀକୃତ । ଏହିସବୁ ବିଷୟକୁ ନେଇ ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରେ ରଚିତ ହେଉଥିବା ସ୍ମୃତିଗ୍ରନ୍ଥମାନ ପରିବର୍ତ୍ତିତ ପରିସ୍ଥିତିରେ ସାମାଜିକ ସ୍ୱୀକୃତି ପାଇ-

---

୬୧ । ଉଦୂହ୍ୟତେ ଦାକ୍ଷିଣାତ୍ୟୈର୍ମାତୁଳସ୍ୟ ସୁତା ଦ୍ୱିଜୈଃ ।
ମଧ୍ୟଦେଶେ କର୍ମକରାଃ ଶିଳ୍ପିନଶ୍ଚ ଗବାଶିନଃ ॥
ମତ୍ସ୍ୟାଦାଶ୍ଚ ନରାଃ ପୂର୍ବେ ବ୍ୟଭିଚାରରତାଃ ସ୍ତ୍ରିୟଃ ।
ଉତ୍ତରେ ମଦ୍ୟପା ନାର୍ଯ୍ୟଃ ସ୍ପୃଶ୍ୟା ନୃଣାଂ ରଜସ୍ୱଲାଃ ॥ (ସ୍ମୃତିଚନ୍ଦ୍ରିକା—ପୃ.୧୦)

ଆସୁଥିଲା । ଚାର୍ବାକ୍, ବୌଦ୍ଧ ଓ ଜୈନ ଧର୍ମଗ୍ରନ୍ଥମାନଙ୍କର ପ୍ରମାଣ ଅସ୍ୱୀକୃତ ହେଲା ।୫୨। ତେଣୁ ପରାଶର ସ୍ମୃତିରେ ସ୍ମୃତି ପ୍ରାମାଣ୍ୟବିଷୟକ ଉଲ୍ଲେଖ ଅନୁଯାୟୀ—ସତ୍ୟଯୁଗରେ ମନୁ, ତ୍ରେତାରେ ଗୌତମ, ଦ୍ୱାପରରେ ଶଙ୍ଖଲିଖିତ ଏବଂ କଳିରେ ପରାଶର ସ୍ମୃତି ହିଁ ପ୍ରମାଣ ରୂପେ ଗୃହୀତ ।୫୩। ଶାସ୍ତ୍ରର ବିବଦମାନ ବ୍ୟବସ୍ଥାରେ ସମାଜର ହିତ ଉଦ୍ଦେଶ୍ୟରେ ହିନ୍ଦିଷ୍ଟ ବ୍ୟବସ୍ଥାପକ ବା ବିଦ୍ୱାନ୍ ସମିତିର ସିଦ୍ଧାନ୍ତ ହିଁ ନୀତି ରୂପେ ସ୍ୱୀକୃତ ହେଲା ।୫୪। ଲକ୍ଷ୍ମଣ ଭଟ୍ଟଙ୍କ (୧୬୫୦ ଖ୍ରୀଷ୍ଟାବ୍ଦ) ଅନୁସାରେ ଆଚାରର ପ୍ରତିପାଳନ ବିଷୟରେ ବ୍ୟକ୍ତିବିଶେଷ ବିବଦମାନ ନିର୍ଦ୍ଦେଶ ମଧ୍ୟରୁ ଯେକୌଣସିଟି ପାଳନ କରିପାରିବେ ବୋଲି ଉଲ୍ଲେଖ ଅଛି ।୫୫। ପ୍ରାଚୀନ ସ୍ମୃତିଗ୍ରନ୍ଥ ଭଳି ସମ୍ମାନିତ ନ ହେଲେ ମଧ୍ୟ ଆଧୁନିକ ସ୍ମୃତିଗ୍ରନ୍ଥର ବିଧିବ୍ୟବସ୍ଥା ସମାଜରେ ସ୍ୱୀକୃତିଲାଭ କଲା । ଉକ୍ତ ପୃଷ୍ଠଭୂମିରେ ସ୍ମୃତିନିବନ୍ଧ ଗ୍ରନ୍ଥମାନ ଆଦୃତ ଓ ପ୍ରସାରିତ ହୋଇଥିଲା ।

(୩) **ପୁରାଣ**—ଶ୍ରୁତି ଓ ସ୍ମୃତି ପରେ ସଦାଚାରକୁ ଧର୍ମଶାସ୍ତ୍ରର ତୃତୀୟ ମୂଳସୂତ୍ର ରୂପେ ଗ୍ରହଣ କରାଯାଏ । ପୁରାଣଗୁଡ଼ିକୁ ଆଚାର-ବ୍ୟବହାରର ମୂଳ ଉତ୍ସରୂପେ ସ୍ୱୀକାର କରାଯାଇ-ପାରେ । ଯାଜ୍ଞବଲ୍କ୍ୟ ପୁରାଣକୁ ଧର୍ମଶାସ୍ତ୍ରର ମୂଳ ବୋଲି ଉଲ୍ଲେଖ କରିଛନ୍ତି । ପୁରାଣ, ଇତିହାସ ଓ ନିବନ୍ଧ ଗ୍ରନ୍ଥମାନ ପରସ୍ପର ସମ୍ପୃକ୍ତ । ପୁରାଣରେ ବିଭିନ୍ନ ବଂଶାବଳୀ ସହିତ ମୁନି, ନରପତି ଓ ବୀରମାନଙ୍କ କାହାଣୀ ମଧ୍ୟରେ ଧର୍ମୀୟ ସିଦ୍ଧାନ୍ତମାନ ବର୍ଣ୍ଣିତ ହୋଇଛି । ପୁରାଣ ରଚନା ଅତି ପ୍ରାଚୀନ । କାରଣ ଅଥର୍ବ ବେଦ, ଶତପଥ ବ୍ରାହ୍ମଣ, ବୃହଦାରଣ୍ୟକ ଓ

---

୫୨ । ଅର୍ହଚ୍ଚାର୍ବାକ ବାକ୍ୟାନି ବୌଦ୍ଧାଦିପଠିତାନି ଚ ।
ବିପ୍ରଲମ୍ଭକବାକ୍ୟାନି ତାନି ସର୍ବାଣି ବର୍ଜୟେତ୍ ॥ (S. H. D.—P. 3, N-34)

୫୩ । କୃତେ ତୁ ମାନବା ଧର୍ମାସ୍ତ୍ରେତାୟାଂ ଗୌତମଃ ସ୍ମୃତଃ ।
ଦ୍ୱାପରେ ଶଙ୍ଖଲିଖିତୌ କଲୌ ପାରାଶରଃ ସ୍ମୃତଃ ॥ (ପରାଶର ସ୍ମୃତି---୧-୨୩)

୫୪ । ତସ୍ମାଦ୍ ବିରୋଧେ ଧର୍ମସ୍ୟ ନିଶ୍ଚିତ୍ୟ ଗୁରୁଲାଘବମ୍ ।
ଯତୋ ଭୂୟସ୍ତତୋ ବିଦ୍ୱାନ୍ କୁର୍ଯ୍ୟାତ୍କର୍ମବିନିର୍ଣ୍ଣୟମ୍ ॥
(S. H. D.—P. 63, N-38)

୫୫ । କେଚିତ୍ତୁ ମନ୍ୱାଦିବିପରୀତା ସ୍ମୃତି···ନ ପ୍ରଶସ୍ୟତେ ଇତି ବୃଦ୍ଧ ବୃହସ୍ପତି ସ୍ମୃତେଃ । ଅନ୍ୟସ୍ମୃତିନାମପ୍ରାମାଣ୍ୟଂ ନତୁ ବିକଳ୍ପ ଇତ୍ୟାହୁଃ । ତନ୍ନ ॥
ପ୍ରତ୍ୟକ୍ଷଶ୍ରୁତି ବିରୋଧେଽପି ସ୍ମୃତିନାମପ୍ରାମାଣ୍ୟଂ ନାସ୍ତୀତ୍ୟୁକ୍ତମାଚାର୍ଯ୍ୟୈ-
ର୍ବିରୋଧାଧିକରଣେ । ସ୍ମୃତିବିରୋଧେ ତୁ ଅପ୍ରାମାଣ୍ୟଂ ଦୁରାପାଦମ୍ ॥
(ଆଚାରସାର—ପୃ. ୧୪)

ଛାନ୍ଦୋଗ୍ୟ ଉପନିଷଦରେ ପୁରାଣର ଉଲ୍ଲେଖ ଅଛି । ୫୬ । ପ୍ରାଚୀନତମ ପୁରାଣଗୁଡ଼ିକରେ ଐତିହାସିକ ଓ କିଂବଦନ୍ତୀମୂଳକ ଆଖ୍ୟାନର ବର୍ଣ୍ଣନା ଅଛି । ୫୭ । ସ୍ମୃତି ସହିତ ବିଶେଷ ସମ୍ପର୍କ ନଥିଲେ ମଧ୍ୟ ଆପସ୍ତମ୍ବ ଓ ଗୌତମ ଧର୍ମସୂତ୍ରରେ ନିୟୋଗ ପ୍ରସଙ୍ଗରେ ସେଗୁଡ଼ିକର ନାମ ସୂଚନା ମିଳେ । ସମାଜରୁ ବୈଦିକ ଯଜ୍ଞାଦି ପ୍ରଥା ଲୁପ୍ତ ହେବା ପରେ ପୁରାଣମାନ ରଚିତ ହୋଇଥିବାରୁ ସେଥିରେ ତାହାର ବିଶେଷ ଉଲ୍ଲେଖ ନାହିଁ । ତେଣୁ ଶ୍ରୁତିସମ୍ମତ ସ୍ମାର୍ତ୍ତିଯଜ୍ଞ, ବର୍ଣ୍ଣାଶ୍ରମଧର୍ମ, ରାଜଧର୍ମ ଓ ଅନ୍ୟାନ୍ୟ ବିଧିବିଧାନର ମୂଳସୂତ୍ର ପୁରାଣରେ ଉଲ୍ଲେଖ ନ ଥିଲେ ମଧ୍ୟ ଏ ସବୁର ଆଚରଣ କରିବା ବା ନକରିବା ବିଷୟରେ ସୁବିଧା ଓ ଅସୁବିଧାମାନ ଗଳ୍ପାକାରରେ ବର୍ଣ୍ଣିତ ହୋଇଛି । ଗୁପ୍ତ-ସାମ୍ରାଜ୍ୟର ପରବର୍ତ୍ତୀ କାଳରେ ବିଭିନ୍ନ ବ୍ରତ ଓ ଶାନ୍ତି ସ୍ୱସ୍ତ୍ୟୟନମାନ ପୁରାଣରେ ସ୍ଥାନ ପାଇଲା । ପ୍ରାଚୀନ ଧର୍ମଶାସ୍ତ୍ରରେ ଏ ସବୁର ପର୍ଯ୍ୟାଲୋଚନା ବିଶେଷ ନଥିଲେ ମଧ୍ୟ ମଧ୍ୟୋତ୍ତରକାଳୀନ ଟୀକାଗ୍ରନ୍ଥ ଓ ନିବନ୍ଧଗ୍ରନ୍ଥରେ ଉକ୍ତ ବିଧିବିଧାନ ସଂଯୋଜିତ ହେଲା; ଫଳରେ ନିବନ୍ଧଗ୍ରନ୍ଥରେ ପୁରାଣ ବାକ୍ୟମାନ ବହୁଳଭାବେ ଗୃହୀତ ହେଲା । ନୀଳକଣ୍ଠଙ୍କ ପ୍ରଣୀତ 'ଶାନ୍ତିମୟୂଖ'ରେ ବର୍ଣ୍ଣିତ ସତାବନ ପ୍ରକାର ଶାନ୍ତି ମଧ୍ୟରୁ ପଞ୍ଚାବନଟି ପୁରାଣରୁ ଓ ଅନ୍ୟ ଦୁଇଟି ଐତରେୟ ବ୍ରାହ୍ମଣ ଓ ଯାଜ୍ଞବଲ୍କ୍ୟ ସ୍ମୃତିରୁ ସଂଗୃହୀତ ହୋଇଛି । ସେହିପରି ଶଙ୍କର ଭଟ୍ଟଙ୍କ 'ବ୍ରତାର୍କ'ରେ ଆଲୋଚିତ ଶହେତେରଟି ବ୍ରତ ମଧ୍ୟରୁ ଶହେଦଶଟି ପୁରାଣରୁ ଗୃହୀତ । 'ବ୍ରତ-କୌମୁଦୀ' ଗ୍ରନ୍ଥର ଶହେଅଠେଇଶଟି ବ୍ରତ ଓ ବ୍ରତରାଜର ଦୁଇଶହପାଞ୍ଚଟି ବ୍ରତ ମୁଖ୍ୟତଃ ପୁରାଣରୁ ଗୃହୀତ । ପୁରାଣବର୍ଣ୍ଣିତ କଳିବର୍ଜ୍ୟରେ ପୂର୍ବରୁ ପ୍ରଚଳିତ ଥିବା ନିୟୋଗପ୍ରଥା, ଅସବର୍ଣ୍ଣ ବିବାହ, ବିଧବା ବିବାହ ପ୍ରଭୃତି ନିଷିଦ୍ଧ ହେଲା । ଶ୍ରୁତି ଓ ସ୍ମୃତିର ସହାୟକ ଭାବେ ପୁରାଣର ପ୍ରମାଣକୁ ତୃତୀୟ ସ୍ଥାନ ଦିଆଗଲା । ୫୮। ପୁରାଣର ସିଦ୍ଧାନ୍ତ ସହିତ ସ୍ମୃତିର ବିରୋଧ କ୍ଷେତ୍ରରେ ତତ୍କାଳୀନ ସାମାଜିକ ପରିସ୍ଥିତି ଅନୁସାରେ ଐଚ୍ଛିକ ବ୍ୟବସ୍ଥାକୁ ସିଦ୍ଧାନ୍ତ ରୂପେ ଗ୍ରହଣ କରାଗଲା ।

(୪) **ଟୀକାଗ୍ରନ୍ଥ ଓ ନିବନ୍ଧଗ୍ରନ୍ଥ**—ସ୍ମୃତିଶାସ୍ତ୍ରର କ୍ରମବିକାଶରେ ମଧ୍ୟକାଳୀନ ନିବନ୍ଧ ଗ୍ରନ୍ଥମାନଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀଠାରୁ ହିଁ ନିବାଚିତ

---

୫୬ । (କ) ଅଥର୍ବ ବେଦ—୧୫-୬-୧୧ ॥
(ଖ) ଶତପଥ ବ୍ରାହ୍ମଣ—୧୦-୫-୬-୮ ॥
(ଗ) ବୃହଦାରଣ୍ୟକ-II—4-10, IV-I-2 and 5-11,
(ଘ) ଛାନ୍ଦୋଗ୍ୟ ଉପନିଷଦ-III—୪-୧-୨ ।

୫୭ । ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ ।
ବଂଶାନୁଚରିତଂ ଚେତି ପୁରାଣଂ ପଞ୍ଚଲକ୍ଷଣମ୍ ॥ (ଭବିଷ୍ୟପୁରାଣ—୧-୨-୪)

୫୮ । ଶ୍ରୁତିସ୍ମୃତି ପୁରାଣେଷୁ ବିରୁଦ୍ଧେଷୁ ପରସ୍ପରମ୍ ।
ପୂର୍ବଂ ପୂର୍ବଂ ବଲୀୟଃ ସ୍ୟାଦିତିନ୍ୟାୟବିଦୋ ବିଦୁଃ ॥
(ପ୍ରୟୋଗପାରିଜାତ—ସଂସ୍କାର କାଣ୍ଡ)

ଶ୍ରୁତି ଓ ସ୍ମୃତି ବିଷୟକୁ ଆଧାର କରି ନିବନ୍ଧଗ୍ରନ୍ଥର ବିକାଶ ସାଧିତ ହୋଇଛି । ସେମାନଙ୍କ ବାକ୍ୟାବଳୀ ସର୍ବତୋଭାବେ ସ୍ୱୀକୃତିଲାଭ କରିବାର ସମ୍ଭାବନା ନଥିଲା କିମ୍ବା ସେମାନେ ପ୍ରାଚୀନ ସ୍ମୃତିକାରମାନଙ୍କ ପରି ଗୌରବାସ୍ପଦ ସ୍ଥାନ ଲାଭ କରିପାରିନଥିଲେ । ସେମାନେ ଶ୍ରୁତି ବା ସ୍ମୃତିର ପ୍ରମାଣକୁ ଏକାବେଳକେ ଅସ୍ୱୀକାର ବା ନିଜର ମତ ପ୍ରତିଷ୍ଠା ପାଇଁ କୌଣସି ନୂତନତା ସୃଷ୍ଟି କରୁନଥିଲେ । ସେମାନେ ସ୍ୱୀୟ ଆଲୋଚନାକୁ ଶ୍ରୁତି ଓ ସ୍ମୃତିର ପ୍ରମାଣାନୁସାରୀ ବୋଲି ଉଲ୍ଲେଖ କରିଛନ୍ତି ।୫୯। ତେଣୁ ଧର୍ମୀୟ ସିଦ୍ଧାନ୍ତରେ ନିବନ୍ଧଗ୍ରନ୍ଥ ଓ ଟୀକାଗ୍ରନ୍ଥଗୁଡ଼ିକର ମୌଳିକ ବିଚାରକୁ ଗ୍ରହଣ କରାଯାଇଥାଏ ।

ନିବନ୍ଧକାର ଓ ଟୀକାକାରମାନେ ଲୋକସମାଜରେ ରହୁଥିଲେ । ସାମାଜିକ ଚିନ୍ତାଧାରାର ପରିବର୍ତ୍ତନ ସହିତ ସେମାନେ ସୁପରିଚିତ ଥିଲେ । ଶ୍ରୁତି ଓ ସ୍ମୃତିର ବିଧି ନିଷେଧ ସତ୍ତ୍ୱେ ସାମାଜିକ ଚିନ୍ତା, ଚେତନା, ଗୃହାଣି ଓ ଚଳଣିରେ ଯେଉଁ କ୍ରମପରିବର୍ତ୍ତନ ଘଟୁଥିଲା, ତାହା ନିବନ୍ଧକାରମାନେ ଅନୁଭବ କରୁଥିଲେ । ତେଣୁ ଶ୍ରୁତି ଓ ସ୍ମୃତିକୁ ସର୍ବୋଚ୍ଚ ସମ୍ମାନ ଓ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ଉକ୍ତ ପରିବର୍ତ୍ତନକୁ ବିଧିବଦ୍ଧଭାବେ ଶାସ୍ତ୍ର ଅନ୍ତର୍ଗତ କରିବାରେ ସେମାନଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ସେମାନେ ସାମାଜିକ ପରିବର୍ତ୍ତନକୁ ଜାଣିବା ସଙ୍ଗେ ସଙ୍ଗେ ସେଗୁଡ଼ିକ ଶାସ୍ତ୍ରରେ ଲିପିବଦ୍ଧ କରିବାକୁ ଚାହୁଁଥିଲେ । ସର୍ବଭାରତୀୟ ଭାଷା ଓ ସାହିତ୍ୟରେ ମଧ୍ୟ ଧର୍ମଗ୍ରନ୍ଥର ବିଧିମାନ ନିର୍ବିବାଦରେ ପ୍ରତିଫଳିତ ହେଉଥିଲା । କୌଣସି ନିବନ୍ଧକାର ବା ଟୀକାକାର କେବେହେଲେ ସ୍ୱଗ୍ରନ୍ଥରେ ଶ୍ରୁତି ଓ ସ୍ମୃତିର ବିରୋଧାଚରଣ କରିଛନ୍ତି ବୋଲି କେହି ଖୋଲାଖୋଲି ଭାବେ ମନ୍ତବ୍ୟ ଦେଇ ନ ପାରେ । କିନ୍ତୁ ସେମାନେ ସମୟକ୍ରମେ ସ୍ମୃତି ନିୟମର ସଂଶୋଧନ, ପରିବର୍ଦ୍ଧନ, ପରିବର୍ତ୍ତନ, ସଂକୋଚନ ଓ ବିଶଦ ପର୍ଯ୍ୟାଲୋଚନା କରିଛନ୍ତି । ଉଦାହରଣ ସ୍ୱରୂପ, ନାରଦ ସ୍ମୃତିରେ ବିଧବାର ଉତ୍ତରାଧିକାରକୁ ଅସ୍ୱୀକାର କରାଯାଇଛି । କିନ୍ତୁ, ମିତ୍ର ମିଶ୍ର ତାହାକୁ ବ୍ୟାଖ୍ୟା କରିବାକୁ ଯାଇ ମନ୍ତବ୍ୟ ଦେଲେ ଯେ ନାରଦ ଭାର୍ଯ୍ୟା ଶବ୍ଦ ବ୍ୟବହାର ନକରି ସ୍ତ୍ରୀ ଶବ୍ଦ ବ୍ୟବହାର କରିଛନ୍ତି । ତେଣୁ ନାରଦ ରକ୍ଷିତା ବା ସେହିପ୍ରକାର ସ୍ତ୍ରୀର ସ୍ୱତ୍ୱ ଅସ୍ୱୀକାର କରିଥିଲେ ମଧ୍ୟ ଶାସ୍ତ୍ରସମ୍ମତ ବିବାହିତା ଭାର୍ଯ୍ୟାର ଉତ୍ତରାଧିକାରକୁ ସ୍ୱୀକାର କରିଛନ୍ତି ।୬୦। କୁଲ୍ଲୁକ ଭଟ୍ଟ କହିଛନ୍ତି— ନାରଦଙ୍କ ବର୍ଣ୍ଣିତ ବିଧବା କେବଳ ଚରିତ୍ରହୀନା ସ୍ତ୍ରୀ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି । ତେଣୁ ସ୍ୱାମୀର ମୃତ୍ୟୁ ପରେ ଯେଉଁ ବିଧବା ସ୍ୱାମୀର ସ୍ମୃତିକୁ ନେଇ ଶାସ୍ତ୍ରୀୟ ରୀତିନୀତିରେ

---

୫୯ । ସ୍ୱାଭିପ୍ରାୟେଣହି ମନ୍ୱା ନ କିଞ୍ଚିଦପି ଲିଖ୍ୟତେ ।
କିନ୍ତୁ ବାଚନିକଂ ସର୍ବମେତଦ୍ ଗ୍ରାହ୍ୟୈବ ନିର୍ଭରଃ ॥
(‘.H.D.—P. 64, N. 11)

୬୦ । ଯଦ୍ୟପି ନାରଦଃ ତତ୍ର ସ୍ତ୍ରୀଣାଂ ଜୀବନଂ ଦଦ୍ୟାତ୍ ଇତି ତଦବରୁଦ୍ଧା ସ୍ତ୍ରୀ ପରଂ ପତ୍ନୀ ଶବ୍ଦ ଗ୍ରହଣାତ୍ ॥ (ବୀରମିତ୍ରୋଦୟ—ବ୍ୟବହାର କାଣ୍ଡ)

କାଳଯାପନ କରୁଥିବ ସେ ସମ୍ପତ୍ତିର ଅଧିକାରିଣୀ ହେବାରେ ବାଧା ନାହିଁ । ୬୧ । ଏ ପ୍ରକାର ବ୍ୟାଖ୍ୟା ଦ୍ୱାରା ପ୍ରାଚୀନ ସ୍ମୃତିବର୍ଣ୍ଣିତ ସ୍ତ୍ରୀ ଅଧିକାରକୁ ବ୍ୟାପକ କରାଗଲା । ପ୍ରାଚୀନ ସ୍ମୃତିରେ ଯେଉଁ ନିୟୋଗ ପ୍ରଥା ପ୍ରଚଳିତ ଥିଲା, ତାହାକୁ କଳିବର୍ଜ୍ୟ ରୂପେ ବିରୋଧ କରାଗଲା; ମାତ୍ର ପୂର୍ବାଗ୍ରହମାନଙ୍କ ବ୍ୟବସ୍ଥାରେ ନଥିବା ଅସବର୍ଣ୍ଣ ବିବାହ, ଦଶବିଧ ପୁତ୍ର ଗ୍ରହଣ ପ୍ରଥାକୁ ସ୍ୱୀକୃତି ଦିଆଗଲା । କାରଣ ପରବର୍ତ୍ତିତ ସାମାଜିକ ପରିସ୍ଥିତିରେ ସମାଜବାଦୀମାନେ ଶ୍ରୁତି ଓ ସ୍ମୃତିର କଠୋର ବିଧି ଓ ନିଷେଧକୁ ମାନିବା ପାଇଁ ପ୍ରସ୍ତୁତ ନଥିଲେ । ୬୨ । ତେଣୁ ଟୀକାକାର ଓ ନିବନ୍ଧକାରମାନେ ସମସାମୟିକ ସମାଜର ଆବଶ୍ୟକତା ଅନୁସାରେ ପ୍ରାଚୀନ ଗ୍ରନ୍ଥଗୁଡ଼ିକର ବ୍ୟାଖ୍ୟା ସହିତ ନୂତନ ଗ୍ରନ୍ଥମାନ ରଚନା କରୁଥିଲେ । ଏଗୁଡ଼ିକ ସମୟାନୁକୂଳ, ତଥ୍ୟମୂଳକ ତଥା ପାଣ୍ଡିତ୍ୟପୂର୍ଣ୍ଣ ହୋଇଥିବାରୁ ସୁଧୀସମାଜ ଦ୍ୱାରା ବିଶେଷ ଆଦୃତ ହେଲା । ଫଳରେ ଭାରତର ବିଭିନ୍ନ ଧର୍ମପୀଠରେ ସ୍ୱତନ୍ତ୍ର ଅନୁଷ୍ଠାନମାନ ପ୍ରତିଷ୍ଠିତ ହେଲା । ଯେଉଁ ରାଜା, ମନ୍ତ୍ରୀ ଓ ବିଚାରକମାନେ ନିବନ୍ଧଗ୍ରନ୍ଥ ଓ ଟୀକା ଗ୍ରନ୍ଥ ରଚନାରେ ମନ ଦେଇଥିଲେ, ସେମାନଙ୍କ ମଧ୍ୟରେ ଯାଜ୍ଞବଲ୍କ୍ୟ ସ୍ମୃତିର ଟୀକାକାର ଅପରାର୍କ(୧୧୧୦-୧୧୪୦ଖ୍ରୀଷ୍ଟାବ୍ଦ), ପଶ୍ଚିମ ଭାରତର ରାଜା ଶିଳାହାର, ଚାଲୁକ୍ୟରାଜ ଚତୁର୍ଥ ବିକ୍ରମାଦିତ୍ୟ (୧୦୭୫-୧୧୨୬ ଖ୍ରୀଷ୍ଟାବ୍ଦ)ଙ୍କ ମନ୍ତ୍ରୀ ବିଜ୍ଞାନେଶ୍ୱର, ଗଡ଼ୱାଳବଂଶୀୟ ରାଜା ଗୋବିନ୍ଦଚନ୍ଦ୍ରଙ୍କ ପ୍ରଧାନମନ୍ତ୍ରୀ 'କଳ୍ପତରୁ'କାର ଲକ୍ଷ୍ମୀଧର (୧୧୧୦-୧୧୫୫ ଖ୍ରୀଷ୍ଟାବ୍ଦ), ଲକ୍ଷ୍ମଣସେନଙ୍କ ମୁଖ୍ୟ ବିଚାରପତି ବ୍ରାହ୍ମଣସର୍ବସ୍ୱକାର ହଲାୟୁଧ (୧୧୭୫-୧୨୦୦ ଖ୍ରୀଷ୍ଟାବ୍ଦ), ଧାରାର ରାଜା ଭୋଜଦେବ (୧୧ଶ ଶତାବ୍ଦୀ), ମିଥିଳାର ମନ୍ତ୍ରୀ 'ତୀର୍ଥରତ୍ନାକର'ପ୍ରଣେତା ଚଣ୍ଡେଶ୍ୱର (୧୩ଶ ଶତାବ୍ଦୀ) ଓ 'ତୀର୍ଥଚିନ୍ତାମଣି'ରଚୟିତା ବାଚସ୍ପତି ମିଶ୍ର (୧୫ଶ ଶତାବ୍ଦୀ), ଓଡ଼ିଶାର ଗଜପତି ପୁରୁଷୋତ୍ତମ ଦେବ ଓ ତାଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ର ଦେବ ଏବଂ ସେହି ରାଜବଂଶର ଅନ୍ୟତମ ରାଜଗୁରୁ ତଥା ମନ୍ତ୍ରୀ ଗୋଦାବର ମିଶ୍ର (୧୫ଶ ଶତାବ୍ଦୀ) ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ । ଫଳରେ ଟୀକାକାର ଓ ନିବନ୍ଧକାରଗଣ ପ୍ରାଚୀନ ଶ୍ରୁତି ଓ ସ୍ମୃତିକାରମାନଙ୍କ ଭଳି ସମ୍ମାନିତ ହେଲେ । କିନ୍ତୁ ପରବର୍ତ୍ତୀ ଗ୍ରନ୍ଥକାରମାନଙ୍କ ସ୍ୱୀକୃତି ବ୍ୟତିରେକେ କୌଣସି ଗ୍ରନ୍ଥ ପଣ୍ଡିତ ସମାଜରେ ପ୍ରାମାଣିକ ଶାସ୍ତ୍ରରୂପେ ଗୃହୀତ ହେଉନଥିଲା କିମ୍ବା ସେହି ଗ୍ରନ୍ଥରେ ନିର୍ଦ୍ଦେଶିତ ମତିଗୁଡ଼ିକ ବିଦ୍ୱତ୍ ସମାଜରେ ଆଦୃତ ହେଉନଥିଲା । ତଥାପି ସାମାଜିକ ବିଧି-ବ୍ୟବସ୍ଥାର ଉତ୍ତରୋତ୍ତର ପ୍ରଗତି ସାଧନ ଉଦ୍ଦେଶ୍ୟରେ ପ୍ରଣୀତ ଟୀକାକାର ଓ ନିବନ୍ଧକାରମାନଙ୍କ ଅବଦାନକୁ ଧର୍ମୀୟ ସିଦ୍ଧାନ୍ତର ଉତ୍ସଭାବେ ଗ୍ରହଣ କରାଯାଇଥାଏ ।

୬୧ । ଯଦୁକ୍ତଂ ସ୍ତ୍ରୀଣାଂ ତୁ ଜୀବନଂ ଦଦ୍ୟାତ୍ ଇତି ସମ୍ପ୍ରଚ୍ଛିନ୍ନମାତ୍ରଂ ବଚନଂ ତଦ୍ଦୁଃଶୀଳା ଧାର୍ମିକ ସବିକାର ଯୌବନସ୍ଥପତ୍ନୀବିଷୟମ୍ ॥

(ମନୁ ଟୀକାକାର—କୁଲ୍ଲୂକ—୯-୧୦-୮୬)

୬୨ । ତସ୍ମାଦ୍‌ବିଷମୋ ବିଭାଗଃ ଶାସ୍ତ୍ରଦୃଷ୍ଟୋଽପି ଲୋକବିରୋଧାତ୍ ଶ୍ରୁତିବିରୋଧାଚ୍ଚ ନାନୁଷ୍ଠେୟ ଇତି ଯାଜ୍ଞ ॥ (ମିତାକ୍ଷରା—୨-୧୧୭, ପୃ-୨୦୩)

(୫) **ଆତ୍ମତୁଷ୍ଟି**—ଧର୍ମଗ୍ରନ୍ଥର ବିଧି ବ୍ୟବସ୍ଥାରେ ପରସ୍ପର ବିରୋଧାତ୍ମକ ନିର୍ଦ୍ଦେଶ ଥିଲେ ତନ୍ମଧ୍ୟରୁ ଯେକୌଣସିଟି ବ୍ୟକ୍ତିବିଶେଷର ଇଚ୍ଛାନୁଯାୟୀ ଅନୁସରଣୀୟ ହେବ ବୋଲି ଶାସ୍ତ୍ରୋଲ୍ଲେଖ ଥିବାରୁ, ସେହି ଇଚ୍ଛାଧୀନ ବିଷୟର ନିର୍ବାଚନ ବ୍ୟକ୍ତିର ବିବେକ ବା ବିଚାରଧାରା ଉପରେ ପୂର୍ଣ୍ଣତଃ ନିର୍ଭର କରୁଥିଲା । କାରଣ, ଏହା ଆତ୍ମତୁଷ୍ଟି ବା ଆତ୍ମସନ୍ତୋଷ ଉପରେ ପର୍ଯ୍ୟବସିତ । ଆତ୍ମତୁଷ୍ଟିକୁ ଧର୍ମର ଅନ୍ୟତମ ଭିତ୍ତି ରୂପେ ଗ୍ରହଣ କରାଯାଇପାରେ ବୋଲି ମନୁ, ଯାଜ୍ଞବଲ୍କ୍ୟ ପ୍ରଭୃତି ମତ ବ୍ୟକ୍ତ କରିଛନ୍ତି । ଅନ୍ୟପକ୍ଷରେ ବ୍ୟକ୍ତିବିଶେଷର ଆତ୍ମତୁଷ୍ଟି ଦ୍ୱାରା ଧର୍ମର ଆଚରଣ ସମାଜରେ ବିଶୃଙ୍ଖଳା ସୃଷ୍ଟି କରିପାରେ । ୭୩ । ତେଣୁ ଯାଜ୍ଞବଲ୍କ୍ୟ ଓ କୁଲ୍ଲୁକଙ୍କ ଉଲ୍ଲେଖ ଅନୁସାରେ, ଯେ ପ୍ରକୃତରେ ଜାତ, ସଂସ୍କୃତ ଓ ପରମ୍ପରା ବିଷୟରେ ବିଜ୍ଞ ଓ ଅଭିଜ୍ଞ ତାହାର ମତାମତ ବା ଆତ୍ମତୁଷ୍ଟି ହିଁ ଏ କ୍ଷେତ୍ରରେ ଗ୍ରହଣୀୟ । ୭୪ । ମହାକବି କାଳିଦାସ ମଧ୍ୟ ଏ ବିଷୟରେ ଦେଇଥିବା ମନ୍ତବ୍ୟ ବିଶେଷ ପ୍ରଣିଧାନଯୋଗ୍ୟ । ୭୫ । ତେଣୁ ଆତ୍ମତୁଷ୍ଟି ଧର୍ମୀୟ ବିଧିର ଜ୍ଞାପକ । ଆତ୍ମତୁଷ୍ଟିର ସବିଶେଷ ପର୍ଯ୍ୟାଲୋଚନା ଦୃଷ୍ଟିଗୋଚର ନ ହେଲେ ମଧ୍ୟ ଏହାକୁ ଧର୍ମପାଳନର ମୂଳ ସ୍ରୋତରୂପେ ଗ୍ରହଣ କରାଯାଇଛି । ଧର୍ମଶାସ୍ତ୍ରର ବିବଦମାନ ବିଧି ନିର୍ଦ୍ଦେଶରେ ଅଭିଜ୍ଞ ଓ ପଣ୍ଡିତ ବ୍ୟକ୍ତିର ସିଦ୍ଧାନ୍ତ ସମାଜକୁ ଯଥାର୍ଥ ଅବଲମ୍ବନୀୟ ମାର୍ଗ ପ୍ରଦର୍ଶନ କରିଥାଏ । ତେଣୁ ମହାଜନମାନଙ୍କ ପ୍ରଦର୍ଶିତ ପଥ ହିଁ ଧର୍ମମାର୍ଗ ରୂପେ ଅଭିହିତ । ୭୬ ।

(୬) **ନ୍ୟାୟ**—ଧର୍ମଶାସ୍ତ୍ରର ବିବାଦ କ୍ଷେତ୍ରରେ କେବଳ ଆତ୍ମତୁଷ୍ଟି ନୁହେଁ, ନ୍ୟାୟୋଚିତ ସିଦ୍ଧାନ୍ତ ଆବଶ୍ୟକ । ଏହାଦ୍ୱାରା ନ୍ୟାୟବାଦର ସୃଷ୍ଟି ସମ୍ଭବ ହୋଇଛି । ନ୍ୟାୟକୁ ଧର୍ମର ସ୍ରୋତ ରୂପେ ଯେଉଁ ଅଳ୍ପ କେତେକ ସ୍ମୃତିକାର ସ୍ୱୀକାର କରିଛନ୍ତି, ସେମାନଙ୍କ ମଧ୍ୟରେ ଗୌତମ ଓ ମନୁଙ୍କ ନାମ ଉଲ୍ଲେଖଯୋଗ୍ୟ । ନାରଦ, ବୃହସ୍ପତି, ଯାଜ୍ଞବଲ୍କ୍ୟ, କୌଟିଲ୍ୟ

---

୭୩ । ସ୍ୱାଭିପ୍ରାୟକୃତଂ କର୍ମ ଯତ୍କିଞ୍ଚିତ୍ ଧର୍ମବିବର୍ଜିତମ୍,
କ୍ରୀଡ଼ାକର୍ମେବ ବାଲାନାଂ ତତ୍ସର୍ବଂ ନିଷ୍ପ୍ରୟୋଜନମ୍ ॥
ଯାଜ୍ଞବଲ୍କ୍ୟ ଟୀକାକାର-ବିଶ୍ୱରୂପ ॥

୭୪ । ସାଧୂନାଂ ଧାର୍ମିକାଣାମାତ୍ମତୁଷ୍ଟି ବୈକଲ୍ପିକପଦାର୍ଥା ବିଷୟା ଧର୍ମେ ପ୍ରମାଣମ୍ ।
ତଦାହ ଗାର୍ଗ୍ୟଃ ବୈକଳ୍ପିକେ ଆତ୍ମତୁଷ୍ଟିଃ ପ୍ରମାଣମ୍ । ମନୁ—
(ଟୀକାକାର—କୁଲ୍ଲୁକ-୨-୬)

୭୫ । ସତାଂହି ସନ୍ଦେହପଦେଷୁ ବସ୍ତୁଷୁ ପ୍ରମାଣମନ୍ତଃକରଣ ପ୍ରବୃତ୍ତୟଃ ॥
(ଶକୁ—୧ମ ଅଙ୍କ)

୭୬ । ତର୍କୋଽପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନା ନୈକୋ ମୁନିର୍ଯସ୍ୟ ମତଂ ପ୍ରମାଣମ୍ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃ ସ ପନ୍ଥାଃ ॥
(ମହା : ବନପର୍ବ—୩୧୩-୧୧୭)

ପ୍ରଭୃତି ନ୍ୟାୟକୁ ସୀମିତଭାବେ ଧର୍ମର ମୂଳରୂପେ ସ୍ୱୀକାର କରିଛନ୍ତି । ୬୭ । ସେମାନଙ୍କ ମତରେ ବ୍ୟକ୍ତିବିଶେଷର ଧର୍ମମାର୍ଗ ନିର୍ଣ୍ଣୟରେ ଯଥାର୍ଥ ଓ ନ୍ୟାୟୋଚିତ କାରଣ ରହିବା ଉଚିତ । କୌଟିଲ୍ୟଙ୍କ ମତରେ ଧର୍ମଶାସ୍ତ୍ର ଓ ନ୍ୟାୟଶାସ୍ତ୍ରର ବିରୋଧ କ୍ଷେତ୍ରରେ ଦ୍ୱିତୀୟର ସିଦ୍ଧାନ୍ତ ଗ୍ରହଣୀୟ । ୬୮ ।

(୭) **ମୀମାଂସା**—ଏକାଧିକ ଶାସ୍ତ୍ର, ମାନବିକ ଚିନ୍ତା ଓ ସାମାଜିକ ପଦ୍ଧତି ମଧ୍ୟରେ ଥିବା ବୈବିଧ୍ୟକୁ ବିସ୍ତୃତ କରି ସମନ୍ୱୟୋପଯୋଗୀ ନ୍ୟାୟୋଚିତ ମାର୍ଗ ନିର୍ଣ୍ଣୟ ଅଭିପ୍ରାୟରୁ ମୀମାଂସାର ଉଦ୍ଭବ । ଶ୍ରୁତିର ପର୍ଯ୍ୟାଲୋଚନା ଏହାର ମୁଖ୍ୟ ବିଷୟ । ମୀମାଂସାର ପ୍ରଚଳନ ବେଳକୁ ଧର୍ମ-ଶାସ୍ତ୍ରର କ୍ରମବିକାଶ ସାଧିତ ହୋଇଥିଲେ ମଧ୍ୟ ବେଦର ପ୍ରମାଣ ହିଁ ସେଥିରେ ଗୃହୀତ ହୋଇଛି । ସ୍ମୃତି ଗ୍ରନ୍ଥର ବାହୁଲ୍ୟ ମଧ୍ୟରେ ପରସ୍ପର ବିରୋଧାତ୍ମକ ବିଧିନିର୍ଦ୍ଦେଶ ବିଦ୍ୟମାନ । କିନ୍ତୁ ସ୍ମୃତି ସିଦ୍ଧାନ୍ତରେ ବିରୋଧ ରହିବା ସ୍ପୃହଣୀୟ ନୁହେଁ । ବିରୋଧ କ୍ଷେତ୍ରରେ ମୀମାଂସାର ସହାୟତାରେ ସମାଧାନ କରଣୀୟ । ୬୯ । ମଧ୍ୟକାଳୀନ ଧର୍ମଶାସ୍ତ୍ରକାରଗଣ ମୀମାଂସା ଦ୍ୱାରା ହିଁ ସମସ୍ୟା-ଗୁଡ଼ିକର ସମାଧାନ କରିଛନ୍ତି । ତେଣୁ ମୀମାଂସା ଧର୍ମଶାସ୍ତ୍ରର ଅନ୍ୟତମ ମୂଳସୂତ୍ର ରୂପେ ଗୃହୀତ ।

---

୬୭ । (କ) ନ୍ୟାୟାଧିଗମେ ତର୍କୋଽଭ୍ୟୁପେୟଃ । ତେନାଭ୍ୟୁହ୍ୟ ଯଥାସ୍ଥାନଂ ଗମୟେତ୍ ।
(ଗୌତମ ଧର୍ମସୂତ୍ର—୨-୨-୨୩-୪)

(ଖ) ଯୋଽବମନ୍ୟେତ ତେ ମୂଲେ ହେତୁଶାସ୍ତ୍ରା ଶ୍ରୟାଦ୍ ଦ୍ୱିଜଃ ।
ସ ସାଧୁଭିର୍ବହିଷ୍କାର୍ଯ୍ୟଃ ॥ (ମନୁସ୍ମୃତି—୨-୧୧)

(ଗ) ଯତ୍ର ବିପ୍ରତିପତ୍ତିଃ ସ୍ୟାଦ୍ଧର୍ମଶାସ୍ତ୍ରାର୍ଥଶାସ୍ତ୍ରୟୋଃ ॥
ଅର୍ଥଶାସ୍ତ୍ରୋକ୍ତ ମୁତ୍ସୃଜ୍ୟ ଧର୍ମଶାସ୍ତ୍ରୋକ୍ତମାଚରେତ୍ ।
ଧର୍ମଶାସ୍ତ୍ରବିରୋଧେତୁ ଯୁକ୍ତିଯୁକ୍ତୋ ବିଧିଃ ସ୍ମୃତଃ ॥
(ନାରଦ ସ୍ମୃତି—୧-୩୯-୪୦)

(ଘ) ସ୍ମୃତ୍ୟୋର୍ବିରୋଧେ ନ୍ୟାୟସ୍ତୁ ବଲବାନ୍ ବ୍ୟବହାରତଃ
(S.H D.—P-65. N-7)

୬୮ । ଶାସ୍ତ୍ରଂ ବିପ୍ରତିପଦ୍ୟେତ ଧର୍ମନ୍ୟାୟେନ କେନଚିତ୍ ।
ନ୍ୟାୟସ୍ତତ୍ର ପ୍ରମାଣଂ ସ୍ୟାତ୍ତତ୍ର ପାଠୋହି ନଶ୍ୟତି ॥
(କୌଟିଲୀୟ—ଅର୍ଥଶାସ୍ତ୍ର—ପୃ-୮୭)

୬୯ । Sources of Hindudharma—P. 34

(୮) **ସଦାଚାର**—ସଦାଚାର ହିଁ ଧର୍ମଶାସ୍ତ୍ରର ଆଧିକାରଣ । ୭୦ । ଶ୍ରୁତି ଓ ସ୍ମୃତି ବ୍ୟତୀତ ଶିଷ୍ଟାଚାର ଧର୍ମପ୍ରମାଣ ରୂପେ ଗୃହୀତ । ୭୧ । ଗୌତମଙ୍କ ମତରେ ସଦାଚାର ଅନ୍ତର୍ଗତ ବିଧି ଓ କାର୍ଯ୍ୟ, ଶ୍ରୁତି ଓ ସ୍ମୃତି ବିରୋଧୀ ହୋଇ ନ ଥିଲେ ଗ୍ରହଣୀୟ । ୭୨ । ଧର୍ମର ମୂଳ-ସ୍ରୋତ ଭାବେ ସଦାଚାର ତୃତୀୟସ୍ଥାନୀୟ । ଯେଉଁ କ୍ଷେତ୍ରରେ ଶ୍ରୁତି ବା ସ୍ମୃତି ନୀରବ, ସେଠାରେ ଶିଷ୍ଟାଚାର ହିଁ ଅବଲମ୍ବନୀୟ ବୋଲି ବଶିଷ୍ଠ କହିଛନ୍ତି । ଆମେ ସର୍ବଦା ନିର୍ଦ୍ଦିଷ୍ଟ କୌଣସି ବିଷୟରେ ଶ୍ରୁତି ବା ସ୍ମୃତିର ପ୍ରମାଣ ଦେଖୁଥିବାରୁ ସଦାଚାରର ପ୍ରମାଣ ଆପାତତଃ ଦୁର୍ବଳ ହୋଇଥାଏ ବୋଲି ନ୍ୟାୟମାଳାରେ ଜୈମିନି ମତ ବ୍ୟକ୍ତ କରିଛନ୍ତି । କିନ୍ତୁ ସାମ୍ପ୍ରତିକ ଦୃଷ୍ଟିରେ ସଦାଚାର ନୀତିସମ୍ମତ, ଯଥାର୍ଥ ଓ ଗ୍ରହଣୀୟ ହୋଇଥିଲେ ମଧ୍ୟ ଯଦି ତାହା ସର୍ବ-ସାଧାରଣ ନୀତିର ବିରୋଧାଚରଣ କରୁଥାଏ, ତେବେ ତାହା ଅନୁସରଣୀୟ ନୁହେଁ । ୭୩ ।

ଶ୍ରୁତି ଓ ସ୍ମୃତିର ନିର୍ଦ୍ଦିଷ୍ଟ ବିଧାନ ଶାସ୍ତ୍ର ଅନ୍ତର୍ଗତ ହେବାପରେ ସଦାଚାରର ସ୍ଥାନ ଅପେକ୍ଷା-କୃତ ପ୍ରମାଣହୀନ ହୋଇଥାଏ । ଧର୍ମସୂତ୍ରକାର ଗୌତମ ଓ ଆପସ୍ତମ୍ବ ବେଦ ପରେ ସଦାଚାରକୁ ହିଁ ଧର୍ମର ମୂଳ ବୋଲି କହିଛନ୍ତି । କିନ୍ତୁ ଲୋକ ବ୍ୟବହାର ପ୍ରଥମ ଓ ବେଦ ଦ୍ୱିତୀୟ ସ୍ଥାନୀୟ ବୋଲି ଆପସ୍ତମ୍ବ କହିଥିବା ଉକ୍ତିଟି ପ୍ରଣିଧାନଯୋଗ୍ୟ । ସମାଜର ବରିଷ୍ଠ ଓ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଆଚାର, ବ୍ୟବହାର ଓ ଆଚରଣ ବେଦ ଅପେକ୍ଷା ଅଧିକ ଗ୍ରହଣୀୟ

---

୭୦ । ଶ୍ରୁତିଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।
ଏତଚ୍ଚତୁର୍ବିଧଂ ପ୍ରାହୁଃ ସାକ୍ଷାଦ୍ଧର୍ମସ୍ୟ ଲକ୍ଷଣମ୍ ॥ (ମନୁ—୨-୧୨)

୭୧ । ବେଦ-ସ୍ମୃତି-ବିହିତୋ ଧର୍ମଃ । ତଦଭାବେ ଶିଷ୍ଟାଚାରଃ ପ୍ରମାଣମ୍ ॥
(ବଶିଷ୍ଠ—୧-୪-୫)

୭୨ । ଦେଶଜାତିକୁଲ ଧର୍ମାଶ୍ଚାମ୍ନାୟୈର ବିରୁଦ୍ଧାଃ ॥ (S. H. D.—P-୬5 N. 3)

୭୩ । (କ) ଆଚାରାଦ୍ ଶ୍ରୁତିଂ ଜ୍ଞାତ୍ୱା ସ୍ମୃତେଷ୍ଟ ଶ୍ରୁତିକଳ୍ପନମ୍ ।
ତେନ ବ୍ୟନ୍ତରିତଂ ସେବ୍ୟଂ ପ୍ରାମାଣ୍ୟଂ ବିପ୍ରକୃଷ୍ୟତେ ॥
(ଜୈମିନୀୟ-ନ୍ୟାୟମାଳା)

(ଖ) ସଦାଚାରେଽପ୍ରମା ମା ବା ନିର୍ମୂଲତ୍ୱାଦମାନତା ।
ଅଷ୍ଟକାଦେର ବୈତସ୍ୟ ସମୂଳତ୍ୱାତ୍ ପ୍ରମାଣତା ॥

× × ×

ସ୍ମୃତିମୂଳୋହି ସର୍ବୋହି ଶିଷ୍ଟାଚାରସ୍ତତୋଽହି ଚ ।
ଅନୁମେୟା ସ୍ମୃତିଃ ସ୍ମୃତ୍ୟା ବାଧ୍ୟା ପ୍ରତ୍ୟକ୍ଷୟା ତୁ ସା ॥
(ନ୍ୟାୟମାଳା ବିସ୍ତର—୨-୩)

ବୋଲି ସେ କହିଛନ୍ତି । ୭୪ । ବିଷ୍ଣୁ ପୁରାଣରେ ଅନୁରୂପ ମନ୍ତବ୍ୟ ଉଲ୍ଲିଖିତ ଅଛି । ମହାଭାରତରେ ମଧ୍ୟ ସଦାଚାରକୁ ପ୍ରାଧାନ୍ୟ ଦିଆଯାଇଛି । ୭୫ ।

ପ୍ରାଚୀନ କାଳର ସମାଜରେ ଆଚାର ବା ବ୍ୟବହାରକୁ ମୁଖ୍ୟସ୍ଥାନ ଦିଆଯାଉଥିଲା । ପ୍ରତ୍ୟେକଠାରେ ସେହି ପାରମ୍ପରିକ ଆଚାର ପ୍ରବୃତ୍ତିଗତ ଧର୍ମ ରୂପେ ପାଳିତ ହେଉଥିଲା । ସେତେବେଳେ କୌଣସି ସରକାର ନଥିଲା କିମ୍ବା କୌଣସି ବିଧିବଦ୍ଧ ସାମାଜିକ ନୀତିନିୟମର ଅସ୍ତିତ୍ୱ ନଥିଲା । ତେଣୁ ଆଚାର ଥିଲା ଏକମାତ୍ର ଧର୍ମମାର୍ଗ । ସାମାଜିକତାର ଅନୁକରଣରୁ ଗୋଷ୍ଠିକ ସମତା ଏବଂ ଗୋଷ୍ଠିକ ସାମ୍ୟରୁ ଆଚାରର ସୃଷ୍ଟି ବୋଲି କୁହାଯାଇପାରେ । ସାଧାରଣ ମତାମତ ଓ ଅନ୍ଧବିଶ୍ୱାସ ସତ୍ତ୍ୱେ ଆଚାର ସର୍ବତୋଭାବେ ସମାଜରେ ଆଦୃତ ହେଉଥିଲା । ବେଦର ବିଧାନକୁ ଦେଶାଚାର ଓ ଲୋକାଚାର ବିରୋଧ କରି ନ ପାରେ ବୋଲି ଉଲ୍ଲିଖିତ ଥିଲେ ମଧ୍ୟ ପ୍ରକୃତରେ ଏ ପ୍ରକାର ମତବାଦର ଆବଶ୍ୟକତା ଅନୁଭୂତ ହେଉନଥିଲା, କାରଣ ବେଦରେ ଧର୍ମଶାସ୍ତ୍ର ସାହିତ୍ୟର ବିଷୟବସ୍ତୁ ଉପରେ ବିଶେଷ କିଛି ଉଲ୍ଲେଖ ନଥିବାରୁ ଉଭୟର ସେପରି ଉଲ୍ଲେଖଯୋଗ୍ୟ ବିରୋଧ ନଥିଲା । ଯେତେବେଳେ ଧର୍ମସୂତ୍ର ତଥା ସ୍ମୃତିରେ ସଦାଚାରକୁ ଅନ୍ତର୍ଗତ କରାଗଲା ସେତେବେଳେ ତା'ର ବ୍ୟାପକତା ପ୍ରତିହତ ହେଲା ।

ଧର୍ମସୂତ୍ର ଓ ସ୍ମୃତି ସାହିତ୍ୟରେ ସମସ୍ତ ପରମ୍ପରା ତଥା ସଦାଚାରକୁ ଅନ୍ତର୍ଭୁକ୍ତ କରିବା ସମ୍ଭବ ନଥିଲା । ତେଣୁ ତଦତିରିକ୍ତବିଷୟକ ସିଦ୍ଧାନ୍ତ ମହାଜନମାନଙ୍କ ଚରିତରୁ ସଂଗ୍ରହ କରାଯାଉଥିଲା । ଏହାର ସଙ୍କେତ ଆଶ୍ୱଳାୟନ ଗୃହ୍ୟସୂତ୍ରର ବିବାହବିଷୟକ ସିଦ୍ଧାନ୍ତରୁ ଜଣାଯାଏ । ୭୬ । ଅନ୍ତ୍ୟେଷ୍ଟି କ୍ରିୟାରେ ମଧ୍ୟ କେତେକ ପାରମ୍ପରିକ ବିଧି ପାଳନ କରାଯାଉ-ଥିବାର ସୂଚନା ବୌଧାୟନ ଧର୍ମସୂତ୍ରରୁ ଓ ଆପସ୍ତମ୍ବଙ୍କ ଉଲ୍ଲେଖରୁ ମିଳେ । ୭୭ । ନିଃସ୍ୱାର୍ଥପର

---

୭୪ । (କ) ଧର୍ମଜ୍ଞ ସମୟଃ ପ୍ରମାଣଂ ବେଦାଶ୍ଚ ॥ (ଆପସ୍ତମ୍ବ—ଧର୍ମସୂତ୍ର—୧-୧-୨-୩)

(ଖ) ନ ଧର୍ମାଧର୍ମୌ ଚରତ ଆବାଂ ସ୍ୱ ଇତି । ନ ଦେବ ଗନ୍ଧର୍ବାଃ ପିତର ଆଚକ୍ଷତେ ଅୟଂ ଧର୍ମଃ ଅୟମଧର୍ମ ଇତି । ଯଂ ତ୍ୱାର୍ଯ୍ୟା କ୍ରିୟମାଣଂ ପ୍ରଶଂସନ୍ତି ସଧର୍ମୋ ଯଂ ବିଗର୍ହନ୍ତେ ସୋଽଧର୍ମ ॥ (ଆପସ୍ତମ୍ବ - ଧର୍ମସୂତ୍ର—୧-୭-୨୦-୬-୭)

୭୫ । (କ) ସାଧବଃ କ୍ଷୀଣଦୋଷାଃ ସ୍ୟୁଃ ସ୍ୱଚ୍ଛନ୍ଦାଃ ସାଧୁବାଚକାଃ ।
ତେଷାମାଚରଣଂ ଯତ୍ତୁ ସ ସଦାଚାର ଉଚ୍ୟତେ ॥ (ବିଷ୍ଣୁପୁରାଣ—୩-୨-୩)

(ଖ) ଆଚାରସମ୍ଭବୋ ଧର୍ମୋ ଧର୍ମୋ ବେଦାଃ ପ୍ରତିଷ୍ଠିତାଃ ॥
(ମହା : ବନପର୍ବ—୧୫୦-୨୮)

୭୬ । ଅଥ ଖଳୁ ଉଚ୍ଚାବଚାଜନପଦଧର୍ମାଗ୍ରାମଧର୍ମାଶ୍ଚ ତାନ୍ ବିବାହେ ପ୍ରତୀୟାତ୍ । ଯତ୍ତୁ ସମାନଂ ତଦ୍ବକ୍ଷ୍ୟାମଃ ॥ (୧-୭-୧)

୭୭ । (କ) ଶେଷକ୍ରିୟାୟାଂ ତୁ ଲୋକୋଽନୁରୋଦ୍ଧବ୍ୟଃ ॥ (୧-୫-୧୩୧)

(ଖ) ଗ୍ରାମମେତ୍ୟ ଯାଃ ସ୍ତ୍ରିୟ ଆହୁସ୍ତତ୍ କୁର୍ବନ୍ତି ॥
(ଆପସ୍ତମ୍ବ—ଧର୍ମସୂତ୍ର—୨-୬-୧୫-୯)

ବେଦଜ୍ଞ ବ୍ୟକ୍ତିର ଆଦର୍ଶ ଚରିତ୍ରକୁ ସଦାଚାର ରୂପେ ଗ୍ରହଣ କରାଯାଇପାରେ ବୋଲି ବହୁ ଗ୍ରନ୍ଥକାର ମତବ୍ୟକ୍ତ କରିଛନ୍ତି । ୭୮ । ସଦାଚାର ପ୍ରକୃତରେ ସମାଜର ମାନନୀୟ ବ୍ୟକ୍ତିର ଆଚାର ଓ ବ୍ୟବହାରକୁ ହିଁ ବୁଝାଇଥାଏ । କେତେକ କ୍ଷେତ୍ରରେ ଅର୍ଥାତ୍ ପରଶୁରାମଙ୍କ ମାତୃହତ୍ୟା, ବଶିଷ୍ଠଙ୍କ ଚଣ୍ଡାଳୀ ବିବାହ ଓ ବ୍ରହ୍ମଦେବଙ୍କ ସ୍ୱକନ୍ୟାଭିଗମନାଦି ଘଟଣାମାନ ବଶିଷ୍ଟ ବ୍ୟକ୍ତି ଚରିତ୍ରର କଳଙ୍କିତ ଆଖ୍ୟାନ ରୂପେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ସେଥିରେ ପ୍ରାମାଣିକତାର ଅଭାବ ରହିଛି । ଏ ପ୍ରକାର ଅପଚାରର ସତ୍ତ୍ୱେ ସେମାନଙ୍କର ଆଚାର ପ୍ରମାଣ ରୂପେ ଗୃହୀତ ହୋଇଆସୁଛି । ୭୯ ।

ମହାଭାରତର ଉଲ୍ଲେଖ ଅନୁସାରେ ସଦାଚାରର ସ୍ୱରୂପ ନିର୍ଣ୍ଣୟ କଷ୍ଟକର । କାରଣ ଏକ ପ୍ରକାର ଶିଷ୍ଟାଚାର ଦେଶ-କାଳ-ପାତ୍ର ଭେଦରେ ଭଲ ବା ମନ୍ଦ ରୂପେ ଗୃହୀତ ହୁଏ । ୮୦ । ଧର୍ମର ସ୍ୱରୂପ ବିଷୟରେ ଧର୍ମଗ୍ରନ୍ଥଗୁଡ଼ିକର ସିଦ୍ଧାନ୍ତ ସବୁ ସମୟରେ ଶଙ୍କାରହିତ ନୁହେଁ; ତେଣୁ ପ୍ରକୃତ ଆଚାର ମାର୍ଗ ନିରୂପଣ ପାଇଁ ଶିଷ୍ଟଜନଙ୍କ ଉପଦେଶ ଓ ପରାମର୍ଶ

---

୭୮ । (କ) ଶିଷ୍ଟାଃ ଖଲୁ ବିଗତମତ୍ସରା ନିରହଂକାରାଃ କୁମ୍ଭୀଧାନ୍ୟା ଅଲୋଲୁପା
ଦମ୍ଭଦର୍ପଲୋଭ—ମୋହ—କ୍ରୋଧ—ବର୍ଜିତାଃ ॥
(ବଶିଷ୍ଠ –ଧର୍ମସୂତ୍ର—୧-୯-୭୨)

(ଖ) ସପ୍ତର୍ଷୟୋ ମନବଃ ପ୍ରଜାନାଂ ପତୟସ୍ତଥା ॥
ସଦାଚାରସ୍ୟ ବକ୍ତାରଃ କର୍ତ୍ତାରଶ୍ଚ ମହୀପତେ ॥ (ବିଷ୍ଣୁ ପୁରାଣ—୩-୧୦)

୭୯ । (କ) ଦୃଷ୍ଟୋଧର୍ମ ବ୍ୟତିକ୍ରମଃ ସାହସଂ ଚ ମହତାମ୍ ।
ଅବରଦୌର୍ବଲ୍ୟାତ୍ । × × × ।
ଯଦଶୀଳଂ ପ୍ରମାଣଂ ସ୍ୟାଦତି ପ୍ରସଙ୍ଗଃ ସ୍ୟାତ୍ । କଥଂ ବଶିଷ୍ଠଶ୍ଚାଣ୍ଡାଲୀମଥ
ପ୍ରଜାପତି ସ୍ୱାଂ ଦୁହିତରମ୍ । ରାମେଣାବଚାରେଣ ପିତୃବଚନାନ୍ମାତୁଃ
ଶିରଶ୍ଛିନ୍ନମିତ୍ୟାଦି
ସାହସମପି ପ୍ରମାଣଂ ସ୍ୟାତ୍ ॥ (ଗୌତମ ଧର୍ମସୂତ୍ର—୧-୧-୩-୪୯)

(ଖ) ଯସ୍ମିନ୍ ଦେଶେ ଯଦାଚାର ନ୍ୟାୟଦୃଷ୍ଟସ୍ତୁ କଳ୍ପିତଃ ।
ତସ୍ମିନ୍ନେବ ସ କର୍ତ୍ତବ୍ୟୋ ଦେଶାଚାରଃ ସ୍ମୃତୋ ଭୃଗୋ ॥
(S. H. D. P. 66-N-14)

୮୦ । ସଦାଚାର ମତୋ ଧର୍ମଃ ସନ୍ତସ୍ତ୍ୱାଚାରଲକ୍ଷଣାଃ ।
ସାଧ୍ୟାସାଧ୍ୟଂ କଥଂ ଶକ୍ୟଂ ସଦାଚାରୋ ହ୍ୟଲକ୍ଷଣଃ ॥
ନହି ସର୍ବହିତଃ କଶ୍ଚିଦାଚାରଃ ସମ୍ପ୍ରବର୍ତ୍ତତେ ।
ଯେନୈବାନ୍ୟ ପ୍ରଭବତି ସୋଽପରଂ ବାଧତେ ପୁନଃ ॥
ଆଚାରାଣାମନୈକାଗ୍ର୍ୟଂ ସର୍ବେଷାମେବ ଲକ୍ଷୟେତ୍ ॥ (ମହା: ୧୨-୨୨୬-୧୮-୨୦)

ଗ୍ରହଣୀୟ । ୮୧ । ବହୁଲୋକ ଯାହାକୁ ପ୍ରଶଂସା କରନ୍ତି ଓ ଗ୍ରହଣୀୟ ବୋଲି ବିଚାରନ୍ତି, ତାହା ଧର୍ମ ଏବଂ ଯାହାକୁ ବିରୋଧ କରନ୍ତି ତାହା ଅଧର୍ମ । ୮୨ । କିନ୍ତୁ କେତେକ ସମୟରେ ବହୁଜନମତ ମଧ୍ୟ ଭ୍ରାନ୍ତ ବା ଅନାଚାରର ପରିପୋଷକ ହୋଇଥାଏ । ତେଣୁ ଯାହା ସମାଜର ବହୁ ଲୋକଙ୍କ ଦ୍ୱାରା ଗ୍ରହଣୀୟ, ସେହି ସଦାଚାର ନିୟମ, ଧର୍ମର ପ୍ରକୃତ ମାର୍ଗ ନିର୍ଦ୍ଦେଶ କରିଥାଏ । ବିବଦମାନ କ୍ଷେତ୍ରରେ ବା ସନ୍ଦେହ ଜାତ ହେଲେ ଉଦାର ଓ ଅହଙ୍କାରଶୂନ୍ୟମନା ସାଧୁ ବ୍ୟକ୍ତିର ଆଚରଣ ବା ସିଦ୍ଧାନ୍ତ ଦ୍ୱାରା ହିଁ ମାର୍ଗନିର୍ଣ୍ଣୟ କରାଯିବା ଉଚିତ୍ ବୋଲି ତୈତ୍ତିରୀୟ ଆରଣ୍ୟକରେ ଉଲ୍ଲେଖ ଅଛି । ୮୩ । ସମାଜରେ ଏଭଳି କେତେକ ବ୍ୟବସ୍ଥା ପ୍ରଚଳିତ ଅଛି; ଯାହା ସଂସ୍କୃତିସମ୍ପନ୍ନ ଲୋକେ ପାଳନ ନ କଲେ ମଧ୍ୟ ସାଧାରଣ ଲୋକେ ପାଳନ କରିଥାନ୍ତି । ହୋଲି ଉତ୍ସବ ପାଳନକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ୮୪ । ଦ୍ୱାଦଶ ପ୍ରକାର ପୁତ୍ର ଗ୍ରହଣ ବିଧାନ ସହିତ ଆସୁର, ରାକ୍ଷସ ଓ ପୈଶାଚ ବିବାହ ସଂସ୍କାର ହିନ୍ଦୁ ସମାଜର ସାଧାରଣ ଲୋକେ ପାଳନ କରୁଥିବାରୁ ସେଗୁଡ଼ିକ ସ୍ମୃତିଶାସ୍ତ୍ରର ଅନ୍ତର୍ଗତ କରାଯାଇଛି ।

ବୈଦିକ ବିଧିବିଧାନ ବିଷୟରେ ଅନଭିଜ୍ଞ ଜାତି ନିଜ ସମାଜରେ ପ୍ରଚଳିତ ଆଚାରକୁ ଜାତୀୟ ଆଦର୍ଶ ରୂପେ ଗ୍ରହଣ କରିଥାନ୍ତି । ୮୫ । ତେଣୁ ଏସବୁ ବିଚାର କଲେ ଶ୍ରୁତି ଓ ସ୍ମୃତିର ବିରୋଧ କରୁନଥିବା ଆଚାରକୁ ଧର୍ମର କେବଳ ମାର୍ଗ ରୂପେ ଗ୍ରହଣ କରାଯିବ ତା' ନୁହେଁ, କାରଣ ସମୟର ପରିବର୍ତ୍ତନ ସଙ୍ଗେ ଶାସ୍ତ୍ରର ବିଧି ଯେତେବେଳେ ପାଳନ କରିବା

---

୮୧ । ମହାଭାରତ, ବନପର୍ବ-୩୧୩-୧୧୭ ॥

୮୨ । ରାଜ୍ଞୋ ଯଦି ନ ପାପଂ ସ୍ୟାଦସ୍ୟୈନାମପି ନୋ ଭବେତ୍ ।
ସର୍ବପାପଂ ଧର୍ମରୂପଂ ସ୍ଥିତମାଶ୍ରିତ୍ୟବେଦତଃ ।
ବହୁଭର୍ଯସ୍ତୁତୋ ଧର୍ମଃ ନିନ୍ଦିତୋଽଧର୍ମ ଏବ ଚ ।
ଧର୍ମତତ୍ତ୍ୱଂ ହି ଗହନଂ ଜ୍ଞାତୁଂ କେନାପି ନୋଚିତମ୍ ॥
(୧. H D.—P. 66-N.17)

୮୩ । ଅଥ ଯଦିତେ କର୍ମବିଚିକିତ୍ସା ବା ବୃତ୍ତିବିଚିକିତ୍ସା ବା ସ୍ୟାତ୍ ।
ଯେ ତତ୍ର ବ୍ରାହ୍ମଣାଃ ସମଦର୍ଶିନୋ ଯୁକ୍ତା ଅଯୁକ୍ତା ଅରୁକ୍ଷା ଧର୍ମକାମାଃ ସ୍ୟୁଃ ।
ଯଥାତେ ବର୍ତ୍ତେରନ୍ ତଥା ବର୍ତ୍ତେଥାଃ ॥ (ତୈତ୍ତିରୀୟ ଆରଣ୍ୟକ—୧-୧୦)

୮୪ । ଅସୃକ୍‌ପା ଭୟସନ୍ତ୍ରସ୍ତୈଃ କୃତ୍ୱା ତ୍ୱଂ ହୋଲିବାଲିଶୈଃ ।
ଅତସ୍ତ୍ୱାଂ ପୂଜୟିଷ୍ୟାମି ଭୂତେ ଭୂତପ୍ରଦା ଭବ ॥ (ବ୍ରତରାଜ-ପୃ. ୬୪୫)
(ବ୍ରତରାଜ-ବିଶ୍ୱନାଥ—ବମ୍ବେ ସଂସ୍କରଣ-୧୯୩୮)

୮୫ । ଏବଂ ଗୃବେଦବିଦାମପି କ୍ଷୀଣଦୋଷ—ପୁରୁଷାଣାମାଚାରଃ ପ୍ରମାଣମ୍ ।
ତଥା ଚ ସଚ୍ଛୂଦ୍ରା ଦ୍ୟାଚାରତ୍ୱାନ୍ ପୁଣ୍ୟାଦୀନ୍ ପ୍ରତିଭବତି ପ୍ରମାଣମ୍ ॥
(S. H. D.—P. 67. N. 20.)

ସମ୍ଭବ ହୁଏ ନାହିଁ, ସେତେବେଳେ ଆଚାର ଓ ପରମ୍ପରା ସେ ସ୍ଥାନ ଅଧିକାର କରିଥାଏ । ଯଦି କୌଣସି ଧାର୍ମିକ ବ୍ୟବସ୍ଥା ଏକ ଅନୁପଲବ୍ଧ ଶ୍ରୁତି ଆଧାରିତ ହୋଇଥାଏ, ତେବେ ତାହା ଉପଲବ୍ଧ ଶ୍ରୁତି ଓ ସଦାଚାର ମଧ୍ୟରେ ବିରୋଧ ସୃଷ୍ଟି କରେ ନାହିଁ । ଉପଲବ୍ଧ ଓ ଅନୁପଲବ୍ଧ ଶ୍ରୁତି ବ୍ୟବସ୍ଥା ମଧ୍ୟରେ ବିରୋଧ ହେଲେ ବିକଳ୍ପ ପନ୍ଥା ଗ୍ରହଣୀୟ । ୮୬ । ଅନ୍ୟ କ୍ଷେତ୍ରରେ ସାଧୁଲୋକେ ଯାହା ଆଚରଣ କରନ୍ତି, ତାହା ଶ୍ରୁତିସମ୍ମତ ବୋଲି ସ୍ୱୀକାର କରାଯାଏ । ପ୍ରତିଷ୍ଠିତ ସାମାଜିକ ଆଚାର ଧର୍ମଶାସ୍ତ୍ରର ବିଧି ଅପେକ୍ଷା ଅଧିକ ବଳବତ୍ତର । ୮୭ । ତେଣୁ ସେ ସବୁ ଆଚାର ଉପରେ ଶ୍ରୁତି ଓ ସ୍ମୃତିର ବ୍ୟବସ୍ଥା ଲାଗୁ କରାଯାଇ ନ ପାରେ ।୮୮। ଭାଷା ବ୍ୟବହାର ଓ ବ୍ୟାକରଣ ମଧ୍ୟରେ ଥିବା ସମ୍ପର୍କ ଭଳି ସାମାଜିକ ବ୍ୟବହାର ଓ ଶାସ୍ତ୍ରୀୟ ବ୍ୟବହାର ନିୟମର ଘନିଷ୍ଠ ସମ୍ପର୍କ ଅଛି ବୋଲି ଧର୍ମଶାସ୍ତ୍ରକାର ନୀଳକଣ୍ଠ ମତବ୍ୟକ୍ତ କରିଛନ୍ତି । ୮୯ । ସମାଜରେ ପ୍ରଚଳିତ ଥିବା କେତେପ୍ରକାର ସଦାଚାର ଶ୍ରୁତିର ବିରୋଧ କରୁଥିଲେହେଁ ସ୍ମୃତି ତାହାକୁ ସ୍ୱୀକାର କରିଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ ପ୍ରାଚୀନ କାଳରେ ଯେକୌଣସି ପ୍ରକାର ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟରେ ବେଦାଧ୍ୟୟନ ବନ୍ଦ ରଖାଯାଇ ପାରିବ ନାହିଁ ବୋଲି ବ୍ୟବସ୍ଥା ଥିଲେ ମଧ୍ୟ ପରେ କେବଳ ଝଡ଼ତୋଫାନ ବା ବଜ୍ର ସହିତ ବୃଷ୍ଟି କାଳରେ ବେଦାଧ୍ୟୟନର ବିରୋଧ କରାଯାଇଥିବାର ଆପସ୍ତମ୍ଭ ଧର୍ମସୂତ୍ରରୁ ଜଣାଯାଏ ।୯୦। ଯୁଗ ଭେଦରେ ଧର୍ମାଚାର ମଧ୍ୟ ପରିବର୍ତ୍ତିତ ହୋଇଥାଏ । ବିଭିନ୍ନ ପ୍ରକାର ବିଧିବିଧାନଦ୍ୱାରା ଧର୍ମ ପ୍ରତିପାଳନରେ ବିଭିନ୍ନତା ଦେଖାଦିଏ । ତେଣୁ ଧ୍ୟାନ, ଯଜ୍ଞ, ପୂଜା ଓ ନାମ ସଙ୍କୀର୍ତ୍ତନ ଯଥାକ୍ରମେ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଯୁଗରେ ଧର୍ମାଚରଣ ରୂପେ ସ୍ମୃତିସମ୍ମତ ହୋଇଛି ।

ଭାରତରେ ଅଞ୍ଚଳ ଭେଦରେ ସାମାଜିକ ଆଚାର, ବ୍ୟବହାର ଓ ପରମ୍ପରାର ବୈବିଧ୍ୟ ପ୍ରତିଭାତ ହୁଏ । ତନ୍ମଧ୍ୟରେ କେତେକ ପରମ୍ପରା ଶ୍ରୁତି ଓ ସ୍ମୃତିର ବିରୋଧ କରୁଥିବାର ମଧ୍ୟ ଦେଖାଯାଏ । ଦକ୍ଷିଣ ଭାରତରେ ଭଉଣୀ ଝିଅ, ମାମୁଁ ଝିଅ ଓ ପିଉସୀ ଝିଅ ସହିତ ବିବାହ

---

୮୬ । କଳ୍ପିତଶ୍ରୁତିମୂଲୋ ବାମୂଲୋ ଲୋକୈର୍ଧୃତଃ ସଦା ।
ଦେଶାଦିଧର୍ମଃ ସ ଜ୍ଞେୟୋ ଦେଶେ ଦେଶେ କୁଲେ କୁଲେ ॥ (ଶୁକ୍ର—୪-୩-୬୪)

୮୭ । ଯତ୍ର ଶ୍ରୁତି-ସ୍ମୃତି-ବାକ୍ୟାନି ନ ସନ୍ତି ଶିଷ୍ଟାଶ୍ଚ ଧର୍ମବୁଦ୍ଧ୍ୟାନୁତିଷ୍ଠନ୍ତି ତଦପି ବୈଦିକମେବ ପୂର୍ବବତ୍ ପ୍ରତିପତ୍ତବ୍ୟମ୍ ॥ (ମନୁ – ୨-୬, ମେଧାତିଥି)

୮୮ । ଶସ୍ତଂ ବିପ୍ରତିପଦ୍ୟେତ ଧର୍ମନ୍ୟାୟେନ କେନଚିତ୍ ।
ନ୍ୟାୟସ୍ତତ୍ର ପ୍ରମାଣଂ ସ୍ୟାତତ୍ର ପାଠୋହି ନଶ୍ୟତି ॥ (ଅର୍ଥଶାସ୍ତ୍ର—୩-୧)

୮୯ । ବ୍ୟବହାରଶାସ୍ତ୍ରସ୍ୟ ବ୍ୟାକରଣବତ୍ ପ୍ରାୟେଣାଚାର ମୂଳକତ୍ୱାତ୍ ॥
(ବ୍ୟବହାର ମୟୂଖ—୪-୯-୧)

୯୦ । ଅଥାପି ବାଜସନେୟି ବ୍ରାହ୍ମଣମ୍ ॥ ତସ୍ମାତ୍ ସ୍ତନୟତି ବିଦ୍ୟୋତମାନେ ଅବସ୍ଫୂର୍ଜିତ ବାତେ ଛାୟତି ଅଧୀୟୀତୈବ । ଏବଂ ସତି ଆର୍ଯସମୟେନ ବିପ୍ରତିଷିଦ୍ଧମ୍ ।
ଅଧ୍ୟାୟାନଧ୍ୟାୟଂ ହ୍ୟୁପଦିଶନ୍ତି ॥ (ଆପସ୍ତମ୍ଭ—ଧର୍ମସୂତ୍ର—୧-୪-୧୨-୪)

ସ୍ତ୍ରୀ ସହ ଏକ ପାତ୍ରରେ ଭୋଜନ କରିବା ସାମାଜିକ ବ୍ୟବସ୍ଥା ରୂପେ ପ୍ରଚଳିତ ଥିବାବେଳେ ଉତ୍ତର ଭାରତରେ ମଦ୍ୟପାନ, ପଞ୍ଚସୂତ୍ର ବସ୍ତ୍ର, ସମୁଦ୍ର ଯାତ୍ରା ଓ ସାମରିକ ବୃତ୍ତି ଆଦିର ପ୍ରଚଳନ ସାମାଜିକ ସ୍ୱୀକୃତି ଲାଭ କରିଛି । ଦକ୍ଷିଣରେ ପ୍ରଚଳିତ ପରମ୍ପରା ଉତ୍ତରରେ ଘୃଣ୍ୟ ଏବଂ ଉତ୍ତରରେ ପ୍ରଚଳିତ ଆଚାର ଦକ୍ଷିଣରେ ହେୟ ରୂପେ ଗୃହୀତ । ଜଗଦ୍‌ଗୁରୁ ଶଙ୍କରଙ୍କ ମତରେ ସ୍ଥାନ, କାଳ, ପାତ୍ର ଓ ଉଦ୍ଦେଶ୍ୟ ଭେଦରେ ଯାହା ଧର୍ମ ତାହା ଅନ୍ୟ କ୍ଷେତ୍ରରେ ଅଧର୍ମ ବୋଲି ଗୃହୀତ ହୋଇପାରେ । ୯୧ । ସେ ଆହୁରି ମଧ୍ୟ କହିଛନ୍ତି—ପୂର୍ବରୁ ଯଜ୍ଞରେ ଜୀବହତ୍ୟା ପ୍ରଚଳିତ ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ତାହା ଅସ୍ୱୀକୃତ ହେଲା । ତେଣୁ ଶାସ୍ତ୍ରର ଧର୍ମାଧର୍ମ ବ୍ୟବସ୍ଥା ସର୍ବଦା ଗ୍ରହଣୀୟ ହୋଇନପାରେ ।

ବୃହସ୍ପତିଙ୍କ ଅନୁଯାୟୀ ପୂର୍ବଭାରତରେ ଲୋକେ ମତ୍ସ୍ୟ ଉପରେ ଅଧିକ ନିର୍ଭର କରନ୍ତି ଓ ସ୍ତ୍ରୀ ଲୋକମାନେ ଅବୈଧ ସଂସର୍ଗ କରନ୍ତି । ଉତ୍ତର ଭାରତରେ ସ୍ତ୍ରୀ ଲୋକମାନେ ମଦ୍ୟପାନ କରିବା ସଙ୍ଗେ ସଙ୍ଗେ ଋତୁକାଳରେ ମଧ୍ୟ ସହବାସ କରନ୍ତି । ସାନଭାଇ ବଡ଼ଭାଇର ବିଧବା ସ୍ତ୍ରୀକୁ ବିବାହ କରିବା ପ୍ରଥା ମଧ୍ୟ ପ୍ରଚଳିତ ଅଛି । ୯୨ । ଏ ସମସ୍ତ ସାମାଜିକ ବିଧିବିଧାନ ଧର୍ମ-ଗ୍ରନ୍ଥ ବିଧିର ବିରୋଧ କରୁଥିଲେ ମଧ୍ୟ ସମାଜର ଦୃଷ୍ଟିରେ ନିନ୍ଦିତ ହୋଇନାହିଁ । ସେହିପରି ଉତ୍ତର ଭାରତୀୟ ବ୍ରାହ୍ମଣ ଘୋଡ଼ା ଓ ସିଂହ ବେପାର କରନ୍ତି, ପିଲା ଓ ବନ୍ଧୁଙ୍କ ସହିତ ଏକ ପାତ୍ରରେ ଭୋଜନ କରନ୍ତି, ଯେକୌଣସି ଜାତି ପ୍ରସ୍ତୁତ ତାମ୍ବୁଲ ସେବନ କରନ୍ତି ଓ ଧୋବାଘରୁ ଆସିଥିବା ଲୁଗା ପୁନଃ ଶୁଦ୍ଧି ନକରି ପରିଧାନ କରନ୍ତି । ତେଣୁ ଦେଶ ବିଶେଷରେ ପ୍ରଚଳିତ ଆଚାରକୁ, ଧର୍ମଶାସ୍ତ୍ରରେ ଉଲ୍ଲେଖ ନ ଥିବାରୁ ପ୍ରତ୍ୟାଖ୍ୟାନ କରାଯାଇନପାରେ ।୯୩। ପାଣ୍ଡବ ପାଞ୍ଚଭାଇ ଦ୍ରୌପଦୀଙ୍କୁ ବିବାହ କରିବା ପ୍ରସଙ୍ଗରେ କୁହାଯାଇଛି—ଧର୍ମର ଗତି ସୂକ୍ଷ୍ମ, ତାହାର ସମାଲୋଚନା ଅସମ୍ଭବ । ୯୪ । ଧର୍ମର ମୂଳସୂତ୍ର ରୂପେ ଗୃହୀତ ଚରିତ୍ରକୁ ମଧ୍ୟ କୌଟିଲ୍ୟ ଓ ବୃହସ୍ପତି ଆଚାରର ଅନ୍ତର୍ଗତ ବୋଲି ସ୍ୱୀକାର କରିଛନ୍ତି । ତେଣୁ ସ୍ମୃତିକାରମାନେ

---

୯୧ । ଯସ୍ମିନ୍ ଦେଶେ କାଲେ ନିମିତ୍ତେ ଚ ଯୋ ଧର୍ମୋଽନୁଷ୍ଠୀୟତେ ।
ସ ଏବ ଦେଶ କାଲ ନିମିତ୍ତାନ୍ତରେଷୁ ଅଧର୍ମୋ ଭବତି ॥
(ବ୍ରହ୍ମସୂତ୍ରଭାଷ୍ୟ—୩-୧-୨୫)

୯୨ । ସହଜାତ୍ୟ ପ୍ରଗୃହ୍ୟନ୍ତି ଭ୍ରାତୃଜାୟାମଭ୍ରାତୃକାମ୍ ।
ସର୍ବ ଦେବେଷ୍ୱନାଚାରେ ରଥ୍ୟାତାମ୍ବୁଲ ବର୍ଜନମ୍ ॥ (ବୀରମିତ୍ରୋଦୟ—ପୃ ୨୯)

୯୩ । ଦେଶେ ଦେଶେ ଯ ଆଚାରଃ ପାରମ୍ପର୍ଯ୍ୟ କ୍ରମାଗତଃ ।
ସ ଶାସ୍ତ୍ରାର୍ଥ-ବଲାନ୍ନୈବ ଲଙ୍ଘନୀୟଃ କଦାଚନ ॥
(ନାରଦ ସ୍ମୃତି ଟୀକାକାର ଅସହାୟ)

୯୪ । ସୂକ୍ଷ୍ମୋ ଧର୍ମୋ ମହାରାଜ ନାସ୍ୟ ବିଦ୍ମୋ ବୟଂ ଗତିମ୍ ।
(ମହା: ବନପର୍ବ—୧୯୫-୨୧)

ସଦାଗ୍ରରକୁ ଅଧିକ ପ୍ରାଧାନ୍ୟ ଦେଇଥିବାର ଉଦାହରଣ ପରିଲକ୍ଷିତ ହୁଏ । ଏପରିକି 'ପରାଶର ମାଧବ'ରେ କୁହାଯାଇଛି ଯେ, ବୈଦିକ ବିଧି ବିରୋଧ କରୁଥିବା ବେଶ୍ୟାବୃତ୍ତି ବା ମଦ୍ୟପାନକୁ ଯଦି ସମାଜ ଗ୍ରହଣ କରିନେଇଛି, ସେ କ୍ଷେତ୍ରରେ ଶାସନ ତାହାର ବିରୋଧ କରିବା ଉଚିତ ନୁହେଁ । ସେହିପରି ପ୍ରଚଳିତ ପାରିବାରିକ ପରମ୍ପରାକୁ ମଧ୍ୟ ବିରୋଧ କରାଯାଇନପାରେ । ୧୫ । 'ସ୍ମୃତି ରତ୍ନାକର' ପ୍ରଣେତା ବେଙ୍କଟେଶ କହିଛନ୍ତି—କୌଣସି ଅଞ୍ଚଳ, ପରିବାର ବା ବ୍ୟକ୍ତି-ବିଶେଷର ଆଗ୍ରରକୁ ସମାଲୋଚନା କରିବା ଅନୁଚିତ; କାରଣ ତାହାହିଁ ଉକ୍ତ ଅଞ୍ଚଳର ଧର୍ମ । ୧୬ ।

'ଧର୍ମସିନ୍ଧୁ'ର ଉଲ୍ଲେଖ ଅନୁସାରେ ବିବାହ କାର୍ଯ୍ୟରେ ପାରିବାରିକ ଆଗ୍ରରର ବିରୋଧ କରୁନଥିବା ମନ୍ତ୍ରମାନ ପାଠ କରାଯିବା ବିଧେୟ । ୧୭ । ବହୁପୂର୍ବରୁ ହିନ୍ଦୁ ଧର୍ମଶାସ୍ତ୍ରରେ ପ୍ରଚଳିତ ଥିବା ବିଧିନିଷେଧମାନ ମଧ୍ୟଯୁଗରେ ଅସ୍ୱୀକୃତ ହେବାରୁ ସଦାଗ୍ରର ବା ବ୍ୟବହାରର ପ୍ରାଧାନ୍ୟ ସର୍ବତୋଭାବେ ସ୍ୱୀକୃତ ହେଲା । ପୂର୍ବରୁ ପ୍ରଚଳିତ ଥିବା ନିଯୋଗ ପ୍ରଥା ଓ ଅସବର୍ଣ୍ଣ ବିବାହ ମଧ୍ୟଯୁଗୀୟ ସମାଜରେ ପ୍ରତ୍ୟାଖ୍ୟାତ ହେଲା । ପୂର୍ବର ନିଷେଧ ସତ୍ତ୍ୱେ ବ୍ରାହ୍ମଣର ବିଭିନ୍ନ ପ୍ରକାର ବୃତ୍ତି ଅବଲମ୍ବନ କରିବା ସ୍ୱୀକୃତ ଲାଭ କଲା । ସଦାଗ୍ରର ଓ

---

୧୫ । (କ) ଦେଶଜାତିକୁଲାନାଂ ଚ ଯେ ଧର୍ମାଃ ପ୍ରାକ୍-ପ୍ରକୀର୍ତ୍ତିତାଃ ।
ତଥୈବ ତେ ପାଲନୀୟାଃ ପ୍ରଜା ପ୍ରକ୍ଷୁଭ୍ୟତେଽନ୍ୟଥା ॥
ଯଦ୍‌ସଦାଚରିତ ଯେନ ଧର୍ମ୍ୟଂ ସ୍ୱଧର୍ମ୍ୟମେବ ବା ।
ଦେଶସ୍ୟାଚରିତଂ ନିତ୍ୟଂ ଚରିତଂ ତଦ୍ ବିକୀର୍ତ୍ତିତମ୍ ॥
(S. H. D. P-68-N 36.)

(ଖ) କେରଳାଦୌ ବେଶ୍ୟାଗମନେ ସାକ୍ଷିଭିରାପାଦିତେଽପି ଦେଶାଗ୍ରର ବଶାନ୍ନାସ୍ୟଂ ରାଜ୍ଞା ଦଣ୍ଡ୍ୟ ଇତି । ତନ୍ନ ଚରିତ୍ରେଣ ବ୍ୟବହାରସ୍ୟ ବାଧଃ ॥
(ପରାଶର ମାଧବ—୩-୧, P. 78)

(ଗ) ତସ୍ମାତ୍‌କୁଲ କ୍ରମାୟାତମାଗ୍ରର ମାଚରେଦ୍‌ବୁଧଃ ।
ସ ଗର୍ହ୍ୟୋନ୍ନିହାବାହୋ ସର୍ବଶାସ୍ତ୍ରୋଦିତୋ ଯଦି ॥
(ସ୍ମୃତି-ରତ୍ନାକର— ମହାଭାରତୋକ୍ତ ବଚନ)

୧୬ । ଆଦୌ ତାବଦ୍ଦେଶଧର୍ମୌ ବିଚର୍କ୍ୟୌ ଦେଶେ ଦେଶେ ଯା ସ୍ଥିତିଃ ସୈବ କାର୍ଯ୍ୟାଃ ।
ଯେଷୁ ଦେଶେଷୁ ଯଚ୍ଛୌଚଂ ଯାଶ୍ଚ ତତ୍ରତ୍ୟ ମୃତ୍ତିକାଃ ।
ଯେଷୁ ଦେଶେଷୁ ଯଚ୍ଛ୍ରେୟଂ ଧର୍ମାଗ୍ରରଶ୍ଚ ଯାଦୃଶଃ ॥
ତନ୍ନ ତନ୍ନାବମନ୍ୟେତ ଧର୍ମସ୍ତତ୍ରୈବ ତାଦୃଶଃ ॥ (S. H. D., P-69-No. 41)

୧୭ । ସ୍ୱଦେଶକୁଲାଗ୍ରରବିରୁଦ୍ଧସ୍ୟୈବ ଶାସ୍ତ୍ରସ୍ୟ ବିବାହେଽନୁସର୍ତ୍ତିବତ୍ତ୍ୱାତ୍ ॥
(ଧର୍ମସିନ୍ଧୁ—ପୃ. ୧୭)

ପାରମ୍ପରିକ ବ୍ୟବହାର ସହିତ ଏ ପ୍ରସଙ୍ଗରେ କୁଳଧର୍ମ, ଜାତିଧର୍ମ ଓ ଦେଶଧର୍ମକୁ ମଧ୍ୟ ଗ୍ରହଣ କରାଗଲା । ୯୮ । ତେଣୁ ଧାର୍ମିକ ଅନୁଷ୍ଠାନରେ କୁଳଧର୍ମର ଆଚାର, ଜାତିଧର୍ମରେ ବିଭିନ୍ନ ଶ୍ରେଣୀୟ ସମାଜର ଏବଂ ଦେଶଧର୍ମରେ ନିର୍ଦ୍ଦିଷ୍ଟ ଅଞ୍ଚଳର ପରମ୍ପରା ସ୍ୱୀକୃତ କରାଯାଇଥାଏ ।

(୯) **ପରିଷଦ**—ସମାଜରେ ଅବସ୍ଥାବିଶେଷରେ ସମସ୍ୟା ସୃଷ୍ଟି ହୋଇଥାଏ । ଶାସ୍ତ୍ରର ନୀତି-ନିୟମ ସହିତ ଆଚାରର ଦୃଷ୍ଟାନ୍ତ ଦ୍ୱାରା ସମସ୍ୟାର ସମାଧାନ ନହେଲେ ପରିଷଦର ମତାମତ ଆବଶ୍ୟକ ପଡ଼େ । ଏହି ପରିଷଦରେ ତିନିଜଣ ବେଦବିତ୍, ହେତୁବାଦୀ, ତର୍କବିତ୍, ନିରୁକ୍ତବିତ୍, ଧର୍ମପାଠକ, ବ୍ରହ୍ମଚାରୀ, ଗୃହସ୍ଥ ଓ ବାନପ୍ରସ୍ଥାଶ୍ରମୀ—ଏପରି ଦଶଜଣ ସଭ୍ୟ ରହିନ୍ତି । ଏହି ପରିଷଦର ଗଠନ ଓ ସଭ୍ୟସଂଖ୍ୟା ବିଷୟରେ ଗୌତମ, ବୌଧାୟନ, ବଶିଷ୍ଠ, ଯାଜ୍ଞବଲ୍କ୍ୟ, ପରାଶର ପ୍ରଭୃତି ବିଭିନ୍ନ ମତ ପୋଷଣ କରିଛନ୍ତି । ପରବର୍ତ୍ତୀ କାଳରେ ପରିଷଦର ସଭ୍ୟସଂଖ୍ୟା କ୍ରମଶଃ କମିଯାଇଥିବାର ଦେଖାଯାଏ । ଏହି ପରିଷଦ ଏକ ଅସ୍ଥାୟୀ ସଂସ୍ଥା । ସନ୍ଦେହର ନିରାକରଣ ନିମିତ୍ତ ପରିଷଦ ଗଠନୀୟ ବୋଲି ବୌଧାୟନ କହୁଥିବାବେଳେ ଗୌତମ କହିଛନ୍ତି—ବିବଦମାନ ଅବସ୍ଥାରେ ହିଁ ପରିଷଦ ଗଠିତ ହେବ । ତେଣୁ ଏହା ଏକ ସ୍ଥାୟୀ ସଂସ୍ଥା ନୁହେଁ । ପରିଷଦର କୌଣସି ପ୍ରକାର ପ୍ରଶାସନିକ କ୍ଷମତା ନାହିଁ । ଧର୍ମସୂତ୍ରର (୬୦୦ ଖ୍ରୀଷ୍ଟପୂର୍ବ) ରଚନା ପୂର୍ବରୁ ଯେତେବେଳେ ଧର୍ମଶାସ୍ତ୍ର ସାହିତ୍ୟ ନଥିଲା, ସେତେବେଳେ 'ଧର୍ମଜ୍ଞସମୟ' ଦ୍ୱାରା ହିଁ ଧର୍ମମାର୍ଗ ସ୍ଥିରୀକୃତ ହେଉଥିଲା । ଏହି ସଂସ୍ଥା ସାମାଜିକ ଧର୍ମ ବିଷୟରେ ଜନସମାଜକୁ ପରିଚାଳିତ କରୁଥିଲା । ପରବର୍ତ୍ତୀ କାଳରେ ରଚିତ ଧର୍ମସୂତ୍ରରେ ସମାଜର ପରମ୍ପରା ଓ ବ୍ୟବହାର ଲିପିବଦ୍ଧ ହେବାରୁ ପରିଷଦର ପ୍ରାଧାନ୍ୟ ହ୍ରାସ ପାଇଲା; କିନ୍ତୁ ଧର୍ମସୂତ୍ରରେ ଉଲ୍ଲିଖିତ ନଥିବା ଆଚାର-ବ୍ୟବହାର ବିଷୟରେ ସିଦ୍ଧାନ୍ତ ଦେବାପାଇଁ ପରିଷଦ ନାମକୁମାତ୍ର ତିଷ୍ଠି ରହିଥିଲା । ବିଭିନ୍ନ ବେଦର ଧର୍ମସୂତ୍ରମାନ ରଚିତ ହେବା ସଙ୍ଗେ ସଙ୍ଗେ ଭିନ୍ନ ଭିନ୍ନ ପରିଷଦ ମଧ୍ୟ ଗଠିତ ହେଲା । ପୂର୍ବେ ଆର୍ଯ୍ୟ-ଭାରତରେ ଥିବା ଯଦୁ, ତୁର୍ବସୁ, ଦ୍ରୁହ୍ୟ, ପଞ୍ଚାଳ ପ୍ରଭୃତି ଜାତିରେ ଏବଂ ଗୁରୁକୁଳମାନଙ୍କରେ ବିଦ୍ୟାର୍ଥୀର ଜ୍ଞାନ-ପରୀକ୍ଷା ନିମିତ୍ତ ଆଦେଶ ଦେବା, ନୀତି-ନିୟମର ବିରୋଧ କ୍ଷେତ୍ରରେ ଦଣ୍ଡ ଦେବା ଏବଂ ଦଣ୍ଡ ବା ପ୍ରାୟଶ୍ଚିତ୍ତ ପ୍ରତିପାଳିତ ହେଲା କି ନାହିଁ ତାହାପ୍ରତି ଦୃଷ୍ଟିଦେବା ପରିଷଦର ପ୍ରଧାନ କାର୍ଯ୍ୟ ଥିଲା । ପରିଷଦର ନିର୍ଦ୍ଦେଶ ପାଳନ କରୁ ନଥିବା ବ୍ୟକ୍ତି ସମାଜଚ୍ୟୁତ ହେଉଥିଲା । ପରିଷଦର ହିତ୍‌ବୋଧ ହେଲାଭଳି କାର୍ଯ୍ୟ କରିବା ପରେ ହିଁ ତାକୁ ସମାଜରେ ପୁନର୍ବାର ଗ୍ରହଣ କରାଯାଉଥିଲା । ୯୯ ।

---

୯୮ । ଜାତିଜାନପଦାନ୍ ଧର୍ମାନ୍ ଶ୍ରେଣୀଧର୍ମାଂଶ୍ଚ ଧର୍ମବିତ୍ ।
 ସମୀକ୍ଷ୍ୟ କୁଳଧର୍ମାଂଶ୍ଚ ସ୍ୱଧର୍ମଂ ପ୍ରତିପାଦୟେତ୍ ॥ (ମନୁ—୮-୪୧)

୯୯ । (କ) ନିତ୍ୟାଚାର ପ୍ରଦୀପ—ପୃ.-୬୯ (ଖ) ମନୁସ୍ମୃତି—୧୨-୧୧୨-୧୧୩ ।
 (ଗ) ବୌଧାୟନ ଧର୍ମସୂତ୍ର—୨-୧୪୪ ।

କାଳକ୍ରମେ ଯେତେବେଳେ ଏହି ପରିଷଦଗୁଡ଼ିକର ନିରଙ୍କୁଶ କ୍ଷମତା ହ୍ରାସ ପାଇଲା (୪୦୦ ଖ୍ରୀଷ୍ଟାବ୍ଦ), ସେତେବେଳେ ଧର୍ମାଙ୍କୁଶ, ଧର୍ମାଧିକାରୀ ବା ପଣ୍ଡିତ ଭାବରେ ରାଜଦରବାରମାନଙ୍କରେ ମନ୍ତ୍ରୀପଦ ସୃଷ୍ଟି ହେଲା । ସେମାନେ ପୂର୍ବୋକ୍ତ ପରିଷଦର ସମସ୍ତ କାର୍ଯ୍ୟ କଲେ । ୧୦୦ । କିନ୍ତୁ ମୁସଲମାନମାନଙ୍କ ଅଧିକାର ପରେ ଏହି ପଣ୍ଡିତ-ମନ୍ତ୍ରୀଙ୍କର ଧାର୍ମିକ ଦିଗ୍‌ଦର୍ଶନ କ୍ଷମତା ଆଉ ରହିଲା ନାହିଁ । ତେଣୁ ଗ୍ରାମର ଅଧିକାରୀ ଅଗ୍ରଗଣ୍ୟ ବ୍ରାହ୍ମଣମାନେ ଧର୍ମନିର୍ଦ୍ଦେଶନାର ନେତୃତ୍ୱ ନେଇଥିଲେ । ଏପରିଭାବେ ଅନ୍ତତଃ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୁ ସମାଜ ଚାଲିଆସୁଥିଲା । ବିଗତ ସାତଶହ ବର୍ଷ ମଧ୍ୟରେ ବୈଦିକ ସାହିତ୍ୟ, ସଂସ୍କୃତି ଓ ଧର୍ମରେ ବହୁ ପରିବର୍ତ୍ତନ ଓ ପରିବର୍ଦ୍ଧନ ତଥା ସଂକୋଚନ ଘଟିଯାଇଥିବାରୁ ସାମାଜିକ ଜୀବନରେ ତାହାର ପ୍ରଭାବ ପ୍ରତିଫଳିତ ହୋଇଥିବାର ଦେଖାଯାଏ । ୧୦୧ ।

□□□

୧୦୦ । State and Government in Ancient India—
A. S. Altekar, P-124

୧୦୧ । Sources of Hindudharma—P-49-52.

# ଦ୍ୱିତୀୟ ଅଧ୍ୟାୟ

## ସ୍ମୃତିଶାସ୍ତ୍ରର କ୍ରମବିକାଶ

ବୈଦିକ ସଂହିତା ପରେ ବ୍ରାହ୍ମଣ-ସାହିତ୍ୟରେ ବେଦମନ୍ତ୍ରର ତାତ୍ତ୍ୱିକ ଆଲୋଚନା ସନ୍ନିବେଶିତ ହେଲା । ବେଦ ଓ ବ୍ରାହ୍ମଣ-ସାହିତ୍ୟକୁ ଭିତ୍ତି କରି ସୂତ୍ର-ସାହିତ୍ୟ କ୍ରମବିକାଶ ଲାଭ କଲା ।୧। ପରବର୍ତ୍ତୀ କାଳରେ ରଚିତ ଧର୍ମସୂତ୍ର, ଧର୍ମଶାସ୍ତ୍ର, ସ୍ମୃତି, ପୁରାଣ ଓ ନିବନ୍ଧ ଗ୍ରନ୍ଥଗୁଡ଼ିକ ମୂଳତଃ ବୈଦିକ ସଭ୍ୟତା ଓ ସଂସ୍କୃତିର ପ୍ରସାରରେ ସହାୟକ ହୋଇଥିଲା । ତେଣୁ ଶାସ୍ତ୍ରକାରଗଣ ବେଦକୁ ସ୍ମୃତିଶାସ୍ତ୍ରରଚନାର ପ୍ରଧାନ ଉତ୍ସ ଭାବେ ଗ୍ରହଣ କରିଥିଲେ ।୨। କିନ୍ତୁ ବେଦରେ ସାଧାରଣ ଧର୍ମ ବିଷୟରେ ସ୍ପଷ୍ଟ ଉଲ୍ଲେଖ ନଥିଲେ ମଧ୍ୟ ସେଥିରେ ଥିବା ଧର୍ମଶାସ୍ତ୍ରୀୟ ବିଭିନ୍ନ ପ୍ରସଙ୍ଗର ସଂପୃକ୍ତ ଓ ଖଣ୍ଡିତ ଉକ୍ତିକୁ ପରେ ସ୍ମୃତିଶାସ୍ତ୍ରର ବିଷୟୀଭୂତ କରାଯାଇଥିଲା ।୩।

### (କ) ଧର୍ମସୂତ୍ର

ସମଗ୍ର ଧର୍ମଶାସ୍ତ୍ରର ଇତିହାସକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି । ବିକାଶକ୍ରମ ଅନୁସାରେ ଧର୍ମସୂତ୍ର ଓ ମନୁସ୍ମୃତି ଖ୍ରୀଷ୍ଟପୂର୍ବ ୬୦୦-୨୦୦ ଖ୍ରୀଷ୍ଟାବ୍ଦ, ଶ୍ଳୋକାକାର ଧର୍ମଶାସ୍ତ୍ର ୨୦୦-୭୦୦ ଖ୍ରୀଷ୍ଟାବ୍ଦ ଏବଂ ଟୀକା ଓ ନିବନ୍ଧଗ୍ରନ୍ଥ ୭୦୦-୧୮୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିବାର ଜଣାଯାଏ । ଧର୍ମଶାସ୍ତ୍ରରଚନାର ଅଭ୍ୟୁମାରମ୍ଭ କେବେ ହେଲା, ସେ ବିଷୟ ନିର୍ଦ୍ଦିଷ୍ଟଭାବେ ସ୍ଥିର ହୋଇନାହିଁ । ଯାସ୍କଙ୍କ (୮୦୦ ଖ୍ରୀଷ୍ଟପୂର୍ବ) ନିରୁକ୍ତରେ ସର୍ବପ୍ରଥମ ଧର୍ମଶାସ୍ତ୍ରର ଦାୟଭାଗ ବିଷୟ ଆଲୋଚିତ ହୋଇଥିବାର ଦେଖାଯାଏ ।୪। ଗୌତମ, ବୌଧାୟନ, ଆପସ୍ତମ୍ବ ପ୍ରଭୃତିଙ୍କ ଧର୍ମସୂତ୍ରରେ (୬୦୦-୩୦୦ ଖ୍ରୀଷ୍ଟପୂର୍ବ) ପୂର୍ବବର୍ତ୍ତୀ ଧର୍ମଶାସ୍ତ୍ର ଓ ଆଚାର୍ଯ୍ୟଙ୍କ ଉକ୍ତିର ଉଲ୍ଲେଖ ରହିଛି ।୫। ପ୍ରସଙ୍ଗତଃ ଏଠାରେ ସ୍ମୃତିଶାସ୍ତ୍ର ଅନ୍ତର୍ଗତ ଧର୍ମସୂତ୍ରର ଆଲୋଚନା କରାଯାଇପାରେ ।

---

୧। Ancient Sanskrit Literature—F. Maxmuller—P. 77-94.

୨। Sources of Hindudharma—P. 6

୩। History of Dharmashastra—Vol. I, P. 7

୪। ନିରୁକ୍ତ—୩-୪ ଓ ୫ ।

୫। History of Dharmashastra—Vol. I-Part-I, P. 13

ପର୍ଯ୍ୟାୟକ୍ରମେ ବୈଦିକ ସାହିତ୍ୟ ଷଡ଼୍‌ବେଦାଙ୍ଗର ବିଷୟୀଭୂତ ହେଲା । ଏହା ମୁଖ୍ୟତଃ ସୂତ୍ରଶାସ୍ତ୍ର ରୂପେ କ୍ରମବିକାଶ ଲାଭ କଲା । ବେଦର କର୍ମକାଣ୍ଡ ଭାଗରୁ 'ବ୍ରାହ୍ମଣ ସାହିତ୍ୟ ଓ ତହିଁରୁ କଳ୍ପସୂତ୍ରର ଅଭ୍ୟୁଦୟ ହେଲା । କଳ୍ପସୂତ୍ର ବେଦାଙ୍ଗଶାସ୍ତ୍ରର ଅନ୍ତର୍ଗତ । ଏହା ଶ୍ରୌତ ଓ ସ୍ମାର୍ତ୍ତ ଭାବେ ଦୁଇ ଭାଗରେ ବିଭକ୍ତ । ସ୍ମାର୍ତ୍ତ ଭାଗରୁ ଧର୍ମସୂତ୍ର ଓ ଗୃହ୍ୟସୂତ୍ର ନିର୍ଦ୍ଦିଷ୍ଟ ବିଷୟବସ୍ତୁକୁ ନେଇ ବିକାଶ ଲାଭକଲା । ଶ୍ରୌତସୂତ୍ରରେ ବୈଦିକ ଯଜ୍ଞ, ବିବାହ, ସଂସ୍କାର, ବ୍ରହ୍ମଚର୍ଯ୍ୟ, ଶ୍ରାଦ୍ଧାଦି ଧର୍ମସୂତ୍ରରେ ମାନବର ଆଚାର, ବ୍ୟବହାରାଦି ଏବଂ ଗୃହ୍ୟ-ସୂତ୍ରରେ ପବିତ୍ର ଗାର୍ହସ୍ଥ୍ୟ ଜୀବନ, ଗୃହ୍ୟଯଜ୍ଞ, ଖାଦ୍ୟାଖାଦ୍ୟ ପ୍ରଭୃତି ବିଷୟର ପର୍ଯ୍ୟାଲୋଚନା ସନ୍ନିବେଶିତ ହେଲା । ପ୍ରତ୍ୟେକର ନିରୂପିତ ବିଷୟ ଥିବା ସତ୍ତ୍ୱେ ଶ୍ରୌତସୂତ୍ରର ବିଷୟ ଗୃହ୍ୟସୂତ୍ରରେ, ଗୃହ୍ୟସୂତ୍ରର ବିଷୟ ଶ୍ରୌତସୂତ୍ରରେ ଏବଂ ଗୃହ୍ୟ ଓ ଶ୍ରୌତସୂତ୍ରର ବିଷୟ ଧର୍ମସୂତ୍ରରେ ଆଲୋଚିତ ହୋଇଥିବାର ଦେଖାଯାଏ । ତେଣୁ ପ୍ରଧାନତଃ ଏଠାରେ କେତୋଟି ପ୍ରମୁଖ ଧର୍ମସୂତ୍ରର ପରିଚୟ ଦିଆଯାଇଛି । ଧର୍ମସୂତ୍ରର ଭାଷା ପୂର୍ଣ୍ଣତଃ ଗଦ୍ୟ ବା ଗଦ୍ୟପଦ୍ୟ-ମିଶ୍ରିତ । ଏଥିରେ ଥିବା ବିଶେଷାର୍ଥକ ଶବ୍ଦାବଳୀମାନ ସଂହିତା, ବ୍ରାହ୍ମଣ ଓ ଶ୍ରୌତସୂତ୍ରରୁ ଉଦ୍ଧାର କରାଯାଇଛି ।

ଧର୍ମସୂତ୍ର ଓ ଧର୍ମଶାସ୍ତ୍ର ମଧ୍ୟରେ କେତେକ ପାର୍ଥକ୍ୟ ଥିବାର ପରିଲକ୍ଷିତ ହୁଏ : (୧) ଧର୍ମସୂତ୍ର ମୁଖ୍ୟତଃ ଗଦ୍ୟାକାରରେ ପ୍ରଣୀତ; କିନ୍ତୁ ଧର୍ମଶାସ୍ତ୍ର ପୂର୍ଣ୍ଣତଃ ପଦ୍ୟାକାର, (୨) ଭାଷାଦୃଷ୍ଟିରୁ ପଦ୍ୟାକାରରେ ରଚିତ ଧର୍ମଶାସ୍ତ୍ର ଅପେକ୍ଷା ଧର୍ମସୂତ୍ର ଅଧିକ ଆଳଙ୍କାରିକ, (୩) ଧର୍ମ ସୂତ୍ରଗୁଡ଼ିକ ଧର୍ମଶାସ୍ତ୍ର ପରି ନିଜକୁ ଅପୌରୁଷେୟ ରୂପେ ବର୍ଣ୍ଣନା କରିନାହାନ୍ତି, (୪) ଧର୍ମ ସୂତ୍ରଗୁଡ଼ିକରେ ଆଲୋଚ୍ୟ ବିଷୟର ନିର୍ଦ୍ଦିଷ୍ଟ କ୍ରମ ରକ୍ଷା କରାଯାଇନଥିବା ସ୍ଥଳେ ଧର୍ମଶାସ୍ତ୍ରରେ ବିଷୟବସ୍ତୁ ଯଥାକ୍ରମେ ଆଲୋଚିତ ହୋଇଛି, (୫) କଳ୍ପସୂତ୍ରର ଅଂଶବିଶେଷ ରୂପେ ଧର୍ମସୂତ୍ର ଯେପରି ଶ୍ରୌତ ଓ ଗୃହ୍ୟସୂତ୍ର ସହିତ ସମ୍ବନ୍ଧିତ, ଧର୍ମଶାସ୍ତ୍ରରେ ସେପରି ଐତିହାସିକ ସମ୍ପର୍କ ନାହିଁ, (୬) ଧର୍ମସୂତ୍ରରେ ବୈଦିକ ବିଧାନକୁ ସ୍ଥଳବିଶେଷରେ ଅସ୍ୱୀକାର କରାଯାଇଥିଲେ ମଧ୍ୟ ଧର୍ମଶାସ୍ତ୍ରରେ ସେପରି ମତବାଦ ଆଦୃତ ହୋଇନାହିଁ ।୬।

ବିଷୟବସ୍ତୁ ଦୃଷ୍ଟିରୁ ଧର୍ମସୂତ୍ର ଓ ଗୃହ୍ୟସୂତ୍ର ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିଛି । ଗୃହ୍ୟସୂତ୍ରରେ ଯେପରି ଗାର୍ହସ୍ଥ୍ୟ ଜୀବନଧାରାର ପର୍ଯ୍ୟାଲୋଚନା କରାଯାଇଛି, ଧର୍ମସୂତ୍ରରେ ସେହିପରି ମୁଖ୍ୟତଃ ଆଚାର, ବ୍ୟବହାର ଓ ପରମ୍ପରାର ମାର୍ଗ ନିର୍ଦ୍ଦେଶ କରାଯାଇଛି ।୭। ବେଦର ଶାଖା ଅନୁସାରେ ଆଶ୍ୱଳାୟନ, ଶାଙ୍ଖ୍ୟାୟନ ଓ କୌଶୀତକୀ ଗୃହ୍ୟସୂତ୍ର ଋଗ୍‌ବେଦୀୟ, ବୌଧାୟନ, ଭାରଦ୍ୱାଜ, ଆପସ୍ତମ୍ବ, ହିରଣ୍ୟକେଶିନ୍, ମାନବ, ବୈଖାନସ, କାଠକ, ବାରାହ, ଅଗ୍ନିବେଶ,

୬ । Dharmasutra : A Study in their origin and development—Dr. S. C. Banerjee—P 8-27 .

୭ । History of Dharmashastra—Vol. I-Part-I, P-21

ଗୃହ୍ୟସୂତ୍ର ପ୍ରଭୃତି କୃଷ୍ଣଯଜୁର୍ବେଦୀୟ; ପାରସ୍କର, ବୈଜବାପ, ଗୃହ୍ୟସୂତ୍ର ଆଦି ଶୁକ୍ଳ ଯଜୁର୍ବେଦୀୟ; ଗୋଭିଲ, ଖାଦିର, ଜୈମିନୀୟ, ଦ୍ରାହ୍ୟାୟଣ ଗୃହ୍ୟସୂତ୍ରମାନ ସାମବେଦୀୟ ଏବଂ କୌଶିକ ଗୃହ୍ୟସୂତ୍ର ଅଥର୍ବବେଦୀୟ ବୋଲି ଜଣାଯାଏ । ବେଦାଙ୍ଗଭୂତ କଳ୍ପ-ପରମ୍ପରା ଅନୁସାରେ କେବଳ ଆପସ୍ତମ୍ବ, ହିରଣ୍ୟକେଶିନ୍ ଓ ବୌଧାୟନଙ୍କର ଶ୍ରୌତ, ଗୃହ୍ୟ ଓ ଧର୍ମ-ସୂତ୍ର ଉପଲବ୍ଧ ହୁଏ । ତେଣୁ ଆର୍ଯ୍ୟମାନେ ସ୍ୱଶାଖାର ଅନୁପଲବ୍ଧ ସୂତ୍ରକୁ ଅନ୍ୟ ଶାଖା ଅନୁସାରେ ଅଧ୍ୟୟନ କରିଥାନ୍ତି ।

୧ । **ଗୌତମ ଧର୍ମସୂତ୍ର**—ଗୌତମ ଧର୍ମସୂତ୍ର (୬୦୦-୪୦୦ ଖ୍ରୀଷ୍ଟପୂର୍ବ) ସାମବେଦର ରାଣାୟଣୀୟ ଶାଖାର ନଅଟି ବିଭାଗ ମଧ୍ୟରୁ ଅନ୍ୟତମ । ଲାଟ୍ୟାୟନ ଓ ଦ୍ରାହ୍ୟାୟଣ ଶ୍ରୌତସୂତ୍ର ତଥା ଗୋଭିଲ ଗୃହ୍ୟସୂତ୍ରର ଉଲ୍ଲେଖ ଅନୁଯାୟୀ ଗୌତମ ଜଣେ ଶିକ୍ଷକ ଥିଲେ । ଗୌତମ ଏକ ଗୋତ୍ର ବା ବଂଶର ନାମ ରୂପେ ମଧ୍ୟ ଅଭିହିତ । 'ଗୌତମ ଧର୍ମସୂତ୍ର' ସାମବେଦର ଧର୍ମସୂତ୍ର ବୋଲି ତନ୍ତ୍ରବାର୍ତ୍ତିକରୁ (୭୫୦-୭୦୦ ଖ୍ରୀଷ୍ଟାବ୍ଦ) ଜଣାଯାଏ ।

ସୂତ୍ରକାର ହରଦତ୍ତଙ୍କ ଉଲ୍ଲେଖ ଅନୁସାରେ ଗୌତମ ଧର୍ମସୂତ୍ର ତିନି ପ୍ରଶ୍ନ ଓ ଅଠେଇଶ ଅଧ୍ୟାୟରେ ବିଭକ୍ତ । ପ୍ରଥମ ଓ ଦ୍ୱିତୀୟ ପ୍ରଶ୍ନରେ ନଅଟି କରି ଓ ତୃତୀୟ ପ୍ରଶ୍ନରେ ଦଶ ଅଧ୍ୟାୟ ଅଛି । ଏଥିରେ ଥିବା ପ୍ରାୟ ନଅଶ' ନବେଟି ସୂତ୍ରରେ ମୁଖ୍ୟତଃ ଧର୍ମର ମୂଳସୂତ୍ର, ବ୍ରହ୍ମଚର୍ଯ୍ୟ, ଚତୁରାଶ୍ରମ, ବିବାହ, ପଞ୍ଚମହାଯଜ୍ଞ, ଗୁରୁଜନଙ୍କ ପ୍ରତି ସମ୍ମାନଜ୍ଞାପନ, ବ୍ରାହ୍ମଣ୍ୟବୃତ୍ତି, ଚତ୍ୱାରିଂଶତ୍ ସଂସ୍କାର, ଦୟାକ୍ଷମାଦି ଅଷ୍ଟବିଧ ଗୁଣ, ବ୍ରହ୍ମଚାରୀ ଓ ଗୃହସ୍ଥର କର୍ତ୍ତବ୍ୟ, ଚତୁର୍ବର୍ଣ୍ଣର କର୍ତ୍ତବ୍ୟ ଓ ଦାୟିତ୍ୱ, ରାଜଧର୍ମ, ଦଣ୍ଡବିଧାନ, ସାକ୍ଷ୍ୟ, ଅଶୌଚ, ଶ୍ରାଦ୍ଧ, ଉପାକର୍ମ, ଖାଦ୍ୟା-ଖାଦ୍ୟ ବିଚାର, ସ୍ତ୍ରୀଧର୍ମ ଓ ନିୟୋଗ, ଜପ-ତପ-ହୋମ-ଉପବାସ-ଦାନାଦି ଦ୍ୱାରା ପ୍ରାୟଶ୍ଚିତ୍ତ ବିଧି, ପ୍ରାୟଶ୍ଚିତ୍ତ ଭାବେ ଦଣ୍ଡବିଧାନ, ପାପାଚାରୀମାନଙ୍କର ବର୍ଗୀକରଣ, ମହାପାତକ ଓ ଉପପାତକ ନିର୍ଣ୍ଣୟ, ପ୍ରାୟଶ୍ଚିତ୍ତ ବିଧି, ନାନାବିଧ ହତ୍ୟାର ପ୍ରାୟଶ୍ଚିତ୍ତ, କୃଚ୍ଛ୍ର ଓ ଅତିକୃଚ୍ଛ୍ର ବ୍ରତ, ଚାନ୍ଦ୍ରାୟଣ, ସ୍ତ୍ରୀଧନ ଓ ଦ୍ୱାଦଶ ପ୍ରକାର ଦାୟାଦି ବିଷୟ ପର୍ଯ୍ୟାଲୋଚିତ ହୋଇଛି ।

ଏହି ଗ୍ରନ୍ଥଟି ପୂର୍ଣ୍ଣତଃ ଗଦ୍ୟାକାରରେ ରଚିତ । ଏଥିରେ ବେଦ, ବ୍ରାହ୍ମଣ, ବେଦାଙ୍ଗ, ଉପନିଷଦ୍, ପୁରାଣ, ଇତିହାସ, ଉପବେଦ, ଧର୍ମଶାସ୍ତ୍ର, ସାମବିଧାନ ବ୍ରାହ୍ମଣ, ତୈତ୍ତିରୀୟ ଆରଣ୍ୟକ, ବୈଖାନସଶାସ୍ତ୍ର, ଆନ୍ୱୀକ୍ଷିକୀ, ମନୁ ଧର୍ମସୂତ୍ର ପ୍ରଭୃତି ଉଦ୍ଧାର କରାଯାଇଛି ।

'ଗୌତମ ଧର୍ମସୂତ୍ର' ଆଲୋଚ୍ୟ ବିଷୟରେ ଏକ ପ୍ରାରମ୍ଭିକ ଉଦ୍ୟମ । ତେଣୁ ଏହାର ବୈଶିଷ୍ଟ୍ୟ ସଂକ୍ଷେପରେ ଉଲ୍ଲେଖନୀୟ । ଗୌତମଙ୍କ ଉଲ୍ଲେଖ ଅନୁସାରେ (୧) ଦୟାଦି ଅଷ୍ଟବିଧ ଗୁଣ ବ୍ୟତୀତ ବ୍ୟକ୍ତିବିଶେଷ ଦୀର୍ଘ ଚାଳିଶ ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ କରି ମଧ୍ୟ ବ୍ରହ୍ମସାଯୁଜ୍ୟ ଓ ବ୍ରହ୍ମସାଲୋକ୍ୟର ଅଧିକାରୀ ହୋଇପାରିବ ନାହିଁ, (୨) ଦେଶ, ଜାତି ଓ ପରିବାରର ଆଚାର ବେଦବିରୋଧୀ ହୋଇଥିଲେ ତାହା ଗୃହୀତ ହେବ ନାହିଁ, (୩) ସ୍ତ୍ରୀମାନେ

ସ୍ୱାଧୀନଭାବେ ଧର୍ମକାର୍ଯ୍ୟ କରିପାରିବେ ନାହିଁ, (୪) ରଜୋବତୀ ହୋଇ ନଥିବା କନ୍ୟାହିଁ ବିବାହଯୋଗ୍ୟା, (୫) କନ୍ୟାର ବିବାହ ନ ଦେଲେ ଅଭିଭାବକ ଦଣ୍ଡନୀୟ ହେବେ, (୬) ରଜୋବତୀ କନ୍ୟା ତୃତୀୟ ଋତୁପରେ ନିଜ ଇଚ୍ଛାରେ ବର ବରଣ କରିପାରିବେ; କିନ୍ତୁ ସେପରି ବିବାହ ପୂର୍ବରୁ କନ୍ୟା ପିତୃ-ପରିବାରର ଅଳଙ୍କାର ଫେରନ୍ତ ଦେଇଯିବ, (୮) ନିଃସନ୍ତାନ ସ୍ୱାମୀର ମୃତ୍ୟୁ ପରେ ସ୍ତ୍ରୀ ନିଯୋଗ ବ୍ୟବସ୍ଥାଦ୍ୱାରା ପୁତ୍ରୋତ୍ପାଦନ କରିପାରିବେ, (୯) ଗୋ-ମାଂସ କେବେହେଲେ ଭକ୍ଷଣୀୟ ନୁହେଁ ।

୨ । **ବୌଧାୟନ ଧର୍ମସୂତ୍ର**—ବୌଧାୟନ (୫୦୦-୨୦୦ ଖ୍ରୀଷ୍ଟପୂର୍ବ) କାଣ୍ୱବଂଶୀୟ ଓ କୃଷ୍ଣଯଜୁର୍ବେଦ ଶାଖାର ଗୁରୁ ଥିଲେ । ବୌଧାୟନ ଧର୍ମସୂତ୍ର ଗ୍ରନ୍ଥ ମୁଖ୍ୟତଃ ଅଣତିରିଶ ପ୍ରଶ୍ନରେ ବିଭକ୍ତ । ତନ୍ମଧ୍ୟରୁ ଏକରୁ ଏକୋଇଶ ପ୍ରଶ୍ନ ମଧ୍ୟରେ ଶ୍ରୌତସୂତ୍ର, ବାଇଶରୁ ପଚିଶ ମଧ୍ୟରେ ଦ୍ୱୈଧ, ଛବିଶରୁ ଅଠେଇଶ ମଧ୍ୟରେ କର୍ମାନ୍ତ, ଅଣତିରିଶରୁ ଏକତିରିଶ ମଧ୍ୟରେ ପ୍ରାୟଶ୍ଚିତ୍ତ, ବତିଶରେ ଶୁଲ୍ୱସୂତ୍ର, ତେତିଶରୁ ପଞ୍ଚତିରିଶ ମଧ୍ୟରେ ଗୃହ୍ୟସୂତ୍ର, ଛତିଶରେ ଗୃହ୍ୟ ପ୍ରାୟଶ୍ଚିତ୍ତ, ସତତିରିଶରେ ଗୃହ୍ୟ ପରିଭାଷା, ଅଠତିରିଶରୁ ଏକଚାଳିଶ ମଧ୍ୟରେ ଗୃହ୍ୟ ପଶ୍ରୀଷ୍ଟ, ବୟାଳିଶରୁ ଚଉରାଳିଶ ମଧ୍ୟରେ ପିତୃମେଧ, ପଞ୍ଚଚାଳିଶରେ ପ୍ରବର ଏବଂ ଛୟାଳିଶରୁ ଅଣଚାଶ ମଧ୍ୟରେ ଧର୍ମସୂତ୍ରର ଉଲ୍ଲେଖ ଅଛି ।

ବୌଧାୟନ ଧର୍ମସୂତ୍ର ଚାରୋଟି ପ୍ରଶ୍ନରେ ବିଭକ୍ତ । ପ୍ରଥମ ପ୍ରଶ୍ନରେ ଏଗାର, ଦ୍ୱିତୀୟରେ ଦଶ, ତୃତୀୟରେ ଦଶ ଓ ଚତୁର୍ଥରେ ଆଠଟି ଅଧ୍ୟାୟ ଅଛି । ଏହି ଅଧ୍ୟାୟଗୁଡ଼ିକରେ ଯଥାକ୍ରମେ ଧର୍ମର ମୂଳ (ଶିଷ୍ଟ-ପରିଷଦ—ଉତ୍ତର ଓ ଦକ୍ଷିଣ ଭାରତର ଆଚାର), ଗ୍ରନ୍ଥ-ଉପନୟନ କାଳ—ବ୍ରହ୍ମଚର୍ଯ୍ୟ, ବିବାହ, ମୃତ୍ତିକାପାତ୍ରଧାରଣ, ଦୈହିକ ଓ ମାନସିକ ଶୌଚ, ଦାୟଭାଗ, ଯଜ୍ଞବସ୍ତୁ ପାତ୍ର ଓ ଦ୍ରବ୍ୟାଦି ଶୁଦ୍ଧି, ଚତୁର୍ବର୍ଣ୍ଣ ଓ ଜାତିଭେଦ, ମିଶ୍ରିତ ଜାତି, ରାଜଧର୍ମ, ଅଷ୍ଟବିଧ ବିବାହ, ଅବକାଶ ଦିବସ, ପରାକ-କୃଚ୍ଛ୍ର-ଅତିକୃଚ୍ଛ୍ର ପ୍ରାୟଶ୍ଚିତ୍ତ, ଦାୟଭାଗ, ନିଯୋଗ, ଗୃହସ୍ଥ ଧର୍ମ, ଅଗ୍ନିହୋତ୍ର, ସନ୍ଧ୍ୟା, ଆଚମନ, ସୂର୍ଯ୍ୟପୂଜା, ତର୍ପଣ, ପଞ୍ଚମହାଯଜ୍ଞ, ଖାଦ୍ୟାଖାଦ୍ୟ, ଶ୍ରାଦ୍ଧ, ପୁତ୍ରପ୍ରାପ୍ତି, ସନ୍ନ୍ୟାସ, ଶାଳୀନ ଓ ଯାଯାବର ଧର୍ମ, ସନ୍ନିବର୍ତ୍ତୀନ, ବନବାସଧର୍ମ ଓ ଖାଦ୍ୟ, ଅଧର୍ମାଚାରର ପ୍ରାୟଶ୍ଚିତ୍ତ, ଅଘମର୍ଷଣ, ପ୍ରସୃତଯାବକ, ହୋମ, ଚାନ୍ଦ୍ରାୟଣ, ବେଦପାଠ, ଆତ୍ମଶୁଦ୍ଧି ଓ ଦ୍ରବ୍ୟଶୁଦ୍ଧି, ଅଖାଦ୍ୟଭକ୍ଷଣ ପ୍ରାୟଶ୍ଚିତ୍ତ, ପ୍ରାଣାୟାମ, ଗୁପ୍ତ ପ୍ରାୟଶ୍ଚିତ୍ତ, ସିଦ୍ଧ୍ୟୁପାୟ, ମନ୍ତ୍ରପ୍ରଶସ୍ତି ଇତ୍ୟାଦି ଆଲୋଚିତ ହୋଇଛି । ଗ୍ରନ୍ଥଟି ଗଦ୍ୟାକାରରେ ପ୍ରଣୀତ । ଏଥିରେ ତୈତ୍ତିରୀୟ ସଂହିତା, ବ୍ରାହ୍ମଣ, ଆରଣ୍ୟକ, ପୁରୁଷସୂକ୍ତ, ଉପନିଷଦ୍, ଚତୁର୍ବେଦ, ନିରୁକ୍ତ ସଂହିତା କାଣ୍ୱ, ବୌଧାୟନ, ଆପସ୍ତମ୍ବ, ସତ୍ୟାବାଡ, ହିରଣ୍ୟକେଶିନ୍, ଗୌତମ ପ୍ରଭୃତିଙ୍କ ନାମୋଲ୍ଲେଖ ଥିବାର ଦେଖାଯାଏ । ୮ ।

---

୮ । History of Dharmashastra—
Vol. I-Part-I; P-37, 40-47

ବୌଧାୟନ ଧର୍ମସୂତ୍ରରେ ଉତ୍ତର-ଭାରତର ପାଞ୍ଚଟି ଓ ଦକ୍ଷିଣ-ଭାରତର ପାଞ୍ଚଟି ପ୍ରଚଳିତ ଥିବା ବ୍ୟବହାରର ଉଲ୍ଲେଖ ଅଛି । ୯ । ସମ୍ପତ୍ତି ବିଭାଜନରେ ଜ୍ୟେଷ୍ଠାଂଶ ବ୍ୟବସ୍ଥା ରଥକାରର ଉପନୟନ, ଅଷ୍ଟବିଧ ବିବାହ ତର୍ପଣ, ବିନାୟକ ପୂଜାର ପ୍ରାଧାନ୍ୟକୁ ସେ ସ୍ୱୀକୃତ ଦେଇଛନ୍ତି । କିନ୍ତୁ ଅଭିନୟ ଓ ନାଟ୍ୟଶିକ୍ଷାକୁ ବୌଧାୟନ ଉପପାତକ ରୂପେ ଗ୍ରହଣ କରିଛନ୍ତି ।

୩ । **ଆପସ୍ତମ୍ବ ଧର୍ମସୂତ୍ର**—ଚରଣବ୍ୟୂହ ଅନୁସାରେ ଆପସ୍ତମ୍ବ (୪୫୦-୩୫୦ ଖ୍ରୀଷ୍ଟପୂର୍ବ) ଖାଣ୍ଡିକୀୟ ଶାଖାର ପାଞ୍ଚଟି ଶାଖା ମଧ୍ୟରୁ ଅନ୍ୟତମ । କୃଷ୍ଣ-ଯଜୁର୍ବେଦୀୟ ତୈତ୍ତିରୀୟ ଶାଖାର ଆପସ୍ତମ୍ବ କଳ୍ପସୂତ୍ର ତିରିଶ ପ୍ରଶ୍ନରେ ବିଭକ୍ତ । ତନ୍ମଧ୍ୟରେ ପ୍ରଥମ ଚବିଶିଟିରେ ଶ୍ରୌତଯଜ୍ଞ, ପଚିଶରେ ପରିଭାଷା, ଛବିଶ ଓ ସତେଇଶ ପ୍ରଶ୍ନରେ ଗୃହ୍ୟସୂତ୍ର, ଅଠେଇଶ ଓ ଅଣତିରିଶରେ ଧର୍ମସୂତ୍ର ଏବଂ ତିରିଶ ପ୍ରଶ୍ନରେ ଶୁଳ୍ବସୂତ୍ରର ଉଲ୍ଲେଖ ଅଛି । ପ୍ରତ୍ୟେକ ଦୁଇଟି ପ୍ରଶ୍ନ ଏଗାର ପଟଳରେ ଏବଂ ପ୍ରତ୍ୟେକ ଦୁଇଟି ପଟଳ ଯଥାକ୍ରମେ ବତିଶ ଓ ଅଣତିରିଶ କଣ୍ଡିକାରେ ବିଭକ୍ତ ।

ଏଥିରେ ଧର୍ମର ମୂଳସ୍ରୋତ, ଚତୁର୍ବର୍ଣ୍ଣ, ଆଚାର୍ଯ୍ୟ, ଉପନୟନ କାଳ, ବ୍ରହ୍ମଚାରୀର କାର୍ଯ୍ୟ, ବେଦପାଠ କାଳ ଓ ସ୍ଥାନ, ପଞ୍ଚମହାଯଜ୍ଞ (ଭୂତ, ମାନବ, ଦେବତା, ପିତୃ ଓ ସାଧୁ), ଗୁରୁଜନ ପ୍ରତି ସମ୍ମାନ, ଯଜ୍ଞୋପବୀତଗ୍ରହଣ କାଳ, ଆଚମନ ପ୍ରକାର, ଖାଦ୍ୟାଖାଦ୍ୟ ଓ ପେୟାପେୟ, ବର୍ଣ୍ଣାନୁସାରି ବୃତ୍ତି, ମହାପାତକ, ଆତ୍ମାନୁଶୀଳନ, ଅନୈତିକ ଦୋଷ, ହତ୍ୟା-ଜନିତ ପାତକର ପ୍ରାୟଶ୍ଚିତ୍ତ, ପତିତୋଦ୍ଧାରୋପାୟ, ବିବିଧ ପ୍ରାୟଶ୍ଚିତ୍ତ, ସ୍ନାତକ ଓ ବ୍ରତ, ଗୃହସ୍ଥ ଧର୍ମ, ଚଣ୍ଡାଳ, ପୌଲସ, ବୈଶ୍ୱଦେବ, ବିବାହିତର କର୍ତ୍ତବ୍ୟ, ଅତିଥିସତ୍କାର, ମଧୁପର୍କ, ଷଟ୍‌ବେଦାଙ୍ଗ, ପରିମିତ ଖାଦ୍ୟବିଧି, ଅଗ୍ନିହୋତ୍ରାଦି କର୍ମ, ମୃତ୍ୟୁବିଧି, ରାଜଧର୍ମ, ଷଟ୍‌ବିଧ ବିବାହ (ବ୍ରାହ୍ମ-ଆର୍ଷ-ଦୈବ-ଗାନ୍ଧର୍ବ-ଆସୁର-ରାକ୍ଷସ), ମରଣୋତ୍ତର ସମ୍ପତ୍ତିର ଉତ୍ତରାଧିକାର, ଶ୍ରାଦ୍ଧ, ଚତୁରାଶ୍ରମ, ବିଭିନ୍ନ ଦଣ୍ଡବିଧି ପ୍ରଭୃତି ଆଲୋଚିତ ହୋଇଛି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଆଚାର-ବ୍ୟବହାର ବିଷୟରେ ସ୍ତ୍ରୀଲୋକ ତଥା ବିଭିନ୍ନ ଜାତିର ଲୋକସାଧାରଣଙ୍କ ପରାମର୍ଶ ଗ୍ରହଣୀୟ ବୋଲି ଉଲ୍ଲେଖ କରାଯାଇଛି । ଆପସ୍ତମ୍ବ ବୈଦିକ ସଂହିତା ବ୍ୟତୀତ ବାଜସନେୟ ବ୍ରାହ୍ମଣ, ଉପନିଷଦ୍, ତୈତ୍ତିରୀୟ ଆରଣ୍ୟକ ବେଦାଙ୍ଗ, ମୀମାଂସା ପୁରାଣ ପ୍ରଭୃତିର ଉଦ୍ଧାର କରିଛନ୍ତି ।

ପୂର୍ବାଚାର୍ଯ୍ୟମାନଙ୍କ ଅପେକ୍ଷା ଆପସ୍ତମ୍ବ କେତେକ ବିଷୟରେ କଠୋର ଓ କେତେକ ବିଷୟରେ ଉଦାର ମତ ପୋଷଣ କରିଥିବାର ଦେଖାଯାଏ । ନିଯୋଗ ବ୍ୟବସ୍ଥା, ପୈଶାଚ ଓ ପ୍ରାଜାପତ୍ୟ ବିବାହ, ସଗୋତ୍ର ଓ ସପିଣ୍ଡ କନ୍ୟାଗ୍ରହଣ, ଜ୍ୟେଷ୍ଠାଂଶ ଓ ରଥକାରର ଉପନୟନକୁ ସେ ବିରୋଧ କରିବା ସଙ୍ଗେ ସଙ୍ଗେ ଗୋମାଂସଭକ୍ଷଣକୁ ଅନୁମୋଦନ କରିଛନ୍ତି ।

---

୯ । ଅନୁପନୀତେନ ସହ ଭୋଜନଂ ସ୍ତ୍ରିୟାସହଭୋଜନଂ ପର୍ଯ୍ୟୁଷିତ ଭୋଜନଂ ମାତୁଳପିତୃ-ସ୍ୱସୃଦୁହିତୃଗମନମିତି-ଉର୍ଣ୍ଣାବିକ୍ରୟ ସୀଧୁପାନମୁଭୟତୋଦଦ୍‌ଭିର୍ବ୍ୟବହାର ଆୟୁଧୀୟଙ୍କ ସମୁଦ୍ର ସଂଯାନମିତି—H. Dh. Vol-III-1663.

୪ । **ବଶିଷ୍ଠ ଧର୍ମସୂତ୍ର**—ବଶିଷ୍ଠ ଧର୍ମସୂତ୍ର(୩୦୦-୧୦୦ ଖ୍ରୀଷ୍ଟପୂର୍ବ)ରୁ ଋଗ୍‌ବେଦୀଙ୍କ ସହିତ ଅନ୍ୟାନ୍ୟ ଶାଖାର ବିଦ୍ୟାର୍ଥୀମାନେ ଅଧ୍ୟୟନ କରୁଥିବାର ଜଣାଯାଏ । ଏହାର ତିରିଶ ଅଧ୍ୟାୟ ମଧ୍ୟରେ ଯଥାକ୍ରମେ (୧) ଧର୍ମସ୍ୱରୂପ, ଆର୍ଯ୍ୟାବର୍ତ୍ତ, ପାପୀ, ବ୍ରାହ୍ମଣର ଅନ୍ୟ ତିନି ଜାତିରୁ କନ୍ୟାଗ୍ରହଣ, ଛଅ୍ ବିଧ ବିବାହ, ରାଜଧର୍ମ, (୨) ଚାରିବର୍ଣ୍ଣ ଓ ତାଙ୍କର କର୍ତ୍ତବ୍ୟ, ଆଚାର୍ଯ୍ୟ ଅନୁପନୀତର ଧର୍ମକାର୍ଯ୍ୟ ନ କରିବା, ଆପଦ୍ଧର୍ମ, ବ୍ରାହ୍ମଣର ବିଭିନ୍ନ ଦ୍ରବ୍ୟ ବିକ୍ରୟ ନିଷେଧ; (୩) ମୂର୍ଖ ବ୍ରାହ୍ମଣର ଅସ୍ୱୀକୃତି, ଆତତାୟୀ ନିରୂପଣ, ପରିଷଦଗଠନ, ଆଚମନ ଓ ଶୌଚବିଧି; (୪) ସଂସ୍କାର, ଅତିଥିସେବା, ଜନନ ଓ ମରଣାଶୌଚ, (୫) ସ୍ତ୍ରୀଧର୍ମ, (୬) ଆଚାର. (୭) ଆଶ୍ରମ-ଧର୍ମ, ଛାତ୍ରର କର୍ତ୍ତବ୍ୟ, (୮) ଗୃହସ୍ଥ ଧର୍ମ,(୯) ଆରଣ୍ୟକ ସାଧୁର କର୍ତ୍ତବ୍ୟ, ୧୦) ସନ୍ନ୍ୟାସଧର୍ମ, (୧୧) ସ୍ୱତନ୍ତ୍ରଭାବେ ମାନନୀୟ ଛଅଜଣ ବ୍ୟକ୍ତି (ପୁରୋହିତ, ଜାମାତା, ରାଜା, ପିଉସା, ମାମୁ ଓ ବିଦ୍ୟାର୍ଥୀ), ଶ୍ରାଦ୍ଧ, ଅଗ୍ନିହୋତ୍ର, ଉପନୟନ, ଭିକ୍ଷାବିଧି, ଅନୁପନୀତର ପ୍ରାୟଶ୍ଚିତ୍ତ, (୧୨) ବିଦ୍ୟାର୍ଥୀର କର୍ତ୍ତବ୍ୟ,(୧୩) ବେଦାଧ୍ୟୟନ, ଅବକାଶ, ଶିକ୍ଷା-ଧନ-ବୟସ-ସମ୍ପର୍କ-ବୃତ୍ତି ଅନୁସାରେ ସମ୍ମାନ ପ୍ରଦର୍ଶନ ବିଧି, ମାର୍ଗନିୟମାବଳୀ, (୧୪) ଖାଦ୍ୟାଖାଦ୍ୟ ବିଚାର, (୧୫) ଅନାଥଙ୍କ ପ୍ରତି କର୍ତ୍ତବ୍ୟ, (୧୬) ରାଜଧର୍ମ, ସାକ୍ଷୀଙ୍କ ଓ ବିଚାରାଳୟର ବିଧିବ୍ୟବସ୍ଥା, (୧୭) ପୁତ୍ର-ପ୍ରଶଂସା, ଦ୍ୱାଦଶବିଧ ସନ୍ତାନ, ସମ୍ପତ୍ତି ବିଭାଜନ, ନିଯୋଗ, ଦାୟଭାଗ, (୧୮) ପ୍ରତିଲୋମଜାତି ବିଚାର, (୧୯) ରାଜା ଓ ରାଜପୁରୋହିତର କର୍ତ୍ତବ୍ୟ, (୨୦) ଜ୍ଞାତ ଓ ଅଜ୍ଞାତ ପାପର ପ୍ରାୟଶ୍ଚିତ୍ତ, (୨୧) ଗୋହତ୍ୟା ଓ ବ୍ରାହ୍ମଣୀଗମନ ପ୍ରାୟଶ୍ଚିତ୍ତ, (୨୨) ଅଖାଦ୍ୟଭକ୍ଷଣ ପ୍ରାୟଶ୍ଚିତ୍ତ, (୨୩) ବ୍ରହ୍ମଚାରୀର ମଦ୍ୟପାନ ଓ ସହବାସଜନିତ ପାପର ପ୍ରାୟଶ୍ଚିତ୍ତ, (୨୪) କୃଚ୍ଛ୍ର ଓ ଅତିକୃଚ୍ଛ୍ର ବ୍ୟବସ୍ଥା, (୨୫) କ୍ଷୁଦ୍ର ପାପର ପ୍ରାୟଶ୍ଚିତ୍ତ, (୨୬ରୁ ୨୭) ପ୍ରାଣାୟାମ, ଗାୟତ୍ରୀ ଓ ବେଦମନ୍ତ୍ର ପାଠ ଇତ୍ୟାଦି, (୨୮) ସ୍ତ୍ରୀ-ପ୍ରଶଂସା, (୨୯) ବ୍ରହ୍ମଚର୍ଯ୍ୟ, ତପ, ଦାନ, (୩୦) ଧର୍ମ-ପ୍ରଶଂସା, ସତ୍ୟ ଓ ବ୍ରାହ୍ମଣ ବିଷୟମାନ ଆଲୋଚିତ ହୋଇଛି । ଗ୍ରନ୍ଥଟି ଗଦ୍ୟାକାରରେ ଉପଲବ୍ଧ । ଏଥିରେ ବୈଦିକ ସଂହିତା, ଐତରେୟ-ଶତପଥ-କାଠକ-ବାଜସନେୟ ବ୍ରାହ୍ମଣ, ତୈତ୍ତିରୀୟ ଆରଣ୍ୟକ ବେଦାନ୍ତ ଉପନିଷଦ୍, ବେଦାଙ୍ଗ, ହାରୀତ, ବୌଧାୟନ, ଗୌତମ, ଯମ, ବୈଖାନସ, ଅତ୍ରି ପ୍ରଭୃତିଙ୍କ ବାକ୍ୟାବଳୀ ପ୍ରମାଣ ରୂପେ ଉଦ୍ଧାର କରାଯାଇଛି ।

ବଶିଷ୍ଠ ଧର୍ମସୂତ୍ରରେ ଦ୍ୱାଦଶ ପ୍ରକାର ପୁତ୍ରଗ୍ରହଣ, ନିଯୋଗ ଓ ବାଳବିଧବାର ପୁନର୍ବିବାହକୁ ସ୍ୱୀକାର କରାଯାଇଛି । ପୂର୍ବାଚାର୍ଯ୍ୟମାନଙ୍କ ମତର ବିରୋଧ କରି ବଶିଷ୍ଠ ଶୂଦ୍ରା ସ୍ତ୍ରୀ ସହିତ ବ୍ରାହ୍ମଣର ବିବାହକୁ ଅସ୍ୱୀକାର କରିଛନ୍ତି । ପୂର୍ବରୁ ପ୍ରଚଳିତ ନଥିବା ପୋଷ୍ୟପୁତ୍ରଗ୍ରହଣ ବ୍ୟବସ୍ଥାକୁ ଅଧିକ ସରଳ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ବିଷୟରେ ଲିଖିତ ନଥିପତ୍ରକୁ ପ୍ରମାଣ ରୂପେ ସ୍ୱୀକୃତି ଦେଇଛନ୍ତି ।୧୦।

---

୧୦ । History of Dharmashastra—

V l-.-Part-, P-53 5 - 3, .05

୫ । ବିଷ୍ଣୁ ଧର୍ମସୂତ୍ର—ଯଜୁର୍ବେଦୀୟ (୩୦୦-୧୦୦ ଖ୍ରୀଷ୍ଟପୂର୍ବ) କଠ ଶାଖା ଅନ୍ତର୍ଗତ ବିଷ୍ଣୁ ଧର୍ମସୂତ୍ରରେ ଶହେଟି ଅଧ୍ୟାୟ ଅଛି । ଗ୍ରନ୍ଥଟି ସୂତ୍ର, ଶ୍ଳୋକ ଓ ଗଦ୍ୟାଦି ମିଶ୍ରିତ ଭାଷାରେ ଉପଲବ୍ଧ । ଏଥିରେ ପ୍ରାୟ ଦୁଇହଜାର ଆଠଶହ ଅଠେଇଶଟି ସୂତ୍ର ଥିବାର ଜଣାଯାଏ । ୧୧ ।

ବିଷ୍ଣୁ ଧର୍ମସୂତ୍ରରେ ଯଥାକ୍ରମେ (୧) ବର୍ଣ୍ଣାଶ୍ରମଧର୍ମ, (୨) ଚତୁର୍ବର୍ଣ୍ଣ, (୩) ରାଜଧର୍ମ, (୪) କାର୍ଷାପଣ, (୫) ଦଣ୍ଡବିଧି, (୬) ଋଣଦାନ ଓ ଗ୍ରହଣ, (୭) ତ୍ରିବିଧ ଅଭିଲେଖ, (୮) ସାକ୍ଷ୍ୟ, (୯) ସାଧାରଣ ଋଣବିଧି, (୧୦-୧୪) ଋଣଶୋଧ, (୧୫) ଦ୍ୱାଦଶବିଧ ପୁତ୍ର, (୧୬) ମିଶ୍ର-ବିବାହ ଓ ଜାତି, (୧୭) ସମ୍ପତ୍ତି ବିଭାଜନ, ଦାୟଭାଗ, ସ୍ତ୍ରୀଧନ, (୧୮) ଭିନ୍ନ ଭିନ୍ନ ସ୍ତ୍ରୀଜାତ ପୁତ୍ର ମଧ୍ୟରେ ସମ୍ପତ୍ତି ବିଭାଜନ, (୧୯) ମୃତାହକର୍ମ ଓ ଅଶୌଚବିଧି, (୨୦) ଯୁଗ, ମନ୍ୱନ୍ତର, କଳ୍ପ ଓ ମହାକଳ୍ପର ସମୟ-ସୀମା, (୨୧) ଅନ୍ତ୍ୟେଷ୍ଟିକ୍ରିୟା, ମାସିକ ଶ୍ରାଦ୍ଧ ଓ ସପିଣ୍ଡୀକରଣ, (୨୨) ମୃତାଶୌଚ ଓ ଜନନାଶୌଚ ବିଧି, (୨୩) ଦେହଶୁଦ୍ଧି, (୨୪) ବିବାହ, (୨୫) ସ୍ତ୍ରୀଧର୍ମ, (୨୬) ବିଭିନ୍ନ ଜାତୀୟା ସ୍ତ୍ରୀଙ୍କର ମାନ ନିର୍ଦ୍ଧାରଣ, (୨୭) ସଂସ୍କାର ଓ ଗର୍ଭାଧାନ, (୨୮) ବ୍ରହ୍ମଚାରୀର କର୍ତ୍ତବ୍ୟ, (୨୯) ଗୁରୁପୂଜା, (୩୦) ବେଦାଧ୍ୟୟନକାଳ, (୩୧) ପିତା, ମାତା ଓ ଗୁରୁ ସମ୍ମାନନୀୟ, (୩୨) ଅନ୍ୟାନ୍ୟ ସମ୍ମାନନୀୟ ବ୍ୟକ୍ତି, (୩୩) ପାପର ମୂଳସ୍ରୋତ, (୩୪) ଅତିପାତକ, (୩୫) ପଞ୍ଚ ମହାପାତକ, (୩୬) ଅନୁପାତକ, (୩୭) ଉପପାତକ, (୩୮-୪୨) ଅନ୍ୟାନ୍ୟ ପାତକ, (୪୩) ୨୧ ପ୍ରକାର ନରକ, (୪୪) ବିବିଧ ନୀଚ ଜନ୍ମାନ୍ତରର ପାପ, (୪୫) ପାପୀର ବିଭିନ୍ନ ରୋଗ, (୪୬-୪୮) କୃଚ୍ଛ୍ର, ସାନ୍ତପନ, ଚାନ୍ଦ୍ରାୟଣ ପ୍ରଭୃତିୟାବକ, (୪୯) ବାସୁଦେବଭକ୍ତର କର୍ତ୍ତବ୍ୟ, (୫୦-୫୫) ବିବିଧ ହତ୍ୟାକୃତ ପାପର ପ୍ରାୟଶ୍ଚିତ୍ତ, (୫୬) ଅଘମର୍ଷଣ, (୫୭) ପରିତ୍ୟାଜ୍ୟ ସମାଜ, (୫୮) ବିବିଧ ଧନ, (୫୯) ଗୃହସ୍ଥ ଧର୍ମ, (୬୦-୬୨) ଗୃହସ୍ଥର ନୈମିତ୍ତିକ କର୍ତ୍ତବ୍ୟ, (୬୩) ଜୀବନୋପାୟ, (୬୪-୬୭) ସ୍ନାନ, ତର୍ପଣ, ବାସୁଦେବପୂଜା, ନୈବେଦ୍ୟାର୍ପଣ, ଅତିଥିସେବା, (୬୮) ଖାଦ୍ୟ, (୬୯-୭୦) ସ୍ତ୍ରୀ-ସହବାସ ଓ ଶୟନବିଧି, (୭୧) ସ୍ନାତକର କର୍ତ୍ତବ୍ୟ, (୭୨) ଆତ୍ମସଂଯମ, (୭୩-୮୬) ନକ୍ଷତ୍ର ଓ ତିଥି ଭେଦରେ ବିବିଧ ଶ୍ରାଦ୍ଧ ଓ ଶ୍ରାଦ୍ଧଫଳ, (୮୭, ୮୮) ଗୋଦାନ ଓ ମୃଗଚର୍ମଦାନ, (୮୯) କାର୍ତ୍ତିକସ୍ନାନ, (୯୦) ବିବିଧ ଦାନ ପ୍ରଶସ୍ତି, (୯୧-୯୩) ବିବିଧ ସମାଜସେବା, (୯୪-୯୫) ବାନପ୍ରସ୍ଥ, (୯୬-୯୭) ସନ୍ନ୍ୟାସ, (୯୮-୯୯) ପୃଥ୍ୱୀ, ଲକ୍ଷ୍ମୀ ଓ ବାସୁଦେବଙ୍କ ପ୍ରଶସ୍ତି, (୧୦୦) ବିଷ୍ଣୁଧର୍ମସୂତ୍ର ପଠନ ଫଳ ବର୍ଣ୍ଣିତ ହୋଇଛି । ଏଥିରେ ଋଗ୍‌ବେଦ, ବ୍ରାହ୍ମଣ, ବେଦାଙ୍ଗ, ବ୍ୟାକରଣ, ଇତିହାସ, ଧର୍ମଶାସ୍ତ୍ର, ପୁରାଣ, ବୌଧାୟନ ଓ ବଶିଷ୍ଠ ଧର୍ମସୂତ୍ର, ମନୁ ଓ ଯାଜ୍ଞବଲ୍କ୍ୟ ସ୍ମୃତି ଇତ୍ୟାଦି ଉଦ୍ଧୃତ ହୋଇଛି । ବଶିଷ୍ଠ ଧର୍ମସୂତ୍ର ସହିତ ଏହାର ଘନିଷ୍ଠ ସମ୍ପର୍କ ଥିବାର ଦେଖାଯାଏ ।

ବିଷ୍ଣୁସ୍ମୃତିରେ ଏକୋଇଶ ପ୍ରକାର ନରକ ଓ ସାତବାରର ନାମୋଲ୍ଲେଖ ସହିତ ସତୀ-ପ୍ରଥାକୁ ସ୍ୱୀକୃତି ଦିଆଯାଇଛି । ତଦ୍‌ବ୍ୟତୀତ ଯାତ୍ରାକାଳୀନ ଶକୁନବିଚାର, ବାସୁଦେବପୂଜା,

୧୧ । Dharmasutra : A Study—P. 72.

ବରାହ ଅବତାର, ଶ୍ରୀ ପର୍ବତ ଓ ସପ୍ତର୍ଷି ନାମକ ପବିତ୍ର କ୍ଷେତ୍ର, ଗୋଦାବରୀ ଓ ଦାକ୍ଷିଣାତ୍ୟର ପଞ୍ଚନଦ ବିଷୟ ଏଥିରେ ବିଶେଷଭାବେ ବର୍ଣ୍ଣିତ ହୋଇଛି ।

୭ । **ହାରୀତ ଧର୍ମସୂତ୍ର**—ହାରୀତ ଜଣେ ପ୍ରାଚୀନ ସ୍ମୃତିକାର । ବୌଧାୟନ, ଆପସ୍ତମ୍ବ ଓ ବଶିଷ୍ଠ ଧର୍ମସୂତ୍ରରେ ହାରୀତଙ୍କ ଉକ୍ତି ପ୍ରମାଣ ରୂପେ ଉଲ୍ଲେଖ ଅଛି । ହାରୀତ କୃଷ୍ଣ-ଯଜୁର୍ବେଦୀୟ ଶାଖାର ସୂତ୍ରକାର ବୋଲି ଜଣାଯାଏ ।

ଏହି ଗ୍ରନ୍ଥର ତିରିଶଟି ଅଧ୍ୟାୟରେ ଅନ୍ୟାନ୍ୟ ଧର୍ମସୂତ୍ର ପରି ଧର୍ମର ମୂଳସ୍ରୋତ, ଉପକୁର୍ବାଣ ଓ ନୈଷ୍ଠିକ ବ୍ରହ୍ମଚର୍ଯ୍ୟ, ସ୍ନାତକ, ଗୃହସ୍ଥ, ବାନପ୍ରସ୍ଥ, ଖାଦ୍ୟାଖାଦ୍ୟ ବିଚାର, ଜନନ ଓ ମରଣ, ଅଶୌଚ, ଶ୍ରାଦ୍ଧ, ପଂକ୍ତିପାବନ, ସାଧାରଣ ଧର୍ମ, ପଞ୍ଚଯଜ୍ଞ, ବେଦାଧ୍ୟୟନ, ରାଜଧର୍ମ, ରାଷ୍ଟ୍ରଧର୍ମ, ନ୍ୟାୟବିଧି, ବିବିଧ ନିୟମ, ସ୍ୱାମୀ ଓ ସ୍ତ୍ରୀର କର୍ତ୍ତବ୍ୟ, ବିବିଧ ପାପ, ପ୍ରାୟଶ୍ଚିତ୍ତ, ପ୍ରାର୍ଥନାଦି ବିଷୟ ଥିବାର ବିଭିନ୍ନ ସ୍ମୃତି-ଗ୍ରନ୍ଥର ଉଦ୍ଧୃତିରୁ ଜଣାଯାଏ । ଏଥିରେ ବେଦ, ବେଦାଙ୍ଗ, ଧର୍ମଶାସ୍ତ୍ର, ଅଧ୍ୟାତ୍ମବିଦ୍ୟା ପ୍ରଭୃତିର ଉଦ୍ଧୃତିମାନ ଅଛି । ଏହାର ଭାଷା ଗଦ୍ୟପଦ୍ୟମିଶ୍ରିତ ।

ହାରୀତ ଧର୍ମସୂତ୍ରରେ ଅଷ୍ଟବିଧ ବିବାହକୁ ସ୍ୱୀକୃତି ଦେବା ସଙ୍ଗେ ସଙ୍ଗେ ଆର୍ଷ ଓ ପ୍ରାଜାପତ୍ୟ ବିବାହ ପରିବର୍ତ୍ତେ କ୍ଷାତ୍ର ଓ ମାନୁଷ ବିବାହର ଉଲ୍ଲେଖ ରହିଛି । ବ୍ରହ୍ମବାଦିନୀ ଓ ସଦ୍ୟବଧୂ ରୂପେ ଦ୍ୱିବିଧ ସ୍ତ୍ରୀ ମଧ୍ୟରୁ ପ୍ରଥମା ବେଦାଧ୍ୟୟନ କରିପାରିବେ । ଅଭିନୟବୃତ୍ତିଜୀବୀ ବ୍ରାହ୍ମଣ ଶ୍ରାଦ୍ଧ ଓ ବୈଦିକାନୁଷ୍ଠାନରେ ଅଂଶଗ୍ରହଣ କରିପାରିବେ ନାହିଁ ବୋଲି ଏଥିରେ ବର୍ଣ୍ଣିତ ହୋଇଛି ।

୭ । **ଶଙ୍ଖଲିଖିତ ଧର୍ମସୂତ୍ର**—ଶଙ୍ଖଲିଖିତ ଧର୍ମସୂତ୍ର (୩୦୦-୧୦୦ ଖ୍ରୀଷ୍ଟପୂର୍ବ) ଗ୍ରନ୍ଥାକାରରେ ଅଦ୍ୟାପି ଉପଲବ୍ଧ ନୁହେଁ । ମହାଭାରତର ବର୍ଣ୍ଣନା ଅନୁସାରେ 'ଶଙ୍ଖ' ଓ 'ଲିଖିତ' ନାମରେ ଦୁଇଭାଇ ସ୍ୱତନ୍ତ୍ର ଭାବେ ନିଜ ନିଜ ଆଶ୍ରମରେ ରହୁଥିଲେ । ଦିନେ ଲିଖିତ ଶଙ୍ଖ ନଥିବାବେଳେ ତାଙ୍କ ଆଶ୍ରମକୁ ଯାଇ ସେଠାରେ ଥିବା ଗଛରୁ ଫଳ ତୋଳି ଖାଉଥିଲେ । ଏହି ସମୟରେ ଶଙ୍ଖ ଫେରିଆସିଲେ । ଲିଖିତ ଫଳ ଖାଉଥିବା ଦେଖି ଶଙ୍ଖ କହିଲେ—ଫଳ କେଉଁଠୁ ଆଣିଲ ? ଲିଖିତ ହସି ହସି ସବୁକଥା ଜଣାଇବାପରେ ଶଙ୍ଖ କ୍ରୋଧାନ୍ୱିତ ହୋଇ କହିଲେ—ତୁମେ ଅପରାଧ କରିଛ । ତେଣୁ ରାଜା ସୁଦ୍ୟୁମ୍ନଙ୍କ ପାଖକୁ ଯାଇ ଦଣ୍ଡ ଗ୍ରହଣ କର । ଲିଖିତ ରାଜାଙ୍କ ସମସ୍ତ ଜଣାଇ ଦଣ୍ଡ ପ୍ରାର୍ଥନା କଲେ; କିନ୍ତୁ ଲିଖିତ ଜଣେ ଶୁଦ୍ଧଚରିତ୍ର ଓ ପଣ୍ଡିତ ବ୍ୟକ୍ତି ହୋଇଥିବାରୁ ରାଜା ଦଣ୍ଡ ଦେବାକୁ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ଲିଖିତଙ୍କର ବାରମ୍ବାର ଅନୁରୋଧରେ ରାଜା ବାଧ୍ୟ ହୋଇ ତାଙ୍କର ହସ୍ତଦ୍ୱୟ ଛେଦନ ନିମିତ୍ତ ଆଦେଶ ଦେଲେ । ପରେ ଲିଖିତ ପୁଣ୍ୟତୋୟା ବାହୁଦାରେ ସ୍ନାନକରି ସ୍ୱହସ୍ତଦ୍ୱୟ ଫେରିପାଇଥିଲେ । ପାଲି 'ଶର୍ଦ୍ଦନକାବ୍ୟ'ର ଉଲ୍ଲେଖ ଅନୁସାରେ ଏହି କାହାଣୀଟି ମହାଭାରତର ଶାନ୍ତିପର୍ବରେ ସନ୍ନିବେଶିତ ହୋଇଥିବାର ଦେଖାଯାଏ ।

'ଚରଣବ୍ୟୂହ'ର ଉଲ୍ଲେଖ ଅନୁସାରେ ଶୁକ୍ଳ ଯଜୁର୍ବେଦ ବାଜସନେୟୀ ଶାଖାରେ ଶଙ୍ଖଲିଖିତ ଧର୍ମସୂତ୍ର ଅଧ୍ୟୟନ କରାଯାଉଥିଲା । ଏହି ଧର୍ମସୂତ୍ର ଗଦ୍ୟାକାରରେ ଲିଖିତ । ଏଥିରେ ଗୌତମ ଓ ଆପସ୍ତମ୍ବ ଧର୍ମସୂତ୍ରବର୍ଣ୍ଣିତ ବିଷୟମାନ ସନ୍ନିବେଶିତ ହୋଇଛି ଏବଂ ବେଦାଙ୍ଗ, ସାଂଖ୍ୟ, ଯୋଗ, ଧର୍ମଶାସ୍ତ୍ର, ପ୍ରଜାପତି, ଅଙ୍ଗିରସ, ଉଶନା, ପ୍ରାଚେତସ, ବୃଦ୍ଧଗୌତମ, ଯମ, କାତ୍ୟାୟନ ପ୍ରଭୃତିଙ୍କ ଉକ୍ତିମାନ ଅଛି ।

ଶଙ୍ଖଲିଖିତ ଧର୍ମସୂତ୍ରରେ ବ୍ରାହ୍ମଣ ସ୍ୱବର୍ଣ୍ଣରୁ କନ୍ୟା ଗ୍ରହଣ କରିପାରିବ ବୋଲି ଉଲ୍ଲେଖ ଅଛି । ଶଙ୍ଖ ନିୟୋଗ ବ୍ୟବସ୍ଥା ସହିତ ସମ୍ପତ୍ତି ବିଭାଜନ ଓ ଉତ୍ତରାଧିକାର ବିଷୟରେ ଅଧିକ ଉଦାର ମତ ପୋଷଣ କରିଥିବାର ଜଣାଯାଏ ।

୮ । **ମାନବ ଧର୍ମସୂତ୍ର**—ମାନବ ଧର୍ମସୂତ୍ରର ଅସ୍ତିତ୍ୱ ବିଷୟରେ ବହୁ ଆଲୋଚକ ବହୁ ପ୍ରକାର ମତ ପୋଷଣ କରିଛନ୍ତି । ବଶିଷ୍ଠ ଧର୍ମସୂତ୍ରରେ ଦେବତା ଓ ଅତିଥି ଉଦ୍ଦେଶ୍ୟରେ ପଶୁବଧ କରଣୀୟ ବୋଲି ମାନବ ଧର୍ମସୂତ୍ରର ଉଦ୍ଧୃତି ଅଛି । ଅଶୌଚ ପ୍ରସଙ୍ଗରେ ଉଶନସ୍ ମନୁଙ୍କୁ ଉଦ୍ଧାର କରିଛନ୍ତି । ମନୁଙ୍କ ଅନୁସାରେ ତ୍ରୟୀ, ବେଦ, ବାର୍ତ୍ତା ଓ ଦଣ୍ଡନୀତି—ଏହି ବିଦ୍ୟାବିଷୟର ଅଧ୍ୟୟନ କରିବା ଉଚିତ ବୋଲି କାମନ୍ଦକୀୟ ନୀତିସାରରେ ଉଲ୍ଲେଖ ଅଛି । ଏତଦ୍‌ବ୍ୟତୀତ **କୌଟିଲ୍ୟ ଅର୍ଥଶାସ୍ତ୍ର**, ବୃହଦାରଣ୍ୟକୋପନିଷଦ୍‌ର ଶାଙ୍କର ଭାଷ୍ୟରେ ମାନବଧର୍ମଶାସ୍ତ୍ରର ଉଲ୍ଲେଖ ଅଛି । କିନ୍ତୁ ଏସବୁ ଉଦ୍ଧୃତିର ଅସ୍ତିତ୍ୱ ବିଷୟରେ ପ୍ରମାଣର ଅଭାବ ରହିଛି, କାରଣ ସ୍ମୃତି ଓ ନିବନ୍ଧ ଗ୍ରନ୍ଥରେ ଏପରି ଅନେକ ଉଦ୍ଧୃତି ଅଛି, ଯାହା ମୂଳ ଗ୍ରନ୍ଥରେ ନାହିଁ । 'ଚରଣବ୍ୟୂହ' ଅନୁସାରେ ମାନବଶାସ୍ତ୍ରଧାରା କୃଷ୍ଣ ଯଜୁର୍ବେଦ ମୈତ୍ରାୟଣୀୟ ଶାଖାର ବିଭାଗ ବିଶେଷ ମାତ୍ର । କୁମାରିଳ ଓ ବିଶ୍ୱରୂପ ବା ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟ ସୁରେଶ୍ୱର ପ୍ରଭୃତି ମାନବ-ଧର୍ମସୂତ୍ରର ସ୍ଥିତି ଅସ୍ୱୀକାର କରିଥିବାର ଦେଖାଯାଏ । ତେଣୁ ମାନବ ଧର୍ମସୂତ୍ରର ନବୀନ ଓ ସଂଶୋଧିତ ସଂସ୍କରଣ ରୂପେ ମନୁସ୍ମୃତିକୁ ଯେଉଁମାନେ ସ୍ୱୀକାର କରୁଛନ୍ତି, ତାହା ଗ୍ରହଣୀୟ ନୁହେଁ ।

ଅନ୍ୟ ପକ୍ଷରେ ମାନବ ଶ୍ରୌତସୂତ୍ର ଓ ମାନବ ଗୃହ୍ୟସୂତ୍ରର ଅସ୍ତିତ୍ୱ ଥିବା ହେତୁ କଳ୍ପ-ପରମ୍ପରା ଅନୁଯାୟୀ ମାନବଧର୍ମସୂତ୍ର ଥିବା ବିଶ୍ୱାସ କରାଯାଏ । କିନ୍ତୁ ସୂତ୍ରଚରଣ ପରମ୍ପରା ଅନୁସାରେ ପ୍ରଥମେ ଶ୍ରୌତ ଓ ଗୃହ୍ୟସୂତ୍ରମାନ ପ୍ରଣୀତ ହୋଇଥିଲା । ଦକ୍ଷିଣ-ଭାରତରେ ପ୍ରଚଳିତ ଥିବା କୃଷ୍ଣଯଜୁର୍ବେଦର ତିନୋଟି ଶାଖାର ଆପସ୍ତମ୍ବ, ବୌଧାୟନ ଓ ହିରଣ୍ୟକେଶିନ୍ ପ୍ରତିନିଧିତ୍ୱ କରିଥିଲେ । ଯେତେବେଳେ ଆର୍ଯ୍ୟ-ଦ୍ରାବିଡ଼ମିଶ୍ରିତ ପରମ୍ପରା ଉତ୍ତର-ଭାରତରେ ପ୍ରସାରିତ ହେଲା ସେତେବେଳେ ଆର୍ଯ୍ୟଧାରାର ସୁରକ୍ଷା ନିମିତ୍ତ ଧର୍ମସୂତ୍ରମାନ ପ୍ରାୟ ପ୍ରଥମ ଶତାବ୍ଦୀ ବେଳକୁ ପ୍ରଣୀତ ହେଲା । ତେଣୁ ମାନବଧର୍ମସୂତ୍ରର ଉପଲବ୍ଧି ପର୍ଯ୍ୟନ୍ତ ତାହାର ଅସ୍ତିତ୍ୱ ବିଷୟରେ ନିର୍ଦ୍ଦିଷ୍ଟ ବା ଦୃଢ଼ମତ ପ୍ରକାଶ କରିବା ସମ୍ଭବ ନୁହେଁ । (୧୨)

୧୨ । History of Dharmashastra
Vol-I-P.68, 121, 132-133, 137, 140-142.

୯ । **ଅର୍ଥଶାସ୍ତ୍ର—କୌଟିଲ୍ୟଙ୍କ**(୩୨୦-୩୦୦ ଖ୍ରୀଷ୍ଟପୂର୍ବ) ପ୍ରଣୀତ ଅର୍ଥଶାସ୍ତ୍ର ସର୍ବପ୍ରାଚୀନ । ଅର୍ଥଶାସ୍ତ୍ର ଧର୍ମଶାସ୍ତ୍ରର ଅଙ୍ଗରୂପେ ସ୍ୱୀକୃତ । ଶୌନକୀୟ ଚରଣବ୍ୟୂହର ଉଲ୍ଲେଖ ଅନୁଯାରେ ଅର୍ଥଶାସ୍ତ୍ର ଅଥର୍ବବେଦର ଏକ ଉପବେଦ । ଅର୍ଥଶାସ୍ତ୍ରକାର କୌଟିଲ୍ୟ, ବିଷ୍ଣୁଗୁପ୍ତ ଓ ଚାଣକ୍ୟ ନାମରେ ସୁବିଦିତ । ଅର୍ଥଶାସ୍ତ୍ର ଓ କୌଟିଲ୍ୟଙ୍କ ଉପରେ ସଂସ୍କୃତ ସାହିତ୍ୟର ଉଲ୍ଲେଖ ସହିତ ଶତ ଶତ ଗବେଷଣାତ୍ମକ ଗ୍ରନ୍ଥ ଓ ପ୍ରବନ୍ଧ ପ୍ରଣୀତ ହୋଇଛି ।

ଅର୍ଥବିଜ୍ଞାନକୁ ଅର୍ଥଶାସ୍ତ୍ର କୁହାଯାଏ । ମୋକ୍ଷ ନିମିତ୍ତ ଉଦ୍ଦିଷ୍ଟ ଚତୁର୍ବର୍ଗ ମଧ୍ୟରେ ଅର୍ଥ ଦ୍ୱିତୀୟ ସ୍ଥାନ ଅଧିକାର କରେ । ଅର୍ଥଶାସ୍ତ୍ର ରାଜନୀତି ବା ନୀତିଶାସ୍ତ୍ର ରୂପେ ପରିଚିତ । ଅଷ୍ଟାଦଶ ବିଦ୍ୟା ମଧ୍ୟରେ ଅର୍ଥଶାସ୍ତ୍ର ଅନ୍ୟତମ । ୧୩ । ଉପଲବ୍ଧ ଅର୍ଥଶାସ୍ତ୍ର ପନ୍ଦର ଅଧିକରଣ ଓ ଏକଶହ ପଚିଶ ଅଧ୍ୟାୟରେ ବିଭକ୍ତ । ଏହାର ଛ'ହଜାର ଶ୍ଳୋକ ମଧ୍ୟରେ ଶହେ ଅଶୀଟି ବିଷୟର ପର୍ଯ୍ୟାଲୋଚନା କରାଯାଇଛି । ଅଧିକରଣର ବିଷୟବସ୍ତୁକୁ ସଂକ୍ଷେପରେ ଉଲ୍ଲେଖ କରାଯାଇ-ପାରେ—(୧) ରାଜକୀୟ ଶିକ୍ଷା, ରାଜନୀତି ଓ ଆନ୍ୱୀକ୍ଷିକୀର ପ୍ରଗତି, ମନ୍ତ୍ରୀ ଓ ପୁରୋହିତଙ୍କ ଯୋଗ୍ୟତା, ଗୁପ୍ତଚର ବ୍ୟବସ୍ଥା, ସଭାସଦ୍, ରାଜଦୂତ, ଯୁବରାଜଙ୍କ ସୁରକ୍ଷା, ଅନ୍ତଃପୁର ପ୍ରତି କର୍ତ୍ତବ୍ୟ, ରାଜାଙ୍କର ବ୍ୟକ୍ତିଗତ ସୁରକ୍ଷା ପ୍ରଣାଳୀ, (୨) ବିଭିନ୍ନ ଶାସନାଧିକାରୀଙ୍କ କର୍ତ୍ତବ୍ୟ ଦୁର୍ଗ-ଦେଶ-ଖଣି, ପଥକର ଆଦାୟକାରୀର କର୍ତ୍ତବ୍ୟ, ଅର୍ଥ-ସମୀକ୍ଷକର କାର୍ଯ୍ୟାଳୟ, ରାଜଭଣ୍ଡାର, ରାଜକୀୟ ଅଭିଲେଖ, ମୂଲ୍ୟବାନ୍ ପ୍ରସ୍ତର ପରୀକ୍ଷା, ସ୍ୱର୍ଣ୍ଣାଧିକାରୀ, କୃଷିଜାତ ଓ ବନ୍ୟଦ୍ରବ୍ୟ ସହିତ ଯୁଦ୍ଧସାମଗ୍ରୀ ଓ ବ୍ୟବସାୟିକ ଭଣ୍ଡାର ଏବଂ ମାପ ଓ ଓଜନ ବିଭାଗ, ପାନଗୃହ, ବିଭିନ୍ନ ଦ୍ରବ୍ୟ ଗୃହ, ପଶୁହତ୍ୟାଗୃହ, ବେଶ୍ୟାଗୃହ, ବାଣିଜ୍ୟ, ଗୋଶାଳା, ସାଧାରଣ ବାସଗୃହ, ରାଜଧାନୀ ଓ ନଗରର ଅଧୀକ୍ଷକଙ୍କ କାର୍ଯ୍ୟ, (୩) ନ୍ୟାୟାଳୟ, ପ୍ରଶାସନିକ ବିଧି, ବିବାହ ପ୍ରକାର, ଦମ୍ପତିର କର୍ତ୍ତବ୍ୟ, ସ୍ତ୍ରୀଧନ, ଦ୍ୱାଦଶବିଧ ପୁତ୍ର ଓ ଅନ୍ୟାନ୍ୟ ନିୟମ, (୪) ବିପଦ ନିରାକରଣ, ରାଜକୀୟ କଳାକାର ଓ ବ୍ୟବସାୟୀଙ୍କ ସୁରକ୍ଷା, ପ୍ରାକୃତିକ ବିପଦର ପ୍ରତିକାର, ଦୁଷ୍ଟତା ନିବାରଣ, ଅପରାଧୀ ନିର୍ଣ୍ଣୟ, ବିବିଧ ଅପରାଧୀ ବନ୍ଧନ ବ୍ୟବସ୍ଥା, ଦୋଷ ସ୍ୱୀକାର ବ୍ୟବସ୍ଥା, ବିଭିନ୍ନ ଶାସକୀୟ ବିଭାଗର ସୁରକ୍ଷା, ବିବିଧ ଦଣ୍ଡବ୍ୟବସ୍ଥା, (୫) ବିବିଧ ଦୋଷ ନିମିତ୍ତ ଦଣ୍ଡବିଧାନ, (୬) ମଣ୍ଡଳଗଠନ ନିୟମ, ସାର୍ବଭୌମତାର ସପ୍ତଲକ୍ଷଣ, ରାଜାଙ୍କର ଅଷ୍ଟବିଧ ଗୁଣ, ଶାନ୍ତି,

---

୧୩ । (କ) "ଅଙ୍ଗାନି ବେଦାଶ୍ଚତ୍ୱାର ମୀମାଂସାନ୍ୟାୟବିସ୍ତରଃ ।
ଧର୍ମଶାସ୍ତ୍ରଂ ପୁରାଣଂ ଚ ବିଦ୍ୟାହ୍ୟେତାଚତୁର୍ଦ୍ଦଶ ॥
ଆୟୁର୍ବେଦୋ ଧନୁର୍ବେଦୋ ଗାନ୍ଧର୍ବ ଶ୍ଚେତି ତେତ୍ରୟଃ ।
ଅର୍ଥଶାସ୍ତ୍ରଂ ଚତୁର୍ଥଂ ଚ ବିଦ୍ୟାହ୍ୟଷ୍ଟାଦଶୈବତାଃ ॥"

(ଆଗ୍ନେୟ ସାର—ପୃ-୧୩)

(ଖ) "ଧର୍ମଶାସ୍ତ୍ରାନ୍ତର୍ଗତମେବ ରାଜନୀତିଲକ୍ଷଣମର୍ଥଶାସ୍ତ୍ରମିଦଂ ବିବକ୍ଷିତମ୍ ॥"

(ମିତାକ୍ଷରା ଯାଜ୍ଞବଲ୍କ୍ୟ—୨-୨୧)

ରାଜ୍ୟରେ ଉନ୍ନତି ନିମିତ୍ତ କଠିନ ପରିଶ୍ରମର ଆବଶ୍ୟକତା, ଷଟ୍ ରାଜ୍ୟଶାସନ ପ୍ରଣାଳୀ, ତ୍ରିଶକ୍ତି, (୭) ଏ ସମସ୍ତ ପ୍ରୟୋଗର ସୀମା, ଷଟ୍‌ଗୁଣ, ଯୋଦ୍ଧାମାନଙ୍କ ଅସନ୍ତୋଷର କାରଣ, ରାଜ୍ୟ ମିଶ୍ରଣ, ମିତ୍ର, ଧନ ଓ ଭୂମିଲାଭ କ୍ଷେତ୍ରରେ ସନ୍ଧି-ବ୍ୟବସ୍ଥା, ଲୁପ୍ତ ସାମର୍ଥ୍ୟଲାଭର ଉପାୟ, ନିରପେକ୍ଷ ରାଜଧର୍ମ, (୮) ରାଜା ରାଜ୍ୟ-ଜନସାଧାରଣ ଯୋଦ୍ଧାଙ୍କ ବିପଦ, (୯) ଆକ୍ରମଣକାରୀର କର୍ତ୍ତବ୍ୟ, ଆକ୍ରମଣର ସମୟ, ଯୋଦ୍ଧୃ ସଂଗ୍ରହ, ଆଭ୍ୟନ୍ତର ଓ ବାହ୍ୟ ବିପଦ, ଅସନ୍ତୋଷ, ରାଜଦ୍ରୋହ, (୧୦) ଯୁଦ୍ଧ, (୧୧) ବିଭିନ୍ନ ନିଗମ ବ୍ୟବସ୍ଥା, (୧୨) ଆବଳୀୟସ ଅର୍ଥାତ୍ ଦୁର୍ବଳ ରାଜାର କର୍ତ୍ତବ୍ୟ, (୧୩) ଆକ୍ରମଣ ଉପାୟ ଓ ଅଧିକୃତ ରାଜ୍ୟରେ ଶାନ୍ତି-ବ୍ୟବସ୍ଥା, (୧୪) ଶତ୍ରୁଜୟ ନିମିତ୍ତ ବିଭିନ୍ନ ପ୍ରକାର ଗୁପ୍ତବିଦ୍ୟା ଓ ଔଷଧି ଏବଂ (୧୫) ଗ୍ରନ୍ଥର ବିଭାଗ ଓ ବିଭାଗୀୟ ବିଷୟର ପର୍ଯ୍ୟାଲୋଚନା କରାଯାଇଛି ।

ଅର୍ଥଶାସ୍ତ୍ରରେ ମାନବ, ବାର୍ହସ୍ପତ୍ୟ, ଔଶନସ, ପାରାଶର, ଆମ୍ଭୀୟା, କାତ୍ୟାୟନ, କଣିଙ୍କ, କୌଣପଦନ୍ତ, ଘୋଟକମୁଖ, ଗୃହାଚଣ, ପରାଶର, ପିଶୁନ, ପିଶୁନପୁତ୍ର, ଭାରଦ୍ୱାଜ, ଭାଟବ୍ୟାଧି, ବିଶାଳାକ୍ଷ ପ୍ରଭୃତିଙ୍କ ନାମୋଲ୍ଲେଖ ଅଛି । ତଦ୍‌ବ୍ୟତୀତ ବେଦ, ବେଦାଙ୍ଗ, ଇତିହାସ, ପୁରାଣ, ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, ସାଂଖ୍ୟଯୋଗ ପ୍ରଭୃତିର ସୂଚନାମାନ ଧର୍ମଶାସ୍ତ୍ରରୁ ଉପଲବ୍‌ଧ ହୁଏ ।

ପଣ୍ଡିତ କୌଟିଲ୍ୟ ମୌର୍ଯ୍ୟଯୁଗୀୟ ଭାରତର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଧାର୍ମିକ ଜୀବନର ବହୁ ଜ୍ଞାତବ୍ୟ ତଥ୍ୟକୁ ଅର୍ଥଶାସ୍ତ୍ରରେ ଉପସ୍ଥାପିତ କରିଥିବାର ଦେଖାଯାଏ । କୌଟିଲ୍ୟ ଯାଜ୍ଞବଲ୍‌କ୍ୟଙ୍କ ପରି ବିଚାରର ଚାରୋଟି ଧାରା (ଅଭିଯୋଗ, ଉତ୍ତର, ପ୍ରମାଣ ଓ ନିଷ୍ପତ୍ତିବାରାୟ) ଏବଂ ପ୍ରମାଣର ଲିଖିତ ନଥି, ସାକ୍ଷ୍ୟ ଓ ନିଦାନ ବିଷୟଗୁଡ଼ିକୁ ସ୍ପଷ୍ଟ କରିନାହାନ୍ତି । କୌଟିଲ୍ୟଙ୍କ ମତରେ ନିଃସନ୍ତାନ ବ୍ୟକ୍ତିର ବିଧବା ପତ୍ନୀ ବା ମାତା, ବନ୍ଧୁ ସମ୍ପତ୍ତିର ଉତ୍ତରାଧିକାରୀ ହୋଇପାରିବେ ନାହିଁ । ସ୍ୱାମୀର ଜୀବିତାବସ୍ଥାରେ ସ୍ତ୍ରୀ ମରିଗଲେ ସ୍ତ୍ରୀଧନ ପୁଅ ଓ ଝିଅ ବା ସ୍ୱାମୀ ପାଇପାରିବେ । ମନୁ ନିୟୋଗ ବ୍ୟବସ୍ଥାକୁ ଅସ୍ୱୀକାର କରିଥିବା ସ୍ଥଳେ କୌଟିଲ୍ୟ ତାହାକୁ ଅନୁମୋଦନ କରିଛନ୍ତି । ମନୁଙ୍କ ପରି କୌଟିଲ୍ୟ ଅଠର ପ୍ରକାର ବ୍ୟବହାର ବିଧିର ଉଲ୍ଲେଖ କରିଛନ୍ତି ।

କୌଟିଲ୍ୟଙ୍କ ଅନୁସାରେ ଉଚ୍ଚଜାତୀୟା ସ୍ତ୍ରୀଠାରୁ ଜନ୍ମିତ ବ୍ରାହ୍ମଣ-ସନ୍ତାନ ସମ୍ପତ୍ତିର ପୂର୍ଣ୍ଣ ଅଧିକାରୀ ହେବ । ନୀଚ ଜାତୀୟା ସ୍ତ୍ରୀଠାରୁ ଜନ୍ମିତ ସନ୍ତାନ ଏକ-ତୃତୀୟାଂଶ ସମ୍ପତ୍ତି ପାଇପାରିବ । ବିଧବା ତଥା ସଧବା, ଯାହାର ପତି ବିଦେଶ ଯାଇ ବର୍ଷ-ବର୍ଷ ଧରି ଫେରିନାହିଁ ବା ଯେ ସ୍ତ୍ରୀକୁ ପରିତ୍ୟାଗ କରିଛି ବା ପତି କ୍ଲୀବ ଓ ପତିତ, ସେ ପୁନର୍ବିବାହ କରିପାରିବେ । (୧୪) ଧର୍ମସଂଗତ ବିବାହ-ବିଚ୍ଛେଦ ନ ହେଲେ ମଧ୍ୟ ଆବଶ୍ୟକ ସ୍ଥଳେ

---

୧୪ । "ନୀଚତ୍ୱଂ ପରଦେଶଂ ବା ପ୍ରସ୍ଥିତୋ ରାଜକିଲ୍ବିଷୀ ।
ପ୍ରାଣାଭିହନ୍ତା ପତିତସ୍ତ୍ୟାଜ୍ୟଃ କ୍ଲୀବୋଽପି ବା ପତିଃ ॥"

(କୌଟିଲୀୟ ଅର୍ଥଶାସ୍ତ୍ର—୩-୨-୫୯)

ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କ ସ୍ୱୀକୃତି ମତେ ପରସ୍ପର ସ୍ତ୍ରଡ଼ପତ୍ର ଦେଇପାରିବେ । ଚୋର ଧରିବା ଉଦ୍ଦେଶ୍ୟରେ ଜୁଆଖେଳ କରାଯାଇପାରେ । ରାଜାଙ୍କର ସାତ ବା ଆଠଜଣିଆ ମନ୍ତ୍ରିମଣ୍ଡଳକୁ ମନୁ ସ୍ୱୀକାର କରୁଥିବାବେଳେ ଅର୍ଥଶାସ୍ତ୍ରରେ ବାରଜଣିଆ ମନ୍ତ୍ରିମଣ୍ଡଳକୁ ଅନୁମୋଦନ କରାଯାଇଛି । ସେ ରାଜ୍ୟଶାସନ ପାଇଁ ପଚଶଟି ଶାସକୀୟ ବିଭାଗାଧ୍ୟକ୍ଷଙ୍କ ସହିତ ସମାହର୍ତ୍ତା, ପ୍ରଦେଷ୍ଟା, ଧର୍ମସ୍ଥ ଅଧିକାରୀଙ୍କ ବିଶେଷ କର୍ତ୍ତବ୍ୟ ବିଷୟ ଉଲ୍ଲେଖ କରିଛନ୍ତି ।

କୌଟିଲ୍ୟଙ୍କ ଅନୁସାରେ ଅପରାଧୀ ରାଜକର୍ମଚାରୀ ଦଣ୍ଡନୀୟ । ଜଣେ ସ୍ତ୍ରୀଲୋକ ସ୍ୱାମୀର ସମ୍ପର୍କୀୟ, ପଣ୍ଡିତ, ଗ୍ରାମର ମୁଖ୍ୟ ତଥା ସାଧୁଙ୍କର ଗୃହକୁ ଯାଇପାରିବ । ବଳପୂର୍ବକ ସ୍ତ୍ରୀ ବା ପୁରୁଷକୁ ଆୟତ୍ତାଧୀନ ବା ବନ୍ଦୀକୁ ମୁକ୍ତ କରିଥିବା ବ୍ୟକ୍ତି ଦଣ୍ଡନୀୟ । ଚୋର, ଚୋରତୁଲ୍ୟ ବ୍ୟବସାୟୀ, ବେଶ୍ୟା, ଅଭିନୟବୃତ୍ତିଧାରୀ, ଔଷଧ ବ୍ୟବସାୟୀ, ପ୍ରବଞ୍ଚକ-ମାନଙ୍କ ପ୍ରତି ଦେଶର ହିତଦୃଷ୍ଟିରୁ ରାଜା ସତର୍କ ଦୃଷ୍ଟି ଦେବେ । ଏତଦ୍‌ବ୍ୟତୀତ ଚତୁର୍ବର୍ଣ୍ଣ, ବର୍ଣ୍ଣଧର୍ମ, ଗାର୍ହସ୍ଥ୍ୟ, ବ୍ରହ୍ମଚର୍ଯ୍ୟ ଓ ସନ୍ନ୍ୟାସଧର୍ମ, ଧର୍ମାର୍ଥକାମମୋକ୍ଷସେବା, ରାଜଶିକ୍ଷା, ରାଜଧର୍ମ, ରାଜ୍ୟଶାସନ ବିଷୟାଦିର ପର୍ଯ୍ୟାଲୋଚନା ଅର୍ଥଶାସ୍ତ୍ରର ବୈଶିଷ୍ଟ୍ୟ ପ୍ରତିପାଦନ କରିଥାଏ ।

୧୦ । **ବୈଖାନସ ଧର୍ମପ୍ରଶ୍ନ**—ବୈଖାନସ (୩୦୦-୪୦୦ ଖ୍ରୀଷ୍ଟାବ୍ଦ) କୃଷ୍ଣ-ଯଜୁର୍ବେଦ ଶାଖା ଶ୍ରୌତସୂତ୍ର ଅନ୍ତର୍ଗତ । ଗୌତମ, ବୌଧାୟନ ଓ ବଶିଷ୍ଠ ଧର୍ମସୂତ୍ରରେ ବୈଖାନସ ଉଦ୍ଧୃତ ହୋଇଛନ୍ତି । ଏହି ଗ୍ରନ୍ଥଟି ତିନୋଟି ପ୍ରଶ୍ନ ଓ ଏକଚାଳିଶ ଖଣ୍ଡରେ ବିଭକ୍ତ ।

ଏଥିରେ (୧) ଚତୁର୍ବିଧ ବର୍ଣ୍ଣ, ଆଶ୍ରମ, ବ୍ରହ୍ମଚାରୀ ଓ ଗୃହସ୍ଥ (ଶାଲୀନ, ଯାଯାବର, ଘୋରାଚାରିକ ଓ ବାର୍ତ୍ତାବୃତ୍ତି ବା କୃଷିଜୀବୀ), ସପତ୍ନୀକ ବାନପ୍ରସ୍ଥ (ଔଦୁମ୍ବର, ବୈରିଞ୍ଚ, ବାଲଖିଲ୍ୟ ଓ ଫେନପ) ଓ ଅପତ୍ନୀକ ବାନପ୍ରସ୍ଥ (କୁଟୀଚକ, ବାହୂଦକ, ହଂସ ଓ ପରମହଂସ) ଏବଂ ସକାମ ଓ ନିଷ୍କାମ କର୍ମ, ପ୍ରବୃତ୍ତି ଓ ନିବୃତ୍ତି ଯୋଗ, (୨) ବାନପ୍ରସ୍ଥ, ସନ୍ନ୍ୟାସ, ସନ୍ନ୍ୟାସୀର ଦୈନିକ କର୍ମ, ଆଚମନ, ସନ୍ଧ୍ୟା, ଅଭିବାଦନ, ଅନଧ୍ୟାୟଦିବସ, ସ୍ନାନ, ବ୍ରହ୍ମଯଜ୍ଞ, ଖାଦ୍ୟାଖାଦ୍ୟ-ବିଚାର, (୩) ଗୃହସ୍ଥଧର୍ମ, ମାର୍ଗରେ ଯାତାବିଧି, ପାତ୍ରଶୁଦ୍ଧି, ଦ୍ରବ୍ୟଶୁଦ୍ଧି, ସନ୍ନ୍ୟାସୀର ଅନ୍ତ୍ୟେଷ୍ଟିକ୍ରିୟା, ଅନୁଲୋମ ଓ ପ୍ରତିଲୋମ ବିଧି, ବ୍ରାତ୍ୟ, ଆୟୁର୍ବେଦର ଅଷ୍ଟାଙ୍ଗ ଓ ଅଷ୍ଟାଙ୍ଗଯୋଗ, ବିଷ୍ଣୁଙ୍କ ଦ୍ୱାଦଶ ନାମ ପ୍ରଭୃତି ଆଲୋଚିତ ହୋଇଛି ।

ବୈଖାନସ ଗୃହ୍ୟସୂତ୍ରରେ ଥିବା ସାତୋଟି ପ୍ରଶ୍ନରୁ ତିନୋଟିରେ ଧର୍ମ ଓ ଗୋଟିକରେ ଗୋତ୍ର, ପ୍ରବର, ଅନ୍ୟ ତିନୋଟିରେ ଅଗ୍ନି, ବେଦ ଓ ବୈଦିକ ଦେବତାଙ୍କ ଉଦ୍ଦେଶ୍ୟରେ ଆହୁତିଦାନ, ବିଷ୍ଣୁମୂର୍ତ୍ତିପୂଜା, ଗ୍ରହଶାନ୍ତି ପ୍ରଭୃତି ବିଷୟ ଆଲୋଚିତ ହୋଇଅଛି ।

୧୧ । **ଆତ୍ରେୟ ଧର୍ମଶାସ୍ତ୍ର**—ଅତ୍ରିଙ୍କ ନାମରେ ଅତ୍ରିସ୍ମୃତି, ଅତ୍ରି ସଂହିତା, ଲଘୁ ଅତ୍ରିସ୍ମୃତି, ବୃଦ୍ଧାତ୍ରେୟ ସ୍ମୃତି ପ୍ରଭୃତି ଗ୍ରନ୍ଥ ପ୍ରଚଳିତ ଥିବାର ଦେଖାଯାଏ । ଅତ୍ରି ସଂହିତାରେ

ଗୁରୁପୂଜା, ବର୍ଣ୍ଣଧର୍ମ, ଶୁଦ୍ଧି, ଯମ, ନିୟମ, ଖାଦ୍ୟାଖାଦ୍ୟ, ପେୟାପେୟ, ଜନନ-ମରଣାଶୌଚ, ଚାନ୍ଦ୍ରାୟଣ, ସାନ୍ତପନ, କୃଚ୍ଛ୍ର, ଶ୍ରାଦ୍ଧ ପ୍ରଭୃତି ଆଲୋଚିତ ହୋଇଛି ।

ଅତ୍ରି ଜଣେ ପ୍ରାଚୀନ ଧର୍ମଶାସ୍ତ୍ରକାର ବୋଲି ମନୁଙ୍କ ଉକ୍ତିରୁ ଜଣାଯାଏ । ଆତ୍ରେୟ ଧର୍ମଶାସ୍ତ୍ର ଗ୍ରନ୍ଥଟି ନଅଟି ଅଧ୍ୟାୟରେ ବିଭକ୍ତ । ଏଥିରେ ଦାନ, ଜପ, ତପ, ବୈଦିକ ମନ୍ତ୍ରାବଳୀ, ଗୁପ୍ତ ପ୍ରାୟଶ୍ଚିତ୍ତ, ଯୋଗ ଓ ଯୋଗାଙ୍ଗ ପ୍ରଭୃତିର ଉଲ୍ଲେଖ ରହିଛି । ଗ୍ରନ୍ଥଟି ଗଦ୍ୟ-ପଦ୍ୟ-ମିଶ୍ରିତ ଭାଷାରେ ଉପଲବ୍ଧ ।

ଏଥିରେ ଆପସ୍ତମ୍ବ, ଯମ, ବଶିଷ୍ଠ, ଶାତାତପ, ବେଦାନ୍ତ, ସାଂଖ୍ୟ, ଯୋଗ, ପୁରାଣ, ଭାଗବତ ପ୍ରଭୃତିର ଉଲ୍ଲେଖ ଅଛି । ଆତ୍ରେୟ ଧର୍ମଶାସ୍ତ୍ରରେ ସର୍ବପ୍ରଥମ ପୋଷ୍ୟପୁତ୍ର-ଗ୍ରହଣ ବିଧି, ସପ୍ତ ଅନ୍ତ୍ୟଜ ଧୋବା, ଚମାର, ନଟ, ବୁରୁଡ଼, କୈବର୍ତ୍ତ, ମେଦ ଓ ଭିଲ୍ଲ ଏବଂ ଯାତ୍ରା, ବିବାହଯାତ୍ରା, ବୈଦିକ ଯଜ୍ଞ ଓ ଅନ୍ୟାନ୍ୟ ଉତ୍ସବରେ ଛୁଆଁ-ଅଛୁଆଁ ଭେଦଭାବ ବର୍ଜନୀୟ ବୋଲି ଉଲ୍ଲେଖ କରାଯାଇଛି । ଏହାହିଁ ଆତ୍ରେୟ ଧର୍ମଶାସ୍ତ୍ରର ବୈଶିଷ୍ଟ୍ୟ ।

୧୬ । ଔଶନସ ଧର୍ମଶାସ୍ତ୍ର—ଉଶନସ୍ ରାଜନୀତି ବିଷୟରେ ଗ୍ରନ୍ଥ ରଚନା କରିଥିଲେ । ଔଶନସ ଧର୍ମଶାସ୍ତ୍ର ସାତଟି ଅଧ୍ୟାୟରେ ବିଭକ୍ତ । ଏଥିରେ ଜନନମରଣାଶୌଚ, ଦ୍ରବ୍ୟଶୁଦ୍ଧି, ଚତୁର୍ବର୍ଣ୍ଣ ଓ ଅନ୍ୟାନ୍ୟ ଜାତି, ବ୍ରାହ୍ମଣଧର୍ମ, ଶ୍ରାଦ୍ଧକଳ୍ପ, ଚତୁର୍ଦ୍ଦଶ ବିଦ୍ୟା ପ୍ରଭୃତି ହାରୀତ, ଶୌନକ, ଗୌତମ, ବଶିଷ୍ଠ ପ୍ରଭୃତିଙ୍କ ଉକ୍ତି ସହିତ ଆଲୋଚିତ ହୋଇଅଛି ।

ଅର୍ଥଶାସ୍ତ୍ର ତଥା ମହାଭାରତର ଉଲ୍ଲେଖ ଅନୁସାରେ ଶାସନ, ନୀତି, ରାଜନୀତି ବିଷୟରେ ଏବଂ ଟୀକାକାର ହରଦତ୍ତଙ୍କ ଅନୁଯାୟୀ ଆଚାର, ବ୍ୟବହାର ଓ ପ୍ରାୟଶ୍ଚିତ୍ତ ଆଦି ବିଷୟରେ ଉଶନସ୍ ଧର୍ମସୂତ୍ର ଗ୍ରନ୍ଥ ରଚନା କରିଥିଲେ । ଔଶନସ୍‌ଙ୍କ ଉଲ୍ଲେଖ ଅନୁସାରେ ପୁତ୍ର ପିତାର ଋଣ ପରିଶୋଧ କରିବା ପାଇଁ ବାଧ୍ୟ ନୁହେଁ । ଅନ୍ଧ, କାଲ, ବୃଦ୍ଧ ପୁରୁଷ, ସ୍ତ୍ରୀ ବା ବାଳକକୁ ସାକ୍ଷୀରୂପେ ଗ୍ରହଣ କରାଯାଇପାରେ ।

ଏତଦ୍‌ବ୍ୟତୀତ ପ୍ରାଚୀନ ଧର୍ମସୂତ୍ରକାରଙ୍କ ସହିତ ପରବର୍ତ୍ତୀ ସ୍ମୃତିକାର, ଟୀକାକାର ତଥା ନିବନ୍ଧକାରମାନଙ୍କ ଉକ୍ତିରୁ ଅତ୍ରି, ଉଶନସ୍, କଣ୍ୱ, କାଣ୍ୱ, କଶ୍ୟପ, କାଶ୍ୟପ, ଗାର୍ଗ୍ୟ, ଚ୍ୟବନ, ଜାତୁକର୍ଣ୍ଣ୍ୟ, ଦେବଳ, ପୈଠୀନସି, ବୁଦ୍ଧ, ବୃଦ୍ଧ ବୃହସ୍ପତି, ବୃଦ୍ଧ ଆତ୍ରେୟ, ଭରଦ୍ୱାଜ, ଭାରଦ୍ୱାଜ, ଶାତାତପ, ସୁମନ୍ତୁ, ହିରଣ୍ୟକେଶିନ୍ ପ୍ରଭୃତି ଧର୍ମଶାସ୍ତ୍ରର ବିଭିନ୍ନ ବିଭାଗକୁ ଆଧାର କରି ସୂତ୍ରଗ୍ରନ୍ଥମାନ ରଚନା କରିଥିବାର ଜଣାଯାଏ । (୧୫)

ଧର୍ମସୂତ୍ରରେ ଆଲୋଚିତ ହୋଇଥିବା ବିଷୟଗୁଡ଼ିକୁ ମୁଖ୍ୟତଃ ଆଚାର, ପ୍ରାୟଶ୍ଚିତ୍ତ, ବ୍ୟବହାର ଓ ରାଜଧର୍ମ ରୂପେ ଚାରିଭାଗରେ ବିଭକ୍ତ କରାଯାଇପାରେ । ଆଚାର ଭାଗରେ

୧୫ । History of Dharmashastra-Vol-I,Pt.-I,P-258,261- 99.

ସଂସ୍କାର, ଶ୍ରାଦ୍ଧ, ଅଶୌଚ, ଦ୍ରବ୍ୟଶୁଦ୍ଧି ଅନ୍ତର୍ଗତ । ପ୍ରାୟଶ୍ଚିତ୍ତ ଭାଗରେ ପ୍ରାୟଶ୍ଚିତ୍ତର ସ୍ୱରୂପ, ପାପର ବିଭାଗ, ପାପମୁକ୍ତ ବ୍ୟବସ୍ଥାର ବର୍ଣ୍ଣନା ରହିଛି । ବ୍ୟବହାର ଭାଗରେ ବିଧିର ଧାରା ଓ ଦାୟଭାଗ, ରାଜଧର୍ମ ଭାଗରେ ରାଜକୋଷ, ରାଜାର କର୍ତ୍ତବ୍ୟ, ରାଜଗୃହ, ଗ୍ରାମଶାସନ, ରାଜ୍ୟର ବିଭିନ୍ନ ପ୍ରଶାସନିକ ବିଭାଗ, ରାଜନୀତି ଓ ବିଜିତ ରାଜ୍ୟଶାସନ ବ୍ୟବସ୍ଥାର ଉଲ୍ଲେଖ ଅଛି । ତଦ୍‌ବ୍ୟତୀତ ଏଥିରେ ବର୍ଣ୍ଣାଶ୍ରମଧର୍ମ, ଶିକ୍ଷା, ଖାଦ୍ୟ ଓ ପାନୀୟ, ସ୍ତ୍ରୀର ସ୍ଥାନ, ଧର୍ମନିରପେକ୍ଷ ନୀତି ଓ ଶାସନ ବ୍ୟବସ୍ଥା, ଧର୍ମ ଓ ଦର୍ଶନ, ଆପଦ୍ଧର୍ମ, ଲୋକ-ସଂସ୍କାର ଓ ବିଶ୍ୱାସ, ଆଚାର, ବ୍ୟବହାର, ନୀତିଶିକ୍ଷା, ତତ୍ତ୍ୱବିନୋଦନ, ବ୍ରାହ୍ମଣ୍ୟବାଦର ଗୌରବ, ସମାଜରେ ଶୂଦ୍ରର ସ୍ଥାନ ଓ ଅର୍ଥନୈତିକ ଜୀବନଧାରା ବିଷୟରେ ତାତ୍ତ୍ୱିକ ଆଲୋଚନାମାନ କରାଯାଇଅଛି । (୧୬)

## (ଖ) ମହାଭାରତ ଓ ରାମାୟଣ

### ୧ । ମହାଭାରତ

ଭାରତୀୟ ଜନଜୀବନର ବିଚିତ୍ର କାହାଣୀସମ୍ବଳିତ ମହାଭାରତ ଓ ରାମାୟଣ ନାମକ ଗ୍ରନ୍ଥ ଦୁଇଟିରେ ଧର୍ମଶାସ୍ତ୍ରର ବିଭିନ୍ନ ବିଭାଗର ବହୁ ତଥ୍ୟ ସନ୍ନିବେଶିତ ଅଛି । ମଧ୍ୟବର୍ତ୍ତୀ-କାଳୀନ ତଥା ପରବର୍ତ୍ତୀ କାଳର ଧର୍ମଶାସ୍ତ୍ରରେ ଉକ୍ତ ଗ୍ରନ୍ଥଦ୍ୱୟର ଉକ୍ତିକୁ ପ୍ରମାଣ ରୂପେ ସ୍ୱୀକାର କରାଯାଇଛି । ଗ୍ରନ୍ଥକର୍ତ୍ତା ବ୍ୟାସ ମହାଭାରତକୁ (୫୦୦-ଖ୍ରୀଷ୍ଟପୂର୍ବ) ଧର୍ମଶାସ୍ତ୍ର ରୂପେ ଘୋଷଣା କରିଛନ୍ତି । 'ଯାହା ନାହିଁ ଭାରତେ ତାହା ନାହିଁ ଭାରତେ'—ଏହି କଥାଟି ମହାଭାରତର ସ୍ୱର୍ଗାରୋହଣ ପର୍ବରେ ଉଲ୍ଲେଖ କରାଯାଇଛି । (୧୭) ମହାଭାରତକୁ ଜୟ, ସଂହିତା, ପୁରାଣ, ଆଖ୍ୟାନ, ଇତିହାସ, କାବ୍ୟ, କାର୍ଷ୍ଣବେଦ ପ୍ରଭୃତି ନାମରେ ଅଭିହିତ କରାଯାଇଛି । ବ୍ୟାସଦେବ ଅନ୍ୟାନ୍ୟ ବେଦ ସହିତ ପଞ୍ଚମ ବେଦ ରୂପେ ମହାଭାରତକୁ ସୁମନ୍ତୁ, ଜୈମିନି, ପୈଲ, ବୈଶମ୍ପାୟନ ଓ ଶୁକକୁ ପଢ଼ାଇଥିଲେ । ମହାଭାରତରେ ଥିବା ଧର୍ମଶାସ୍ତ୍ରୀୟ ବିଷୟଗୁଡ଼ିକର ସୂଚନା ସଂକ୍ଷେପରେ ଉଲ୍ଲେଖ କରାଯାଇପାରେ ।

ଅଭିଷେକ = ଶାନ୍ତି-୪୦ ॥ ଅରାଜକତା = ଶାନ୍ତି-୬୭ ॥ ଅହିଂସା—ଆଦି-୧୧, ଅନୁଶାସନ-୧୧୫, ଅଶ୍ୱମେଧ—୨୮ ଓ ୪୩ ଏବଂ ଶାନ୍ତି-୩୩୦ ॥ ଆଶ୍ରମଧର୍ମ = ଶାନ୍ତି-୬୧, ୨୧୨-୨୧୫ ॥ ଆଚାର = ଅନୁଶାସନ-୧୦୪; ଅଶ୍ୱମେଧ-୪୫ ॥ ଆପଦ୍ଧର୍ମ = ଶାନ୍ତି-୧୩୧ ॥ ଉପବାସ = ଅନୁଶାସନ-୧୦୬-୧୦୭ ॥ ତୀର୍ଥ = ବନପର୍ବ-୮୨, ଅନୁଶାସନ—୨୫-୨୬, ଶାଲ୍ୟ—୩୫-୫୪ ॥ ଦାନ = ବନପର୍ବ-୧୮୬ ॥ ଶାନ୍ତି-୨୩୪, ଅନୁଶାସନ-୫୭-୯୯ ॥

---

୧୬ । Dharmashastra—A Study—P-73-126.

୧୭ । ଧର୍ମେ ଚାର୍ଥେ ଚ କାମେ ଚ ମୋକ୍ଷେ ଚ ଭରତର୍ଷଭ ।
ଯଦିହାସ୍ତି ତଦନ୍ୟତ୍ର ଯନ୍ନେହାସ୍ତି ନ କୁତ୍ରଚିତ୍ ॥ (ମହାଭାରତ-୨-୮୩) ॥

ଦଣ୍ଡସ୍ତୁତି—ଶାନ୍ତି-୧୫, ୧୨୧ ॥ ଦାୟଭାଗ = ଅନୁଶାସନ-୪୫-୪୭ ॥ ପୁତ୍ର = ଅନୁଶାସନ-୪୮, ୪୯ ॥ ପ୍ରାୟଶ୍ଚିତ୍ତ = ଶାନ୍ତି-୩୪, ୩୫, ୧୬୫ ॥ ଭକ୍ଷ୍ୟାଭକ୍ଷ୍ୟ = ଶାନ୍ତି-୩୬, ୨୮ ॥ ରାଜନୀତି = ସଭା-୫, ବନ-୧୫, ଉଦ୍‌ଯୋଗ-୩୩,୩୪, ଶାନ୍ତି-୫୯-୧୩୦, ଆଶ୍ରମିକ—୫-୭ ॥ ବର୍ଣ୍ଣଧର୍ମ = ଶାନ୍ତି-୬୦,୬୫,୨୯୭, ଅନୁଶାସନ-୪୮-୪୯ ॥ ବିବାହ = ଅନୁଶାସନ-୪୪-୪୬ ॥ ଶ୍ରାଦ୍ଧ = ସ୍ତ୍ରୀ ପର୍ବ-୨୬, ୨୭, ଅନୁଶାସନ-୮୭-୯୨ ॥

ମହାଭାରତରେ ଷଟ୍‌ବେଦାଙ୍ଗ, ନିରୁକ୍ତ, ବୃହସ୍ପତି, ଭାର୍ଗବ, ନାରଦ, ଭାରଦ୍ୱାଜ, ଗାର୍ଗ୍ୟ, ଦେବର୍ଷି, କୃଷ୍ଣାତ୍ରେୟ, କପିଳ, ଯମ, ଅଙ୍ଗିର, ଧର୍ମଶାସ୍ତ୍ର ପ୍ରଭୃତି ବହୁ ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମୋଲ୍ଲେଖ ଅଛି ।

**୨-ରାମାୟଣ**

ରାମାୟଣକୁ (୩୦୦-୨୦୦ ଖ୍ରୀଷ୍ଟପୂର୍ବ) ଇତିହାସ ବା ପୁରାଣ ଅପେକ୍ଷା କାବ୍ୟରୂପେ ଅଧିକ ସ୍ୱୀକୃତି ମିଳିଥିବାର ଜଣାଯାଏ । ମହାଭାରତରେ ବର୍ଣ୍ଣିତ ରାମକଥା ହିଁ ରାମାୟଣର ଆଧାର ବୋଲି ଆଲୋଚକମାନେ ମତ ବ୍ୟକ୍ତ କରନ୍ତି । ରାମାୟଣରେ ଧର୍ମଶାସ୍ତ୍ରର ନିମ୍ନୋକ୍ତ ପ୍ରକରଣଗୁଡ଼ିକ ଉଲ୍ଲିଖିତ ଅଛି ।

ଅଭିଷେକ = ଅଯୋଧ୍ୟା-୧୫, ଯୁଦ୍ଧ-୧୨୮ ॥ ଅରାଜକ = ଅଯୋଧ୍ୟା-୬୭ ॥ ପାତକ-ସମୂହ = କିଷ୍କିନ୍ଧା-୧୭ (୩୬-୩୭), ୧୮ (୨୨-୨୩) ॥ ରାଜଧର୍ମ = ବାଲ-୭, ଅଯୋଧ୍ୟା-୧୦୦, ଆରଣ୍ୟ ୬ (୧୧-୧୪), ୯ (୨-୬), ୩୩, ୪୦ (୧୦-୧୪), ୪୧ (୧-୬), ଯୁଦ୍ଧ-୧୭,୧୮ ଓ ୩୬ ॥ ଶ୍ରାଦ୍ଧ = ଅଯୋଧ୍ୟା ୭୭, ୧୦୩, ୧୧୧ (୧୦୪-୧୨୦) ॥ ସତ୍ୟପ୍ରଶଂସା = ଅଯୋଧ୍ୟା-୧୦୯ ॥ ସ୍ତ୍ରୀଧନ = ଅଯୋଧ୍ୟା-୨୪, ୨୬-୨୭, ୨୯, ୩୦, ୧୧୭-୧୧୮ ॥ (୧୮)

## (ଗ) ପୁରାଣ

ଯାଜ୍ଞବଲ୍‌କ୍ୟଙ୍କ ଅନୁସାରେ ପୁରାଣ, ନ୍ୟାୟ, ମୀମାଂସା, ଧର୍ମଶାସ୍ତ୍ର, ଷଟ୍‌ବେଦାଙ୍ଗ ଓ ଚତୁର୍ବେଦ ମିଶି ବିଦ୍ୟା ଓ ଧର୍ମର ଚତୁର୍ଦ୍ଦଶ ଆଧାର ରୂପେ ପ୍ରତିଷ୍ଠିତ । (୧୯) ପୁରାଣ ଶବ୍ଦ ବୈଦିକ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଉଲ୍ଲିଖିତ ଥିବାର ଦେଖାଯାଏ । (୨୦) ପ୍ରାଚୀନ କାଳରୁ

---

୧୮ । History of Dharmashastra – Vol-I, Pt-I, P-159, 160, 350.

୧୯ । ପୁରାଣ ନ୍ୟାୟ ମୀମାଂସା ଧର୍ମଶାସ୍ତ୍ରାଙ୍ଗ ମିଶ୍ରିତାଃ ।
ବେଦାଃ ସ୍ଥାନାନି ବିଦ୍ୟାନାଂ ଧର୍ମସ୍ୟ ଚ ଚତୁର୍ଦ୍ଦଶ ॥ ଯାଜ୍ଞ—୧-୩ ॥

୨୦ । (କ) ଅଥର୍ବବେଦ—୧୧-୭-୨୪ ଓ ୧୫-୬-୧୦ ଓ ୧୧ ।
(ଖ) ଶତପଥ ବ୍ରାହ୍ମଣ—୧୧-୫-୬ ଓ ୮ ॥ (ଗ) ତୈତ୍ତିରୀୟ ଆରଣ୍ୟକ—୨-୧୦
(ଘ) ଛାନ୍ଦୋଗ୍ୟ ଉପନିଷଦ୍—୭-୨ ଓ ୪ । (ଙ) ବୃହଦାରଣ୍ୟକୋପନିଷଦ୍—୪-୧-୨ ॥

ପୁରାଣର ସଂଖ୍ୟା ଅଠର ଥିଲେ ମଧ୍ୟ ଉପପୁରାଣର ସଂଖ୍ୟା ଅଠରରୁ ବହୁତ ଅଧିକ ଥିବାର ଜଣାଯାଏ । ପୁରାଣଗୁଡ଼ିକରେ ହିନ୍ଦୁଧର୍ମର ଆଚାର ଓ ବ୍ୟବହାର, ଧାର୍ମିକ ଆଖ୍ୟାନ, ଭୂଗୋଳ, ବ୍ୟକ୍ତି, ପରିବାର ଓ ରାଜବଂଶର ଇତିହାସ ଓ ସାହିତ୍ୟ ବର୍ଣ୍ଣିତ ହୋଇଥାଏ । ପଦ୍ମପୁରାଣର ଉଲ୍ଲେଖ ଅନୁସାରେ ଅଷ୍ଟାଦଶ ମହାପୁରାଣ, ସାତ୍ତ୍ୱିକ, ରାଜସ, ତାମସ ଭେଦରେ ତିନିଭାଗରେ ବିଭକ୍ତ । ବିଷ୍ଣୁ, ନାରଦୀୟ, ଭାଗବତ, ଗରୁଡ଼, ପଦ୍ମ ଓ ବରାହ ପୁରାଣ ସାତ୍ତ୍ୱିକ, ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ଭବିଷ୍ୟ, ବାମନ ଓ ବ୍ରହ୍ମପୁରାଣ ରାଜସ ଏବଂ ମତ୍ସ୍ୟ, କୂର୍ମ, ଲିଙ୍ଗ, ଶିବ, ସ୍କନ୍ଦ ଓ ଅଗ୍ନି ପୁରାଣ ତାମସ ପୁରାଣ ଭାବେ ସ୍ୱୀକୃତ ହୋଇଛନ୍ତି । (୨୧) ପୁରାଣ ସାହିତ୍ୟରେ ଧର୍ମଶାସ୍ତ୍ରର ନିମ୍ନଲିଖିତ ତିରିଶଟି ବିଷୟ ପର୍ଯ୍ୟାଲୋଚିତ ହୋଇଅଛି ।

**ଆଚାର**—ବ୍ରହ୍ମପୁରାଣ ୧୧୩ ଅଧ୍ୟାୟ, ଗରୁଡ଼ପୁରାଣ ୫୦ ଅଧ୍ୟାୟ, କାଳିକା ପୁରାଣ ୮୮ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୧୩ ଅଧ୍ୟାୟ, ଲିଙ୍ଗପୁରାଣର ପୂର୍ବାର୍ଦ୍ଧ ୮୯ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣ ୩୧ ଅଧ୍ୟାୟ, ନାରଦପୁରାଣର ପୂର୍ବାର୍ଦ୍ଧ ୨୬ ଅଧ୍ୟାୟ, ପଦ୍ମପୁରାଣର ଆଦିଖଣ୍ଡ ୫୨-୫୬ ଅଧ୍ୟାୟ, ପାତାଳଖଣ୍ଡ ୯ ଅଧ୍ୟାୟ ଓ ସୃଷ୍ଟିଖଣ୍ଡ ୪୬ ଅଧ୍ୟାୟ, ସ୍କନ୍ଦପୁରାଣର ପ୍ରଥମ ଭାଗ କୁମାରିକା ଖଣ୍ଡର ୪୧ ଅଧ୍ୟାୟ, ତୃତୀୟ ଭାଗର ଧର୍ମାରଣ୍ୟ ଖଣ୍ଡ ୬ ଅଧ୍ୟାୟ, ଚତୁର୍ଥ ଭାଗ ପୂର୍ବାର୍ଦ୍ଧର ୩୮ ଓ ୪୦ ଅଧ୍ୟାୟ, ବାୟୁପୁରାଣର ୧୬ ଅଧ୍ୟାୟ, ବିଷ୍ଣୁ ପୁରାଣ ତୃତୀୟ ଭାଗର ୧୧-୧୨ ଏବଂ ଶିବ ପୁରାଣର ୧୮-୨୦ ଅଧ୍ୟାୟରେ ଆଚାର ବିଷୟ ବର୍ଣ୍ଣିତ ହୋଇଛି ।

**ଆହ୍ନିକ**—ଅଗ୍ନି ପୁରାଣ ୧୫୫ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ବ୍ରହ୍ମଖଣ୍ଡ ୨୬ ଅଧ୍ୟାୟ, ଗରୁଡ଼ ପୁରାଣ ୫୦ ଓ ୨୧୩ ରୁ ୨୧୭ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୧୮-୧୯ ଅଧ୍ୟାୟ, ଲିଙ୍ଗ ପୁରାଣର ୨୬ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୨୭ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୨୭ ଅଧ୍ୟାୟ, ପଦ୍ମପୁରାଣର ସୃଷ୍ଟିଖଣ୍ଡ ୪୬ ଅଧ୍ୟାୟ ଓ ଉତ୍ତରଖଣ୍ଡ ୨୩୩ ଅଧ୍ୟାୟ, ସ୍କନ୍ଦ ପୁରାଣର ଚତୁର୍ଥ ଭାଗର ପୂର୍ବାର୍ଦ୍ଧ ୩୫ ଅଧ୍ୟାୟ ଏବଂ ତୃତୀୟ ଭାଗର ଧର୍ମାରଣ୍ୟ ଖଣ୍ଡ ପଞ୍ଚମ ଅଧ୍ୟାୟରେ ଆହ୍ନିକ ବିଷୟର ଉଲ୍ଲେଖ ଅଛି ।

**ଅଶୌଚ**—ଅଗ୍ନି ପୁରାଣର ୧୫୭-୧୫୮ ଅଧ୍ୟାୟ, ବ୍ରହ୍ମ ପୁରାଣର ୧୧୩ ଅଧ୍ୟାୟ, ଗରୁଡ଼ ପୁରାଣର ପଞ୍ଚମ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତର ଖଣ୍ଡ ୨୩ ଅଧ୍ୟାୟ ଓ ଲିଙ୍ଗ ପୁରାଣର ପୂର୍ବାର୍ଦ୍ଧ ୮୯ ଅଧ୍ୟାୟରେ ଅଶୌଚ ବିଷୟ ପର୍ଯ୍ୟାଲୋଚିତ ହୋଇଅଛି ।

**ଆଶ୍ରମଧର୍ମ**—ଅଗ୍ନି ପୁରାଣର ୧୬୦-୧୬୧ ଅଧ୍ୟାୟ, ଭାଗବତ ପୁରାଣର ସପ୍ତମ ସ୍କନ୍ଧର ୧୨ ଓ ୧୩ ଅଧ୍ୟାୟ, ଏବଂ ଏକାଦଶ ସ୍କନ୍ଧର ୧୭ ଅଧ୍ୟାୟ, ବ୍ରହ୍ମପୁରାଣର ୧୧୪ ଅଧ୍ୟାୟ,

---

୨୧ । ପଦ୍ମ ପୁରାଣ, ଉତ୍ତର ଖଣ୍ଡ-୨୬୩ ଅଧ୍ୟାୟ ।

ଗରୁଡ଼ ପୁରାଣର ୪୯ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତର ଖଣ୍ଡ ୧୪-୧୬ ଅଧ୍ୟାୟ ଓ ୨୭-୨୮ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୨୫-୨୬ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୨୭-୪୩ ଅଧ୍ୟାୟ, ପଦ୍ମ ପୁରାଣର ଆଦଖଣ୍ଡ ୫୮ ଓ ୬୦ ଅଧ୍ୟାୟ, ସୃଷ୍ଟି ଖଣ୍ଡ ୧୫ ଅଧ୍ୟାୟ ଓ ସୌର ଖଣ୍ଡ ୧୭ ଓ ୨୦ ଅଧ୍ୟାୟ, ସ୍କନ୍ଦପୁରାଣର ଚତୁର୍ଥ ଭାଗ ପୂର୍ବାର୍ଦ୍ଧ ୪୧ ଅଧ୍ୟାୟ ଏବଂ ବିଷ୍ଣୁ ପୁରାଣର ୩-୯ ଅଧ୍ୟାୟରେ ଆଶ୍ରମଧର୍ମ ବର୍ଣ୍ଣନା କରାଯାଇଛି ।

**ଭକ୍ଷ୍ୟାଭକ୍ଷ୍ୟ**—ବ୍ରହ୍ମବୈବର୍ତ୍ତ ପୁରାଣର ବ୍ରହ୍ମ ଖଣ୍ଡ ୨୭ ଅଧ୍ୟାୟ ଓ ଚତୁର୍ଥ ଖଣ୍ଡ ଉତ୍ତରାର୍ଦ୍ଧ ୮୫ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୧୭ ଅଧ୍ୟାୟ, ଏବଂ ପଦ୍ମ ପୁରାଣର ଆଦଖଣ୍ଡ ୫୬ ଅଧ୍ୟାୟରେ ଭକ୍ଷ୍ୟାଭକ୍ଷ୍ୟ ବିଷୟରେ ଉଲ୍ଲେଖ ରହିଛି ।

**ବ୍ରାହ୍ମଣ**—ପଦ୍ମପୁରାଣର ବ୍ରହ୍ମଖଣ୍ଡ ୧୪ ଅଧ୍ୟାୟ ଓ ସୃଷ୍ଟିଖଣ୍ଡ ୪୫ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୧୨, ୧୯ ଓ ୨୫ ଅଧ୍ୟାୟ ଏବଂ ସୌରଖଣ୍ଡର ୧୮ ଅଧ୍ୟାୟରେ ବ୍ରାହ୍ମଣ ବିଷୟ ଆଲୋଚିତ ହୋଇଛି ।

**ଦ୍ରବ୍ୟଶୁଦ୍ଧି**—ଅଗ୍ନିପୁରାଣର ୧୫୬ ଅଧ୍ୟାୟ, ଶ୍ରୀମଦ୍‌ଭାଗବତର ୧୧-୨୧ ଅଧ୍ୟାୟ, ବ୍ରହ୍ମପୁରାଣର ୧୧୩ ଅଧ୍ୟାୟ, ଲିଙ୍ଗ ପୁରାଣର ପୂର୍ବାର୍ଦ୍ଧ ୮୯ ଅଧ୍ୟାୟ ଓ ମାର୍କଣ୍ଡେୟ ପୁରାଣର ୩୨ ଅଧ୍ୟାୟରେ ଦ୍ରବ୍ୟଶୁଦ୍ଧି ପ୍ରସଙ୍ଗ ଉଲ୍ଲେଖ କରାଯାଇଛି ।

**ଗୋତ୍ର ଓ ପ୍ରବର**—ମତ୍ସ୍ୟ ପୁରାଣର ୧୯୪-୨୦୧ ଅଧ୍ୟାୟ ଓ ସ୍କନ୍ଦ ପୁରାଣର ତୃତୀୟ ଭାଗ ଦ୍ୱିତୀୟ ଏବଂ ନବମ ଅଧ୍ୟାୟରେ ଗୋତ୍ର ଓ ପ୍ରବର ବିଷୟ ବର୍ଣ୍ଣିତ ହୋଇଛି ।

**ଦାନ**—ଅଗ୍ନିପୁରାଣର ୨୦୯-୨୧୩ ଅଧ୍ୟାୟ, ଭବିଷ୍ୟ ପୁରାଣର ଚତୁର୍ଥ ଭାଗ ୧୫୦ ଅଧ୍ୟାୟ, ବ୍ରହ୍ମ ପୁରାଣର ୧୦୯ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡ ୨୭ ଅଧ୍ୟାୟ, ଗରୁଡ଼ ପୁରାଣର ୫୧ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୨୬ ଅଧ୍ୟାୟ, ଲିଙ୍ଗ ପୁରାଣର ଉତ୍ତରାର୍ଦ୍ଧ ୨୮ ଅଧ୍ୟାୟ, ମତ୍ସ୍ୟ ପୁରାଣର ୮୧-୯୧ ଅଧ୍ୟାୟ, ୨୦୫-୨୦୬ ଅଧ୍ୟାୟ ଓ ୨୭୪-୨୮୯ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୧୩ ଓ ୩୧ ଅଧ୍ୟାୟ ଏବଂ ଉତ୍ତରାର୍ଦ୍ଧ ୪୧-୪୨ ଅଧ୍ୟାୟ, ପଦ୍ମପୁରାଣର ଆଦଖଣ୍ଡ ୫୭ ଅଧ୍ୟାୟ, ଭୂମିଖଣ୍ଡ ୩୯-୪୦ ଓ ୯୪ ଅଧ୍ୟାୟ, ବ୍ରହ୍ମଖଣ୍ଡ-୨୪ ଅଧ୍ୟାୟ, ସୃଷ୍ଟି ଖଣ୍ଡ ୪୫ ଓ ୭୫ ଅଧ୍ୟାୟ, ଉତ୍ତରଖଣ୍ଡ ୨୭, ୨୮ ଓ ୩୩ ଅଧ୍ୟାୟ, ସୌର ଖଣ୍ଡ ୯-୧୦ ଅଧ୍ୟାୟ, ସ୍କନ୍ଦ ପୁରାଣର ପ୍ରଥମ ଭାଗ ଦ୍ୱିତୀୟ ଅଧ୍ୟାୟ, ତୃତୀୟ ଭାଗ ଦ୍ୱିତୀୟ ଅଧ୍ୟାୟ, ସପ୍ତମ ଭାଗ ପ୍ରଥମ ଅଧ୍ୟାୟ, ପଞ୍ଚମ ଅଧ୍ୟାୟ ଓ ୨୦୮ ଅଧ୍ୟାୟ ଏବଂ ବରାହ ପୁରାଣର ୯୯-୧୧୧ ଅଧ୍ୟାୟରେ ଦାନ ବିଷୟରେ ପର୍ଯ୍ୟାଲୋଚନା କରାଯାଇଛି ।

**କଳସ୍ୱରୂପ**—ବ୍ରହ୍ମ ପୁରାଣର ୧୨୨-୧୨୩ ଅଧ୍ୟାୟରେ, ବ୍ରହ୍ମାଣ୍ଡ ପୁରାଣର ୩୧ ଅଧ୍ୟାୟରେ, ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତିଖଣ୍ଡ ସପ୍ତମ ଅଧ୍ୟାୟରେ, କୂର୍ମ ପୁରାଣର ୩୦ ଅଧ୍ୟାୟରେ, ଲିଙ୍ଗ ପୁରାଣର ୪୦ ଅଧ୍ୟାୟରେ, ନାରଦୀୟ ପୁରାଣର ପୂର୍ବାର୍ଦ୍ଧ ୪୧ ଅଧ୍ୟାୟରେ,

ସ୍କନ୍ଦ ପୁରାଣର ପ୍ରଥମ ଭାଗ ୪୦, ୨୧୮ ଓ ୨୪୮ ଅଧ୍ୟାୟରେ, ଦ୍ୱିତୀୟ ଭାଗ ୩୧ ଅଧ୍ୟାୟରେ ଓ ଷଷ୍ଠ ଭାଗ ୨୭୨ ଅଧ୍ୟାୟରେ ଏବଂ ବାୟୁ ପୁରାଣର ପ୍ରଥମ ଭାଗ ୫୮ ଅଧ୍ୟାୟରେ କଳିସ୍ୱରୂପର ବର୍ଣ୍ଣନା କରାଯାଇଛି ।

**କଳିବର୍ଜ୍ୟ**—ନାରଦ ପୁରାଣର ପୂର୍ବାର୍ଦ୍ଧ ୨୪ ଅଧ୍ୟାୟରେ କଳିବର୍ଜ୍ୟ ବିଷୟ ଉଲ୍ଲେଖ କରାଯାଇଛି ।

**କର୍ମବିପାକ**—ବ୍ରହ୍ମ ପୁରାଣର ୧୦୮ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରଥମଖଣ୍ଡ ୨୬ ଓ ୨୮ ଅଧ୍ୟାୟ ଏବଂ ଚତୁର୍ଥ ଖଣ୍ଡ ଉତ୍ତରାର୍ଦ୍ଧ ୮୫ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୧୫ ଅଧ୍ୟାୟ, ପଦ୍ମପୁରାଣର ବ୍ରହ୍ମଖଣ୍ଡ ପଞ୍ଚମ ଅଧ୍ୟାୟ, ପାତାଳଖଣ୍ଡ ୪୮ ଅଧ୍ୟାୟ ଏବଂ ବାମନ ପୁରାଣର ୧୨ ଅଧ୍ୟାୟରେ କର୍ମବିପାକ ଆଲୋଚିତ ହୋଇଛି ।

**ନରକ**—ଅଗ୍ନି ପୁରାଣର ୨୦୩ ଅଧ୍ୟାୟରେ, ବ୍ରହ୍ମପୁରାଣର ୨୦ ଓ ୧୦୫ ଅଧ୍ୟାୟରେ, ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରଥମ ଖଣ୍ଡ ୨୯ ଓ ୩୩ ଅଧ୍ୟାୟରେ, ପଦ୍ମ ପୁରାଣର ଉତ୍ତରାର୍ଦ୍ଧ ୨୨୭ ଅଧ୍ୟାୟରେ, ଶିବ ପୁରାଣର ୮ ଓ ୧୬ ଅଧ୍ୟାୟରେ, ସ୍କନ୍ଦ ପୁରାଣର ପ୍ରଥମ ଭାଗ ୩୧ ଅଧ୍ୟାୟ ଓ ଷଷ୍ଠ ଭାଗ ୨୨୬ ଓ ୨୨୭ ଅଧ୍ୟାୟ ଏବଂ ବିଷ୍ଣୁ ପୁରାଣର ପ୍ରଥମ ଭାଗ ଷଷ୍ଠ ଅଧ୍ୟାୟ ଏବଂ ଦ୍ୱିତୀୟ ଭାଗ ଷଷ୍ଠ ଅଧ୍ୟାୟରେ ନରକ ବିଷୟରେ ଉଲ୍ଲେଖ ଅଛି ।

**ନୀତି**—ଗରୁଡ଼ ପୁରାଣର ୧୦୮-୧୦୪ ଓ ୧୧୫ ଅଧ୍ୟାୟରେ ନୀତି ବିଷୟରେ ଆଲୋଚନା କରାଯାଇଛି ।

**ପାତକ**—ଅଗ୍ନି ପୁରାଣର ୧୬୮ ଅଧ୍ୟାୟରେ ବ୍ରହ୍ମପୁରାଣର ୨୦ ଅଧ୍ୟାୟ ଓ ୧୦୫-୧୦୬ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୧୨-୧୪ ଅଧ୍ୟାୟରେ, ନାରଦ ପୁରାଣର ପୂର୍ବାର୍ଦ୍ଧ ୧୫ ଅଧ୍ୟାୟରେ ଏବଂ ଶିବ ପୁରାଣର ୫ ଓ ୬ ଅଧ୍ୟାୟରେ ପାତକ ବିଷୟ ବର୍ଣ୍ଣିତ ହୋଇଅଛି

**ପ୍ରତିଷ୍ଠା**—ଅଗ୍ନି ପୁରାଣର ୩୮-୧୦୬ ଅଧ୍ୟାୟ, ଗରୁଡ଼ ପୁରାଣର ୪୫-୪୮ ଅଧ୍ୟାୟ, ପଦ୍ମ-ପୁରାଣର ଉତ୍ତରାର୍ଦ୍ଧ ୧୨୨ ଓ ୧୨୭ ଅଧ୍ୟାୟ, ମତ୍ସ୍ୟ ପୁରାଣର ୨୫୮-୨୭୦ ଅଧ୍ୟାୟ ଏବଂ ଶିବ ପୁରାଣର ପ୍ରଥମ ଭାଗ ଦ୍ୱିତୀୟ ଅଧ୍ୟାୟରେ ପ୍ରତିଷ୍ଠା ବିଷୟ ଉଲ୍ଲେଖ କରାଯାଇଛି ।

**ପ୍ରାୟଶ୍ଚିତ୍ତ**—ଅଗ୍ନି ପୁରାଣର ୧୭୦-୧୭୪ ଅଧ୍ୟାୟ, ଗରୁଡ଼ ପୁରାଣର ୫୨ ଓ ୨୨୨ ଅଧ୍ୟାୟ, କୂର୍ମ ପୁରାଣ ଉତ୍ତରାର୍ଦ୍ଧ ୩୦-୩୪ ଅଧ୍ୟାୟ, ଲିଙ୍ଗ ପୁରାଣର ୯୦ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୧୪ ଓ ୩୦ ଅଧ୍ୟାୟ, ପଦ୍ମ ପୁରାଣର ବ୍ରହ୍ମଖଣ୍ଡ ୧୮ ଓ ୧୯ ଅଧ୍ୟାୟ, ସୌରଖଣ୍ଡ ୫୨ ଅଧ୍ୟାୟ, ବରାହ ପୁରାଣର ୬୯, ୧୩୧-୧୩୬ ଓ ୧୭୯ ଅଧ୍ୟାୟ, ବାୟୁ ପୁରାଣର ପୂର୍ବାର୍ଦ୍ଧ ୧୮ ଅଧ୍ୟାୟରେ ପ୍ରାୟଶ୍ଚିତ୍ତ ବିଷୟ ପର୍ଯ୍ୟାଲୋଚିତ ହୋଇଛି ।

**ରାଜଧର୍ମ**—ରାଜଧର୍ମ ବିଷୟ ଅଗ୍ନି ପୁରାଣର ୨୨୦-୨୪୨ ଅଧ୍ୟାୟ, କାଳିକା ପୁରାଣର ୮୭ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୨୪ ଅଧ୍ୟାୟ ଓ ମତ୍ସ୍ୟ ପୁରାଣର ୨୧୬-୨୨୭ ଅଧ୍ୟାୟ ଓ ୨୪୦ ଅଧ୍ୟାୟରେ ଉଲ୍ଲେଖ ରହିଛି ।

**ସଂସ୍କାର**—ଅଗ୍ନି ପୁରାଣର ୧୫୪-୧୫୫ ଓ ୧୬୬ ଅଧ୍ୟାୟ, ଭବିଷ୍ୟ ପୁରାଣର ପ୍ରଥମ ଭାଗ ୩, ୪ ଓ ୭ ଅଧ୍ୟାୟ, ନାରଦ ପୁରାଣର ୨୫ ଓ ୧୬ ଅଧ୍ୟାୟ, ସ୍କନ୍ଦ ପୁରାଣର ଚତୁର୍ଥ ଭାଗର ୩୬ ଓ ୩୯ ଅଧ୍ୟାୟ ଏବଂ ବିଷ୍ଣୁ ପୁରାଣର ତୃତୀୟ ଭାଗର ଦଶମ ଅଧ୍ୟାୟରେ ସଂସ୍କାର ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି ।

**ଶାନ୍ତି**—ଅଗ୍ନି ପୁରାଣର ୧୪୯, ୧୬୪, ୧୬୬, ୨୫୯-୨୮୦, ୨୯୦-୨୯୧ ଓ ୩୨୦-୩୨୪ ଅଧ୍ୟାୟ, ଭବିଷ୍ୟ ପୁରାଣର ଚତୁର୍ଥ ଭାଗ ୧୪୧ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ଚତୁର୍ଥ ଭାଗ ୮୨ ଅଧ୍ୟାୟ, ମତ୍ସ୍ୟ ପୁରାଣର ୯୨, ୯୩ ଓ ୨୨୮ ରୁ ୨୩୯ ଅଧ୍ୟାୟମାନଙ୍କରେ ଶାନ୍ତି ବିଷୟରେ ପର୍ଯ୍ୟାଲୋଚିତ ହୋଇଛି ।

**ଶ୍ରାଦ୍ଧ**—ଅଗ୍ନି ପୁରାଣ ୧୧୭ ଓ ୧୬୩ ଅଧ୍ୟାୟ, ବ୍ରହ୍ମପୁରାଣର ୧୧୦ରୁ ୧୧୩ ଅଧ୍ୟାୟ, କୂର୍ମ ପୁରାଣର ଉତ୍ତରାର୍ଦ୍ଧ ୨୦-୨୨ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ୨୭-୩୦ ଅଧ୍ୟାୟ, ଲିଙ୍ଗ ପୁରାଣ ଉତ୍ତରାର୍ଦ୍ଧର ୪୫ ଅଧ୍ୟାୟ, ମତ୍ସ୍ୟ ପୁରାଣର ୧୬ରୁ ୨୨ ଅଧ୍ୟାୟ, ନାରଦ ପୁରାଣର ୧୨୮ ଅଧ୍ୟାୟ, ପଦ୍ମ ପୁରାଣର ପାତାଳ ଖଣ୍ଡର ୧୦୧ ଅଧ୍ୟାୟ ଓ ସୃଷ୍ଟି ଖଣ୍ଡର ୯-୧୧ ଓ ୪୭ ଅଧ୍ୟାୟ, ଶିବ ପୁରାଣ ୨୧-୨୩ ଅଧ୍ୟାୟ, ସୌର ପୁରାଣ ୧୯ ଅଧ୍ୟାୟ, ସ୍କନ୍ଦ ପୁରାଣ ଷଷ୍ଠ ଭାଗର ୨୧୫ରୁ ୨୨୫ ଅଧ୍ୟାୟ ଏବଂ ସପ୍ତମ ଭାଗର ୨୦୫-୨୦୭ ଅଧ୍ୟାୟ, ବାୟୁ ପୁରାଣର ୧୦ରୁ ୨୧ ଅଧ୍ୟାୟ, ବରାହ ପୁରାଣର ୧୩ରୁ ୧୪ ଏବଂ ୧୮୭ରୁ ୧୮୮ ଅଧ୍ୟାୟ ଏବଂ ବିଷ୍ଣୁ ପୁରାଣର ତୃତୀୟ ଭାଗ ୧୩-୧୬ ଅଧ୍ୟାୟରେ ଶ୍ରାଦ୍ଧ ବିଷୟ ପର୍ଯ୍ୟାଲୋଚନା କରାଯାଇଛି ।

**ସ୍ତ୍ରୀଧନ**—ଭାଗବତ ସପ୍ତମ ସ୍କନ୍ଧ ୧୧ ଅଧ୍ୟାୟ, ଭବିଷ୍ୟ ପୁରାଣ ୧ମ ଭାଗ ୧୧ରୁ ୧୫ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ବ୍ରହ୍ମଖଣ୍ଡ ୯ ଅଧ୍ୟାୟ ଏବଂ ଚତୁର୍ଥ ଖଣ୍ଡ ଉତ୍ତରାର୍ଦ୍ଧର ୮୩ ଅଧ୍ୟାୟ, ପଦ୍ମପୁରାଣର ଭୂମିଖଣ୍ଡ ୪୧ ଅଧ୍ୟାୟ, ପାତାଳଖଣ୍ଡ ୧୦୨ ଅଧ୍ୟାୟ, ସୃଷ୍ଟି ଖଣ୍ଡ ୪୭-୪୯ ଅଧ୍ୟାୟ ଏବଂ ଉତ୍ତର ଖଣ୍ଡ ୨୩୪ ଅଧ୍ୟାୟ, ଶିବ ପୁରାଣ ପାର୍ବତୀ ଖଣ୍ଡର ୫୪ ଅଧ୍ୟାୟ ଏବଂ ସ୍କନ୍ଦ ପୁରାଣ ୩ୟ ଭାଗ ୨ୟ ଅଧ୍ୟାୟ ଓ ଧର୍ମାରଣ୍ୟ ଖଣ୍ଡର ୭ ଅଧ୍ୟାୟରେ ସ୍ତ୍ରୀଧନ ବିଷୟ ଆଲୋଚିତ ହୋଇଛି ।

**ବ୍ୟବହାର**—ଅଗ୍ନି ପୁରାଣ ୨୫୩ ରୁ ୨୫୮ ଅଧ୍ୟାୟ ଓ ସ୍କନ୍ଦ ପୁରାଣର ପ୍ରଥମ ଭାଗ ୪୪ ଅଧ୍ୟାୟରେ ବ୍ୟବହାରବିଧି ବର୍ଣ୍ଣିତ ହୋଇଛି ।

**ତୀର୍ଥ**—ଅଗ୍ନି ପୁରାଣ ୧୦୯ ରୁ ୧୧୬ ଅଧ୍ୟାୟ, ଭାଗବତ ସପ୍ତମ ସ୍କନ୍ଧ ୧୪ ଅଧ୍ୟାୟ, ବ୍ରହ୍ମପୁରାଣ ୨୩, ୨୬ ଓ ୩୯ ଅଧ୍ୟାୟ, ଏକାମ୍ର ପୁରାଣ ୪୦ରୁ ୪୮ ଓ ୫୪ ଅଧ୍ୟାୟ, ଗରୁଡ଼ ପୁରାଣ ୮୧ରୁ ୮୬ ଅଧ୍ୟାୟ, କୂର୍ମ ପୁରାଣ ପୂର୍ବାର୍ଦ୍ଧ ୩୧ରୁ ୩୫ ଅଧ୍ୟାୟ ଏବଂ ଉତ୍ତରାର୍ଦ୍ଧ ୩୪-୪୪ ଅଧ୍ୟାୟ, ଲିଙ୍ଗ ପୁରାଣ ପୂର୍ବାର୍ଦ୍ଧ ୯୨ ଅଧ୍ୟାୟ, ମତ୍ସ୍ୟ ପୁରାଣର ୧୬୯ରୁ ୧୮୩ ଓ ୧୮୮ରୁ ୧୯୩ ଅଧ୍ୟାୟ, ନାରଦୀୟ ପୁରାଣ ଉତ୍ତରାର୍ଦ୍ଧ ୩୯-୪୦ ଓ ୪୫-୮୧ ଅଧ୍ୟାୟ, ପଦ୍ମପୁରାଣ ପ୍ରଥମ ଭାଗ ୧୩ରୁ ୩୯, ଭୂମିଖଣ୍ଡ-୯୦ ଓ ୯୨ ଅଧ୍ୟାୟ ସୃଷ୍ଟିଖଣ୍ଡ ୧୪-୧୫ ଅଧ୍ୟାୟ ଏବଂ ଉତ୍ତର ଖଣ୍ଡ ୨, ୨୦-୨୫, ୧୧୯-୧୬୯, ୧୯୫ ଅଧ୍ୟାୟ, ସୌର ପୁରାଣ-୬୭ ଅଧ୍ୟାୟ, ଶିବ ପୁରାଣର ୧ ରୁ ୧୨ ଅଧ୍ୟାୟ ଓ

କୋଟିରୁଦ୍ରସଂହିତାର ୮ ରୁ ୩୩ ଅଧ୍ୟାୟ, ସ୍କନ୍ଦ ପୁରାଣର ୧ମ ଭାଗ ୨ୟ ଅଧ୍ୟାୟ, ପୁରୁଷୋତ୍ତମ ଖଣ୍ଡ ୧ ରୁ ୪୯ ଅଧ୍ୟାୟ, ବଦ୍ରିକାଖଣ୍ଡ ୧ ରୁ ୮ ଅଧ୍ୟାୟ, ୩ୟ ଭାଗ ୧, ୨ ଓ ୩୧ ଅଧ୍ୟାୟ, ୫ମ ଭାଗ ରେବା ଖଣ୍ଡ ୩, ୨୩୨ ଅଧ୍ୟାୟ, ବାମନ ଖଣ୍ଡ ୩୩, ୪୨ ଓ ୫୦ ଅଧ୍ୟାୟ, ବରାହଖଣ୍ଡ ୧୪୧ ରୁ ୧୭୭ ଅଧ୍ୟାୟରେ ଏବଂ ବାୟୁପୁରାଣର ଉତ୍ତରାର୍ଦ୍ଧରେ ୪୩ରୁ ୫୦ ଅଧ୍ୟାୟ ମଧ୍ୟରେ ତୀର୍ଥପ୍ରସଙ୍ଗ ଆଲୋଚିତ ହୋଇଛି ।

**ତିଥି**—ବ୍ରହ୍ମପୁରାଣର ୧୨୦ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୨୯ ଅଧ୍ୟାୟ ଓ ଉତ୍ତରାର୍ଦ୍ଧ ୨ୟ ଅଧ୍ୟାୟ, ସୌର ପୁରାଣ ୫୧ ଅଧ୍ୟାୟ, ବରାହ ପୁରାଣ ୨୩ରୁ ୩୫ ଅଧ୍ୟାୟ ଏବଂ ପଦ୍ମପୁରାଣର ବ୍ରହ୍ମଖଣ୍ଡ ୧୩ ଓ ୧୫ ଅଧ୍ୟାୟରେ ତିଥି ବିଷୟ ପର୍ଯ୍ୟାଲୋଚନା କରାଯାଇଛି ।

**ଉତ୍ସର୍ଗ**—ଭବିଷ୍ୟପୁରାଣର ୨ୟ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୧୩ ଅଧ୍ୟାୟ, ଶିବ ପୁରାଣ ବିଦ୍ୟେଶ୍ୱର ସଂହିତାର ୨ୟ ଅଧ୍ୟାୟ, ପଦ୍ମ ପୁରାଣ ସୃଷ୍ଟି ଖଣ୍ଡ ୫୪ରୁ ୫୭ ଅଧ୍ୟାୟ ଏବଂ ଉତ୍ତର ଖଣ୍ଡର ୨୮ ଅଧ୍ୟାୟରେ ଉତ୍ସର୍ଗବିଧାନ ବର୍ଣ୍ଣିତ ହୋଇଛି ।

**ବର୍ଣ୍ଣଧର୍ମ**—ଅଗ୍ନି ପୁରାଣର ୧୫୧ ଅଧ୍ୟାୟ, ଭାଗବତ ସପ୍ତମ ସ୍କନ୍ଧ ୨ ଓ ୧୧ ରୁ ୧୭ ଅଧ୍ୟାୟ, ବ୍ରହ୍ମ ପୁରାଣର ୧୧୪-୧୧୫ ଅଧ୍ୟାୟ, ଗରୁଡ଼ ପୁରାଣ ୪୯ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣ ୨୫ ଅଧ୍ୟାୟ, ନାରଦ ପୁରାଣ ପୂର୍ବାର୍ଦ୍ଧ ୨୪, ୪୩, ୫୯, ୭୦ ଅଧ୍ୟାୟ, ସ୍କନ୍ଦ ପୁରାଣ ଷଷ୍ଠ ଖଣ୍ଡ ୨୪୨ ଅଧ୍ୟାୟ ଓ ବିଷ୍ଣୁ ପୁରାଣର ୩ ରୁ ୮ ଅଧ୍ୟାୟ ମଧ୍ୟରେ ବର୍ଣ୍ଣଧର୍ମ ଉଲ୍ଲେଖ କରାଯାଇଛି ।

**ବିବାହ**—ବିବାହ ବିଷୟ ପଦ୍ମପୁରାଣ ଉତ୍ତର ଖଣ୍ଡ ୨୨୩ ଓ ୨୩୨ ଅଧ୍ୟାୟ, ସ୍କନ୍ଦ ପୁରାଣ ୪ର୍ଥ ଖଣ୍ଡ ପୂର୍ବାର୍ଦ୍ଧର ୩୮ ଅଧ୍ୟାୟରେ ପର୍ଯ୍ୟାଲୋଚିତ ହୋଇଛି ।

**ବ୍ରତ**—ଅଗ୍ନି ପୁରାଣର ୧୭୫ରୁ ୨୦୦ ଓ ୨୦୪ ଅଧ୍ୟାୟ, ଭବିଷ୍ୟ ପୁରାଣ ୧ରୁ ୧୭ ଅଧ୍ୟାୟ, ବ୍ରହ୍ମ ପୁରାଣର ୨୭ ଅଧ୍ୟାୟ, ବ୍ରହ୍ମବୈବର୍ତ୍ତ ପୁରାଣର ୪ରୁ ୮ ଓ ୨୭ ଅଧ୍ୟାୟ, ଗରୁଡ଼ ପୁରାଣର ୧୧୭ରୁ ୧୩୭ ଅଧ୍ୟାୟ, ଲିଙ୍ଗପୁରାଣ ପୂର୍ବାର୍ଦ୍ଧର ୮୩ ଓ ୮୪ ଅଧ୍ୟାୟ, ନାରଦ ପୁରାଣ ପୂର୍ବାର୍ଦ୍ଧ ୧୭ ରୁ ୨୨ ଓ ୧୧୦ ରୁ ୧୨୪ ଅଧ୍ୟାୟ, ମତ୍ସ୍ୟ ପୁରାଣର ୫୪ରୁ ୮୦ ଓ ୯୪-୧୦୦ ଅଧ୍ୟାୟ, ପଦ୍ମ ପୁରାଣର ଭୂମିଖଣ୍ଡ ୮୭ ଅଧ୍ୟାୟ, ବ୍ରହ୍ମଖଣ୍ଡ ୩, ୪, ୭, ୧୧, ୧୩, ୧୫, ୧୭ ଓ ୨୧ରୁ ୨୩ ଅଧ୍ୟାୟ, ପାତାଳ ଖଣ୍ଡ ୮୭ରୁ ୯୭ ଓ ୧୦୮ ଅଧ୍ୟାୟ, ସୃଷ୍ଟି ଖଣ୍ଡ ୨୦, ୨୪, ୩୧, ୭୭ ଓ ୭୯-୮୨ ଅଧ୍ୟାୟ, ଉତ୍ତର ଖଣ୍ଡ ୨୭, ୩୧, ୩୨, ୩୫ରୁ ୭୧, ୭୮, ୮୫, ୯୭, ୧୨୫, ୧୭୦, ୨୪୦, ୨୪୧ ଓ ୨୭୨ ଅଧ୍ୟାୟ, ସ୍କନ୍ଦ ପୁରାଣ କେଦାରଖଣ୍ଡ ୩୩; ଦ୍ୱିତୀୟ ଭାଗ ୧ରୁ ୩୭ ଅଧ୍ୟାୟ; ୫ମ ଭାଗ ୭୦ ଓ ୭୧ ଅଧ୍ୟାୟ; ଷଷ୍ଠ ଭାଗ ୨୩୨ରୁ ୨୪୧ ଅଧ୍ୟାୟ, ଶିବ ପୁରାଣ ୩୮ରୁ ୪୦ ଅଧ୍ୟାୟ; ବରାହ ପୁରାଣ ୪୯ରୁ ୭୫ ଅଧ୍ୟାୟ ମଧ୍ୟରେ ବିଭିନ୍ନ ବ୍ରତ ବିଷୟରେ ପର୍ଯ୍ୟାଲୋଚନା କରାଯାଇଛି ।

**ଯୁଗଧର୍ମ**—ଗରୁଡ଼ ପୁରାଣର ୨୨୩ ଅଧ୍ୟାୟ, ଲିଙ୍ଗ ପୁରାଣର ୩୯ ଅଧ୍ୟାୟ, ମତ୍ସ୍ୟ ପୁରାଣର ୧୪୧ରୁ ୧୪୩ ଓ ୧୬୪ ଅଧ୍ୟାୟ, ନାରଦ ପୁରାଣର ପୂର୍ବାର୍ଦ୍ଧ ୪୧ ଅଧ୍ୟାୟ, ସ୍କନ୍ଦ ପୁରାଣର ଷଷ୍ଠ ଭାଗ ୨୬୨ ଅଧ୍ୟାୟ, ବାୟୁ ପୁରାଣ ୧ମ ଭାଗ ୩୨ରୁ ୩୮ ଅଧ୍ୟାୟ ମଧ୍ୟରେ ଯୁଗଧର୍ମ ଆଲୋଚିତ ହୋଇଛି ।

ଏହି ସମସ୍ତ ପୁରାଣବର୍ଣ୍ଣିତ ବିଷୟମାନ ମହର୍ଷି ମନୁ, ଯାଜ୍ଞବଲ୍କ୍ୟ, ନାରଦ ଓ ଅନ୍ୟାନ୍ୟ ପ୍ରାଚୀନ ସ୍ମୃତିକାରମାନଙ୍କ ଶାସ୍ତ୍ରଦ୍ୱାରା ବିଶେଷ ପ୍ରଭାବିତ ହୋଇଥିବାର ମନେହୁଏ । (୨୨)

## (ଘ) ସ୍ମୃତି

ବେଦ ବ୍ୟତୀତ ବ୍ୟାକରଣ, ଶ୍ରୌତ, ଗୃହ୍ୟ ଓ ଧର୍ମସୂତ୍ର, ମହାଭାରତ, ରାମାୟଣ, ମନୁ, ଯାଜ୍ଞବଲ୍କ୍ୟ ଓ ଅନ୍ୟାନ୍ୟ ସମ୍ପର୍କିତ ଶାସ୍ତ୍ର ସ୍ମୃତିଶାସ୍ତ୍ରର ଅନ୍ତର୍ଗତ । ଶ୍ରୁତି ଓ ସ୍ମୃତି ଏବଂ ସ୍ମୃତି ଓ ଧର୍ମଶାସ୍ତ୍ର ସମର୍ଥବାଚକ । ଆରଣ୍ୟକ, ଧର୍ମସୂତ୍ରଦର୍ଶନଶାସ୍ତ୍ର, ମହାଭାରତ ପ୍ରଭୃତିରେ ସ୍ମୃତି ଧର୍ମର ମୂଳରୂପେ ବର୍ଣ୍ଣିତ ହୋଇଛି ।(୨୩) ସ୍ମୃତି ସାହିତ୍ୟରେ ଜନତାର ବିଶ୍ୱାସ ଓ ବ୍ୟବହାର ବିଧି ରୂପାୟିତ ହୋଇଥାଏ । ତେଣୁ ପ୍ରାଚୀନ କାଳରେ ବହୁ ସ୍ମୃତିକାର ସ୍ମୃତିଗ୍ରନ୍ଥ ବା ଧର୍ମ-ଶାସ୍ତ୍ର ରଚନା କରିଥିବାର ଜଣାଯାଏ । ବୌଧାୟନ ପୂର୍ବବର୍ତ୍ତୀ ଧର୍ମଶାସ୍ତ୍ରକାରମାନଙ୍କ ମଧ୍ୟରେ ଔପଜଂଘନି, କାତ୍ୟ, କାଶ୍ୟପ,ଗୌତମ, ପ୍ରଜାପତି, ମୌଦ୍‌ଗଲ୍ୟ ଓ ହାରୀତ ପ୍ରଭୃତି ସାତଜଣ, ଆପସ୍ତମ୍ବ ଦଶଜଣ ଏବଂ ବଶିଷ୍ଠ ମଧ୍ୟ ଗୌତମ ପ୍ରଜାପତି ମନୁ, ଯମ ଓ ହାରୀତ ପ୍ରଭୃତି ପାଞ୍ଚ-ଜଣ ସ୍ମୃତିକାରଙ୍କ ନାମ ଉଲ୍ଲେଖ କରିଛନ୍ତି । ମନୁସ୍ମୃତିରେ ଅତ୍ରି, ଭୃଗୁ, ବଶିଷ୍ଠ, ବୈଖାନସ ଓ ଶୌନକଙ୍କ ନାମ ଅଛି । ସେହିପରି ଅପରାର୍କ—ଷୋହଳ, ଯାଜ୍ଞବଲ୍କ୍ୟ—କୋଡ଼ିଏ, ପରାଶର—ଊଣେଇଶ, ତନ୍ତ୍ରବାର୍ତ୍ତିକ—ଅଠର, ବୃଦ୍ଧ ଯାଜ୍ଞବଲ୍କ୍ୟ—ତିରିଶ, ଚତୁର୍ବିଂଶତି ମତ—ଚବିଶ, ଭବିଷ୍ୟ ପୁରାଣ—ଛତିଶ (୨୪), ବୃଦ୍ଧ ଗୌତମ ସ୍ମୃତି—ସତାବନ, ପ୍ରୟୋଗ ପାରିଜାତ ଓ ବୀରମିତ୍ରୋଦୟ—ଅଠର ସ୍ମୃତି, ଅଠର ଉପସ୍ମୃତି ଓ ଏକୋଇଶ ସ୍ମୃତିକାରଙ୍କ ନାମୋଲ୍ଲେଖ କରିଥିବାର ଦେଖାଯାଏ । (୨୫) ସ୍ମୃତିଚନ୍ଦ୍ରିକା ହେମାଦ୍ରିଙ୍କ ଦାନକାଣ୍ଡ, ପରିଭାଷାପ୍ରଦୀପ ଓ ପ୍ରତାପରୁଦ୍ରଦେବଙ୍କ ସରସ୍ୱତୀ-ବିଳାସରେ ଜାବାଲି, ନାଚିକେତ, ସ୍କନ୍ଦ,

---

୨୨ । History of Dharmashastra – Vol.-I, P-164-167

୨୩ । (କ) ତୈତ୍ତିରୀୟ ଆରଣ୍ୟକ—୧-୨

(ଖ) ଗୌତମ ଧର୍ମସୂତ୍ର—୧, ୨ ଓ ବଶିଷ୍ଠ ଧର୍ମସୂତ୍ର—୧-୪ ।

(ଗ) ପୂର୍ବମୀମାଂସାସୂତ୍ର—୬-୮-୨୩ ଓ ବେଦାନ୍ତ ସୂତ୍ର—୧୧-୧-୧ ।

(ଘ) ମହାଭାରତ—ଶାନ୍ତିପର୍ବ—୮୫-୧୦ ।

୨୪ । ଆଗ୍ନିରସାର—ପୃ-୧୧ ।

୨୫ । History of Dharmashastra – Vol-I-P-132-133.

ଲୌଗାକ୍ଷି, କଶ୍ୟପ, ବ୍ୟାସ, ସନତ୍କୁମାର, ଶାନ୍ତନୁ, ଜନକ, ବ୍ୟାଘ୍ର, କାତ୍ୟାୟନ, ଜାତୁକର୍ଣ୍ଣ, କପିଞ୍ଜଳ, ବୌଧାୟନ, କଣାଦ, ବିଶ୍ୱାମିତ୍ର, ପୈଠୀନସି ଓ ଗୋଭିଲାଦି ଅଷ୍ଟାଦଶ ମହର୍ଷି ଉପସ୍ମୃତିକାର ଥିବାର ଜଣାଯାଏ । ୨୨ । ପରବର୍ତ୍ତୀ ନିବନ୍ଧକାରମାନଙ୍କ ଉଦ୍ଧୃତିରେ ଏକଶତ ସ୍ମୃତିର ସୂଚନା ମିଳେ । ତନ୍ମଧ୍ୟରେ ପ୍ରାଚୀନ ସ୍ମୃତିଗ୍ରନ୍ଥଗୁଡ଼ିକ ଅର୍ଥାତ୍ ମନୁ, ଯାଜ୍ଞବଲ୍କ୍ୟ, ପରାଶର, ନାରଦ ପ୍ରଭୃତି ପ୍ରଥମ ଖ୍ରୀଷ୍ଟାବ୍ଦ ସୁଦ୍ଧା ଓ ଅନ୍ୟାନ୍ୟ ସ୍ମୃତିଗ୍ରନ୍ଥଗୁଡ଼ିକ ଅର୍ଥାତ୍ ମନୁ, ଯାଜ୍ଞବଲ୍କ୍ୟ, ପରାଶର, ନାରଦ ପ୍ରଭୃତି ପ୍ରଥମ ଖ୍ରୀଷ୍ଟାବ୍ଦ ସୁଦ୍ଧା ଓ ଅନ୍ୟାନ୍ୟ ସ୍ମୃତିଗ୍ରନ୍ଥଗୁଡ଼ିକ ୪୦୦-୧୦୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରଣୀତ ହୋଇଥିଲା । ପୂର୍ବୋକ୍ତ ସ୍ମୃତିକାରମାନଙ୍କ ନାମ ପୂର୍ବରୁ ବୃଦ୍ଧ, ବୃହତ୍ ଓ ଲଘୁ ପ୍ରଭୃତିପଦଯୁକ୍ତ ବ୍ୟକ୍ତିମାନଙ୍କର ଗ୍ରନ୍ଥ ପୃଥକ୍ ଥିବାର ଜଣାଯାଏ । ସ୍ମରଣ ମାଧ୍ୟମ ଥିବାରୁ ସ୍ମୃତିକାରବିଶେଷଙ୍କ ଉକ୍ତି ବିଭିନ୍ନ ଗ୍ରନ୍ଥରେ ବିଭିନ୍ନ ନାମରେ ଉତ୍ସର୍ଗ କରାଯାଇଥିବାର ଦେଖାଯାଏ । ସେ ଦୃଷ୍ଟିରୁ ଏଠାରେ କେତେ ଜଣ ପ୍ରମୁଖ ସ୍ମୃତିକାର ଓ ତାଙ୍କ ଗ୍ରନ୍ଥର ବିବରଣୀ ଦିଆଯାଇପାରେ ।

**୧ । ମନୁସ୍ମୃତି :**

ସଂସ୍କୃତ ସାହିତ୍ୟରେ ମନୁ ବିଭିନ୍ନ ନାମରେ ଅଭିହିତ । ମନୁଙ୍କୁ ପ୍ରାଚୀନତମ ଋଷି, କୃତଯୁଗର ରାଜା, ଅର୍ଥଶାସ୍ତ୍ରକାର, ଔଷଧିକାର, ଧର୍ମଶାସ୍ତ୍ରକାର ତଥା ମାନବଜଗତର ଜନକଭାବେ ବର୍ଣ୍ଣନା କରାଯାଇଛି । ମନୁ ଓ ମାନବଧର୍ମଶାସ୍ତ୍ରର ପ୍ରାଚୀନତା ବିଷୟ ଗୌତମ, ଆପସ୍ତମ୍ବ, ବୌଧାୟନ ପ୍ରଭୃତିଙ୍କ ଧର୍ମସୂତ୍ରର ଉଲ୍ଲେଖଦ୍ୱାରା ପ୍ରମାଣିତ ହୁଏ । ପତଞ୍ଜଳିଙ୍କଠାରୁ ଆରମ୍ଭ କରି ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକର ପରବର୍ତ୍ତୀ ସ୍ମୃତିକାରମାନେ ମନୁସ୍ମୃତିକୁ ଉଦ୍ଧାର କରିଥିବାରୁ ଏହାର ସାମ୍ପ୍ରତିକ ଆକାର ଖ୍ରୀଷ୍ଟପୂର୍ବ ୨୦୦-୨୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିବାର ଜଣାଯାଏ । ନିରୁକ୍ତକାର ଯାସ୍କଙ୍କ (୮୦୦ ଖ୍ରୀଷ୍ଟପୂର୍ବ) ସମୟରୁ ମନୁ ସ୍ମୃତିକାର ରୂପେ ପ୍ରସିଦ୍ଧ । ମହାଭାରତର ଉଲ୍ଲେଖ ଅନୁସାରେ ସ୍ୱାୟମ୍ଭୁବ ମନୁ ଭଗବାନ୍‌ଙ୍କ ମୁଖନିଃସୃତ ଏକଲକ୍ଷ ଶ୍ଳୋକାତ୍ମକ ଧର୍ମଶାସ୍ତ୍ରର ପ୍ରଚାର କରିଥିଲେ । ନାରଦ-ସ୍ମୃତି ଅନୁସାରେ ମନୁସ୍ମୃତିରେ ଚବିଶ ପ୍ରକରଣ, ଏକହଜାର ଅଶୀ ଅଧ୍ୟାୟ ଓ ଏକଲକ୍ଷ ଶ୍ଳୋକ ଥିଲା । ଏତଦ୍‌ବ୍ୟତୀତ ମନୁସ୍ମୃତିର ଗୌରବ ପ୍ରଖ୍ୟାପନ ନିମିତ୍ତ ମହାଭାରତ, ଭବିଷ୍ୟ ପୁରାଣ ପ୍ରଭୃତିରେ ବିଭିନ୍ନ ପ୍ରକାର ବିବରଣ ଉଲ୍ଲିଖିତ ରହିଛି । କିନ୍ତୁ ଉପଲବ୍ଧ ମନୁସ୍ମୃତି ମାନବ ଚରଣର ପୁନର୍ନିର୍ମାଣ ବୋଲି ବିଶ୍ୱାସ କରାଯାଏ । ଭବିଷ୍ୟ ପୁରାଣ ଅନୁସାରେ ସ୍ୱାୟମ୍ଭୁବ ଶାସ୍ତ୍ରର ଭାର୍ଗବ, ନାରଦୀୟ, ବାର୍ହସ୍ପତ୍ୟ ଓ ଆଙ୍ଗିରସ ନାମରେ ଚାରୋଟି ସଂହିତା ଥିବାର ଜଣାଯାଏ । ୨୨ ।

ମନୁସ୍ମୃତିର ଦ୍ୱାଦଶ ଅଧ୍ୟାୟରେ ପ୍ରାୟ ଦୁଇହଜାର ଛ'ଶହ ଚୌରାଶି ଶ୍ଳୋକ ଅଛି । ଏଥିରେ ଯଥାକ୍ରମେ (୧) ମନ୍ୱନ୍ତର, ଯୁଗଧର୍ମ, ଗ୍ରନ୍ଥ ବିଷୟ, (୨) ଧର୍ମର ମୂଳ, ଦେଶ,

୨୨ । (କ) ସରସ୍ୱତୀବିଳାସ—ପୃ-୧୩, (ଖ) ପରିଭାଷାପ୍ରଦୀପ—ପୃ-୧୮

୨୨ । History of Dharmasastra—Vol-I, Pt.-I, P-309-317

ସଂସ୍କାର, (୩) ବ୍ରହ୍ମଚର୍ଯ୍ୟ ଓ ଗାର୍ହସ୍ଥ୍ୟଧର୍ମ, ବିବାହ-ବିଧି, ପଞ୍ଚଯଜ୍ଞ, ଶ୍ରାଦ୍ଧ, (୪) ଗାର୍ହସ୍ଥ୍ୟ ଜୀବନ, ଅଧ୍ୟୟନ, ଅଭକ୍ଷ୍ୟ ଅନ୍ନ, (୫) ଖାଦ୍ୟାଖାଦ୍ୟ, ମାଂସଭକ୍ଷଣ, ସପିଣ୍ଡ ବିଧି, ଶୁଚି, ସଧବା ଓ ବିଧବାର କର୍ତ୍ତବ୍ୟ, (୬) ପରିବ୍ରାଜକ, (୭) ରାଜଧର୍ମ, (୮) ବ୍ୟବହାର-ବିଧି, (୯) ନୈତିକ କର୍ତ୍ତବ୍ୟ, ନିଯୋଗ, ଦାୟଭାଗ, ସ୍ତ୍ରୀଧନ, ପ୍ରାୟଶ୍ଚିତ୍ତ, (୧୦) ସାଧାରଣ ଧର୍ମ, (୧୧) ଦାନପ୍ରଶଂସା, ବିବିଧ ପାପ ଓ ପ୍ରାୟଶ୍ଚିତ୍ତ, (୧୨) କର୍ମ, ବେଦ ପ୍ରଶଂସାଦି ମୁଖ୍ୟତଃ ଆଲୋଚିତ ହୋଇଛି । ଏଥିରେ ବେଦ, ଆରଣ୍ୟକ, ବେଦାଙ୍ଗ, ଧର୍ମଶାସ୍ତ୍ରକାର ଅତ୍ରି, ଉତଥ୍ୟ, ଭୃଗୁ, ଶୌନକ, ବଶିଷ୍ଠ, ଇତିହାସ, ପୁରାଣ, ଉପନିଷଦ୍, ଯୋଗସୂତ୍ର ପ୍ରଭୃତି ଉଦ୍ଧୃତ ହୋଇଛି ।

ମନୁସ୍ମୃତିର ପ୍ରାଧାନ୍ୟ ଅଦ୍ୟାବଧି ଭାରତର ସାମାଜିକ, ନୈତିକ ଓ ଧାର୍ମିକ ଜୀବନରେ ସ୍ୱୀକୃତ ହେଉଛି । ବହୁ ଟୀକାକାର, ଐତିହାସିକ, ଆଲୋଚକ ଓ ଗବେଷକ ମନୁସ୍ମୃତିର ବିଭିନ୍ନ ବିଷୟରେ ଆଲୋକପାତ କରିଛନ୍ତି । ଏଠାରେ ବିବାଦୀୟ ବିଷୟକୁ ବାଦ୍ ଦେଇ ଏହାର ବୈଶିଷ୍ଟ୍ୟ ସମ୍ବନ୍ଧରେ କେତୋଟି କଥା ଉଲ୍ଲେଖ କରାଯାଇପାରେ । ଲୋକେ ଘୃଣା କରୁଥିବା ବା ଦୁଃଖଦାୟକ ହେଉଥିବା କୌଣସି ଧର୍ମ ପାଳନୀୟ ନୁହେଁ । ବ୍ରାହ୍ମଣ ଶୂଦ୍ରା କନ୍ୟାର ପାଣିଗ୍ରହଣ କରିପାରିବେ ନାହିଁ । ନିଯୋଗ ପଶୁଧର୍ମ ତୁଲ୍ୟ ଘୃଣ୍ୟ । ବାଗ୍‌ଦତ୍ତା କନ୍ୟାର ବର ମରିଗଲେ ବରର ସାନଭାଇ ସେ କନ୍ୟାକୁ ବିବାହ କରିପାରିବ । ମଧୁପର୍କ, ଯଜ୍ଞ, ଶ୍ରାଦ୍ଧ ଓ ଦେବପୂଜାରେ ପଶୁହତ୍ୟା କରାଯାଇପାରେ, ମାତ୍ର ମାଂସଭକ୍ଷଣ ଉଦ୍ଦେଶ୍ୟରେ ନୁହେଁ । ରାଜା ବା ଶାସକ ନିଜ ରାଜ୍ୟର ସୁରକ୍ଷା ନ କଲେ ପ୍ରଜାମାନଙ୍କ ଦୁଷ୍କର୍ମଜନିତ କୁଫଳର ଏକ-ଚତୁର୍ଥାଂଶ ଭାଗୀ ହେବେ । ସ୍ତ୍ରୀଲୋକମାନେ ସ୍ୱାଧୀନ ହୋଇପାରିବେ ନାହିଁ । ଗୋ, ବ୍ରାହ୍ମଣ ତଥା ଆତ୍ମରକ୍ଷା ନିମିତ୍ତ ଆବଶ୍ୟକ ସ୍ଥଳେ ବ୍ରାହ୍ମଣ ଶସ୍ତ୍ରଧାରଣ କରିପାରିବେ । ସାଧାରଣତଃ କୌଣସି ବର୍ଣ୍ଣ ଅନ୍ୟ ବର୍ଣ୍ଣର କର୍ତ୍ତବ୍ୟ, ଉତ୍ସବ ଓ ଜୀବନଧାରାରେ ହସ୍ତକ୍ଷେପ କରିବେ ନାହିଁ । ୨୮ ।

## ୨ । ଯାଜ୍ଞବଲ୍କ୍ୟ ସ୍ମୃତି :

ଯାଜ୍ଞବଲ୍କ୍ୟ (ଖ୍ରୀଷ୍ଟପୂର୍ବ ୧୦୦-୩୦୦ ଖ୍ରୀଷ୍ଟାବ୍ଦ) ଶୁକ୍ଳଯଜୁର୍ବେଦୀୟ ଶାଖାର ଜଣେ ବୈଦିକ ଋଷି ଥିଲେ । ଗୁରୁ ବୈଶମ୍ପାୟନଙ୍କୁ ତ୍ୟାଗ କରି ଯାଜ୍ଞବଲ୍କ୍ୟ ସୂର୍ଯ୍ୟପୂଜା ଦ୍ୱାରା ଶୁକ୍ଳ-ଯଜୁର୍ବେଦ ଓ ଶତପଥ ବ୍ରାହ୍ମଣର ମନ୍ତ୍ରଦ୍ରଷ୍ଟା ହୋଇପାରିଥିଲେ । ୨୯ । ବିଷ୍ଣୁ ପୁରାଣ ଓ ଭାଗବତ ପୁରାଣରେ ଅନୁରୂପ କାହାଣୀ ଥିବାର ଦେଖାଯାଏ । ବୃହଦାରଣ୍ୟକର

---

୨୮ । "Aspect of the social and political system of Manusmruti"—K. V. Rangaswami Aiyangar, P-94-135.

୨୯ । ମହାଭାରତ ଶାନ୍ତିପର୍ବ—୩୧୨ ଅଧ୍ୟାୟ ।

ଉଲ୍ଲେଖ ଅନୁସାରେ ସେ ଥିଲେ ଜଣେ ବୀଷ୍ଣୁ ଦାର୍ଶନିକ। ଯାଜ୍ଞବଲ୍କ୍ୟ ଥିଲେ ବ୍ରାହ୍ମଣ, ଆରଣ୍ୟକ ଓ ଯୋଗଶାସ୍ତ୍ରର ପ୍ରଣେତା ।୩୦।

ଯାଜ୍ଞବଲ୍କ୍ୟ-ସ୍ମୃତିରେ ଏକହଜାର ତିନି, ଛଅ, ନଅ ବା ଦଶ ଶ୍ଳୋକ ଥିବାର ଜଣାଯାଏ । ଏହା ଆଚାର, ବ୍ୟବହାର ଓ ପ୍ରାୟଶ୍ଚିତ୍ତ ନାମରେ ତିନି ଅଧ୍ୟାୟ ଓ ଚଉରାଳିଶ ପ୍ରକରଣରେ ବିଭକ୍ତ । ଏଥିରେ (୧) ଚତୁର୍ଦ୍ଦଶ ବିଦ୍ୟା, ଧର୍ମର ମୂଳ, ସଭାଗଠନ, ସଂସ୍କାର, ବର୍ଣ୍ଣଜାତି, ଗୃହସ୍ଥ, ସ୍ନାତକ, ଭକ୍ଷ୍ୟାଭକ୍ଷ୍ୟ, ଶୁଦ୍ଧି, ଦାନ, ଶ୍ରାଦ୍ଧ, ଗଣପତି ଓ ନବଗ୍ରହ-ପୂଜା, ରାଜଧର୍ମ; (୨) ସାଧାରଣ ଓ ଅସାଧାରଣ ବ୍ୟବହାର, ଋଣଦାନ, ଉପନିଧି, ସାକ୍ଷୀ, ଲେଖ୍ୟ, ଦିବ୍ୟ, ଦାୟ, ସୀମାବିବାଦ, ସ୍ୱସ୍ୱାମିପାଳବିବାଦ, ସ୍ୱାମିବିକ୍ରୟ, ଦତ୍ତପ୍ରଦାନିକ, କ୍ରୀତାନୁଶୟ, ଅଭ୍ୟୁପେତ୍ୟାଶୁଶ୍ରୂଷା, ସମ୍ବିଦ୍‌ବ୍ୟତିକ୍ରମ, ବେତନାଦାନ, ଦ୍ୟୂତସମାହ୍ୱୟ, ବାକ୍‌ପାରୁଷ୍ୟ, ଦଣ୍ଡପାରୁଷ୍ୟ, ସାହସ, ବିକ୍ରିୟାସମ୍ପ୍ରଦାନ, ସମ୍ଭୂୟସମୁତ୍ଥାନ, ସ୍ତେୟ, ସ୍ତ୍ରୀ-ସଂଗ୍ରହଣ ଓ ପ୍ରକୀର୍ଣ୍ଣ ବିଷୟ; (୩) ଅଶୌଚ, ଆପଦ୍ଧର୍ମ, ବାନପ୍ରସ୍ଥ, ଯତିଧର୍ମ, ପ୍ରାୟଶ୍ଚିତ୍ତ ଓ ପ୍ରକୀର୍ଣ୍ଣକ ମଧ୍ୟରେ ମନୁସ୍ମୃତି ଅନ୍ତର୍ଗତ ସମସ୍ତ ବିଷୟ ବର୍ଣ୍ଣିତ ହୋଇଛି । ଏଥିରେ ବିଷ୍ଣୁଧର୍ମ-ସୂତ୍ର, ମାନବ ଗୃହ୍ୟସୂତ୍ର, ମନୁସ୍ମୃତି, ବେଦାବେଦାଙ୍ଗ, ପୁରାଣ, ଇତିହାସ ଉପନିଷଦ୍, ଅର୍ଥଶାସ୍ତ୍ର, ବାଜସନେୟ ସଂହିତା ଓ ପୈଠୀନସି ପ୍ରଭୃତିଙ୍କର ଉଦ୍ଧୃତି ଅଛି ।

ଏତଦ୍‌ବ୍ୟତୀତ ବୃଦ୍ଧଯାଜ୍ଞବଲ୍କ୍ୟ, ଯୋଗୀଯାଜ୍ଞବଲ୍କ୍ୟ ଓ ବୃହଦ୍‌ଯାଜ୍ଞବଲ୍କ୍ୟ ନାମରେ ତିନିଜଣ ସ୍ମୃତିକାର ଯଥାକ୍ରମେ ବ୍ୟବହାର, ଯୋଗ ଓ ସ୍ମୃତିଶାସ୍ତ୍ର ରଚନା କରିଥିବାର ଜଣାଯାଏ । ଏହି ଶେଷୋକ୍ତ ସ୍ମୃତିଗ୍ରନ୍ଥଟି ନଅଶହତିରିଶ ଶ୍ଳୋକ ଓ ଦ୍ୱାଦଶ ଅଧ୍ୟାୟରେ ବିଭକ୍ତ । ଏଥିରେ ଯଥାକ୍ରମେ (୧) ବେଦ ଓ ସ୍ମୃତିସାର, ଆତ୍ମବିଦ୍ୟା, (୨) ପ୍ରଣବ, (୩) ବ୍ୟାହୃତି, (୪) ଗାୟତ୍ରୀ, (୫) ନ୍ୟାସ, (୬) ସନ୍ଧ୍ୟୋପାସନା, (୭) ତର୍ପଣ, ସନ୍ଧ୍ୟା, ଜପ, (୮) ପ୍ରାଣାୟାମ, (୯) ଧ୍ୟାନ, (୧୦) ସୂର୍ଯ୍ୟୋପସ୍ଥାନ, (୧୧) ଯୋଗଧର୍ମ ଓ (୧୨) ଚତୁର୍ଦ୍ଦଶ ବିଦ୍ୟାର ମୂଳ ରୂପେ ବେଦାଦି ବିଷୟ ଆଲୋଚିତ ହୋଇଛି । ଆଲୋଚକମାନେ ୩୦୦-୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଗ୍ରନ୍ଥଟି ପ୍ରଣୀତ ହୋଇଥିଲା ବୋଲି ମତ ପ୍ରଦାନ କରନ୍ତି ।

ବିଷ୍ଣୁଧର୍ମସୂତ୍ର, କୌଟିଲ୍ୟ ଅର୍ଥଶାସ୍ତ୍ର, ଶୁକ୍ଳ-ଯଜୁର୍ବେଦ ଓ ତତ୍‌ସମ୍ପୃକ୍ତ ସାହିତ୍ୟ ସହିତ ଯାଜ୍ଞବଲ୍କ୍ୟ ସ୍ମୃତିର ଘନିଷ୍ଠ ସମ୍ପର୍କ ଥିବାର ଦେଖାଯାଏ । ଭାରତୀୟ ସମାଜ ଓ ଧର୍ମ ବିଷୟରେ ଯାଜ୍ଞବଲ୍କ୍ୟଙ୍କ ଉଦାର ଚିନ୍ତାଧାରାର ନମୁନା ସ୍ୱରୂପ ଏଠାରେ କେତୋଟି ଉଦାହରଣ ଉଲ୍ଲେଖ କରାଯାଇପାରେ : (୧) ବ୍ରାହ୍ମଣ ଶୂଦ୍ରକନ୍ୟା ବିବାହ କରିପାରିବେ ନାହିଁ । (୨) ନିଯୋଗ ବ୍ୟବସ୍ଥା ଓ ବ୍ୟବହାର ପଦ ସହିତ ବିଧବାକୁ ନିଃସନ୍ତାନର ଉତ୍ତରାଧିକାରିଣୀ ହେବା ନିମିତ୍ତ ସ୍ୱୀକୃତି ଦିଆଯାଇଛି । (୩) ରାଜକୀୟ ଆୟବୃଦ୍ଧି ନିମିତ୍ତ ଦ୍ୟୂତକ୍ରୀଡ଼ା ବା ଲଟେରୀ ଜାତୀୟ ବୃତ୍ତିକୁ ଅନୁମତି ଦିଆଯାଇପାରେ । (୪) ବିଶ୍ୱବିଦ୍ୟାଳୟର

୩୦ । ଯାଜ୍ଞବଲ୍କ୍ୟ-ସ୍ମୃତି—ପୃ-୨୩ ।

କାର୍ଯ୍ୟ ପ୍ରସଙ୍ଗରେ ବିଭିନ୍ନ ସାକ୍ଷ୍ୟ, ଲେଖ୍ୟ ପ୍ରଭୃତି ବିଗୃହ୍ୟ ହେବ । (୫) ଗୃଣଜାତି ଦ୍ଵିଜଙ୍କ ସ୍ଵୀକୃତ; ତେଣୁ ସେମାନଙ୍କର ଗର୍ଭାଧାନଠାରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ବୈଦିକ ରୀତିରେ ସମ୍ପାଦିତ ହେବ ।

### ୩ । ପରାଶର ସ୍ମୃତି :

ମହର୍ଷି ଯାଜ୍ଞବଲ୍କ୍ୟ, ଗରୁଡ଼ ପୁରାଣ ଓ ଅର୍ଥଶାସ୍ତ୍ରାଦିର ଉଲ୍ଲେଖ ଅନୁସାରେ ପରାଶର ଥିଲେ ଅନ୍ୟତମ ପ୍ରାଚୀନ ସ୍ମୃତିକାର । କିନ୍ତୁ ଉପଲବ୍‌ଧ ପରାଶର-ସ୍ମୃତିରେ ଯାଜ୍ଞବଲ୍କ୍ୟ-ସ୍ମୃତିର ଉଦ୍ଧୃତି ଅଛି । ପରାଶର-ସ୍ମୃତି ଦ୍ଵାଦଶ ଅଧ୍ୟାୟରେ ବିଭକ୍ତ । ଏଥିରେ ଥିବା ପାଞ୍ଚଶହ ବୟାନବେ ଶ୍ଳୋକ ମଧ୍ୟରେ ମୁଖ୍ୟତଃ ଆଚାର ଓ ପ୍ରାୟଶ୍ଚିତ୍ତ ବିଷୟ ପର୍ଯ୍ୟାଲୋଚିତ ହୋଇଛି । ଅଧ୍ୟାୟ ଅନୁସାରେ ଯଥାକ୍ରମେ (୧) ଯୁଗଧର୍ମ, ଷଟ୍‌କର୍ମ (ସନ୍ଧ୍ୟା, ସ୍ନାନ, ଜପ, ହୋମ, ବେଦାଧ୍ୟୟନ ଓ ଇଷ୍ଟପୂଜା), ଅତିଥିସେବା, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଜାତିତ୍ରୟର ଜୀବିକା, (୨) ଗୃହସ୍ଥଧର୍ମ, କୃଷି, (୩) ଜନନମରଣାଶୌଚ ଓ ଶୁଦ୍ଧି, (୪) ଆତ୍ମହତ୍ୟା, ସ୍ଵାମୀ-ବିରୋଧିନୀ ସ୍ତ୍ରୀର ଦଣ୍ଡ-ବ୍ୟବସ୍ଥା, କୁଣ୍ଡ, ଗୋଲକ, ପରିବିତ୍ତି ନିୟମ, ପୁନର୍ବିବାହ, (୫) ବ୍ରାହ୍ମଣର ଆତ୍ମହତ୍ୟା, (୬) ପଶୁ-ପକ୍ଷୀ-ନାରୀ-ବ୍ରାହ୍ମଣାଦି ହତ୍ୟାକାରୀ ପ୍ରତି ଦଣ୍ଡ, (୭) ଦ୍ରବ୍ୟାଦି ଶୁଦ୍ଧି, (୮) ଧେନୁ ଓ ଅନୁଡ଼୍ଵାହ ହତ୍ୟାଦୋଷ, ପରିଷଦ ଗଠନ, (୯) ଗୋରୁର ଶାସନ ନିମିତ୍ତ ଦଣ୍ଡ ବା ଯଷ୍ଟିର ପରିମାଣ, (୧୦) ଚାନ୍ଦ୍ରାୟଣ, ଅଗମ୍ୟାଗମନଦୋଷ, (୧୧) ଅଭକ୍ଷ୍ୟଭକ୍ଷଣଦୋଷ, (୧୨) ଦୁଃସ୍ଵପ୍ନ, ବମନ, କ୍ଷୌରାଦି କର୍ମ ପରେ ସ୍ନାନବ୍ୟବସ୍ଥାଦି ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥରେ ମନୁ, ବୌଧାୟନ ଧର୍ମସୂତ୍ର, ବଶିଷ୍ଠ ଧର୍ମସୂତ୍ର, ବୈଦିକ ମନ୍ତ୍ର, ଯାଜ୍ଞବଲ୍‌କ୍ୟ-ସ୍ମୃତି ପ୍ରଭୃତିର ଉଦ୍ଧୃତିମାନ ରହିଛି ।

'ବୃହତ୍ ପରାଶର-ସ୍ମୃତି' ନାମରେ ଅନ୍ୟ ଏକ ଗ୍ରନ୍ଥରେ ଦ୍ଵାଦଶ ଅଧ୍ୟାୟ ଓ ତିନି-ହଜାର ତିନିଶହ ଶ୍ଳୋକ ଅଛି । ମୂଳ ପରାଶର-ସ୍ମୃତିର ଏହା ଏକ ନବୀନ ସଂସ୍କରଣ ବୋଲି ମନେହୁଏ । ତଦ୍‌ବ୍ୟତୀତ ନିବନ୍ଧଗ୍ରନ୍ଥମାନଙ୍କରେ ବୃଦ୍ଧ-ପରାଶର, ଜ୍ୟୋତି-ପରାଶର ପ୍ରଭୃତି ସ୍ମୃତିକାରଙ୍କ ନାମୋଲ୍ଲେଖ ଥିବାର ଦେଖାଯାଏ; କିନ୍ତୁ ଏମାନଙ୍କ ପ୍ରଣୀତ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ଅଦ୍ୟାବଧି ଉପଲବ୍‌ଧ ହୋଇନାହିଁ । ୩୧ ।

ପରାଶର ସ୍ମୃତିର ବୈଶିଷ୍ଟ୍ୟ ବିଷୟରେ କେତୋଟି ଉଦାହରଣ ଉଲ୍ଲେଖ କରାଯାଇପାରେ : (୧) ବହୁ ପ୍ରକାର ପୁତ୍ର ମଧ୍ୟରେ ଔରସ, କ୍ଷେତ୍ରଜ, ଦତ୍ତ ଓ କୃତ୍ରିମ ପୁତ୍ର ଚତୁଷ୍ଟୟ ପ୍ରଧାନ । (୨) ଗୃହପାଳିତ ପଶୁ-ହତ୍ୟାକାରୀର ଦଣ୍ଡ ସ୍ଵରୂପ ଅନୁରୂପ ପଶୁଟିଏ ବା ତାର ମୂଲ୍ୟ ପ୍ରକୃତ ଅଧିକାରୀକୁ ଦେବ । (୩) ଶୂଦ୍ର ଗୃହରୁ ଅସିଦ୍ଧ

---

୩୧ । History of Dharamasastra—Vol. I, Pt.-I, P-190, 423, 459-466.

ଖାଦ୍ୟ, କ୍ଷୀର ଓ ତୈଳାଦି ବ୍ରାହ୍ମଣ ଗ୍ରହଣ କରିପାରେ । (୪) ଆକ୍ରମଣ, ମାର୍ଗଯାତ୍ରା, ରୋଗ ଓ ପ୍ରାକୃତିକ ବିପଦ ସମୟରେ ପ୍ରଥମେ ଶରୀର ଓ ପରେ ଧର୍ମାଚରଣ କରଣୀୟ । ୩୨ ।

## (୪) ନାରଦ-ସ୍ମୃତି :

ନାରଦ ଥିଲେ ପ୍ରାଚୀନତମ ଋଷି । ମନୁ, ବ୍ୟାସ ତଥା ମହାଭାଷ୍ୟକାରଙ୍କ ଉଲ୍ଲେଖ ଅନୁସାରେ ନାରଦ ତଥା ପର୍ବତ ମୁନିଙ୍କର ପ୍ରାଚୀନତା ପ୍ରମାଣିତ ହୁଏ । କିନ୍ତୁ ସ୍ମୃତିକାର ନାରଦ ୧୦୦-୩୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ମୃତିଶାସ୍ତ୍ର ରଚନା କରିଥିବା ବିଶ୍ୱାସ କରାଯାଏ । ନାରଦ-ସ୍ମୃତି ପ୍ରାୟ ନଅଶହ ପଞ୍ଚାଶୀ ଶ୍ଳୋକକୁ ନେଇ ତିନୋଟି ଅଧ୍ୟାୟରେ ବିଭକ୍ତ । ପ୍ରଥମରେ ବିଚାର, ଦ୍ୱିତୀୟରେ ବ୍ୟବହାର ଓ ତୃତୀୟରେ ସଭାର ଲକ୍ଷଣ ଉଲ୍ଲେଖ ରହିଛି । ଏଥିରେ ବ୍ୟବହାର ପଦକୁ ସତରଟି ପ୍ରକରଣରେ ବିଭକ୍ତ କରାଯାଇ ଯଥାକ୍ରମେ ଋଣଦାନ, ଉପନିଧି, ସମ୍ଭୂୟ-ସମୁତ୍ଥାନ, ଦତ୍ତାପ୍ରଦାନିକ, ଅଶୁଶ୍ରୂଷାଭ୍ୟୁପଗମ, ବେତନଅନପାକର୍ମ, ଅସ୍ୱାମିବିକ୍ରୟ, ବିକ୍ରିୟାସମ୍ପ୍ରଦାନ, କ୍ରୀତାନୁଶୟ, ସମୟୋପକର୍ମ, କ୍ଷେତ୍ରଜ ବିବାଦ, ସ୍ତ୍ରୀ-ପୁଂସଂଯୋଗ, ଦାୟଭାଗ, ସାହସ, ପାରୁଷ୍ୟ, ଦ୍ୟୂତସମାହ୍ୱୟ-ଓ ପ୍ରକୀର୍ଣ୍ଣକ ବିଷୟ ପ୍ରଭୃତି ମନୁ, ମାର୍କଣ୍ଡେୟ, ସୁମତିଭାର୍ଗବ, ଯାଜ୍ଞବଲ୍‌କ୍ୟ, ବଶିଷ୍ଠ ଧର୍ମସୂତ୍ର, ପୁରାଣ, ମହାଭାରତାଦିର ଉଦ୍ଧୃତି ସହିତ ଆଲୋଚିତ ହୋଇଅଛି । ୩୩ ।

ନାରଦ ମନୁସ୍ମୃତିର ବିଚାର ଉପରେ ଅଧିକ ନିର୍ଭର କରିଥିଲେ ମଧ୍ୟ ଉଭୟ ମଧ୍ୟରେ କେତେକ ମତପାର୍ଥକ୍ୟ ଥିବାର ଦେଖାଯାଏ । ନାରଦ-ସ୍ମୃତିରେ ନିୟୋଗ ପ୍ରଥା, ମାତୃକୁଳ କନ୍ୟାର ପାଣିଗ୍ରହଣ, ପଞ୍ଚଦଶ ପ୍ରକାର ଭୃତ୍ୟ, ଦ୍ୟୂତକ୍ରୀଡ଼ା ପ୍ରଭୃତିକୁ ସ୍ୱୀକୃତି ଦିଆଯାଇଛି । ମନୁଙ୍କ ତୁଳନାରେ ସମ୍ପତ୍ତି ବିଭାଜନ ନୀତିକୁ ଅଧିକ ସରଳ କରାଯାଇଛି । ନାରଦ ଋଣଦାନ-ବିଧିକୁ ପ୍ରଥମେ ଚାରିଭାଗରେ ଓ ପରେ ବତିଶ ଉପବିଭାଗରେ ବିଭକ୍ତ କରିଛନ୍ତି । ସ୍ତ୍ରୀ-ପୁଂ-ସଂଯୋଗ ପ୍ରସଙ୍ଗରେ ଆଲୋଚିତ ଚତୁର୍ଦ୍ଦଶବିଧ ନପୁଂସକ, ତ୍ରିବିଧ ପୁନର୍ଭୂ ଓ ଚତୁର୍ବିଧ ସ୍ୱୈରିଣୀ ବିଚାର ପ୍ରଭୃତି ଗ୍ରନ୍ଥର ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଯାଜ୍ଞବଲ୍‌କ୍ୟଙ୍କ ଅପେକ୍ଷା ନାରଦ ବ୍ୟବହାରର ବିଚାରଧାରାକୁ ଅଧିକ ଉନ୍ନତ ଓ ବିସ୍ତୃତ କରିଥିବାର ଦେଖାଯାଏ । ମନୁ ଓ ଯାଜ୍ଞବଲ୍‌କ୍ୟ ପ୍ରବ୍ରଜିତା ଧର୍ଷଣକୁ ଅଧିକ ଗୁରୁତ୍ୱ ଦେଇ ନଥିବା ସ୍ଥଳେ ନାରଦ ସେଭଳି କାର୍ଯ୍ୟକୁ ପାପରୂପେ ବର୍ଣ୍ଣନା କରିଛନ୍ତି । ନାରଦ ସର୍ବପ୍ରଥମ ଷୋହଳ ବର୍ଷ ପର୍ଯ୍ୟନ୍ତ ନାବାଳକତ୍ୱ ସ୍ୱୀକାର କରିଛନ୍ତି । ସେ ଧର୍ମ ବିଧାନ ଅପେକ୍ଷା ଲୋକ-ବ୍ୟବହାରକୁ ଅଧିକ ଗୁରୁତ୍ୱ

---

୩୨ । ଦେଶଭଙ୍ଗେ ପ୍ରବାସେ ବା ବ୍ୟାଧିଷୁ ବ୍ୟସନେଷ୍ୱପି ।
ରକ୍ଷେଦେବ ସ୍ୱଦେହାଦି ପଶ୍ଚାଦ୍ଧର୍ମଂ ସମାଚରେତ୍ ॥
ଆପତ୍‌କାଲେତୁ ସମ୍ପ୍ରାପ୍ତେ ଶୌଚାଚାରଂ ନ ଚିନ୍ତୟେତ୍ ।
ସ୍ୱୟଂ ସମୁଦ୍ଧରେତ୍ ପଶ୍ଚାତ୍ ସ୍ୱସ୍ଥୋ ଧର୍ମଂ ସମାଚରେତ୍ ॥ (ପରାଶର—୭ମ ଅଧ୍ୟାୟ)

୩୩ । ନାରଦ-ସ୍ମୃତି—ପୃ. ୧୦-୬୮ ।

ଦେଇଛନ୍ତି । ୩୪ । ପରବର୍ତ୍ତୀ ସ୍ମୃତିକାରମାନଙ୍କ ଉଦ୍ଧୃତିରୁ ନାରଦ ଆଚାର, ପ୍ରାୟଶ୍ଚିତ୍ତ, ରାଜନୀତି, ରାଜଧର୍ମ ପ୍ରଭୃତି ବିଷୟରେ ଶାସ୍ତ୍ରକାର ଥିବାର ଜଣାଯାଏ । ୩୫ ।

## ୫ । ବୃହସ୍ପତି-ସ୍ମୃତି :

ଭାରତର ଧର୍ମଶାସ୍ତ୍ର-ସାହିତ୍ୟରେ ବୃହସ୍ପତି (୨୦୦-୪୦୦ ଖ୍ରୀଷ୍ଟାବ୍ଦ) ପ୍ରଥମ କରି ଦ୍ୱିବିଧ ବିଚାର (ଦେଓ୍ୱାନୀ ଓ ଫୌଜଦାରୀ) ବିଭାଗର ସ୍ୱତନ୍ତ୍ର ଆଲୋଚନା କରିଛନ୍ତି । ତଦନୁଯାୟୀ ବିଚାରର ସୁବିଧା ନିମିତ୍ତ ଅଷ୍ଟାଦଶ ଅଧିକାର ମଧ୍ୟରୁ ଚଉଦ ପ୍ରକାର ସମ୍ପତ୍ତି ଅଧିକାରକୁ ଦେଓ୍ୱାନୀରେ (ଧନ ବ୍ୟବହାର) ଓ ଚାରିପ୍ରକାର ହିଂସାଜନିତ ଅଧିକାରକୁ ଫୌଜଦାରୀରେ (ହିଂସା ବ୍ୟବହାର) ବିଭକ୍ତ କରାଯାଇଛି । ୩୬ । ଦୁର୍ଭାଗ୍ୟର କଥା, ପରବର୍ତ୍ତୀ ସ୍ମୃତିଗ୍ରନ୍ଥରେ ଥିବା ଉଦ୍ଧୃତି ବ୍ୟତୀତ ଅଦ୍ୟାବଧି ବୃହସ୍ପତି-ସ୍ମୃତିର ପୂର୍ଣ୍ଣାଙ୍ଗ କଳେବର ଉପଲବ୍ଧ ହୋଇ-ନାହିଁ । ମନୁସ୍ମୃତିର ସୁଧହାର, ଋଣଦାନ, ପ୍ରମାଣାଦି ବ୍ୟବସ୍ଥାକୁ ବୃହସ୍ପତି ଅଧିକ ସରଳ ଓ ସମୟୋପଯୋଗୀ କରିଥିବାର ଅପରାର୍କଙ୍କ ଉକ୍ତିରୁ ଜଣାଯାଏ । ୩୭ । ଯାଜ୍ଞବଲ୍କ୍ୟ-ସ୍ମୃତିର ବ୍ୟବହାର-ଅଧ୍ୟାୟବର୍ଣ୍ଣିତ ବିଷୟ ବିସ୍ତୃତଭାବେ ବୃହସ୍ପତି-ସ୍ମୃତିରେ ଆଲୋଚିତ ହୋଇଥିବାର ଦେଖାଯାଏ । ବୃହସ୍ପତିଙ୍କ ଅନୁସାରେ ଅପୁତ୍ରକ ସ୍ୱାମୀର ମୃତ୍ୟୁପରେ ସ୍ୱାମୀ-ସମ୍ପତ୍ତିରେ ବିଧବାର ପୂର୍ଣ୍ଣ ଅଧିକାର ରହିବ । ୩୮ । ଗୋଚାରଣ, ପଥ, ଜୀର୍ଣ୍ଣବସ୍ତ୍ର, ଋଣ, ବିଜାତ-ଦ୍ୟୂତବିଦ୍ୟାର୍ଜିତ ଧନ ଓ ଧର୍ମକାର୍ଯ୍ୟ ପାଇଁ ଦିଆଯାଇଥିବା ଧନସମ୍ପତ୍ତି ବିଭାଜ୍ୟ ନୁହେଁ; କିନ୍ତୁ ପୈତୃକଜ୍ଞାନ ବା ଶିକ୍ଷାଦ୍ୱାରା ବା ବୀରତ୍ୱର ପରାକାଷ୍ଠାଦ୍ୱାରା ଯାହା ହସ୍ତଗତ ହୋଇଥାଏ ତାହା ଭାଇମାନଙ୍କ ମଧ୍ୟରେ ବିଭାଜ୍ୟ ହେବ । ୩୯ ।

---

୩୪ । ଧର୍ମଶାସ୍ତ୍ରବିରୋଧେ ତୁ ଯୁକ୍ତିଯୁକ୍ତୋ ବିଧିଃ ସ୍ମୃତଃ ।
ବ୍ୟବହାରୋହି ବଲବାନ୍ ଧର୍ମସ୍ତେନାବହୀୟତେ ॥ H. Dh. Vol-I-P-203.

୩୫ । History of Dharmasastra—Vol-I. Pt-I, P-473-475.

୩୬ । ଦ୍ୱିପଦୋ ବ୍ୟବହାରସ୍ତ ଧନହିଂସା ସମୁଦ୍‌ଭବଃ ।
ଦ୍ୱିସପ୍ତଧାର୍ଥ ମୂଲଶ୍ଚ ହିଂସାମୂଲଶ୍ଚତୁର୍ବିଧଃ ॥ (ବ୍ୟବହାରମାତୃକା-୧-୨୬୭)

୩୭ । History of Dharmasastra – Vol-I, Pt-I, P-484.

୩୮ । ସକୁଲ୍ୟୈର୍ବିଦ୍ୟମାନୈସ୍ତୁ ପିତୃଭ୍ରାତୃସନାଭିଭିଃ ।
ଅସୁତସ୍ୟ ପ୍ରମୀତସ୍ୟ ପତ୍ନୀ ତଦ୍‌ଭାଗହାରିଣୀ ॥ (ଅପରାର୍କ-ଯାଜ୍ଞ—୨-୧୩୫)

୩୯ । (କ) ଗୋପ୍ରଚାରଶ୍ଚ ରଥ୍ୟା ଚ ବସ୍ତ୍ରଂ ଯଚ୍ଚାଙ୍ଗ ଯୋଜିତମ୍ ।
ପ୍ରୟୋଜ୍ୟଂ ନ ବିଭଜ୍ୟେତ ଧର୍ମାର୍ଥଂ ଚ ବୃହସ୍ପତିଃ ॥ (ଅପରାର୍କ-ଯାଜ୍ଞ-୨-୧୧୮)

ବିଭିନ୍ନ କ୍ଷେତ୍ରରେ ନାରଦଙ୍କ ସହିତ ବୃହସ୍ପତିଙ୍କ ବିଚାରଧାରାର ସାମଞ୍ଜସ୍ୟ ଥିବାର ଦେଖାଯାଏ । ମୁଦ୍ରିତ ବୃହସ୍ପତି ସ୍ମୃତି ବ୍ୟବହାର, ସଂସ୍କାର, ଆଚାର, ଶ୍ରାଦ୍ଧ, ଅଶୌଚ, ଆପଦ୍ଧର୍ମ ଓ ପ୍ରାୟଶ୍ଚିତ୍ତାଦି ବିଷୟକୁ ନେଇ ସାତଭାଗରେ ବିଭକ୍ତ ହୋଇଛି ।

୭ । କାତ୍ୟାୟନ-ସ୍ମୃତି :

ନାରଦ ଓ ବୃହସ୍ପତିଙ୍କ ପରି କାତ୍ୟାୟନ (୪୦୦-୬୦୦ ଖ୍ରୀଷ୍ଟାବ୍ଦ) ମଧ୍ୟ ହିନ୍ଦୁ ବିଧାନର ଜଣେ ବିଶିଷ୍ଟ ବ୍ୟବସ୍ଥାପକ ଥିଲେ । ଯାଜ୍ଞବଲ୍କ୍ୟ ଓ ପରାଶର ସ୍ମୃତି ଅନୁସାରେ କାତ୍ୟାୟନ ଥିଲେ ଜଣେ ଧର୍ମଶାସ୍ତ୍ରକାର । ଶୁକ୍ଲ-ଯଜୁର୍ବେଦର ଶ୍ରୌତସୂତ୍ର ଓ ଶ୍ରାଦ୍ଧକଳ୍ପଲତାର ପ୍ରଣେତାଭାବରେ ସେ ପରିଚିତ । ନାରଦ ଓ ବୃହସ୍ପତିଙ୍କ ଅପେକ୍ଷା କାତ୍ୟାୟନ-ସ୍ମୃତି ଅଧିକ ଯୁଗୋପଯୋଗୀ ହୋଇଥିବାର ଦେଖାଯାଏ ।

କାତ୍ୟାୟନ-ସ୍ମୃତିର ପୂର୍ଣ୍ଣାଙ୍ଗ କଳେବର ଉପଲବ୍ଧ ନୁହେଁ । ପରବର୍ତ୍ତୀ ସ୍ମୃତିକାର-ମାନଙ୍କ ଉକ୍ତି ଅନୁଯାୟୀ ସେ ବ୍ୟବହାର, ସ୍ତ୍ରୀଧନ, ଉତ୍ତରାଧିକାର ଓ ବିଚାରପଦ୍ଧତି ବିଷୟରେ ଆଲୋଚନା କରିଥିବାର ଜଣାଯାଏ । ବିଭିନ୍ନ ନିବନ୍ଧଗ୍ରନ୍ଥରେ କାତ୍ୟାୟନଙ୍କର ପ୍ରାୟ ଏଗାରଶହ ଶ୍ଳୋକ ଉଦ୍ଧାର କରାଯାଇଛି । ମନୁ, ଯାଜ୍ଞବଲ୍କ୍ୟ, ନାରଦ ଓ ବୃହସ୍ପତିଙ୍କ ପରବର୍ତ୍ତୀ ହୋଇଥିବାରୁ କାତ୍ୟାୟନ ତୃତୀୟ ବା ଚତୁର୍ଥ ଶତାବ୍ଦୀରେ ଜୀବିତ ଥିବାର ଅନୁମାନ କରାଯାଏ । ପରବର୍ତ୍ତୀ କାଳର ସ୍ମୃତିଗ୍ରନ୍ଥରୁ ବୃହତ୍, ମଧ୍ୟମ, ଲଘୁ ଓ ବୃଦ୍ଧ କାତ୍ୟାୟନ ନାମରେ ଭିନ୍ନ ଭିନ୍ନ ସ୍ମୃତିକାର ଥିବାର ପ୍ରମାଣ ମିଳେ ।

ପୂର୍ବୋକ୍ତ ସ୍ମୃତିକାରମାନଙ୍କ ପ୍ରଣୀତ ସ୍ମୃତିଗ୍ରନ୍ଥ ବ୍ୟତୀତ ଶାତାତପ ଓ ଆଙ୍ଗିରସ-ସ୍ମୃତିରେ ପ୍ରାୟଶ୍ଚିତ୍ତ, ଋଷ୍ୟଶୃଙ୍ଗ-ସ୍ମୃତିରେ ଆଚାର, ଅଶୌଚ, ଶ୍ରାଦ୍ଧ ଓ ପ୍ରାୟଶ୍ଚିତ୍ତ, 'କାର୍ଷ୍ଣାଜିନ ସ୍ମୃତି'ରେ ଶ୍ରାଦ୍ଧ, 'ଚତୁର୍ବିଂଶତିମତ ସ୍ମୃତି'ରେ ଆଶ୍ରମ, ଶୌଚ, ସଂସ୍କାର, ଯୋଗାଦି ବିଷୟ, 'ଦକ୍ଷ-ସ୍ମୃତି'ରେ ଆଶ୍ରମଧର୍ମ, ନିତ୍ୟକର୍ମ, ନିବକର୍ମ, ନିବିଦ୍ଧକର୍ମ, ସ୍ତ୍ରୀ-ପ୍ରଶଂସା, ଶୌଚ, ଯୋଗ, ଦ୍ୱୈତ ଓ ଅଦ୍ୱୈତବାଦ, 'ପିତାମହ ସ୍ମୃତି'ରେ ବ୍ୟବହାର, 'ପୁଲସ୍ତ୍ୟ ସ୍ମୃତି'ରେ ଶୌଚ, ଶ୍ରାଦ୍ଧ, ପ୍ରାୟଶ୍ଚିତ୍ତ, 'ପୈଠୀନସି ସ୍ମୃତି'ରେ ଆଚାର, ବ୍ୟବହାର ଓ ପ୍ରାୟଶ୍ଚିତ୍ତ, 'ପ୍ରାଚେତସ ସ୍ମୃତି'ରେ ନିତ୍ୟକର୍ମ, ଶ୍ରାଦ୍ଧ, ଶୌଚ ଓ ପ୍ରାୟଶ୍ଚିତ୍ତ, 'ପ୍ରଜାପତି ସ୍ମୃତି'ରେ ଶ୍ରାଦ୍ଧ, 'ମରୀଚି ସ୍ମୃତି'ରେ ଆହ୍ନିକ, ଅଶୌଚ, ଶ୍ରାଦ୍ଧ, ପ୍ରାୟଶ୍ଚିତ୍ତ ଓ ବ୍ୟବହାର, 'ଯମ ସ୍ମୃତି'ରେ ପ୍ରାୟଶ୍ଚିତ୍ତ,

---

(ଖ) ପରଂ ନରସ୍ୟ ଯଲ୍ଲବ୍ଧଂ ବିଦ୍ୟାତୋ ଦ୍ୟୂତପୂର୍ବକମ୍ ।
ବିଦ୍ୟାଧନଂ ତୁ ତଦ୍‌ବିଦ୍ୟାନ୍ନ ବିଭାଜ୍ୟଂ ବୃହସ୍ପତିଃ ॥ (ଅପରାର୍କ-ଯାଜ୍ଞ-୨-୧୧୯)

(ଗ) କୁଳଜଳ ବିନୀତ ବିଦ୍ୟାନାଂ ଭ୍ରାତୃଣା ପିତୃତୋଽପିବା
ଶୌର୍ଯ୍ୟପ୍ରାପ୍ତଂ ତୁ ଯଦ୍‌ବିତ୍ତଂ ବିଭାଜ୍ୟଂ ତଦ୍ ବୃହସ୍ପତିଃ ॥ (କଳ୍ପତରୁ-ପୃ-୬୮୧

ଶ୍ରାଦ୍ଧ ଓ ଶୁଦ୍ଧି, 'ଲୌଗାକ୍ଷି ସ୍ମୃତି'ରେ ଅଶୌଚ ଓ ପ୍ରାୟଶ୍ଚିତ୍ତ, 'ବିଶ୍ୱାମିତ୍ର ସ୍ମୃତି'ରେ ବ୍ୟବହାର ସହିତ ଧର୍ମଶାସ୍ତ୍ରର ପ୍ରାୟ ଅନ୍ୟାନ୍ୟ ସମସ୍ତ ବିଭାଗ, 'ବ୍ୟାସ ସ୍ମୃତି'ରେ ମୁଖ୍ୟତଃ ଧର୍ମସ୍ଥାନ, ଜାତିବିଭାଗ, ଷୋଡ଼ଶ ସଂସ୍କାର, ବ୍ରହ୍ମଚର୍ଯ୍ୟ, ବିବାହ, ଗୃହସ୍ଥର ନିତ୍ୟନୈମିତ୍ତିକ ଓ କାମ୍ୟକର୍ମ, 'ଷଟ୍‌ତ୍ରିଂଶନ୍ମତ ସ୍ମୃତି'ରେ ଆଚାର, ପ୍ରାୟଶ୍ଚିତ୍ତ ଓ ବ୍ୟବହାର, 'ସ୍ମୃତିସଂଗ୍ରହ'ରେ ବ୍ୟବହାର, ଆହ୍ନିକ ଓ ଶ୍ରାଦ୍ଧ, 'ସମ୍ବର୍ତ୍ତ ସ୍ମୃତି'ରେ ବ୍ରହ୍ମଚର୍ଯ୍ୟ, ପ୍ରାୟଶ୍ଚିତ୍ତ, ଗୃହସ୍ଥଧର୍ମ ଓ ସନ୍ନ୍ୟାସଧର୍ମ, 'ହାରୀତ ସ୍ମୃତି'ରେ ବ୍ୟବହାରାଦି ବିଷୟମାନ ପର୍ଯ୍ୟାଲୋଚିତ ହୋଇଛି ।

ଏତଦ୍‌ବ୍ୟତୀତ 'ଔଶନସ ସ୍ମୃତି'ରେ ବ୍ରହ୍ମଚାରୀର ନିୟମ, ଧର୍ମ ଓ କର୍ତ୍ତବ୍ୟ, 'ବଶିଷ୍ଠ ସ୍ମୃତି'ରେ ଧର୍ମଜିଜ୍ଞାସା, ଧର୍ମାଚରଣଫଳ, ଧର୍ମଲକ୍ଷଣ, ଆର୍ଯ୍ୟାବର୍ତ୍ତ ପଞ୍ଚମହାପାତକ, କୃଷିଧର୍ମ, କ୍ଷତ୍ରିୟଧର୍ମ, ଆଚାର ପ୍ରଶଂସା, ସ୍ନାନାଚାରନିନ୍ଦା, ଆଶ୍ରମଧର୍ମ, ଉପାକର୍ମ, ନିଷେଧ ଭୋଜନ, ବ୍ୟବହାର ଓ ବେଦାଧ୍ୟୟନ ପ୍ରଶଂସା, 'ଲିଖିତ ସ୍ମୃତି'ରେ ଇଷ୍ଟାପୂର୍ତ୍ତକର୍ମ, ବୃଷୋତ୍ସର୍ଗ, ଗୟା-ପିଣ୍ଡଦାନ, ଷୋଡ଼ଶ ଶ୍ରାଦ୍ଧ, 'ବିଷ୍ଣୁ ସ୍ମୃତି'ରେ ଶହେ ଅଧ୍ୟାୟ ମଧ୍ୟରେ ସଂସାରୋତ୍ପତ୍ତି, ବର୍ଣ୍ଣାଶ୍ରମ ରାଜଧର୍ମ, ଶୁଦ୍ଧି, ଶ୍ରାଦ୍ଧ, ବିବାହ, ସ୍ତ୍ରୀଧର୍ମ, ଦଶସଂସ୍କାର, ପାତକ, ନରକ, ନରକଯାତନା, ପ୍ରାୟଶ୍ଚିତ୍ତ, ନିତ୍ୟକର୍ମ, ଆଚାର, ଦେବପୂଜା, 'ଆପସ୍ତମ୍ବ ସ୍ମୃତି'ରେ ପ୍ରାୟଶ୍ଚିତ୍ତ ଓ ଶୁଦ୍ଧି, 'ଶଙ୍ଖ ସ୍ମୃତି'ରେ ସଂସ୍କାର, ପଞ୍ଚମହାଯଜ୍ଞ, ଯୋଗ, ସ୍ନାନାଦି ନିତ୍ୟକର୍ମ, ତର୍ପଣ ଓ ଶ୍ରାଦ୍ଧ, 'ଅତ୍ରି ସ୍ମୃତି'ରେ ଦାନର ବିଧିବିଧାନ ଉଲ୍ଲିଖିତ ଅଛି । ୪୦ ।

ଉକ୍ତ ସ୍ମୃତିଗ୍ରନ୍ଥଗୁଡ଼ିକ ଧର୍ମସୂତ୍ର ଓ ମନୁସ୍ମୃତି ପରେ ଏବଂ ପରବର୍ତ୍ତୀ ନିବନ୍ଧ ଓ ଟୀକାଗ୍ରନ୍ଥ ପୂର୍ବରୁ ମଧ୍ୟବର୍ତ୍ତୀ (୧୦୦-୮୦୦ ଖ୍ରୀଷ୍ଟାବ୍ଦ) ସମୟରେ ରଚିତ ହୋଇଥିଲା । ଦ୍ୱାଦଶ ଶତାବ୍ଦୀଠାରୁ ମୁଖ୍ୟତଃ ସ୍ମୃତିଶାସ୍ତ୍ର ବିଷୟରେ ସଂଗ୍ରହାତ୍ମକ ବା ସଂକଳନାତ୍ମକ ନିବନ୍ଧଗ୍ରନ୍ଥମାନ ପ୍ରଣୀତ ହେଲା । ନିବନ୍ଧଗ୍ରନ୍ଥ ଓ ଟୀକାଗ୍ରନ୍ଥ ମଧ୍ୟରେ ପ୍ରକୃତି ବା ଆକାର-ପ୍ରକାର ଦୃଷ୍ଟିରୁ କୌଣସି ସୀମାରେଖା ଟଣାଯାଇ ନପାରେ । ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଥିବା ଟୀକାକାରମାନଙ୍କ ମଧ୍ୟରେ ନାରଦ ସ୍ମୃତିର ଭାଷ୍ୟକାର ଅସହାୟ (ଷଷ୍ଠଶତାବ୍ଦୀ) କାତ୍ୟାୟନ, ଶ୍ରୌତସୂତ୍ର ଭାଷ୍ୟକାର ଭର୍ତ୍ତୃଯଜ୍ଞ (୮୦୦ ଖ୍ରୀଷ୍ଟାବ୍ଦ), ଯାଜ୍ଞବଲ୍‌କ୍ୟ ସ୍ମୃତି ଟୀକାକାର ବିଶ୍ୱରୂପ (୧୦୫୦ ଖ୍ରୀଷ୍ଟାବ୍ଦ) ବିଷ୍ଣୁ ଧର୍ମସୂତ୍ର ଟୀକାକାର ଭାରୁଚି (୧୦୫୦ ପୂର୍ବବର୍ତ୍ତୀ), ସ୍ମୃତିକାର ଶ୍ରୀକରାଚାର୍ଯ୍ୟ (୯ମ ଶତାବ୍ଦୀ), ମନୁସ୍ମୃତି ଟୀକାକାର ମେଧାତିଥି (୮୨୫-୯୦୦ ଖ୍ରୀଷ୍ଟାବ୍ଦ) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଶାର ସ୍ମୃତି ଓ ସ୍ମୃତିକାରଙ୍କ ବିଷୟ ଆଲୋଚନା କରିବା ପୂର୍ବରୁ ସର୍ବଭାରତୀୟ ସ୍ତରରେ ଖ୍ୟାତିଲାଭ କରିଥିବା ବିଶିଷ୍ଟ ସ୍ମୃତିକାର ଓ ସ୍ମୃତିଗ୍ରନ୍ଥର ନାମ ଏଠାରେ ଉଦ୍ଧାର କରିଯାଇ-

---

୪୦ । 'ବୀରସ୍ମୃତିର୍ଯ୍ୟା'—୧ମ-୨ୟ ଭାଗ—ପୃ-୨୦୯-୨୧୨, ୩୫୦-୩୬୪, ୩୩୭-୫୦୪, ୨୬୩-୨୯୩, ୩୨୫-୪୨୪ ॥

ପାରେ । ଭୋଜଦେବ (୧୦୦୦-୧୦୫୫ ଖ୍ରୀଷ୍ଟାବ୍ଦ) ଭୁଜବଳ ନିବନ୍ଧ, ଦେବସ୍ୱାମୀ (୧୦୦୦-୧୦୫୦ ଖ୍ରୀଷ୍ଟାବ୍ଦ) ସ୍ମୃତିସମୁଚ୍ଚୟ, ଜିତେନ୍ଦ୍ରିୟ (୧୦୦୦-୧୦୫୦ ଖ୍ରୀଷ୍ଟାବ୍ଦ) କାଳବିବେକ, ବାଳକ (୧୧୦୦ ଖ୍ରୀଷ୍ଟାବ୍ଦ) ବ୍ୟବହାର ଓ ପ୍ରାୟଶ୍ଚିତ୍ତ ବିଷୟକ ଗ୍ରନ୍ଥ, ଯୋଗଲୋକ (୯୫୦-୧୦୫୦ ଖ୍ରୀଷ୍ଟାବ୍ଦ) କାଳ ଓ ବ୍ୟବହାର ବିଷୟକ ଗ୍ରନ୍ଥ, ବିଜ୍ଞାନେଶ୍ୱର (୧୩ଶ-୧୪ଶ ଶତାବ୍ଦୀ) ଅଶୌଚବିଷୟକ ଗ୍ରନ୍ଥ, ଗୋପାଳ (୧୧୭୫-୧୨୦୦ ଖ୍ରୀଷ୍ଟାବ୍ଦ) କାମଧେନୁ, ହଳାୟୁଧ (୧୦୦୦-୧୧୦୦ ଖ୍ରୀଷ୍ଟାବ୍ଦ) ବ୍ରାହ୍ମଣସର୍ବସ୍ୱ, ଭବଦେବ ଭଟ୍ଟ (୧୧୦୦ ଖ୍ରୀଷ୍ଟାବ୍ଦ) ବ୍ୟବହାରତିଳକ, ସ୍ମୃତି ପ୍ରଦୀପ (୧୧୫୦ ଖ୍ରୀଷ୍ଟାବ୍ଦ), ସ୍ମୃତି ପ୍ରକାଶ (୧୦୦୦-୧୧୦୦ ଖ୍ରୀଷ୍ଟାବ୍ଦ), ପ୍ରୟୋଗ ପାରିଜାତ (୧୪୦୦-୧୫୦୦ ଖ୍ରୀଷ୍ଟାବ୍ଦ), ଗୋବିନ୍ଦରାଜ (୧୦୫୦-୧୧୪୦ ଖ୍ରୀଷ୍ଟାବ୍ଦ) ମନୁଟୀକା ଓ ସ୍ମୃତିମଞ୍ଜରୀ, ଲକ୍ଷ୍ମୀଧର (୧୪ଶ ଶତାବ୍ଦୀ) କଳ୍ପତରୁ, ଜୀମୂତବାହନ (୧୦୯୯-୧୧୩୦ ଖ୍ରୀଷ୍ଟାବ୍ଦ) ଧର୍ମରତ୍ନ (କାଳ-ବିବେକ, ବ୍ୟବହାର-ମାତୃକା ଓ ଦାୟଭାଗ), ଶ୍ରୀଧର (୧୧୫୦ ଖ୍ରୀଷ୍ଟାବ୍ଦ) ସ୍ମୃତ୍ୟର୍ଥ ସାର, ଅନିରୁଦ୍ଧ (୧୧୭୫ ଖ୍ରୀଷ୍ଟାବ୍ଦ) ହାରଲତା, ବଲ୍ଲାଳସେନ (୧୦୯୦ ଖ୍ରୀଷ୍ଟାବ୍ଦ) ଆଚାର-ଦାନ-ପ୍ରତିଷ୍ଠା-ଅଦଭୂତସାଗର, ହରିହର (୧୩୦୦ ଖ୍ରୀଷ୍ଟାବ୍ଦ) ବ୍ୟବହାରବିଷୟକ ଗ୍ରନ୍ଥ, ଦେବଣ୍ଣ ଭଟ୍ଟ (୧୧୫୦-୧୨୨୫ ଖ୍ରୀଷ୍ଟାବ୍ଦ) ସ୍ମୃତିଚନ୍ଦ୍ରିକା, ହରଦତ୍ତ (୧୧୦୦-୧୩୦୦ ଖ୍ରୀଷ୍ଟାବ୍ଦ), ଆପସ୍ତମ୍ବ ଗୃହ୍ୟସୂତ୍ରର ଅନାକୁଳା ଟୀକା, ହେମାଦ୍ରି (୧୨୬୦ ଖ୍ରୀଷ୍ଟାବ୍ଦ) ଚତୁର୍ବର୍ଗ ଚିନ୍ତାମଣି ଓ ଶୌନକ ପ୍ରଣବ କଳ୍ପ ଟୀକା, କୁଲ୍ଲୁକଭଟ୍ଟ (୧୧୫୦-୧୨୫୦ ଖ୍ରୀଷ୍ଟାବ୍ଦ) ମନୁସ୍ମୃତିର ମାନବାର୍ଥ-ମୁକ୍ତାବଳୀ ଟୀକା, ଶ୍ରୀଦତ୍ତ ଉପାଧ୍ୟାୟ (୧୨୭୫-୧୩୧୦ ଖ୍ରୀଷ୍ଟାବ୍ଦ) ଆଚାରାଦର୍ଶ, ଶ୍ରାଦ୍ଧକଳ୍ପ ଓ ଏକାଗ୍ନିଦାନ ପଦ୍ଧତି, ଚଣ୍ଡେଶ୍ୱର (୧୩୧୪-୧୩୭୦ ଖ୍ରୀଷ୍ଟାବ୍ଦ) କୃତ୍ୟ-ବିବାଦ-ଗୃହସ୍ଥ-ଦାନ-ବ୍ୟବହାର-ଶୁଦ୍ଧି-ରାଜନୀତି-ପୂଜା-ରତ୍ନାକର, ହରିନାଥ (୧୨୫୦-୧୩୦୦ ଖ୍ରୀଷ୍ଟାବ୍ଦ) ସ୍ମୃତିସାର, ମାଧବାଚାର୍ଯ୍ୟ (୧୩୩୪-୧୩୫୯ ଖ୍ରୀଷ୍ଟାବ୍ଦ) ପରାଶର-ସ୍ମୃତିର ପରାଶର-ମାଧବୀୟ ଟୀକା ଓ କାଳନିର୍ଣ୍ଣୟ, ଶୂଳପାଣି (୧୩୭୫-୧୪୬୦ ଖ୍ରୀଷ୍ଟାବ୍ଦ) ଯାଜ୍ଞବଲ୍କ୍ୟ ସ୍ମୃତିର ଦୀପକଳିକା ଟୀକା, ରୁଦ୍ରଧର (୧୪୨୫-୧୪୬୦ ଖ୍ରୀଷ୍ଟାବ୍ଦ) ଶୁଦ୍ଧିବିବେକ, ମିଶରୁ ମିଶ୍ର (୧୫ଶ ଶତାବ୍ଦୀ) ବିବାଦଚନ୍ଦ୍ର, ବାଚସ୍ପତି ମିଶ୍ର (୧୪୫୦ ଖ୍ରୀଷ୍ଟାବ୍ଦ) ବିବାଦ-ଆଚାର-ଶୁଦ୍ଧି ଚିନ୍ତାମଣି, ଗୋବିନ୍ଦାନନ୍ଦ (୧୫୦୦-୧୫୪୦ ଖ୍ରୀଷ୍ଟାବ୍ଦ) ଦାନ-ଶୁଦ୍ଧି-ଶ୍ରାଦ୍ଧ-ବର୍ଷ କୌମୁଦୀ, ରଘୁନନ୍ଦନ (୧୫୧୦-୧୫୭୫ ଖ୍ରୀଷ୍ଟାବ୍ଦ) ସ୍ମୃତିତତ୍ତ୍ୱ (୨୮ ଭାଗରେ ବିଭକ୍ତ), ନାରାୟଣ ଭଟ୍ଟ (୧୫୧୩-୧୫୭୦ ଖ୍ରୀଷ୍ଟାବ୍ଦ) ଅନ୍ତ୍ୟେଷ୍ଟି ପଦ୍ଧତି, ତ୍ରିସ୍ଥଳୀସେତୁ, ପ୍ରୟୋଗରତ୍ନ, ତୋଡ଼ରମଲ୍ଲ (୧୫୬୫-୧୫୮୯ ଖ୍ରୀଷ୍ଟାବ୍ଦ) ଆଚାର-ଦାନ-ବ୍ୟବହାର-ଶ୍ରାଦ୍ଧ-ବିବେକ-ପ୍ରାୟଶ୍ଚିତ୍ତ-ଜ୍ୟୋତିଷସମୟ ସୌଖ୍ୟ, ନନ୍ଦ ପଣ୍ଡିତ (୧୫୯୫-୧୬୩୦ ଖ୍ରୀଷ୍ଟାବ୍ଦ) ପରାଶର-ସ୍ମୃତିର ବିଦ୍ୱନ୍ମନୋହର ଟୀକା, କମଳାକର ଭଟ୍ଟ (୧୬୧୦-୧୬୪୦ ଖ୍ରୀଷ୍ଟାବ୍ଦ) ନିର୍ଣ୍ଣୟସିନ୍ଧୁ, ଦାନ-ଶାନ୍ତି-ପୂର୍ତ୍ତ-ବ୍ରତ-ଶୂଦ୍ର-ଗୋତ୍ର-ପ୍ରବର-ଦର୍ପଣ, ନାରାୟଣ ଭଟ୍ଟଙ୍କ ପୁତ୍ର ନୀଳକଣ୍ଠ (୧୬୧୦-୧୬୪୫ ଖ୍ରୀଷ୍ଟାବ୍ଦ) ଶାସ୍ତ୍ରଦୀପିକା, ମୀମାଂସାବାଳ

ପ୍ରକାଶ, ଦ୍ୱୈତ ନିର୍ଣ୍ଣୟ, ସର୍ବଧର୍ମପ୍ରକାଶ, ମିତ୍ର ମିଶ୍ର (୧୬୨୫ ଖ୍ରୀଷ୍ଟାବ୍ଦ) ବୀରମିତ୍ରୋଦୟ, ଅନନ୍ତ ଦେବ (୧୫୨୮-୧୬୦୦ ଖ୍ରୀଷ୍ଟାବ୍ଦ) ସ୍ମୃତିକୌସ୍ତୁଭ, ନାଗୋଜୀ ଭଟ୍ଟ (୧୭୧୩-୧୭୭୫ ଖ୍ରୀଷ୍ଟାବ୍ଦ) ଆଚାର-ଅଶୌଚ-ତୀର୍ଥ-ପ୍ରାୟଶ୍ଚିତ୍ତ-ଶ୍ରାଦ୍ଧେନ୍ଦୁଶେଖର, ବାଳକୃଷ୍ଣ ବା ବାଲ ଭଟ୍ଟ (୧୭୩୦-୧୮୨୦ ଖ୍ରୀଷ୍ଟାବ୍ଦ), ମିତାକ୍ଷରା ଆଚାରଭାଗ ଟୀକା, କାଶୀନାଥ ଉପାଧ୍ୟାୟ (୧୭୨୭-୧୮୦୬ ଖ୍ରୀଷ୍ଟାବ୍ଦ) 'ଧର୍ମସିନ୍ଧୁସାର' ନାମରେ ସ୍ମୃତିଗ୍ରନ୍ଥମାନ ରଚନା କରିଥିଲେ । ୪୧ । □□□

୪୧ । History of Dharmashastra—Vol. I. p-221-465,

# ତୃତୀୟ ଅଧ୍ୟାୟ

## ଉତ୍କଳୀୟ ସ୍ମୃତି ଓ ସ୍ମୃତିକାର : ପରିଚୟ

ଆଜି ପର୍ଯ୍ୟନ୍ତ ଲୋକଲୋଚନକୁ ଆସିଥିବା ବିଗତ ସାତ ଶହ ବର୍ଷ (୧୦୭୫-୧୭୭୫ ଖ୍ରୀଷ୍ଟାବ୍ଦ) ମଧ୍ୟରେ ପ୍ରଣୀତ ଓଡ଼ିଶାର ସ୍ମୃତିଗ୍ରନ୍ଥ ଓ ସ୍ମୃତିକାରଙ୍କ ବିଷୟ ଏଠାରେ ଆଲୋଚନା କରାଯାଇପାରେ । ସ୍ମୃତିକାର ଶତାନନ୍ଦ ଆଚାର୍ଯ୍ୟଙ୍କ (ଆନୁମାନିକ ୧୦୫୦ ଖ୍ରୀଷ୍ଟାବ୍ଦ) ପୂର୍ବବର୍ତ୍ତୀ ଉତ୍କଳୀୟ ସ୍ମୃତିକାରଙ୍କ ପ୍ରଣୀତ କୌଣସି ସ୍ମୃତିଗ୍ରନ୍ଥ ଅଦ୍ୟାବଧି ହସ୍ତଗତ ହୋଇ ନ ଥିଲେ ମଧ୍ୟ ପ୍ରାଚୀନ ଉତ୍କଳର ପଣ୍ଡିତଗଣ ବେଦ-ବେଦାଙ୍ଗ-ଇତିହାସ-ପୁରାଣ-ନ୍ୟାୟ-ମୀମାଂସା-ଧର୍ମଶାସ୍ତ୍ରାଦି ବିଦ୍ୟାରେ ପାରଦର୍ଶୀ ଥିବାର ଅଭିଲେଖଗୁଡ଼ିକରୁ ପ୍ରମାଣିତ ହୁଏ ।

ଖ୍ରୀଷ୍ଟପୂର୍ବ ଚତୁର୍ଥରୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ଭାରତର ଧର୍ମଜଗତରେ ଏକ ପକ୍ଷରେ ଜୈନ ଓ ବୌଦ୍ଧ ଧର୍ମର ପ୍ରବଳ ପ୍ରଚାର ଏବଂ ଅନ୍ୟ ପକ୍ଷରେ ବ୍ରାହ୍ମଣ୍ୟଧର୍ମର ପୁନରଭ୍ୟୁଦୟଦ୍ୱାରା ବେଦ ତଥା ବେଦାଙ୍ଗ ସାହିତ୍ୟର ଉଲ୍ଲେଖନୀୟ ଉନ୍ନତି ସାଧିତ ହୋଇଥିଲା ।୧। ବ୍ରାହ୍ମଣ୍ୟ ମତବାଦ, ପୂର୍ବୋକ୍ତ ଉଭୟ ଧର୍ମର ଆଚାର୍ଯ୍ୟ ତଥା ପ୍ରଚାରକମାନଙ୍କୁ ବିଶେଷରେ ପ୍ରଭାବିତ କରିଥିଲା । ତେଣୁ ଓଡ଼ିଶାର ଜୈନ ଓ ବୌଦ୍ଧ ପୀଠସ୍ଥ ଅଭିଲେଖଗୁଡ଼ିକରେ ବ୍ରାହ୍ମଣମାନଙ୍କ ବିଷୟ ଉଲ୍ଲେଖ ଥିବାର ଦେଖାଯାଏ । ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ (୨୬୧ ଖ୍ରୀଷ୍ଟପୂର୍ବ) ପ୍ରଦତ୍ତ କଳିଙ୍ଗ-ଅଭିଲେଖଦ୍ୱୟ ଓଡ଼ିଶାର ପ୍ରାଚୀନତମ ଅଭିଲେଖ ରୂପେ ଗୃହୀତ । ଏଥିରୁ ଗୋଟିଏ ଶିଳାଲେଖ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳି ପର୍ବତରେ, ଅନ୍ୟଟି ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ନିକଟବର୍ତ୍ତୀ ଜଉଗଡ଼ ପର୍ବତରେ ଖୋଦିତ ହୋଇଛି । ଉକ୍ତ ଅଭିଲେଖ ଦୁଇଟିରେ ବ୍ରାହ୍ମଣମାନଙ୍କ ପ୍ରସଙ୍ଗ ସୂଚିତ ହୋଇଛି ।୨। ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ମହାମେଘବାହନ ସମ୍ରାଟ୍ ଖାରବେଳଙ୍କ ପ୍ରଦତ୍ତ ଖଣ୍ଡଗିରି-ଉଦୟଗିରି ଶିଳାଲେଖରେ ବ୍ରାହ୍ମଣମାନଙ୍କ ବିଷୟରେ ସ୍ପଷ୍ଟ ଉଲ୍ଲେଖ ରହିଛି । ୩ । ଗୁପ୍ତ-କାଳୀନ ଭାରତରେ ବ୍ରାହ୍ମଣ୍ୟଧର୍ମ ଓ ସଂସ୍କୃତଭାଷାର ପୁନରୁତ୍‌ଥାନ ହୋଇଥିଲା । ଓଡ଼ିଶାରେ

---

୧ । A Descriptive Catalogue of Sanskrit Manuscripts —Vol. IV (Preface page) PP : XVI

୨ । ଧଉଳୀର ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର—ପୃ. ୧୫୨, ୧୭୭

୩ । ଶ୍ରୀ ଖାରବେଳ—ଶ୍ରୀ କେଦାରନାଥ ମହାପାତ୍ର—ପୃ. ୧୪

ଶାସନ କରୁଥିବା ମାଠର-ଶୈଳୋଦ୍ଭବ-ଭୌମକର-ସୋମ ପ୍ରଭୃତି ରାଜବଂଶର ପୃଷ୍ଠ-ପୋଷକତା ଲାଭକରି ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀଠାରୁ ବ୍ରାହ୍ମଣ୍ୟଧର୍ମ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ମାଠରବଂଶୀୟ ରାଜା ଉମା ବର୍ମନ୍, ଅନନ୍ତ ବର୍ମନ୍, ଶକ୍ତି ବର୍ମନ୍ ଓ ଅନନ୍ତ ବର୍ମନ୍ (ଦ୍ୱିତୀୟ) ପ୍ରଭୃତିଙ୍କ ଦାନପତ୍ରଗୁଡ଼ିକରେ (୩୩୦-୪୮୬ ଖ୍ରୀଷ୍ଟାବ୍ଦ) ବିଭିନ୍ନ ଶାଖାର ବ୍ରାହ୍ମଣମାନଙ୍କ ବିଷୟ ଉଲ୍ଲେଖ କରାଯାଇଛି ।୪। ଓଡ଼ିଶାରେ ପୁରାଣ ଓ ରାମାୟଣାଦି ଗ୍ରନ୍ଥର ଅଧ୍ୟୟନ ଓ ଅଧ୍ୟାପନାଦି ବିଷୟରେ ମିଳିଥିବା ଅଭିଲେଖଗୁଡ଼ିକ ମଧ୍ୟରେ ପୃଥ୍ୱୀ ମହାରାଜାଙ୍କ (୫୭୦ ଖ୍ରୀଷ୍ଟାବ୍ଦ) ତାମ୍ରଫଳକବର୍ଣ୍ଣିତ ପଦ୍ମଶର୍ମା ବ୍ରାହ୍ମଣ ବେଦ-ବେଦାଙ୍ଗ-ପାରଗ, ଷଟ୍‌କର୍ମନିରତ, ପୁରାଣ, ରାମାୟଣ, ଧର୍ମଶାସ୍ତ୍ରାଦି ଅନେକ ବିଦ୍ୟାରେ ପାରଦର୍ଶୀ ଥିବାର ଜଣାଯାଏ ।୫। ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଭାଣ୍ଡିବାଡ଼ା ତାମ୍ରଫଳକ ଅନୁଯାୟୀ ସେ ସମୟରେ ଓଡ଼ିଶାରେ ଶ୍ରୁତି-ସ୍ମୃତି-ବେଦବେଦାଙ୍ଗ-ନ୍ୟାୟ-ଉପନିଷଦ୍-ଯୋଗଶାସ୍ତ୍ରାଦିର ଗଭୀର ଅନୁଶୀଳନ କରାଯାଉଥିଲା ।୬। କଳିଙ୍ଗନଗରର ଗଙ୍ଗରାଜାମାନଙ୍କ ମଧ୍ୟରେ ମହାରାଜ ଇନ୍ଦ୍ରବର୍ମାଙ୍କ ଟେକାଲି ଓ ପୁର୍ଲେ ତାମ୍ରଫଳକ ଗୁଣାର୍ଣ୍ଣବଙ୍କ ପୁତ୍ର ପରମ ମାହେଶ୍ୱର ମହାରାଜ ଦେବେନ୍ଦ୍ର ବର୍ମାଙ୍କ ଚିକାକୋଲ, ଧର୍ମଲିଙ୍ଗେଶ୍ୱର ଓ ତ୍ରିଲିଙ୍ଗ ତାମ୍ରଫଳକ, ଦେବେନ୍ଦ୍ର ବର୍ମାଙ୍କ ସିଦ୍ଧାନ୍ତମ୍ ଓ ଚିଦିବଲସ ତାମ୍ରଫଳକ, ଅନନ୍ତବର୍ମାଙ୍କ ଧର୍ମଲିଙ୍ଗେଶ୍ୱର, ଅଲମଣ୍ଡା ଓ ଅଛିବରମ୍ ତାମ୍ରଫଳକଗୁଡ଼ିକରେ ବେଦ-ବେଦାଙ୍ଗ-ଶ୍ରୁତି-ସ୍ମୃତି-ପାରଗ ବ୍ରାହ୍ମଣମାନଙ୍କୁ ପ୍ରଶଂସାର ସହିତ ବିଭିନ୍ନ ଦାନ ଦିଆଯାଇଥିବାର ଜଣାଯାଏ ।୭। ପୂର୍ବୋକ୍ତ ଦେବେନ୍ଦ୍ର ବର୍ମାଙ୍କ ଧର୍ମଲିଙ୍ଗେଶ୍ୱର (୬୮୨ ଖ୍ରୀଷ୍ଟାବ୍ଦ) ଦାନପତ୍ରରେ ତାଙ୍କ ଗୁରୁ ଗଗନଶିବାଚାର୍ଯ୍ୟ ବେଦ-ବେଦାଙ୍ଗ-ଇତିହାସ-ପୁରାଣ-ନ୍ୟାୟବିଦ୍ୟାରେ ପ୍ରବୀଣ ଥିବାର ଉଲ୍ଲେଖ ରହିଛି ।୮। ସୋଳଣ ଭଞ୍ଜଙ୍କ ବୌଦ-ତାମ୍ରଫଳକ ଅଭିଲେଖରେ ଦାନଗ୍ରହୀତା ମହାଦେବଙ୍କ ପିତାମହ ଗୋପାଳଦେବ ଶ୍ରୁତି, ସ୍ମୃତି ଓ ପୁରାଣରେ ବିଶେଷ ପାଣ୍ଡିତ୍ୟ ଅର୍ଜନ କରିଥିଲେ ।୯। ସୋମବଂଶ ବା କେଶରି-

୪। Inscriptions of Orissa—S. N. Rajguru, Vol.-I-Part II Pages-8, 18, 22, 32

୫। E. I. Vol. XXIII—P. 88

୬। A Desecriptive Catalogue of Sanskrit Manuscripts Vol. II PP, IV

୭। Inscriptions of Orissa—Vol II, p. 54, 59. 64, 70, 76, 82, 86, 104, 214, & 229.

୮। J. A. H. R. S., Vol-II-P. 57 ).

୯। ମଧ୍ୟଦେଶୋଦ୍‌ଭବୋ ବିପ୍ରଃ ଶ୍ରୁତସ୍ମୃତପୁରାଣବିତ୍ ।
ନାମ୍ନା ଗୋପାଳ ଇତ୍ୟାସୀଚ୍ଛାନ୍ତଃ କାଶ୍ୟପଗୋତ୍ରଜଃ ॥
(E. I. Vol.—XXVI, Part-VI, P. 278)

ବଂଶର ପ୍ରତିଷ୍ଠାତା ଜନ୍ମେଜୟ ଦେବଙ୍କ (୮୬୦-୮୭୦ ଖ୍ରୀଷ୍ଟାବ୍ଦ) ତାମ୍ରଫଳକରେ ତାଙ୍କ ମନ୍ତ୍ରୀ ସାଧାରଣ ଭଟ୍ଟ, ଆଗମ-ଆଖ୍ୟାନ-ଅର୍ଥଶାସ୍ତ୍ର-ସ୍ମୃତି-ବେଦ-ବେଦାଙ୍ଗ-ଶିକ୍ଷା-କଳ୍ପ-ଇତିହାସାଦି ଶାସ୍ତ୍ରରେ ବୃହସ୍ପତି ତୁଲ୍ୟ ଥିବାର ବର୍ଣ୍ଣିତ ହୋଇଛନ୍ତି । ୧୦ । ଓଡ଼ିଶାର ରାଜପରିବାର ମଧ୍ୟରେ ଶୁଲ୍କି-ନନ୍ଦ-ଭୁଞ୍ଜ-ବରାହ-ଶୈଳବଂଶୀୟ ରାଜାମାନଙ୍କ ପ୍ରଦତ୍ତ ଅଭିଲେଖଗୁଡ଼ିକରେ (୭୦୦-୯୦୦ ଖ୍ରୀଷ୍ଟାବ୍ଦ) ନାନା ଗୋତ୍ରୀୟ, ନାନା ଶାଖାଧ୍ୟାୟୀ ବୈଦିକ ଯଜ୍ଞାନୁଷ୍ଠାନକୁଶଳୀ ବ୍ରାହ୍ମଣମାନଙ୍କ ବିଷୟରେ ବର୍ଣ୍ଣନା ଥିବାର ଦେଖାଯାଏ ।

ଅନନ୍ତବର୍ମା ବଜ୍ରହସ୍ତ (୧୦୩୮-୧୦୭୧ ଖ୍ରୀଷ୍ଟାବ୍ଦ), ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ (୧୦୭୭-୧୧୪୭ ଖ୍ରୀଷ୍ଟାବ୍ଦ) ଓ କୀର୍ତ୍ତିରାଜ ଦେବଙ୍କ ତାମ୍ରଫଳକଗୁଡ଼ିକରେ ନାନା ଗୋତ୍ର-ଚରଣ-ଶାଖାଧ୍ୟାୟୀ ଷଟ୍‌କର୍ମନିରତ ବ୍ରାହ୍ମଣ ପଣ୍ଡିତମାନଙ୍କୁ ଗ୍ରାମ, ଭୂମି ଆଦି ପ୍ରଦାନ କରାଯାଇଛି ।୧୧। ଜୟଭଞ୍ଜ ଓ ଯଶୋଭଞ୍ଜ ଦେବଙ୍କ (୧୧୫୦ଖ୍ରୀଷ୍ଟାବ୍ଦ) ଅନ୍ତଗ୍ରାମ-ଦାନପତ୍ରରେ ଶ୍ରୀଧର, ଧରାଧର, ଜଗନ୍ଧର ପ୍ରଭୃତି ପଣ୍ଡିତମାନେ ସ୍ମୃତି-ଜ୍ୟୋତିଷଶାସ୍ତ୍ରରେ ପଣ୍ଡିତ ଥିବାର ଉଲ୍ଲେଖ ରହିଛି ।୧୨। ତେଣୁ ଶତାନନ୍ଦ ଆଚାର୍ଯ୍ୟଙ୍କ ପୂର୍ବରୁ ଓଡ଼ିଶାରେ ବେଦବେଦାଙ୍ଗବିତ୍ ଷଟ୍‌କର୍ମନିରତ ବ୍ରାହ୍ମଣମାନେ ବସବାସ କରୁଥିବାର ପ୍ରମାଣ ମିଳୁଛି । ସେମାନେ ହୁଏତ ସ୍ମୃତି ସମ୍ବନ୍ଧୀୟ ପ୍ରାମାଣିକ ଗ୍ରନ୍ଥମାନ ରଚନା କରିଥିବେ; ମାତ୍ର ଦୁର୍ଭାଗ୍ୟର କଥା, କୌଣସି ଗ୍ରନ୍ଥ ଅଦ୍ୟାବଧି ଲୋକଲୋଚନକୁ ଆସିନାହିଁ ।

ଉପଲବ୍‌ଧ ଗ୍ରନ୍ଥଗୁଡ଼ିକର ରଚନାକାଳକୁ ଭିତ୍ତିକରି ଓଡ଼ିଶାର ସମଗ୍ର ସ୍ମୃତିଶାସ୍ତ୍ର ସାହିତ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ଏହି ବିଭାଗ ମୁଖ୍ୟତଃ ରାଜବଂଶଗୁଡ଼ିକର ରାଜତ୍ୱକାଳ ଉପରେ ଆଧାରିତ । ସାଧାରଣଭାବେ ଗଙ୍ଗବଂଶର ରାଜତ୍ୱକୁ (୧୦୭୭-୧୪୩୫ ଖ୍ରୀଷ୍ଟାବ୍ଦ) ଆଦିପର୍ବ, ସୂର୍ଯ୍ୟବଂଶର ରାଜତ୍ୱକୁ (୧୪୩୫-୧୫୬୮ ଖ୍ରୀଷ୍ଟାବ୍ଦ) ମଧ୍ୟପର୍ବ ଓ ଭୋଇବଂଶର ରାଜତ୍ୱକୁ (୧୫୬୮-୧୮୦୩ ଖ୍ରୀଷ୍ଟାବ୍ଦ) ଅନ୍ତ୍ୟପର୍ବ ରୂପେ ଗ୍ରହଣ କରାଯାଇଛି । ତଦନୁଯାୟୀ ଆଦିପର୍ବରେ ଶତାନନ୍ଦଙ୍କଠାରୁ ରାମଚନ୍ଦ୍ର ବାଜପେୟୀଙ୍କ ପର୍ଯ୍ୟନ୍ତ ଏଗାର ଜଣ, ମଧ୍ୟପର୍ବରେ

---

୧୦ । ଜ୍ଞେୟଃ ଶେଷାର୍ଥ-ଶାସ୍ତ୍ରସ୍ମୃତିବିମଲଧିୟା ବେଦବେଦାଙ୍ଗବିଦ୍ୟା-
ଶିକ୍ଷାକଲ୍ପେତିହାସ ପ୍ରକଟସୁରଗୁରୁପ୍ରାପ୍ତଭୂମ୍ନିଷ୍ଠଧାମ୍ନା ।
ନାମ୍ନା ସାଧାରଣେନ ଦ୍ୱିଜବରବିଧିନା ମନ୍ତ୍ରିଣା ଯସ୍ୟ ରାଜ୍ୟଂ
ନିର୍ବ୍ୟୂଢ଼ଂ ସୋଽୟମୁଚ୍ଚୈସ୍ତ୍ରିଜଗତି ବିଦିତୋ ଧର୍ମକନ୍ଦର୍ପଦେବଃ ॥
(A. D. C., Vol-II, P. VIII)

୧୧ । Inscriptions of Orissa, Vol-III—Part-I,
P. 11, 28, 350.

୧୨ । (a) Epigaraphia Indica—Vol-XIX—P. 44
(b) E. I. Vol. XVIII—P. 299.

ମୃତ୍ୟୁଞ୍ଜୟ ମିଶ୍ରଙ୍କଠାରୁ ଚନ୍ଦ୍ରାମଣି ମିଶ୍ରଙ୍କ ପର୍ଯ୍ୟନ୍ତ ଚଉଦ ଜଣ, ଅନ୍ତ୍ୟପର୍ବରେ ଗଜପତି ରାମଚନ୍ଦ୍ର ଦେବଙ୍କଠାରୁ ବାଲୁଙ୍କି ପାଠୀଙ୍କ ପର୍ଯ୍ୟନ୍ତ ଅଣତିରିଶ ଜଣ ସ୍ମୃତିକାରଙ୍କ ପରିଚୟ ଓ ସେମାନଙ୍କ ପ୍ରଣୀତ ଗ୍ରନ୍ଥାବଳୀର ବିବରଣୀ ସହିତ ଇଂରେଜ-ଶାସନକାଳୀନ କେତେଜଣ ଗ୍ରନ୍ଥକାରଙ୍କ ସମ୍ବନ୍ଧରେ ପ୍ରସଙ୍ଗତଃ ନାମୋଲ୍ଲେଖ କରାଯାଇଛି ।

## ଆଦିପର୍ବ

ଏହି ପର୍ବରେ ଗଙ୍ଗବଂଶୀୟ ରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କଠାରୁ (୧୦୭୭-୧୧୪୦ ଖ୍ରୀଷ୍ଟାବ୍ଦ), ଭାନୁଦେବ(୪ର୍ଥ)ଙ୍କ (୧୪୨୦-୧୪୩୫ ଖ୍ରୀଷ୍ଟାବ୍ଦ) ରାଜତ୍ୱକାଳ ମଧ୍ୟରେ ରଚିତ ଅଠର ଖଣ୍ଡ ସ୍ମୃତିଗ୍ରନ୍ଥ ଓ ଏଗାରଜଣ ସ୍ମୃତିକାରଙ୍କ ପରିଚୟ ଆଲୋଚିତ ହୋଇଛି ।

**୧ । ଶତାନନ୍ଦ ଆଚାର୍ଯ୍ୟ :**

ଶତାନନ୍ଦ ଆଚାର୍ଯ୍ୟ (୧୦୫୦ ଖ୍ରୀଷ୍ଟାବ୍ଦ) ଓଡ଼ିଶାର ପ୍ରାଚୀନତମ ସ୍ମୃତିକାରରୂପେ ପରିଚିତ । ଗଣିତ-ଜ୍ୟୋତିଷବିଷୟକ 'ପଞ୍ଚସିଦ୍ଧାନ୍ତୀ ଭାସ୍ୱତୀ' ଗ୍ରନ୍ଥର ପ୍ରଣେତାଭାବେ ଶତାନନ୍ଦ ପୃଥିବୀ-ବିଖ୍ୟାତ । ଏହି ଗ୍ରନ୍ଥଟି ଯୁଗାବ୍ଦ ୪୨୦୦, ଶକାବ୍ଦ ୧୦୨୧ ବା ୧୦୯୯ ଖ୍ରୀଷ୍ଟାବ୍ଦରେ ପ୍ରଣୀତ ହୋଇଥିବାର ଜଣାଯାଏ । ଶତାନନ୍ଦ ପୁରୁଷୋତ୍ତମବାସୀ ଶଙ୍କର ଓ ସରସ୍ୱତୀଙ୍କ ପୁତ୍ର ଥିଲେ ।[୧୩] ଶ୍ରୀକ୍ଷେତ୍ର ପୁରୀହିଁ ତାଙ୍କ ଜ୍ୟୋତିଷଗଣନାର ମୂଳ କେନ୍ଦ୍ର ଥିଲା ।[୧୪] ପରବର୍ତ୍ତୀ ସ୍ମୃତିକାରମାନଙ୍କ ଉକ୍ତିରୁ ସେ 'ଶତାନନ୍ଦ ରତ୍ନମାଳା' ଓ 'ଶତାନନ୍ଦ ସଂଗ୍ରହ' ନାମକ ଦୁଇଟି ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ତନ୍ମଧ୍ୟରେ ପ୍ରଥମଟି ଜ୍ୟୋତିଷ ଓ ଅନ୍ୟଟି ସ୍ମୃତିଶାସ୍ତ୍ରବିଷୟକ ଗ୍ରନ୍ଥ । ଶତାନନ୍ଦ ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କ (୧୦୭୭-୧୧୪୭ ଖ୍ରୀଷ୍ଟାବ୍ଦ) ସମୟରେ ଉକ୍ତ ଉପାଦେୟ ଗ୍ରନ୍ଥ ଦୁଇଟି ରଚନା କରିଥିବାର ବିଶ୍ୱାସ କରାଯାଏ ।[୧୫] ଗ୍ରନ୍ଥ ଦୁଇଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ପରବର୍ତ୍ତିକାଳୀନ ସ୍ମୃତିଗ୍ରନ୍ଥରେ

---

୧୩ । (କ) ଖଖାଗ୍ନିବେଦପ୍ରମିତେ ଯୁଗାବ୍ଦେ ଦବ୍ୟୋକ୍ତିଭିଃ ଶ୍ରୀପୁରୁଷୋତ୍ତମସ୍ଥଃ ।
ଶ୍ରୀମାନ୍ ଶତାନନ୍ଦ ଇତିଦମାହ ସରସ୍ୱତୀଶଙ୍କରଯୋତ୍ରନୁଜଃ ॥
(OSM. MSS. Jy-No-I-A)

(ଖ) ନତ୍ୱା ମୁରାରେଶ୍ଚରଣାରବିନ୍ଦଂ ଶ୍ରୀମାନ୍ ଶତାନନ୍ଦ ଇତି ପ୍ରସିଦ୍ଧଃ ।
ତାଂ ଭାସ୍ୱତୀଂ ଶିଷ୍ୟହିତାର୍ଥମାହ ସରସ୍ୱତୀଶଙ୍କରଯୋତ୍ରନୁଜଃ ॥
(OSM. MSS. -Jy-No. I-A)

୧୪ । ନୀଳାଦ୍ରିଦେଶାନ୍ତର ଯୋଜନଘ୍ନା ଗତେ ଗ୍ରହସ୍ୟାଦ୍ରିଗଜୈର୍ବିଭକ୍ତଃ ।
ଲବ୍ଧଂ ଚ କ୍ଳପ୍ତା ଖଚରେ ବିଧେୟା ପ୍ରାଚ୍ୟାମୃଣଂ ପଶ୍ଚିମକେ ଧନଂ ଚ ॥
(OSM. MSS. Jy No. I-A)

୧୫ । A Descriptive Catalogue of Sanskrit Manuscript, Vol. IV. PP-25

ଶତାନନ୍ଦଙ୍କ ନାମ ଓ ତାଙ୍କ ଗ୍ରନ୍ଥ ଯେଉଁ ଯେଉଁ ପ୍ରସଙ୍ଗରେ ଉଦ୍ଧୃତ ହୋଇଛି ତାହା ବିଷୟାନୁକ୍ରମଣିକାରେ ଉଲ୍ଲେଖ କରାଯାଇଛି । ୧୬ ।

୨ । ଶ୍ରୀଧର ଶର୍ମ୍ମା :

ଶ୍ରୀଧର ଶର୍ମ୍ମା (୧୦୭୫ ଖ୍ରୀଷ୍ଟାବ୍ଦ) ଜ୍ୟୋତିଷକ ଶ୍ରୀଧର ନାମରେ ପରିଚିତ ।୧୭। ତାଙ୍କ ପୌତ୍ର ଜଗଦ୍ଧର ସୁମୁସର ରାଜ୍ୟର ଯଶୋଭଞ୍ଜ ଦେବଙ୍କ (୧୧୫୦ ଖ୍ରୀଷ୍ଟାବ୍ଦ) ସମୟରେ ତଦାନୀନ୍ତନ 'କୋଟରାବଙ୍ଗ' ବା ପୁରୀ ଜିଲ୍ଲାର ଆଧୁନିକ 'କୋଟରହାଙ୍ଗ' ପ୍ରଗଣାର ଅଧିବାସୀ ଥିଲେ । ୧୮। ଯଶୋଭଞ୍ଜଙ୍କ ଅନ୍ତଗ୍ରାମ-ତାମ୍ରଫଳକର ଉଲ୍ଲେଖ ଅନୁସାରେ ଶ୍ରୀଧର ପଣ୍ଡିତ ଅନନ୍ତଙ୍କ ପରିନାତି ଥିଲେ । ତେଣୁ ତାଙ୍କୁ ଏକାଦଶ ଶତାବ୍ଦୀ ଶେଷପାଦର ସ୍ମୃତିକାର ରୂପେ ଗ୍ରହଣ କରାଯାଇପାରେ । ଶ୍ରୀଧରଙ୍କ ଲିଖିତ କୌଣସି ଗ୍ରନ୍ଥ ମିଳି ନ ଥିଲେ ମଧ୍ୟ ପରବର୍ତ୍ତୀ ସ୍ମୃତିକାରମାନେ ତାଙ୍କ ଉଦ୍ଧୃତିଗୁଡ଼ିକ ଉଲ୍ଲେଖ କରିଥିବାର ଜଣାଯାଏ । ୧୯ ।

୩ । ଶଙ୍ଖଧର :

ସ୍ମୃତିକାର ଶଙ୍ଖଧର (୧୧୦୦-୧୧୫୦ ଖ୍ରୀଷ୍ଟାବ୍ଦ) 'ସ୍ମୃତିସମୁଚ୍ଚୟ' ଗ୍ରନ୍ଥର ପ୍ରଣେତାରୂପେ ଭାରତବିଖ୍ୟାତ । ଉତ୍କଳ, ବଙ୍ଗ ଓ ମିଥିଳାର ସ୍ମୃତିକାରମାନେ 'ସ୍ମୃତିସମୁଚ୍ଚୟ' ଗ୍ରନ୍ଥର ପ୍ରାମାଣିକତା ସ୍ୱ ସ୍ୱ ଗ୍ରନ୍ଥରେ ସ୍ୱୀକାର କରିଛନ୍ତି ।୨୦। ବଙ୍ଗଳାର ପ୍ରାଚୀନ ସ୍ମୃତିକାର ଜୀମୂତ-ବାହନ (୧୧୦୦-୧୧୫୦ ଖ୍ରୀଷ୍ଟାବ୍ଦ) 'କାଳବିବେକ' ଗ୍ରନ୍ଥରେ 'ସ୍ମୃତିସମୁଚ୍ଚୟ'ର ବହୁ ଉଦ୍ଧୃତି ଉଲ୍ଲେଖ କରିଛନ୍ତି । ତଦ୍‌ବ୍ୟତୀତ ଶୂଳପାଣି, ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ (୧୫୨୦-୧୫୭୫ ଖ୍ରୀଷ୍ଟାବ୍ଦ) ଓ ଅନ୍ୟାନ୍ୟ ବଙ୍ଗୀୟ ସ୍ମୃତିକାରଗଣଙ୍କ ସ୍ମୃତିଗ୍ରନ୍ଥରେ ଶଙ୍ଖଧରଙ୍କ ନାମ ବାରମ୍ବାର ଉଲ୍ଲିଖିତ ହୋଇଛି । ମିଥିଳାର ପ୍ରଖ୍ୟାତ ସ୍ମୃତିକାର ଚଣ୍ଡେଶ୍ୱର ଠାକୁର (୧୩୬୦ ଖ୍ରୀଷ୍ଟାବ୍ଦ) 'ଗଙ୍ଗା ବାକ୍ୟାବଳୀ' ଓ ବାଚସ୍ପତି ମିଶ୍ର (୧୪୨୫ ଖ୍ରୀଷ୍ଟାବ୍ଦ) 'ବ୍ୟବହାର-ଚିନ୍ତାମଣି' ଓ 'ଶୁଦ୍ଧି-

---

୧୬ । (a) Notices of Palmleaf Manuscript (Orissa)— SMS. No. 24, Pages 225-126

(b) A Descriptive Cat. of Sanskrit Manuscript. Vol. IV. pp—3

୧୭ । A. D. C of Sanskrit Mss. Vol. I, PP.—IV

୧୮ । E. I. Vol. XVIII—P. 299

୧୯ । A. D. C. of Skt. MSS. Vol. I, PP—IV

୨୦ । Indian Historical Quarterly, Vol. XXIII, No. 2, June, 1946

ଚନ୍ଦ୍ରାମଣି ଗ୍ରନ୍ଥରେ ଶଙ୍ଖଧରଙ୍କ 'ସ୍ମୃତିସମୁଚ୍ଚୟ' ଗ୍ରନ୍ଥର ଉଦ୍ଧୃତି ଦେଇଛନ୍ତି । ୨୧ । ତେଣୁ ଶଙ୍ଖଧରଙ୍କୁ ଦ୍ୱାଦଶ ଶତାବ୍ଦୀ ପ୍ରଥମାର୍ଦ୍ଧର ସ୍ମୃତିକାର ଭାବେ ଗ୍ରହଣ କରାଯାଇପାରେ ।

ଉତ୍କଳୀୟ ସ୍ମୃତିକାରମାନଙ୍କ ମଧ୍ୟରେ ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ', ନରସିଂହ ବାଜପେୟୀଙ୍କ 'ନିତ୍ୟାଚାର ପ୍ରଦୀପ' ଓ ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ' ଗ୍ରନ୍ଥରେ 'ସ୍ମୃତି-ସମୁଚ୍ଚୟ' ଗ୍ରନ୍ଥ ଉଦ୍ଧୃତ ହୋଇଅଛି । କିନ୍ତୁ ଯେଉଁ ଗ୍ରନ୍ଥ ଦିନେ ପୂର୍ବଭାରତୀୟ ରାଜ୍ୟଗୁଡ଼ିକରେ ବିଶେଷ ଖ୍ୟାତି ଅର୍ଜନ କରିଥିଲା, ତାହା ଅଦ୍ୟାବଧି ଲୋକଲୋଚନକୁ ଆସିନାହିଁ ।

## ୪ । ନୀଳାମ୍ବର ଆଚାର୍ଯ୍ୟ :

ବିଶ୍ୱପ୍ରସିଦ୍ଧ 'ଆର୍ଯ୍ୟାସପ୍ତଶତୀ' ଗ୍ରନ୍ଥକାର କବି ଗୋବର୍ଦ୍ଧନ ଆଚାର୍ଯ୍ୟ ଓ ଜୟଦେବଙ୍କ ପ୍ରଣୀତ 'ଗୀତଗୋବିନ୍ଦ' ମହାକାବ୍ୟର ପ୍ରଥମ ଟୀକାକାର କବି ଉଦୟନ ଆଚାର୍ଯ୍ୟଙ୍କ ପିତା ବାଜପେୟୀ ନୀଳାମ୍ବର (୧୧୫୦ ଖ୍ରୀଷ୍ଟାବ୍ଦ) ଜଣେ ପ୍ରସିଦ୍ଧ ସ୍ମୃତିକାର ଥିବାର ଜଣାଯାଏ ।୨୨। ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମ ଦେବ (ଦ୍ୱିତୀୟ)ଙ୍କ ରାଜତ୍ୱକାଳରେ (୧୧୯୦-୧୧୯୮ ଖ୍ରୀଷ୍ଟାବ୍ଦ) ନିର୍ମିତ ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିର ଓ ନିଆଳି ଗ୍ରାମସ୍ଥ ଶୋଭନେଶ୍ୱର ମନ୍ଦିରରେ ଥିବା ଶିଳାଲେଖର ଶ୍ଳୋକାବଳୀ ଉଦୟନ ଆଚାର୍ଯ୍ୟ ରଚନା କରିଥିଲେ ।୨୩। ତେଣୁ ତାଙ୍କ ପିତା ନୀଳାମ୍ବର ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଥିବାର ମନେହୁଏ । ନୀଳାମ୍ବରଙ୍କ ପ୍ରଣୀତ କୌଣସି ଗ୍ରନ୍ଥ ଅଦ୍ୟାବଧି ହସ୍ତଗତ ହୋଇନାହିଁ ।

## ୫ । ଶମ୍ଭୁକର ମିଶ୍ର ବାଜପେୟୀ :

ସ୍ମୃତିକାର ଶଙ୍ଖଧରଙ୍କ ପରେ ଗଙ୍ଗବଂଶୀୟ ରାଜା ନରସିଂହ ଦେବ(ଦ୍ୱିତୀୟ)ଙ୍କ ରାଜତ୍ୱ-ସମୟରେ (୧୨୭୮-୧୩୦୬ ଖ୍ରୀଷ୍ଟାବ୍ଦ) ବାଜପେୟୀ ଶମ୍ଭୁକର ମିଶ୍ର ଓ ତାଙ୍କ ପୁତ୍ର ବିଦ୍ୟାକର ମିଶ୍ର ଭାରତପ୍ରସିଦ୍ଧ ସ୍ମୃତିକାର ଭାବେ ଖ୍ୟାତି ଅର୍ଜନ କରିଥିଲେ । ସେ ଭରଦ୍ୱାଜଗୋତ୍ରୀୟ ମିଶ୍ର ବ୍ରାହ୍ମଣ ଥିଲେ । ତାଙ୍କର ବଂଶଧରମାନେ ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁର ଶାସନରେ ଅଦ୍ୟାପି ବସବାସ କରୁଥିବାର ଜଣାଯାଏ ।୨୪।

'କୋଶଳାନନ୍ଦ ମହାକାବ୍ୟ' ଶୀର୍ଷକ ଐତିହାସିକ କାବ୍ୟର ପ୍ରଣେତା କବି ଗଙ୍ଗାଧର ମିଶ୍ରଙ୍କ (୧୬୧୫-ଖ୍ରୀଷ୍ଟାବ୍ଦ) ବର୍ଣ୍ଣନା ଅନୁସାରେ ଶମ୍ଭୁକରଙ୍କ ବଂଶର ଏକ ଶାଖା ସମ୍ବଲପୁରର ଚୌହାନ ରାଜାଙ୍କ ପୃଷ୍ଠପୋଷକତା ଲାଭ କରି ସେଠାରେ ସ୍ଥାୟୀଭାବେ ବସବାସ କରୁଥିଲେ ।

---

୨୧ । A. D. C. of Skt. Mss. Vol I, PP-V
୨୨ । Ibid—PP-IV
୨୩ । J. B. O. R. S.—Vol XVIII, 1931, P—119-135
୨୪ । A. D. C. of Skt. Mss. Vol. I. PP.-V

ସେହି ବଂଶର ଗୋପୀନାଥ ମିଶ୍ରଙ୍କ ପୁତ୍ର ରୂପେ କବି ଗଙ୍ଗାଧର ଜନ୍ମ ହୋଇଥିଲେ ।୧୫।

ଓଡ଼ିଶାରେ ପ୍ରଚଳିତ ଏକ କିଂବଦନ୍ତୀରୁ ଜଣାଯାଏ ଯେ ମହାରାଜ ଭାନୁଦେବ(ପ୍ରଥମ)ଙ୍କ ମୃତ୍ୟୁ (୧୨୭୪-୧୨୭୮ ଖ୍ରୀଷ୍ଟାବ୍ଦ) ପରେ ରାଜସିଂହାସନ ନେଇ ବିବାଦ ଉପସ୍ଥିତ ହେବାରୁ ବାଜପେୟୀ ଶମ୍ଭୁକର ରାଜା ନରସିଂହଦେବ(ଦ୍ୱିତୀୟ)ଙ୍କ ପକ୍ଷ ସମର୍ଥନ କଲେ ନାହିଁ । ସେହି କାରଣରୁ ସିଂହାସନରେ ଅଭିଷିକ୍ତ ହେବା ପରେ ନରସିଂହ ଦେବ ପଣ୍ଡିତ ଶମ୍ଭୁକରଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ଏକ ବ୍ରାହ୍ମଣ-ଶାସନର ଦାନାଧ୍ୟକ୍ଷ ପଦରେ ନିଯୁକ୍ତ ଦେଲେ । କିନ୍ତୁ ଅଭିମାନୀ ଶମ୍ଭୁକର ରାଜକୀୟ ଦାନ ଗ୍ରହଣ ନ କରିବାରୁ ତାଙ୍କ ପ୍ରତି ରାଜାଙ୍କର ଅସନ୍ତୋଷ ତୀବ୍ର ରୂପ ଧାରଣ କରିଥିଲା ।୧୬। ତହୁଁ ସେ ପତ୍ନୀ ସତ୍ୟବତୀ ଓ ପୁତ୍ର ବିଦ୍ୟାକରଙ୍କ ସହିତ ଜନ୍ମଭୂମି ଉତ୍କଳ ପରିତ୍ୟାଗପୂର୍ବକ କାଶୀରେ ବସବାସ କଲେ ।୧୭। ପରେ ଉତ୍କଳ-ରାଜଙ୍କ ଅନୁରୋଧକ୍ରମେ କେବଳ ବିଦ୍ୟାକର ତିରିଶ ବର୍ଷ ପରେ ପୁରୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ବିଦ୍ୟାକରଙ୍କ ପ୍ରଣୀତ 'ନିତ୍ୟାଚାର ପଦ୍ଧତି' ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ଶମ୍ଭୁକର ଉତ୍କଳାଧିପତି ନରସିଂହଙ୍କ ସମସାମୟିକ ଥିବାର ପ୍ରମାଣିତ ହୁଏ ।୧୮।

---

୧୫ । (କ) ପୂର୍ବଃ ପର୍ବସୁପର୍ବନାୟକଗୁରୁ-ସ୍ପର୍ଦ୍ଧିସମୃଦ୍ଧିରସା-
ପୃଷ୍ଟସ୍ୟାଖିଳଶାସ୍ତ୍ରତନ୍ତ୍ରନିଗମଜ୍ଞାନୈକବାରାଂନିଧିଃ ।
ଜାତଃ ଶମ୍ଭୁକରାଭିଧଃ କବିବରୋ ବିଦ୍ୟାକରସ୍ତତ୍ସୁତଃ
ସମ୍ଭୂତଃ କବିଜାଲତୋନ୍ନତିକରଃ ବର୍ଷଃ ପ୍ରକର୍ଷାନ୍ୱିତଃ ॥

(ଖ) ତଦ୍‌ଭବ୍ୟସ୍ୟ କୁଳେ ସୁଧାଂଶୁବିମଳେ ରତ୍ନାକରେ ଧୀମତାଂ
ଗୋପୀନାଥକ ଏଷ ପଣ୍ଡିତବରୋ ହାରାଙ୍କୁରୋ ବର୍ତ୍ତତେ ।
ଜାତଂ ଜନ୍ମ ମତେମତ ତନ ସହସା ନୈଷା ବିଧତ୍ତେ ମୁଦଂ
ବିଦ୍ୟା ହୃଦ୍ୟତରାନ୍ୟସମ୍ପଦ ପରା ଗୋଙ୍ଗାଧିକଃ ପୂଜ୍ୟତେ ॥

(OSM. No. L. 14)

୧୬ । ରାଜପ୍ରତିଗ୍ରହୋ ଘୋରୋ ମଧ୍ୱାସ୍ୱାଦୀ ବିଷୋପମଃ ।
ପୁତ୍ରମାଂସଂ ବରଂ ଭୋକ୍ତୁଂ ନ ତୁ ରାଜପରିଗ୍ରହଃ ॥ (A. D. C., PP-VI)

୧୭ । ନାନାଶାସନକୃତ୍ ନୃପାଳ ପରମାତ୍ ଶ୍ରୀମନ୍ନୃସିଂହାଭିଧା-
ନ୍ନୈକ୍ଷ୍ଟଚ୍ଛାସନକଂ ସ୍ୱଧର୍ମନିରତୋ ଦେଶଂ ଜହୌ ତେନ ସଃ ।
କାଶୀଂ ପ୍ରାପ ତତଃ ସ୍ୱସୂନୁସୁଧିୟଂ ବିଦ୍ୟାକରଂ ସାନୁଜଂ
ସ୍ୱେଷାମୁଦ୍‌ବହନାର୍ଥମୁତ୍କଳଭୁବଂ ଗନ୍ତୁମାଦିଷ୍ଟବାନ୍ ॥ (ନିତ୍ୟାଚାର ପଦ୍ଧତି—ପୃ. ୧)

୧୮ । ଆହର୍ତ୍ତା ଯଃ କ୍ରତୂନାମଯୁତଭୃତିଭୃତାଂ ତ୍ରିଂଶତାଂ ସତ୍ୟବତ୍ୟାଃ
ପୁତ୍ରୋ ବିଦ୍ୟାକରୋଽଭୂତ୍ ସକଳଗୁଣିଗଣୈରାର୍ଚ୍ୟତେ କୃଷ୍ଣବଦ୍ ଯଃ ।
ତ୍ରିଂଶଦ୍‌ବର୍ଷଃ ସ କାଶ୍ୟାଂ କୃତବସତିରଭୂଦ୍ଧର୍ମଶାସ୍ତ୍ରସ୍ୟ କର୍ତ୍ତା
ପଦ୍ଧତ୍ୟାଖ୍ୟସ୍ୟ ଖଣ୍ଡଂ ପ୍ରଥମମିହ ବିଲୋଽକ୍ଲାଲଖଣ୍ଡସ୍ୟ କାର୍ତ୍ତିଃ ॥

(ନିତ୍ୟାଚାର ପଦ୍ଧତି—ପୃ. ୧)

ପ୍ରଚଳିତ ଥିବା ଅନ୍ୟ ଏକ କିଂବଦନ୍ତୀ ଅନୁଯାୟୀ ଶମ୍ଭୂକରଙ୍କ ସ୍ତ୍ରୀ ସତ୍ୟବତୀ ଜଣେ ସୁଶିକ୍ଷିତା ଓ ପତିବ୍ରତା ରମଣୀ ଥିଲେ । ସେ 'ପାଦୁକାସିଦ୍ଧି' ମନ୍ତ୍ରବଳରେ ପଦ୍ମ-ସରୋବରର ଜଳ ଉପରେ ଚାଲି ଚାଲି ପଦ୍ମ ସଂଗ୍ରହ କରୁଥିଲେ । କିଛିକାଳ ପରେ ପୁତ୍ର ବିଦ୍ୟାକର କାଶୀରୁ ଫେରି ବିବାହ କରି ପୁରୀରେ ବସବାସ କଲେ । ପୁରୀ ରାଜା ଏ ସମ୍ବାଦରେ ସନ୍ତୁଷ୍ଟ ହୋଇ ବିଦ୍ୟାକରଙ୍କୁ ରାଜସଭାରେ ପଣ୍ଡିତ ରୂପେ ଗ୍ରହଣ କଲେ । ଏହି ସମୟରେ ଦିନେ ସତ୍ୟବତୀ ଫୁଲ ତୋଳିବାକୁ ଗଲାବେଳେ ତାଙ୍କ ପାଦ ପାଣିରେ ବୁଡ଼ିଯାଇ ଶାଢ଼ିର ପଣତ ଓଦା ହୋଇଗଲା । ଏହି ଘଟଣାରେ ଆଶ୍ଚର୍ଯ୍ୟ ହୋଇ ସତ୍ୟବତୀ ସ୍ୱାମୀଙ୍କୁ ସବୁକଥା ଜଣାଇଲେ । ଶମ୍ଭୂକର ଧ୍ୟାନବଳରେ ଜାଣିପାରିଲେ ଯେ, ପୁତ୍ର ବିଦ୍ୟାକର ରାଜ-ପ୍ରତିଗ୍ରହ ଗ୍ରହଣ କରିଥିବାରୁ ଏପରି ଘଟିଲା । ସେ ସେଥିପାଇଁ ଚାନ୍ଦ୍ରାୟଣ-ବ୍ରତ କରି କିଛିଦିନ ପରେ ବିଶ୍ୱନାଥ ମନ୍ଦିରରେ ସମାଧିସ୍ଥ ଥିବାବେଳେ ଇହଲୀଳା ସମ୍ବରଣ କଲେ । ତେଣୁ ଶମ୍ଭୂକର କାଶୀରେ ହିଁ ଶେଷ ଜୀବନ କଟାଇଥିଲେ ।୨୯।

ଉତ୍କଳାକ୍ଷରରେ ମୁଦ୍ରିତ 'ଶ୍ରାଦ୍ଧ ପଦ୍ଧତି' ଓ 'ବିବାହ ପଦ୍ଧତି' ବ୍ୟତୀତ ଶମ୍ଭୂକର 'ଅଗ୍ନିହୋତ୍ର ହୋମ ପଦ୍ଧତି,' 'ଅଗ୍ନିହୋତ୍ର ହୋମ-ପ୍ରାୟଶ୍ଚିତ୍ତ ପଦ୍ଧତି', 'ଦର୍ଶ ପୌର୍ଣ୍ଣମାସେଷ୍ଟି ପଦ୍ଧତି', 'ନିରୂଢ଼ ପଶୁବନ୍ଧ ପଦ୍ଧତି, 'ସ୍ମାର୍ତ୍ତ ରତ୍ନାବଳୀ' ଓ 'ଶ୍ରୌତାଧାନ ଶ୍ଳୋକ ପଦ୍ଧତି' ଗ୍ରନ୍ଥମାନ ରଚନା କରିଥିବାର ଜଣାଯାଏ । 'ଶମ୍ଭୂକର ପଦ୍ଧତି' ତାଙ୍କ ପ୍ରଣୀତ ସର୍ବୋତ୍ତମ ଗ୍ରନ୍ଥ । ଏହି ଗ୍ରନ୍ଥରେ ପୂର୍ବୋକ୍ତ ଯଜ୍ଞୀୟ ବିଧାନଗୁଡ଼ିକର ଏକତ୍ର ସଂକଳନ କରାଯାଇଛି । ପରବର୍ତ୍ତୀ ସ୍ମୃତିକାରମାନଙ୍କ ନିବନ୍ଧ ଗ୍ରନ୍ଥରେ 'ଶମ୍ଭୂକର ପଦ୍ଧତି' ବହୁଳ ଭାବରେ ଉଦ୍ଧୃତ ହୋଇଛି । ସପ୍ତଦଶ ଶତାବ୍ଦୀର ସ୍ମୃତିକାର ବିଶ୍ୱନାଥ ମିଶ୍ର, ବିପ୍ର ମିଶ୍ର ଓ ଦିବ୍ୟସିଂହ ମହାପାତ୍ର ପ୍ରଭୃତି 'ଶମ୍ଭୂକର ପଦ୍ଧତି' ଗ୍ରନ୍ଥରୁ ବହୁ ଉଦ୍ଧୃତି ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଛନ୍ତି ।

ବାଜପେୟୀ ଶମ୍ଭୂକରଙ୍କ ପ୍ରଣୀତ (କ) ଶମ୍ଭୂକର ପଦ୍ଧତି, (ଖ) ଅଗ୍ନିହୋତ୍ର ହୋମପଦ୍ଧତି, (ଗ) ଅଗ୍ନିହୋତ୍ର ହୋମ-ପ୍ରାୟଶ୍ଚିତ୍ତ ପଦ୍ଧତି, (ଘ) ଶ୍ରୌତାଧାନ ପଦ୍ଧତିରେ ବିଭିନ୍ନ ପ୍ରକାର ଶ୍ରୌତ ଯଜ୍ଞ, (ଙ) ବିବାହ ପଦ୍ଧତି, (ଚ) ଦୁର୍ବଳ କର୍ମପଦ୍ଧତି (ଛ) ସାମ୍ବତ୍ସରିକ ଶ୍ରାଦ୍ଧପଦ୍ଧତି, (ଜ) ପାର୍ବଣ-ଶ୍ରାଦ୍ଧ ପଦ୍ଧତିରେ ଯଥାକ୍ରମେ ବିବାହ, ଅନ୍ତ୍ୟେଷ୍ଟି ଓ ଶ୍ରାଦ୍ଧ; ଏବଂ (ଝ) ସ୍ମାର୍ତ୍ତ ରତ୍ନାବଳୀରେ ବିବିଧ ପ୍ରସଙ୍ଗ ଓ (ଞ) ବୃଷୋତ୍ସର୍ଗ ପଦ୍ଧତିରେ ବୃଷ ଉତ୍ସର୍ଗର ବିଧି-ବିଧାନ ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥଗୁଡ଼ିକରେ ବେଦ ବେଦାଙ୍ଗ ଓ ପ୍ରାଚୀନ ସ୍ମୃତିକାରମାନଙ୍କ ବାକ୍ୟାବଳୀ ପ୍ରମାଣ ସ୍ୱରୂପ ଉଦ୍ଧାର କରାଯାଇଛି ।

## ୬ । ଶ୍ରୀଧର ସ୍ୱାମୀ :

ମହାତ୍ମା ଶ୍ରୀଧର ସ୍ୱାମୀ (୧୩୦୦ ଖ୍ରୀଷ୍ଟାବ୍ଦ) ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ରେମୁଣାର ପ୍ରସିଦ୍ଧ କ୍ଷୀରଚୋରା ଗୋପୀନାଥ ପୀଠର ଅନତିଦୂରବର୍ତ୍ତୀ ମରେଇଗାଁରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଆଜନ୍ମ ସନ୍ନ୍ୟାସୀ । ପୁରୀ ଗୋବର୍ଦ୍ଧନପୀଠର ଶଙ୍କରାଚାର୍ଯ୍ୟ ପଦରେ ସେ ଅଧିଷ୍ଠିତ

୨୯ । A. D. C. of Skt Mss.—PP-V-X.

ହୋଇଥିଲେ । ଶ୍ରୀଧର ସ୍ୱାମୀ ଏକାଧାରରେ କବି, ପଣ୍ଡିତ, ସ୍ମୃତିକାର ଓ ପୁରାଣ-ଟୀକାକାର ଭାବେ ପୃଥିବୀବିଖ୍ୟାତ ହୋଇଥିଲେ । ତାଙ୍କ ପ୍ରଣୀତ ଅମୂଲ୍ୟ ଗ୍ରନ୍ଥ ମଧ୍ୟରେ (୧) ଶ୍ରୀମଦ୍-ଭାଗବତରର 'ଭାବାର୍ଥଦୀପିକା' ଟୀକା, (୨) ଶ୍ରୀମଦ୍‌ଭଗବଦ୍‌ଗୀତାର 'ସୁବୋଧିନୀ' ଟୀକା, (୩) ବିଷ୍ଣୁ ପୁରାଣର 'ଆତ୍ମପ୍ରକାଶ' ଟୀକା, (୪) 'ବେଦସ୍ତୁତି' ଟୀକା, (୫) 'ପଦାର୍ଥ ପ୍ରକାଶିକା' ଟୀକା, (୬) ସନତ୍ସୁଜାତୀୟର 'ବାଳବୋଧିନୀ' ଟୀକା, (୭) ଗୀତାସାରର 'ବ୍ରହ୍ମ ସମ୍ବୋଧିନୀ' ଟୀକା, (୮) ବ୍ରଜବିହାର କାବ୍ୟ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଗଦାଧର ରାଜଗୁରୁଙ୍କ 'କାଳସାର' ଗ୍ରନ୍ଥର ଉଦ୍ଧୃତି ଅନୁସାରେ ଶ୍ରୀଧର ସ୍ୱାମୀ ଏକ ସ୍ମୃତିଗ୍ରନ୍ଥ ରଚନା କରିଥିବାର ପ୍ରମାଣ ମିଳେ । ବାଜପେୟୀ ବିଦ୍ୟାକର (୧୩୨୫ ଖ୍ରୀ: ଅ:), ନରସିଂହ (୧୫୨୫ ଖ୍ରୀ: ଅ:), ମହାମହୋପାଧ୍ୟାୟ କୃଷ୍ଣ ମିଶ୍ର (୧୭୫୦ଖ୍ରୀ: ଅ:) ପ୍ରଭୃତି ଓଡ଼ିଶାର ସ୍ମୃତିକାରଗଣ ସ୍ୱ ସ୍ୱ ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ନାମୋଲ୍ଲେଖ କରିଛନ୍ତି । ବଙ୍ଗଳାର ପ୍ରସିଦ୍ଧ ସ୍ମୃତିକାର ରଘୁନନ୍ଦନ ଭଟ୍ଟାଚାର୍ଯ୍ୟ ତାଙ୍କ ପ୍ରଣୀତ 'ଏକାଦଶୀ ତତ୍ତ୍ୱ' ଓ 'ମଳମାସ ତତ୍ତ୍ୱ' ଗ୍ରନ୍ଥରେ 'ସମୁଚ୍ଚୟ' ଶୀର୍ଷକ ଶ୍ରୀଧର ସ୍ୱାମୀଙ୍କ ରଚିତ ସ୍ମୃତି-ଗ୍ରନ୍ଥର ନାମ ଉଲ୍ଲେଖ କରିଛନ୍ତି । କିନ୍ତୁ ଦୁର୍ଭାଗ୍ୟବଶତଃ ଶ୍ରୀଧର ସ୍ୱାମୀଙ୍କ ରଚିତ କୌଣସି ସ୍ମୃତିଗ୍ରନ୍ଥ ଅଦ୍ୟାବଧି ଆଲୋଚକମାନଙ୍କ ହସ୍ତଗତ ହୋଇନାହିଁ ।୩୦।

## ୭ । ବିଦ୍ୟାକର ବାଜପେୟୀ :

ଶମ୍ଭୂକରଙ୍କ ପୁତ୍ର ବିଦ୍ୟାକର (୧୩୨୫ ଖ୍ରୀଷ୍ଟାବ୍ଦ) ଥିଲେ ପିତାଙ୍କର ଯଥାର୍ଥ ଉତ୍ତରାଧିକାରୀ । ସେ 'ନିତ୍ୟାଚାର ପଦ୍ଧତି' ବ୍ୟତୀତ କ୍ରମଦୀପିକା, ଦିନକୃତ୍ୟଦୀପିକା, ମୋକ୍ଷ ପରୀକ୍ଷାଦି ଗ୍ରନ୍ଥର ରଚୟିତା ଭାବେ ପ୍ରଖ୍ୟାତ । ମିଥିଳାର ସ୍ମୃତିକାର ଚଣ୍ଡେଶ୍ୱର ଠାକୁରଙ୍କ (୧୩୦୦-୧୩୭୦ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'କୃତ୍ୟ ଚିନ୍ତାମଣି'ର ଉଦ୍ଧୃତି 'କ୍ରମଦୀପିକା' ଗ୍ରନ୍ଥରେ ଥିବାରୁ ବିଦ୍ୟାକରଙ୍କୁ ତତ୍ ପରବର୍ତ୍ତୀ ସ୍ମୃତିକାର ରୂପେ ଗ୍ରହଣ କରାଯାଇପାରେ । ୩୧ । ବଙ୍ଗଳାର ସ୍ମୃତିକାର ରଘୁନନ୍ଦନଙ୍କ (୧୫୨୦-୧୫୭୫ ଖ୍ରୀଷ୍ଟାବ୍ଦ) 'ଆହ୍ନିକ ତତ୍ତ୍ୱ', ବିଶ୍ୱେଶ୍ୱର ଭଟ୍ଟଙ୍କ (୧୩୬୦-୧୩୯୦ ଖ୍ରୀଷ୍ଟାବ୍ଦ) 'ମଦନ ପାରିଜାତ' ଗ୍ରନ୍ଥରେ 'ବିଦ୍ୟାକର ପଦ୍ଧତି' ଉଦ୍ଧୃତ ହୋଇଅଛି । 'ବିଦ୍ୟାକର ପଦ୍ଧତି'ରେ ମଧ୍ୟ କାଶୀର ଲକ୍ଷ୍ମୀଧର ଭଟ୍ଟଙ୍କ (୧୧୦୦-୧୧୩୦ ଖ୍ରୀଷ୍ଟାବ୍ଦ) 'କୃତ୍ୟକଳ୍ପତରୁ' ଗ୍ରନ୍ଥର ବହୁଳ ଉଦ୍ଧୃତି ରହିଛି । ଏହି ଗ୍ରନ୍ଥ ଓଡ଼ିଶାରେ ଗଦାଧର ରାଜଗୁରୁଙ୍କ ପର୍ଯ୍ୟନ୍ତ (୧୭୦୦-୧୭୧୫ ଖ୍ରୀଷ୍ଟାବ୍ଦ) ବିଖ୍ୟାତ ଥିଲା । ନରସିଂହ ବାଜପେୟୀଙ୍କ (୧୬ଶ ଶତାବ୍ଦୀ) 'ନିତ୍ୟାଚାର ପ୍ରଦୀପ', ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ', ଦିବ୍ୟସିଂହଙ୍କ 'ଶ୍ରାଦ୍ଧଦୀପ' ଏବଂ କୃଷ୍ଣ ମିଶ୍ରଙ୍କ (୧୮ଶ ଶତାବ୍ଦୀ) 'କାଳସର୍ବସ୍ୱ' ଗ୍ରନ୍ଥରେ 'ବିଦ୍ୟାକର ପଦ୍ଧତି' ଉଦ୍ଧୃତ ହୋଇଛି ।୩୨ ।

---

୩୦ । A. D. C of Skt Mss. Vol—III, PP-XLI—II

୩୧ । Journal of Asiatic Society of Bengal, Vol. XV 915. P 385.

୩୨ । A. D C. of Skt Mss. Vol-I, PP. X-XI

ବାଜପେୟୀ ବିଦ୍ୟାକରଙ୍କ ପ୍ରଣୀତ (କ) 'ବିଦ୍ୟାକର ପଦ୍ଧତି' ଗ୍ରନ୍ଥରେ ଦଶ ସଂସ୍କାରାତ୍ମକ ଉପନୟନ କର୍ମର ବିସ୍ତୃତ ବିଧି, ଅନୁବଚନୀୟ ହୋମ, ମେଧାଜନନ ବିଧିବିଧାନାଦିର ପର୍ଯ୍ୟାଲୋଚନା କରାଯାଇଛି । ତାଙ୍କର ଦ୍ୱିତୀୟ ରଚନା (ଖ) 'ନିତ୍ୟାଚାର ପଦ୍ଧତି'-ଗ୍ରନ୍ଥଟି ପଣ୍ଡିତ ବିନୋଦ ବିହାରୀ ଭଟ୍ଟାଚାର୍ଯ୍ୟଙ୍କ ସମ୍ପାଦନାରେ ଏସିଆଟିକ୍ ସୋସାଇଟି, ବଙ୍ଗଳା ପକ୍ଷରୁ ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଛି । ଏଥିରେ ପ୍ରାଚୀନ ଧର୍ମଶାସ୍ତ୍ର, ପୁରାଣ, ସ୍ମୃତିଶାସ୍ତ୍ର ଓ ସ୍ମୃତିକାରଙ୍କ ଉଦ୍ଧୃତି ସହିତ ଦିବସର ପ୍ରଥମ ଭାଗ କୃତ୍ୟ ଆଲୋଚିତ ହୋଇଛି ।

## ୮ । ବୃହସ୍ପତି ସୂରି

ବୃହସ୍ପତି ସୂରି (୧୩୫୦ ଖ୍ରୀଷ୍ଟାବ୍ଦ) 'କୃତ୍ୟ କୌମୁଦୀ' ଗ୍ରନ୍ଥର ପ୍ରଣେତା ଭାବେ ସୁବିଦିତ । ଓଡ଼ିଶାରେ ଏକଦା ଏହି ଗ୍ରନ୍ଥର ବିଶେଷ ଆଦର ଥିବାର ପ୍ରମାଣ ମିଳେ । 'କୃତ୍ୟ କୌମୁଦୀ' ଗ୍ରନ୍ଥରୁ ସ୍ମୃତିକାର ବୃହସ୍ପତିଙ୍କ ବିଷୟରେ କୌଣସି ପ୍ରକାର ନିର୍ଦ୍ଦିଷ୍ଟ ସୂଚନା ମିଳେନାହିଁ । ତେଣୁ ଗ୍ରନ୍ଥର ଅଭ୍ୟନ୍ତରୀଣ ପ୍ରମାଣ ବଳରେ ବୃହସ୍ପତିଙ୍କ ସମୟ ନିର୍ଦ୍ଧାରଣ କରାଯାଇପାରେ ।

କୃତ୍ୟ କୌମୁଦୀରେ ୧୨୦୦ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ସ୍ମୃତିକାରମାନଙ୍କ ମଧ୍ୟରୁ ଜୀମୂତବାହନ, ବିଜ୍ଞାନେଶ୍ୱର, ଭୋଜମାର୍ତ୍ତଣ୍ଡ, ଲକ୍ଷ୍ମୀଧର, ଶତାନନ୍ଦ ସଂଗ୍ରହ, ସ୍ମୃତି ମୀମାଂସା, ସ୍ମୃତି ସମୁଚ୍ଚୟାଦି ଗ୍ରନ୍ଥ ସହିତ ପରବର୍ତ୍ତୀ କାଳର ମୈଥିଳ ସ୍ମୃତିକାର ହରିନାଥ ଉପାଧ୍ୟାୟଙ୍କ ପ୍ରଣୀତ 'ସ୍ମୃତିସାର' ଗ୍ରନ୍ଥ ଉଦ୍ଧୃତ ହୋଇଛି । ୩୩ । ଐତିହାସିକମାନେ ହରିନାଥଙ୍କ ସମୟ ୧୩୦୦ ଖ୍ରୀଷ୍ଟାବ୍ଦ ବୋଲି ନିର୍ଦ୍ଧାରଣ କରିଛନ୍ତି । ୩୪ । ତେଣୁ ବୃହସ୍ପତି ସୂରି ୧୩୫୦ ଖ୍ରୀଷ୍ଟାବ୍ଦର ନିକଟବର୍ତ୍ତୀ ଥିବାର ମନେହୁଏ । ଓଡ଼ିଶାର ପରବର୍ତ୍ତୀ ଗ୍ରନ୍ଥକାରଙ୍କ ମଧ୍ୟରେ ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ' ଓ କୃଷ୍ଣ ମିଶ୍ରଙ୍କ 'କାଳସର୍ବସ୍ୱ' ଗ୍ରନ୍ଥରେ କୃତ୍ୟକୌମୁଦୀ ଉଦ୍ଧୃତ ହୋଇଥିବାର ଦେଖାଯାଏ । ବୃହସ୍ପତି ଶ୍ରୀପତିଙ୍କୁ ବନ୍ଦନା କରି କୃତ୍ୟକୌମୁଦୀ ଗ୍ରନ୍ଥ ସୁଧୀଜନଙ୍କ ଉଦ୍ଦେଶ୍ୟରେ ରଚନା କରୁଥିବାର ଉଲ୍ଲେଖ ଅଛି । ୩୫ । ଗ୍ରନ୍ଥଟି କାଳବିବେକ ପ୍ରକରଣ, ପ୍ରାୟଶ୍ଚିତ୍ତ ପ୍ରକରଣ ଓ ଦାନ ପ୍ରକରଣ ନାମରେ ତିନୋଟି ପ୍ରକରଣରେ ବିଭକ୍ତ । ଏଥିରେ ଓଡ଼ିଶାର ପ୍ରାୟ ସମସ୍ତ ବ୍ରତ ଓ ପର୍ବ-ପର୍ବାଣୀର ବିଧିବିଧାନ, ନିତ୍ୟାଚାର ପଦ୍ଧତିରେ ଉଦ୍ଧୃତ ଗ୍ରନ୍ଥ ଓ ଗ୍ରନ୍ଥକାର ଏବଂ ବିଭିନ୍ନ ପୁରାଣ ଓ ଉପ-ପୁରାଣର ଉଦ୍ଧୃତି ସହିତ ଆଲୋଚନା କରାଯାଇଛି ।

---

୩୩ । A. D. C. of Skt Mss Vol I-PP XIV, XXV

୩୪ । History of Dharmashastra, Vol I, P 37 ।

୩୫ । (କ) ଶ୍ରୁତିସ୍ମୃତିପୁରାଣୋକ୍ତଂ କର୍ମୌଘଂ ଯଦ୍ୟଦୃଚ୍ଛୟେ ।
ଅନୁତିଷ୍ଠନ୍ତି ବିଦ୍ୱାଂସଃ ତସ୍ମୈ ଶ୍ରୀପତୟେ ନମଃ ॥

(ଖ) ସମୁଦ୍‌ଗତାମେବ ପୟୋଧିଜନ୍ମନଃ ସ୍ମୃତିବ୍ରଜେନ୍ଦୋଃ ସୁକୃତାବ୍ଧିବର୍ଦ୍ଧିନୀ ।
ଧିନୋତିସମ୍ପତ୍ତି କୁମୁଦ୍‌ବତୀ ବୃହସ୍ପତିସୁଧୀଶ୍ଚକୋରାନ୍ନମ କୃତ୍ୟକୌମୁଦୀ ॥

(O. S. M. Mss. Dh. No 162)'

## ୯ । ଜଗନ୍ନାଥ ମିଶ୍ର ବାଜପେୟୀ :

ଅଗ୍ନିଚିତ୍ ବାଜପେୟୀ ଜଗନ୍ନାଥ ମିଶ୍ର (୧୩୬୮-୧୪୦୦ ଖ୍ରୀଷ୍ଟାବ୍ଦ) ଥିଲେ ବିଦ୍ୟାକର ବାଜପେୟୀଙ୍କ ପୁତ୍ର ଓ ଭାରତବିଖ୍ୟାତ ସ୍ମୃତିକାର ଶମ୍ଭୁକର ମିଶ୍ର ବାଜପେୟୀଙ୍କ ପୌତ୍ର । ସେ 'ଅଗ୍ନିଷ୍ଟୋମ ପଦ୍ଧତି' ଗ୍ରନ୍ଥ ରଚନା କରିଛନ୍ତି । ଏଥିରେ ଯଜ୍ଞର ବିଧିବିଧାନ, ମନ୍ତ୍ର ତଥା ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟବିଧିଗୁଡ଼ିକ ଶ୍ଳୋକାକାରରେ ସଙ୍କଳିତ ହୋଇଛି ।୩୬। ଜଗନ୍ନାଥ ବାଜପେୟୀଙ୍କ ପୁତ୍ର ଗୋପୀନାଥ ବାଜପେୟୀ 'ଆତ୍ମସ୍ୱରୂପାନୁସନ୍ଧାନ' ନାମକ ଖଣ୍ଡିଏ ଦର୍ଶନବିଷୟକ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ ।୩୭।

## ୧୦ । ଯୋଗୀଶ୍ୱର :

ଯୋଗୀଶ୍ୱର (୧୩୭୫-୧୪୩୪ ଖ୍ରୀଷ୍ଟାବ୍ଦ) ଗଙ୍ଗବଂଶୀୟ ଶେଷ ନରପତି ନିଃଶଙ୍କ ଭାନୁଦେବଙ୍କ (୧୪୧୩-୧୪୩୪ ଖ୍ରୀଷ୍ଟାବ୍ଦ) ଜଣେ ପଦସ୍ଥ କର୍ମଚାରୀ ଥିଲେ ।୩୮। ସେ ଶକୁନ ଗ୍ରନ୍ଥ 'ଅଦ୍ଭୁତ ସାଗର' ଓ ସ୍ମୃତିଗ୍ରନ୍ଥ 'ଦାନ ଦୀପାବଳୀ' ସଙ୍କଳନ କରିଥିଲେ ।୩୯। ଗ୍ରନ୍ଥ ଦୁଇଟି ବଲ୍ଲାଳ ସେନଙ୍କ ପ୍ରଣୀତ ତନ୍ନାମକ ଗ୍ରନ୍ଥର ଶୈଳ୍ୟାନୁସାରୀ ହୋଇଥିବାର ଦେଖାଯାଏ । କାରଣ ଏ ଧରଣର ପୁସ୍ତକ ରଚନା କରିବା ସମୟରେ ବିଭିନ୍ନ ସ୍ମୃତିକାର, ପୂର୍ବସୂରିଙ୍କ ସ୍ମୃତି ବଚନକା-

---

୩୬ । (କ) ବାଜପେୟୋଽଗ୍ନିଚିଦ୍ ବିଦ୍ୱାନ୍ ସୁଧୀର୍ବିଦ୍ୟାକରାତ୍ମଜଃ ।
ଜଗନ୍ନାଥୋଽଭ୍ୟଧାତ୍ ଶ୍ଲୋକୈରଗ୍ନିଷ୍ଟୋମସ୍ୟ ପଦ୍ଧତିମ୍ ॥
(ଖ) ଅଥାଭିଧୀୟତେ ଶ୍ଲୋକୈରଗ୍ନିଷ୍ଟୋମସ୍ୟ ପଦ୍ଧତିଃ ।
ସ ବସନ୍ତେ ହି କର୍ତ୍ତବ୍ୟୋ ପୂର୍ଣ୍ଣ୍ୟାପର୍ବଦିନେ ତଥା ॥ (Dh. No 563)

୩୭ । Notices of Palmleaf Mss.—H. P. Shastri,
1911-Vol.-IV P-26.

୩୮ । A. D. C. of Skt. Mss. PP-XV.

୩୯ । (କ) ଇତି ମହାରାଜାଧିରାଜ ନିଃଶଙ୍କଭାନୁଗଜପତେଲଳିତପାଦକମଳଧୂଳିକଲାପାଲଙ୍କୃତ
ପାତ୍ର ଯୋଗୀଶ୍ୱର ବିରଚିତେଽଦ୍ଭୁତସାଗରେ ସୂର୍ଯ୍ୟାଦ୍ଭୁତଂ ନାମ ପ୍ରଥମୋଽଧ୍ୟାୟଃ ।
ଏତନ୍ନୃପାନୁଗ୍ରହ ପାତ୍ର ଯୋଗୀଶ୍ୱରାଢ୍ୟ ନାମା ହରିଭକ୍ତି ଲଗ୍ନଃ ।
ଅଚୀକରଚ୍ଚାରୁମିମଂ ନିବନ୍ଧଂ ନୃପାଂ ହିତାୟାଦ୍ଭୁତସାରସଜ୍ଞମ୍ ॥
(O. S. M. Mss Dh. No 145)

(ଖ) ଇତି ଶ୍ରୀମନ୍ମହାରାଜାଧିରାଜଗଜପତି ନିଃଶଙ୍କଭାନୋଃ ଲଳିତପଦକମଳ-
ଧୂଳିକଲାପାଲଙ୍କୃତପାତ୍ର ଯୋଗୀଶ୍ୱରବିରଚିତାୟାଂ ଦାନଦୀପବଲ୍ୟାମ୍ ॥
(D. C. S. Vol. III (ASB), P-473-474)

ମାନ ଗ୍ରହଣ କରିଥାନ୍ତି । ଯୋଗୀଶ୍ୱରଙ୍କ ପୂର୍ବରୁ ବଲ୍ଲାଳ ସେନଙ୍କ 'ଅଦ୍ଭୁତସାଗର' ପୁସ୍ତକଟି ସଙ୍କଳିତ ହୋଇଥିଲା । ତେଣୁ ଯୋଗୀଶ୍ୱରଙ୍କ 'ଅଦ୍ଭୁତସାଗର'ରେ ସେହି ସ୍ମୃତି ବଚନକା-ମାନ ଉଦ୍ଧୃତ ହୋଇଥିବାରୁ ଆଲୋଚକମାନେ ତାହାକୁ ବଲ୍ଲାଳ ସେନଙ୍କ ପୁସ୍ତକ ଅନୁସରଣରେ ଲିଖିତ ବୋଲି ମତ ଦିଅନ୍ତି । ଅପୂର୍ଣ୍ଣ 'ଦାନ ଦୀପାବଳୀ' ପୋଥି ବଙ୍ଗୀୟ ଏସିଆଟିକ୍ ସୋସାଇଟିରେ ସଂରକ୍ଷିତ ଅଛି ।

(କ) 'ଅଦ୍ଭୁତସାଗର' ଗ୍ରନ୍ଥଟି ମୁଖ୍ୟତଃ ଦିବ୍ୟାଶ୍ରୟ, ଅନ୍ତରୀକ୍ଷାଶ୍ରୟ ଓ ଭୂମ୍ୟାଶ୍ରୟ ରୂପେ ତିନୋଟି ଆଶ୍ରୟରେ ବିଭକ୍ତ । ଆଶ୍ରୟଗୁଡ଼ିକରେ ଯଥାକ୍ରମେ ପନ୍ଦର, ଅଠର ଓ ଛଅଟି ଅଧ୍ୟାୟ ଅଛି । ଗ୍ରନ୍ଥ ଶେଷରେ ଆଶ୍ରୟ ବହିର୍ଭୂତ ଅଦ୍ଭୁତଗୁଡ଼ିକ ପାଞ୍ଚଟି ଅଧ୍ୟାୟରେ ସନ୍ନିବେଶିତ ଅଛି । ବିଭିନ୍ନ ସଂହିତା ଓ ସିଦ୍ଧାନ୍ତ ଗ୍ରନ୍ଥର ଉଦ୍ଧୃତି ମଧ୍ୟରେ ନାନା ପ୍ରକାର ଅଦ୍ଭୁତ ଶକୁନର ଆଲୋଚନା ହିଁ ଏହାର ପ୍ରତିପାଦ୍ୟ ବିଷୟ ।

(ଖ) ଯୋଗୀଶ୍ୱରଙ୍କ ଦ୍ୱିତୀୟ ରଚନା 'ଦାନ-ଦୀପାବଳୀ' ଗ୍ରନ୍ଥର ଉପଲବ୍ଧ ଚବିଶ ଅଧ୍ୟାୟ ମଧ୍ୟରେ ବିଭିନ୍ନ ପ୍ରକାର ଦାନବିଧାନର ପର୍ଯ୍ୟାଲୋଚନା କରାଯାଇଛି ।

## ୧୧ । ରାମଚନ୍ଦ୍ର ବାଜପେୟୀ :

ରାମଚନ୍ଦ୍ର ବାଜପେୟୀ (୧୩୭୫-୧୪୫୦ ଖ୍ରୀଷ୍ଟାବ୍ଦ) ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସ୍ମୃତିକାର ରୂପେ ପରିଚିତ । ତାଙ୍କ ପ୍ରଣୀତ 'ପ୍ରାୟଶ୍ଚିତ୍ତ ଦୀପିକା'ରୁ ସେ ବାଜପେୟୀ ବିଦ୍ୟାକରଙ୍କ ଶିଷ୍ୟ ଥିବାର ଜଣାଯାଏ ।୪୦। ରାମଚନ୍ଦ୍ରଙ୍କ ପିତା ଓ ମାତାଙ୍କ ନାମ ଯଥାକ୍ରମେ ସୂର୍ଯ୍ୟ ଦାଶ ଓ ବିଶାଳାକ୍ଷୀ । ସୂର୍ଯ୍ୟ ଦାଶ 'ସମ୍ରାଟ୍' ପଦବୀଧାରୀ ବତ୍ସଗୋତ୍ରୀୟ ଶ୍ରୀଧର ମଲ୍ଲଙ୍କ ପୌତ୍ର ଓ ଶିବ ଦାଶଙ୍କ ପୁତ୍ର ଥିଲେ ।୪୧। ସଂସ୍କୃତ 'ବେତାଳ ପଞ୍ଚବିଂଶତି'ର ପ୍ରଣେତା ଶିବ ଦାଶ ଓ ସୂର୍ଯ୍ୟ ଦାଶଙ୍କ ପିତା ଶିବ ଦାଶ ସମକାଳୀନ ହୋଇଥିବାରୁ ଉଭୟ ଅଭିନ୍ନ ବ୍ୟକ୍ତି ଥିବାର ମନେହୁଏ । ସେହି ଶିବ ଦାଶ ସ୍ମୃତିକାର ବାଜପେୟୀ ରାମଚନ୍ଦ୍ର ଦାଶଙ୍କ ପିତାମହ ଥିଲେ ବୋଲି ଅନୁମାନ କରାଯାଏ । ରାମଚନ୍ଦ୍ରଙ୍କ ପ୍ରଣୀତ ଗ୍ରନ୍ଥ ମଧ୍ୟରେ (୧) କର୍ମାଙ୍ଗ ପଦ୍ଧତି, (୨) କୁଣ୍ଡଲକ୍ଷ୍ମ ବିବୃତି, (୩) କୁଣ୍ଡାକୃତି, (୪) ଗୃହ୍ୟସୂତ୍ର ପଦ୍ଧତି ବା ଆଧାନ ପଦ୍ଧତି, (୫) ନାଡ଼ୀ ପରୀକ୍ଷା, (୬) ପ୍ରାୟଶ୍ଚିତ୍ତ ଦୀପିକା ବା ରାମ ପଦ୍ଧତି, (୭) ଶାରଦା ତିଲକ ଟୀକା, (୮) ଶୁଳ୍ବ

---

୪୦ । ସମ୍ରାଜୋଽଗ୍ନିଚିତୋ ନତ୍ୱା ବିଦ୍ୟାକରଗୁରୋଃ ପଦେ ।
ରାମଃ ପଦ୍ଧତିମାଦତ୍ତେ ପ୍ରାୟଶ୍ଚିତ୍ତସ୍ୟଦୀପିକାମ୍ ॥ (Dh. No. 91-B)

୪୧ । ସୂନୋଃ ଶ୍ରୀଧରମାଲବସ୍ୟ ଶିବଦାସାଖ୍ୟାଦ୍ଗୁରୁଖ୍ୟାତିତଃ
ସମ୍ରାଡ଼ଗ୍ନି ଚିତସ୍ତୁ ଯସ୍ୟ ଜନକଃ ଶ୍ରୀସୂର୍ଯ୍ୟଦାସୋଽଜନି ।
ଯନ୍ମାତ୍ରୁର୍ଯଶସା ଦଶୋଦଶ ବିଶାଳାକ୍ଷ୍ୟାବଲକ୍ଷ୍ୟାଃ ସୁତ
ସ୍ତେ୍ୟଷ ସ୍ୱାହୃତକୁଣ୍ଡଲକ୍ଷ୍ମବିବୃତିଂ ରାମୋ ବସନୈମିଷେ ॥ (କୁଣ୍ଡଲକ୍ଷ୍ମ-ବିବୃତିଃ)

ବାର୍ତ୍ତିକ, (୯) ଶୁଲ୍ବବାର୍ତ୍ତିକ ଟୀକା, (୧୦) ଶୁଲ୍ବସୂତ୍ରବୃତ୍ତି, (୧୧) ସମରସାର ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ୪୨ ।

ଆଲୋଚକ ଏସ୍. ଏଲ୍. କାଟ୍ରେଙ୍କ ଉଲ୍ଲେଖ ଅନୁସାରେ ରାମଚନ୍ଦ୍ର ବାଜପେୟୀଙ୍କ ପ୍ରଣୀତ ଗ୍ରନ୍ଥତ୍ରୟ (୮, ୯ ଓ ୧୦) ଅଦ୍ୟାପି ଉଜ୍ଜୟିନୀର ସିନ୍ଧିଆ ଓରିଏଣ୍ଟାଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ସଂରକ୍ଷିତ ଅଛି । ଶୁଲ୍ବବାର୍ତ୍ତିକର ପୁଷ୍ପିକାରୁ ଜଣାଯାଏ ଯେ ଏହା ସମ୍ଭବତଃ ୧୪୯୧ ବା ୧୪୩୪ ଖ୍ରୀଷ୍ଟାବ୍ଦରେ ପ୍ରଣୀତ ହୋଇଛି । ଏଥିରେ ଶୁଲ୍ବସୂତ୍ରର ବାର୍ତ୍ତିକ ୫୧୫ଟି ଶ୍ଳୋକରେ ରଚିତ । ରାମଚନ୍ଦ୍ର ନିଜେ ସ୍ୱ ପ୍ରଣୀତ 'ଶୁଲ୍ବବାର୍ତ୍ତିକ'ର ଏକ ଟୀକା ଗ୍ରନ୍ଥ 'ଶୁଲ୍ବବାର୍ତ୍ତିକ ଟୀକା' ନାମରେ ରଚନା କରିଛନ୍ତି । ତୃତୀୟ ଗ୍ରନ୍ଥ 'ଶୁଲ୍ବସୂତ୍ରବୃତ୍ତି' ମୂଳ ସୂତ୍ର ଗ୍ରନ୍ଥର ଗଦ୍ୟାତ୍ମକ ଟୀକା । ୪୩ ।

ରାମଚନ୍ଦ୍ରଙ୍କ 'କୁଣ୍ଡ ମଣ୍ଡପ ଲକ୍ଷଣ' ଗ୍ରନ୍ଥ ସମ୍ଭବତଃ ୧୫୦୬ ବା ୧୪୪୯ ଖ୍ରୀଷ୍ଟାବ୍ଦରେ ଓ 'ନାଡ଼ୀ ପରୀକ୍ଷା' ସମ୍ଭବତଃ ୧୫୦୪ ବା ୧୪୪୭ ଖ୍ରୀଷ୍ଟାବ୍ଦରେ, 'କୁଣ୍ଡାକୃତି' ଓ 'ଶାରଦା ତିଳକ ଟୀକା' ଗ୍ରନ୍ଥ ୧୪୪୯ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବାର ଜଣାଯାଏ । ୪୪ । ରାମଚନ୍ଦ୍ର ବାଜପେୟୀ 'ସମରସାର' ଶୀର୍ଷକ ଆଉ ଖଣ୍ଡିଏ ପୁସ୍ତକର ପ୍ରଣେତା ଥିଲେ ବୋଲି ସେହି ପୁସ୍ତକର ପୁଷ୍ପିକାରୁ ଜଣାଯାଏ । ଏହି ପୁସ୍ତକଟି ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟବର୍ତ୍ତୀ ଗ୍ରାମ ପ୍ରତାପପୁର ଶାସନରେ ସଂରକ୍ଷିତ ଅଛି । ୪୫ । ରତ୍ନପୁରର ରାଜା ରାମଚନ୍ଦ୍ରଙ୍କ ଆଦେଶରେ 'କୁଣ୍ଡାକୃତି' ଓ 'ଶାରଦା ତିଳକ ଟୀକା' ଗ୍ରନ୍ଥ ପ୍ରଣୀତ ହୋଇଥିଲା । ୪୬ । ଏହି ରାମଚନ୍ଦ୍ର ବା ରାମଦେବ ହରିବ୍ରହ୍ମ ଦେବଙ୍କ ପିତା ଥିଲେ । ହରିବ୍ରହ୍ମ ଦେବଙ୍କ ଖଲାରି ଅଭିଲେଖ ଓ ରାୟପୁର ଅଭିଲେଖ ଯଥାକ୍ରମେ ୧୪୧୪ ଓ ୧୪୦୨ ଖ୍ରୀଷ୍ଟାବ୍ଦର ବୋଲି ପ୍ରମାଣିତ ହୋଇଛି । ୪୭ । ତଦନୁଯାୟୀ ରତ୍ନପୁରର ରାମଚନ୍ଦ୍ର ଓ ହରିବ୍ରହ୍ମ ଦେବଙ୍କ ପିତା ରାମଚନ୍ଦ୍ର ଅଭିନ୍ନ ବ୍ୟକ୍ତି ବୋଲି ଆଲୋଚକମାନେ ମତବ୍ୟକ୍ତ କରିଛନ୍ତି । ୪୮ । ଗ୍ରନ୍ଥକାର

---

୪୨ । A. D. C. of Skt. Mss. Vol-I, PP-XI

୪୩ । A. I. O. Conference, 1946, P-22

୪୪ । History of Dharmashastra—
Vol-I, P. 532-534, 634, 732.

୪୫ । ବଂଶେ ବତ୍ସମୁନୀଶ୍ୱରସ୍ୟ ଶିବଦାସାଖ୍ୟୋ ଗୁରୁଃ ଖ୍ୟାତିତଃ × ×
ରାମୋ ବସନ୍ନୈମିଷେ ॥
ଇତି ଶ୍ରୀ ସମ୍ରାଡ଼ଗ୍ନି ଚିଦ୍ରାମବାଜପେୟୀକୃତଃ ସମରସାରୋ ନାମ ଗ୍ରନ୍ଥ ସମାପ୍ତ ॥
(A. D. C. Vol-I. P-XII)

୪୬ । A. D. C. of Skt. Mss. Vol-I, PP-XIII.

୪୭ । E. I. Vol.-II, P-288

୪୮ । I. A. Vol-XXII, P-38

ରାମଚନ୍ଦ୍ରଙ୍କ (କ) କୁଣ୍ଡଲକ୍ଷ୍ମବୃତ୍ତି, (ଖ) କର୍ମୀଙ୍କ ପଦ୍ଧତିରେ ଯଥାକ୍ରମେ ବିଭିନ୍ନ ପ୍ରକାର ଯଜ୍ଞକୁଣ୍ଡ ନିର୍ମାଣ ଓ ସଂସ୍କାର ପ୍ରସଙ୍ଗ ମୁଖ୍ୟତଃ ଆଲୋଚିତ ହୋଇଛି । ୪୯ । ଅନ୍ୟତମ ପ୍ରସିଦ୍ଧ ଗ୍ରନ୍ଥ (ଗ) 'ପ୍ରାୟଶ୍ଚିତ୍ତ ଦୀପିକା'ର ପଞ୍ଚଦଶ କଣ୍ଡିକା ମଧ୍ୟରେ ସେ ପ୍ରାୟଶ୍ଚିତ୍ତ ସମ୍ବନ୍ଧୀୟ ବିବିଧ ବିଧିବିଧାନ ବର୍ଣ୍ଣନା କରିଛନ୍ତି । ୫୦ ।

## ମଧ୍ୟପର୍ବ

ଏହି ପର୍ବରେ ସୂର୍ଯ୍ୟବଂଶୀୟ ଗଜପତି ରାଜା ତଥା ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ମୁକୁନ୍ଦ ଦେବଙ୍କ ରାଜତ୍ୱକାଳ ମଧ୍ୟରେ (୧୪୩୫-୧୫୬୮ ଖ୍ରୀଷ୍ଟାବ୍ଦ) ପ୍ରଣୀତ ଊନଶୋଇଁ ଖଣ୍ଡ ଗ୍ରନ୍ଥ ଓ ଚଉଦଜଣ ସ୍ମୃତିକାରଙ୍କ ପରିଚୟ ଦିଆଯାଇଛି ।

**୧୨ । ମୃତ୍ୟୁଞ୍ଜୟ ମିଶ୍ର :**

ସୂର୍ଯ୍ୟବଂଶ ରାଜତ୍ୱ କାଳରେ (୧୪୩୫-୧୫୩୫ ଖ୍ରୀଷ୍ଟାବ୍ଦ) କୌଣ୍ଡିନ୍ୟଗୋତ୍ରୀୟ ମିଶ୍ରବଂଶର ବହୁ ବିଦ୍ୱାନ୍ ଜନ୍ମଗ୍ରହଣ କରିଥିଲେ । ସେମାନେ ବହୁ ଅମୂଲ୍ୟ ଗ୍ରନ୍ଥ ରଚନା କରିଥିବା ଅନୁମାନ । ଏହି ବଂଶର ପ୍ରଥମ ମହାପୁରୁଷ ତଥା ମୃତ୍ୟୁଞ୍ଜୟ ମିଶ୍ରଙ୍କ (୧୩୮୦-୧୪୩୫ ଖ୍ରୀଷ୍ଟାବ୍ଦ) ପିତା ଅଜ୍ଞାତନାମା ପଣ୍ଡିତ 'ସପ୍ତମସ୍ତ୍ର' ଗ୍ରନ୍ଥ ରଚନା କରିଥିଲେ । ମୃତ୍ୟୁଞ୍ଜୟ 'ମୀମାଂସାର୍ଣ୍ଣବ କର୍ଣ୍ଣଧାର' ରୂପେ ପରିଚିତ । ତାଙ୍କ ପ୍ରଣୀତ 'ଶୁକ୍ତି ମୁକ୍ତାବଳୀ' ଗ୍ରନ୍ଥ ଅଦ୍ୟାବଧି ଉପଲବ୍ଧ ନୁହେଁ । 'ନିତ୍ୟାଚାର ପ୍ରଦୀପ' ପ୍ରଦତ୍ତ ବିବରଣ ଅନୁଯାୟୀ ମୃତ୍ୟୁଞ୍ଜୟଙ୍କ ଦୁଇ ପୁଅଙ୍କ ମଧ୍ୟରୁ ନାରାୟଣ ମାତ୍ର ଷୋହଳ ବର୍ଷର ଜୀବନକାଳ ମଧ୍ୟରେ ପୂର୍ବୋତ୍ତର ମୀମାଂସାର ଦୁଇଟି ଟୀକା ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ସେ ଗ୍ରନ୍ଥ ଦୁଇଟିର ନାମ ଅଦ୍ୟାପି ଅଜ୍ଞାତ । ୫୧ ।

---

୪୯ । Hunter's Orissa, Vol-II, P-207-208

୫୦ । (କ) କାତ୍ୟସୂତ୍ରୋଦିତଂ ସର୍ବମତ୍ର ବାଚ୍ୟଂ ମୟା ସ୍ଫୁଟମ୍ ।
ସମୁଚ୍ଚୟୋଽନ୍ୟୋଽତ୍ର ଦ୍ରଷ୍ଟବ୍ୟୋ ବିଶେଷଃ କ୍ୱଚିଦେବ ତୁ ॥

(ଖ) ଇତି ପ୍ରାୟଶ୍ଚିତ୍ତ-ପ୍ରକଟନମିଷେଣ କ୍ରତୁବିଧେ-
ର୍ବିଶୁଦ୍ଧିଃ ସର୍ବସ୍ୟ ବ୍ୟରଚି ବିଧିୟା ଯା ସୁଗମୟା ।
ମଖୈକାମ୍ନେନୋଷା ମଖଭୁଜ ମଖାନାଂ ଫଳକୃତି-
ର୍ଯ୍ୟାଗମ୍ୟେ ବନ୍ଦ୍ୟୌ ଭଗବତି ଭବତ୍ୱର୍ପିତଫଳା ॥

(A. D. C. Vol-I, PP VIII)

(ଗ) ଲକ୍ଷ୍ମୀମେତାମର୍ଣ୍ଣ ଚନ୍ଦ୍ରାମଚନ୍ଦ୍ରଃ ସ୍ୱର୍ଗୈକାର୍ଥୀଂ ନୈମିଷାରଣ୍ୟବାସଃ ।
ସମ୍ରାଜଃ ଶ୍ରୀସୂର୍ଯ୍ୟଦାସସ୍ୟ ସୂନୁଃ ପ୍ରାୟଶ୍ଚିତ୍ତୈଃ ପଦ୍ଧତିଂ ସବ୍ୟଧତ୍ତ ॥

(O. S. M. Mss.-Dh. No-91-6)

୫୧ । A. D. C. of Skt. Mss. Vol-I, PP XVI.

**୧୩ । ଜଳେଶ୍ୱର ମିଶ୍ର ବାଜପେୟୀ :**

ମୃତ୍ୟୁଞ୍ଜୟ ମିଶ୍ରଙ୍କ ଅନ୍ୟତମ ପୁତ୍ର ଦାର୍ଶନିକ ଜଳେଶ୍ୱର (୧୪୩୫ ଖ୍ରୀଷ୍ଟାବ୍ଦ) ଶ୍ରୌତ ଯଜ୍ଞ ସମ୍ବନ୍ଧୀୟ 'ଜଳେଶ୍ୱର ପଦ୍ଧତି' ନାମରେ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଜଣାଯାଏ ।୫୨।

**୧୪ । ନୃସିଂହ ମିଶ୍ର ବାଜପେୟୀ :**

ସିଂହ-ବାଜପେୟୀବଂଶର ଜଳେଶ୍ୱର ମିଶ୍ରଙ୍କ ପୁତ୍ର ନୃସିଂହ ମିଶ୍ର ବାଜପେୟୀ (୧ମ) (୧୪୩୫-୧୪୭୭ ଖ୍ରୀଷ୍ଟାବ୍ଦ) ଜଣେ ପ୍ରଖ୍ୟାତ ପଣ୍ଡିତ ଥିଲେ । ୫୩ । ଗଜପତି କପିଳେନ୍ଦ୍ର ଦେବଙ୍କର ସେ ଧର୍ମାଧିକାରୀ ଥିଲେ । ନୃସିଂହ ବାଜପେୟୀ, ଶଙ୍କରାଚାର୍ଯ୍ୟଙ୍କ ପ୍ରଣୀତ 'ସଂକ୍ଷେପ ଶାରୀରକ' ଗ୍ରନ୍ଥର ବାର୍ତ୍ତିକ ଟୀକା ରଚନା କରିଥିଲେ । ଉକ୍ତ ବାଜପେୟୀବଂଶର ସର୍ବଶେଷ ସ୍ମୃତିକାର ମହାମହୋପାଧ୍ୟାୟ ଅଗ୍ନିଚିତ୍ ନରସିଂହ ବାଜପେୟୀ(ଦ୍ୱିତୀୟ)ଙ୍କ ପ୍ରଣୀତ 'ନିତ୍ୟାଚାର ପ୍ରଦୀପ' ଗ୍ରନ୍ଥରେ ପୂର୍ବୋକ୍ତ 'ସଂକ୍ଷେପ ଶାରୀରକ ବାର୍ତ୍ତିକ' ଗ୍ରନ୍ଥର ନାମୋଲ୍ଲେଖ ଅଛି । ପଣ୍ଡିତ ନୃସିଂହ କିଛିକାଳ କାଶୀରେ ଅବସ୍ଥାନ କରି ଯୋଗାଭ୍ୟାସରେ ସିଦ୍ଧିପ୍ରାପ୍ତ ହୋଇଥିଲେ । କାଶୀବାସକାଳରେ ସେ 'କାଶୀ ମୀମାଂସା' ଶୀର୍ଷକ ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥର ଉଦ୍ଧୃତି ତାଙ୍କ ପ୍ରପୌତ୍ର ମନ୍ତ୍ରିବର ଗୋଦାବର ମିଶ୍ରଙ୍କ ପ୍ରଣୀତ 'ଯୋଗଚିନ୍ତାମଣି' ଗ୍ରନ୍ଥରେ ଉଲ୍ଲେଖ ଥିବାର ଦେଖାଯାଏ । ବାଜପେୟୀ ନୃସିଂହଙ୍କ ପ୍ରଣୀତ ଅନ୍ୟ କୌଣସି ସ୍ମୃତିଗ୍ରନ୍ଥର ସୂଚନା ଏ ପର୍ଯ୍ୟନ୍ତ ମିଳିନାହିଁ । ପୂର୍ବୋକ୍ତ 'ସଂକ୍ଷେପ ଶାରୀରକ ବାର୍ତ୍ତିକ' ଓ 'କାଶୀ ମୀମାଂସା' ଗ୍ରନ୍ଥଦ୍ୱୟ ମଧ୍ୟ ଲୋକଲୋଚନକୁ ଆସିନାହିଁ ।

**୧୫ । ଗଙ୍ଗାଧର ମିଶ୍ର :**

ଜଳେଶ୍ୱର ମିଶ୍ରଙ୍କ ସାନପୁଅ ଓ ବାଜପେୟୀ ନୃସିଂହଙ୍କ କନିଷ୍ଠ ସହୋଦର ଗଙ୍ଗାଧର ମିଶ୍ର (୧୪୩୫-୧୪୭୭ ଖ୍ରୀଷ୍ଟାବ୍ଦ) ମଧ୍ୟ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ମାତ୍ର ତାଙ୍କର କୌଣସି ଗ୍ରନ୍ଥ ଏପର୍ଯ୍ୟନ୍ତ ମିଳିନାହିଁ । ୫୪ ।

**୧୬ । କାଳଦାସ ଚୟନ :**

କାଳଦାସ ଚୟନ (୧୪୫୦ ଖ୍ରୀଷ୍ଟାବ୍ଦ) 'ଶୁଦ୍ଧିଚନ୍ଦ୍ରିକା' ଗ୍ରନ୍ଥର ପ୍ରଣେତାଭାବେ ସୁପରିଚିତ । ଏହି ଗ୍ରନ୍ଥର ସଂସ୍କୃତ ଟୀକା ତଥା ଓଡ଼ିଆ ଗଦ୍ୟାନୁବାଦ ଓ ପଦ୍ୟାନୁବାଦ ବହୁସଂଖ୍ୟାରେ

---

୫୨ । (କ) History of Orissa-Vol. II, Appendix-IX, P. 210
(ଖ) OSM. Mss. Dh. No. 327

୫୩ । (କ) ନିତ୍ୟାଚାର ପ୍ରଦୀପ—ଶ୍ଳୋକ-୧୦
(ଖ) Poona Orientalist-Vol. IX, P. 11-19

୫୪ । A D C. of Skt. Mss. Vol. I, PP. XVIII

ମିଳୁଥିବାରୁ ଓଡ଼ିଶାର ସବଂଶ ଗ୍ରନ୍ଥଟି ବିଶେଷ ଆଦୃତ ହୋଇଥିବାର ଜଣାଯାଏ । ଗ୍ରନ୍ଥକାରଙ୍କ ସମୟ ବିଷୟରେ ଶୁଦ୍ଧିଚନ୍ଦ୍ରିକାରୁ କୌଣସି ସୂଚନା ମିଳେନାହିଁ । ନୃସିଂହ ବାଜପେୟୀ ସ୍ୱପ୍ରଣୀତ 'ନିତ୍ୟାଗ୍ନିର ପ୍ରଦୀପ' (୧୫୬୦-୧୫୭୦ ଖ୍ରୀଷ୍ଟାବ୍ଦ) ଗ୍ରନ୍ଥରେ 'କାଳିଦାସ ଚୟନିନଃ' ବୋଲି ଉଲ୍ଲେଖ କରିଥିବାରୁ କାଳିଦାସଙ୍କ ସମୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି ଅନୁମାନ କରାଯାଏ । ୫୫ । ପଣ୍ଡିତ ଶାନ୍ତିରଥ ଶ୍ରୀରାମଚନ୍ଦ୍ର ଦେବଙ୍କ ୧୪ ଅଙ୍କରେ (୧୬୩୭ ଖ୍ରୀଷ୍ଟାବ୍ଦ) ଏହି ଗ୍ରନ୍ଥର ଟୀକା ରଚନା ଶେଷ କରିଥିବାର ଗ୍ରନ୍ଥ-ପୁଷ୍ପିକାରୁ ଜଣାଯାଏ, । ୫୬ । ଏକାମ୍ରବାସୀ ବିଦ୍ୟାବାଗୀଶ ମଧ୍ୟ ଏହାର ଏକ ଟୀକା ରଚନା କରିଛନ୍ତି । ଉକ୍ତ ଟୀକା ଗ୍ରନ୍ଥଟି ବୀରକେଶରୀ ଦେବଙ୍କ ରାଜତ୍ୱକାଳରେ (୧୭୩୬-୧୭୯୩ ଖ୍ରୀଷ୍ଟାବ୍ଦ) ନକଲ କରାଯାଇଛି । ୫୭ । ଏଥିରେ ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତରେ ରଚିତ ପଚଶଟି ମାତ୍ର ଶ୍ଳୋକ ଅଛି । ମୃତାଶୌଚ ଶୁଦ୍ଧିବିଧାନ ଏହି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ । ଟୀକାକାରମାନେ ଶୁଦ୍ଧିଚନ୍ଦ୍ରିକାର ଟୀକା କରିବାକୁ ଯାଇ ପରାଶର, ବୃହସ୍ପତି, ଜାବାଲି, ମନୁସ୍ମୃତି ପ୍ରଭୃତିର ବାକ୍ୟାବଳୀ ପ୍ରମାଣସ୍ୱରୂପ ଉଲ୍ଲେଖ କରିଛନ୍ତି ।

**୧୬ । ରାଜଗୁରୁ ବଳଭଦ୍ର ମିଶ୍ର :**

ପଣ୍ଡିତ ଗଙ୍ଗାଧର ମିଶ୍ରଙ୍କ ଦୁଇ ପୁଅ ମଧ୍ୟରୁ ପଣ୍ଡିତେଶ ଦେବାନନ୍ଦ ମିଶ୍ରଙ୍କ ବିଷୟରେ ବିଶେଷ ବିବରଣ ମିଳେନାହିଁ । ତାଙ୍କର ଅନ୍ୟତମ ପୁତ୍ର ବଳଭଦ୍ର ମିଶ୍ର (୧୪୭୬-୧୫୧୦

---

୫୫ । (କ) ମନ୍ୱାଦି-ଶାସ୍ତ୍ରାମୃତ-ସଚୟାଳୟଃ ଶ୍ରୀକାଳିଦାସାଭିଧଧୀର-ଚନ୍ଦ୍ରମାଃ ।
ତେନେ ସୁଧାସିନ୍ଧୁବିବୃଦ୍ଧ୍ୟୈ ଶୌଚଧ୍ୱାନ୍ତାନ୍ଧଲୋକେକ୍ଷତା-ଶୁଦ୍ଧିଚନ୍ଦ୍ରିକାମ୍ ॥
(ଖ) A. D. C of Skt. Mss. Vol. I, PP. XV

୫୬ । (କ) କାଳିଦାସେନ ପୂର୍ବାର୍ଥା ନିର୍ମିତା ଶୁଦ୍ଧିଚନ୍ଦ୍ରିକା ।
ବ୍ୟକ୍ତାର୍ଥା ହି ହିତାର୍ଥଂ ଚ କୃତା ଶାନ୍ତିରଥେନ ସା ॥
(ଖ) ଯା କାଳିଦାସେନ କୃତା ମହର୍ଷିରା ଶତାବୁଧାନାଂ କିଲ ଶୁଦ୍ଧିଚନ୍ଦ୍ରିକା ।
ସା ସାମ୍ପ୍ରତଂ ଶାନ୍ତିରଥେନ ନିର୍ମିତା ନୃଣାଂ ହିତାୟ ସ୍ଫୁଟ ଶୁଦ୍ଧିଚନ୍ଦ୍ରିକା ॥
(OSM. Mss.-Dh. No. 48)

(ଗ) ଶ୍ରୀରାମଚନ୍ଦ୍ରନୃପତେଃ କୁଳପଦ୍ମସୂର୍ଯ୍ୟସ୍ୟାଙ୍କେ ଚତୁର୍ଦ୍ଦଶମିତେ ପରିପୂର୍ଣ୍ଣଭାବମ୍ ।
ପ୍ରାପ୍ତା ସୁଧୀପଣ୍ଡିତନେ ସୁକୃହିତଧୌତ ଶ୍ରୀଶୁଦ୍ଧିପୂର୍ବକଥିତା ଖଳୁ ଚନ୍ଦ୍ରିକେୟମ୍ ॥
(OSM. Mss. Dh No 48)

୫୭ । ବିଦ୍ୟାବାଗୀଶ ଲିଖିତା ସମ୍ପୂର୍ଣ୍ଣା ଶୁଦ୍ଧିଚନ୍ଦ୍ରିକା ।
ପ୍ରୀତୟେ ଲିଙ୍ଗରାଜସ୍ୟ ସର୍ବଦୈକାମ୍ରବାସିନଃ ॥
ଶ୍ରୀବୀରକେଶରୀନୃପସ୍ୟ ॥ OSM. Mss. Dh. No. 65 ॥

ଖ୍ରୀଷ୍ଟାବ୍ଦ) ଗଜପତି ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ରାଜଗୁରୁ ଥିଲେ । ସେ ଉତ୍କଳରେ ବିଶେଷ ପାଣ୍ଡିତ୍ୟ ଅର୍ଜନ କରିବା ସଙ୍ଗେ ସଙ୍ଗେ ପୁଣ୍ଡରୀକ ଯଜନ ଦ୍ୱାରା 'ପୌଣ୍ଡରୀକ ଯାଜୀ' ରୂପେ ପ୍ରଖ୍ୟାତ ହୋଇଥିଲେ । ୫୮ । ସେ 'ଅଦ୍ୱୈତ ଚନ୍ଦ୍ରାମଣି','ଶାରୀରକ ସାର' ଓ 'ପୁରୁଷୋତ୍ତମ ସ୍ତୁତି' ନାମରେ ତିନୋଟି ଗ୍ରନ୍ଥ ରଚନା କରିଥିବାର ତାଙ୍କ ପୁତ୍ର ଗୋଦାବର ମିଶ୍ରଙ୍କ ପ୍ରଣୀତ 'ଯୋଗ ଚନ୍ଦ୍ରାମଣି' ଗ୍ରନ୍ଥରୁ ଜଣାଯାଏ । ୫୯ । ତାଙ୍କର ଅନ୍ୟତମ ଗ୍ରନ୍ଥ 'ବଳଭଦ୍ର ସଂଗ୍ରହ' ପରବର୍ତ୍ତୀ ସ୍ମୃତିକାରମାନଙ୍କ ଦ୍ୱାରା ଉଦ୍ଧୃତ ହୋଇଥିଲେ ମଧ୍ୟ ଅଦ୍ୟାବଧି ଆଲୋଚକମାନଙ୍କର ହସ୍ତଗତ ହୋଇନାହିଁ ।

ଗଜପତି ପ୍ରତାପରୁଦ୍ର ଦେବଙ୍କ ପୃଷ୍ଠପୋଷକତାରେ କାଶୀର ପଣ୍ଡିତ ରାମକୃଷ୍ଣ ଭଟ୍ଟ 'ପ୍ରତାପ ମାର୍ତ୍ତଣ୍ଡ' ଗ୍ରନ୍ଥ ସଂକଳନ କରିଥିଲେ । ଏହି ଗ୍ରନ୍ଥଟି ରାଜଗୁରୁ ବଳଭଦ୍ର ମିଶ୍ରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ତାହାର ଫଳରେ ସେ ଗଜପତି ପ୍ରତାପରୁଦ୍ର ଦେବଙ୍କଠାରୁ 'ପଣ୍ଡିତ ଶିରୋମଣି' ଉପାଧି ଲାଭ କରିଥିଲେ । ୬୦ ।

## ୧୮ । ଗଜପତି ପୁରୁଷୋତ୍ତମ ଦେବ :

ଗଜପତି କପିଳେନ୍ଦ୍ର ଦେବଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ ଦେବ (୧୪୬୭-୧୪୯୭ ଖ୍ରୀଷ୍ଟାବ୍ଦ) ଜଣେ ଦିଗ୍‌ବିଜୟୀ ବୀର ଭାବରେ ଯେପରି ସୁବିଦିତ, ନିଜର ପାଣ୍ଡିତ୍ୟ ତଥା ବିଦ୍ୱନ୍-ମଣ୍ଡଳୀର ପୃଷ୍ଠପୋଷକ ରୂପେ ତତୋଽଧିକ ସୁପରିଚିତ । 'ମୁକ୍ତି ଚନ୍ଦ୍ରାମଣି' ଓ 'ଗୋପାଳାର୍ଚ୍ଚନ ବିଧି' ଶୀର୍ଷକ ଦୁଇଖଣ୍ଡି ଧର୍ମଶାସ୍ତ୍ରୀୟ ଗ୍ରନ୍ଥ ତାଙ୍କ ନାମରେ ଭଣିତା କରାଯାଇଛି ।

(କ) 'ଗୋପାଳାର୍ଚ୍ଚନ ବିଧି' ଗ୍ରନ୍ଥର ପୁଷ୍ପିକାରୁ ଜଣାଯାଏ ଯେ, ଏହା 'ଆଗମ କଳ୍ପତରୁ' ଅନ୍ତର୍ଗତ ବୈଷ୍ଣବ ସ୍କନ୍ଧର ଗୋପାଳଶାଖା ଅନୁସାରେ ପ୍ରଣୀତ ହୋଇଅଛି । ୬୧ । ଆଲୋଚ୍ୟ ଗ୍ରନ୍ଥଟି 'ନୀଳାଦ୍ରି ନାଥପୂଜାବିଧି' ତଥା 'ନୀଳାଦ୍ରି ମହୋଦୟାର୍ଚ୍ଚନ ବିଧି' ନାମରେ ଲୋକ-

---

୫୮ । A. D. C. of Skt. Mss. Vol. I, PP. XVII

୫୯ । The Poona Orientalist. Vol.-IX, Pt. 11-19

୬୦ । ଗଜପତି ସଦସି............ସା ପଦବୀ ବଳଭଦ୍ରରାଜଗୁରୋଃ ।
ପଣ୍ଡିତ ଶିରୋମଣିରିତି ପ୍ରତାପ ମାର୍ତ୍ତଣ୍ଡ ନିର୍ମାଣାତ୍ ।
ସୋଽୟଂ ନିବନ୍ଧାନାଲୋଚ୍ୟ ପୁରାଣାନି ଚ ଯତ୍ନତଃ ।
ରାମ ପ୍ରସାଦାତ୍ କୁରୁତେ କୃତୀ ତଥ୍ୟନିରୂପଣମ୍ ॥
(A. D. C. of Skt. Mss. (ASB) Vol. III, P. 491-492)

୬୧ । ଇତି ଶ୍ରୀ ଆଗମକଳ୍ପତରୌ ବୈଷ୍ଣବସ୍କନ୍ଧେ ଗୋପାଳଶାଖାୟାଂ ମନ୍ତ୍ରପଲ୍ଲବେ ।
ମହାରାଜ ପୁରୁଷୋତ୍ତମଦେବବିରଚିତେ ଗୋପାଳାର୍ଚ୍ଚନବିଧିଃ ସମାପ୍ତଃ ॥
(OSM. Mss. Dh. No. 79)

ମୁଖରେ ସୁଖ୍ୟାତ । (ଖ) 'ମୁକ୍ତି ଚନ୍ଦ୍ରାମଣି' ଆରମ୍ଭରେ ଗ୍ରନ୍ଥକର୍ତ୍ତା ନୀଳାଦ୍ରିନାଥଙ୍କୁ ସ୍ତୁତି କରି ବିଭିନ୍ନ ପୁରାଣ, ଆଗମ, ସ୍ମୃତିବାକ୍ୟାବଳୀର ଉଦ୍ଧୃତି ସହିତ ଏହା ରଚନା କରିଛନ୍ତି । ବିନା ଯୋଗ ଓ ଉପବାସରେ ଲୋକେ ମୁକ୍ତି ପାଇବାର ମାର୍ଗ ଓ ଶାସ୍ତ୍ରୋଚିତ କର୍ତ୍ତବ୍ୟ ନିର୍ଦ୍ଧାରଣ ହିଁ ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ । ୬୨ ।

## ୧୯ । ଗଜପତି ପ୍ରତାପରୁଦ୍ର ଦେବ :

ଗଜପତି ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ର ଦେବ (୧୪୯୭-୧୫୩୫ ଖ୍ରୀଷ୍ଟାବ୍ଦ) 'ସରସ୍ୱତୀବିଳାସ' ଗ୍ରନ୍ଥର ପ୍ରଣେତାଭାବେ ସୁବିଖ୍ୟାତ । ଉତ୍କଳୀୟ ପଣ୍ଡିତ ଲକ୍ଷ୍ମୀଧର ଭଟ୍ଟମିଶ୍ର ୧୫୨୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ଗଜପତିଙ୍କ ରାଜସଭା ମଣ୍ଡନ କରିଥିବା ସମୟରେ ଏହି ଗ୍ରନ୍ଥ ରଚନା କରି ନିଜର ପୃଷ୍ଠପୋଷକଙ୍କ ନାମରେ ଉତ୍ସର୍ଗ କରିଥିଲେ ବୋଲି ତାଙ୍କ ପ୍ରଣୀତ 'ସୌନ୍ଦର୍ଯ୍ୟଲହରୀ' ଟୀକାଗ୍ରନ୍ଥର ପୁଷ୍ପିକାରୁ ପ୍ରମାଣ ମିଳୁଛି । ୬୩ ।

ଗଜପତି ପ୍ରତାପରୁଦ୍ର ଦେବଙ୍କ ନାମରେ ଭଣିତ କାଳନିର୍ଣ୍ଣୟ ସମ୍ବନ୍ଧୀୟ 'ପ୍ରତାପ ମାର୍ତ୍ତଣ୍ଡ' ବା 'ପ୍ରୌଢ଼ ପ୍ରତାପ ମାର୍ତ୍ତଣ୍ଡ' ଗ୍ରନ୍ଥ ପରାଶରଗୋତ୍ରୀୟ ମାଧବ ଭଟ୍ଟଙ୍କ ପୁତ୍ର ରାମକୃଷ୍ଣ ରଚନା କରିଥିଲେ ।୬୪। ସେ ଏହି ଗ୍ରନ୍ଥ ରଚନା କରି ରାଜଗୁରୁ ବଳଭଦ୍ର ମିଶ୍ରଙ୍କଠାରୁ 'ପଣ୍ଡିତ ଶିରୋମଣି'ଉପାଧି ଲାଭ କରିଥିବା ବିଷୟ ତାଙ୍କ ପ୍ରଣୀତ 'ତୀର୍ଥ ରତ୍ନାକର' ଗ୍ରନ୍ଥରୁ ଜଣାଯାଏ ।୬୫।

(କ) 'ସରସ୍ୱତୀବିଳାସ'ଗ୍ରନ୍ଥଟି ଡକ୍ଟର ଆର୍. ଶର୍ମା ଶାସ୍ତ୍ରୀଙ୍କ ଦ୍ୱାରା ସମ୍ପାଦିତ ହୋଇ ମହୀଶୂରରୁ ୧୯୨୭ ମସିହାରେ ପ୍ରକାଶପାଇଛି । ପାଞ୍ଚଟି ଉଲ୍ଲାସରେ ବିଭକ୍ତ ଏହା ବ୍ୟବହାର ସମ୍ପର୍କିତ ଖଣ୍ଡିଏ ଉତ୍କୃଷ୍ଟ ଗ୍ରନ୍ଥ । ପ୍ରଦତ୍ତ ବିବରଣ ଅନୁସାରେ ଏହି ଗ୍ରନ୍ଥଟି ବର୍ଣ୍ଣାଶ୍ରମାଚାର କାଣ୍ଡ, ପ୍ରାୟଶ୍ଚିତ୍ତ କାଣ୍ଡ ଓ ବ୍ୟବହାର କାଣ୍ଡ ରୂପେ ତିନି ଭାଗରେ ବିଭକ୍ତ କରାଯାଇ ରାଜା ବୀରରୁଦ୍ର ଗଜପତିଙ୍କ

---

୬୨ । (କ) ନୀଳାଦ୍ରୌ ଚ ତଦର୍ଥଂ ଭୋ ଦାରୁମର୍ତ୍ତି ଚତୁଷ୍ଟୟମ୍ ।
ଅଶରୀରଃ ଶରୀରୀବ ବ୍ୟକ୍ତୋ ଯତ୍ତଂ ହରିଂ ନୁମ ॥

(ଖ) ନାନାଗମସ୍ମୃତିପୁରାଣମହାବ୍ଧି ମଧ୍ୟାଦୁଦ୍ଧୃତ୍ୟ ବୁଦ୍ଧିମଥନେନ ହରେଃ ପ୍ରସାଦାତ୍
ବାକ୍ୟାନି ଯାନି ବିଲିଖ୍ୟାମି ବିମୁକ୍ତୟେଽହଂ ପ୍ରନନ୍ତୁଦର୍ଥ ମନିଶଂ ପରିପାଲୟନ୍ତୁ ॥

(ଗ) ବିନାପ୍ୟଷ୍ଟାଙ୍ଗଯୋଗେନ ବିନାପ୍ୟନଶନେନ ଚ ।
ମୁକ୍ତିଚନ୍ଦ୍ରାମଣିଗ୍ରନ୍ଥେ ମୋକ୍ଷଦଃ ସର୍ବଦେହିନାମ୍ ॥

(OSM. Mss. P. No. 29.6)

୬୩ । J. B. O. R. Society-Vol.-XXXVI, Pt-3-4, Page-17.

୬୪ । History of Dharmasastra—Vol.-I, P. 410-414.

୬୫ । Notices of Skt. Mss.—R. L. Mitra
Vol. VII, Part-II No. XIX, 883.

ଆଦେଶାନୁସାରେ ପ୍ରଥମେ ବିଭିନ୍ନ ଶାସ୍ତ୍ରୋକ୍ତ ବିଧାନର ପ୍ରମାଣ ସହିତ ବ୍ୟବହାର କାଣ୍ଡ ପ୍ରଣୀତ ହୋଇଛି ।୬୬।

(ଖ) 'ପ୍ରତାପ ମାର୍ତ୍ତଣ୍ଡ' ଗ୍ରନ୍ଥଟି ପଦାର୍ଥ ନିର୍ଣ୍ଣୟ, ବସ୍ତୁଶୁଦ୍ଧି ନିରୂପଣ, ତିଥି ନିରୂପଣ, ବ୍ରତ ନିର୍ଣ୍ଣୟ ଓ ବିଷ୍ଣୁଭକ୍ତି ନାମରେ ପାଞ୍ଚଟି ପ୍ରକାଶରେ ବିଭକ୍ତ । ଶଙ୍କର ଭଟ୍ଟକୃତ 'ଦ୍ୱୈତ ନିର୍ଣ୍ଣୟ' ଗ୍ରନ୍ଥରେ 'ପ୍ରତାପରୁଦ୍ର ନିବନ୍ଧ' ନାମରେ ଯେଉଁ ଗ୍ରନ୍ଥର ଉଲ୍ଲେଖ ଅଛି, ତାହାକୁ 'ପ୍ରତାପ ମାର୍ତ୍ତଣ୍ଡ' ରୂପେ ଗ୍ରହଣ କରାଯାଇପାରେ ।୬୭।

(ଗ) 'କୌତୁକ ଚିନ୍ତାମଣି'ରେ ଗଜପତି ପ୍ରତାପରୁଦ୍ର ଦେବ ଭଗବାନ୍ ଶ୍ରୀକୃଷ୍ଣଙ୍କ ବନ୍ଦନା-ପୂର୍ବକ ଗ୍ରନ୍ଥାରମ୍ଭ କରିଛନ୍ତି । ଏହା ତିନୋଟି ଦୀପ୍ତିରେ ବିଭକ୍ତ । ଏଥିରେ (୧) ଚିତ୍ରବନ୍ଧ, (୨) ପ୍ରହେଳିକାଦି କାବ୍ୟ ରଚନା ଓ (୩) ଇନ୍ଦ୍ରଜାଲବିଦ୍ୟାର ପର୍ଯ୍ୟାଲୋଚନା କରାଯାଇଛି । ଏହି ଗ୍ରନ୍ଥଟି ୧୫୨୦ ଖ୍ରୀଷ୍ଟାବ୍ଦରେ ପ୍ରଣୀତ ହୋଇଥିବାର ଅନୁମାନ କରାଯାଏ । ୬୮ । ତଦ୍‌ବ୍ୟତୀତ ଗଜପତି ପ୍ରତାପରୁଦ୍ରଦେବଙ୍କ ନାମରେ ପ୍ରଚଳିତ ଥିବା 'ନିର୍ଣ୍ଣୟ ସଂଗ୍ରହ' ଗ୍ରନ୍ଥଟି ଅଦ୍ୟାବଧି ଲୋକଲୋଚନକୁ ଆସିନାହିଁ ।୬୯।

**୨୦ । ମନ୍ତ୍ରିବର ଗୋଦାବର ମିଶ୍ର :**

ଓଡ଼ିଶା ଇତିହାସରେ ରାଜଗୁରୁ ବଳଭଦ୍ର ମିଶ୍ରଙ୍କ ପୁତ୍ର ଗୋଦାବର ମିଶ୍ର (୧୪୯୭-୧୫୩୫ ଖ୍ରୀଷ୍ଟାବ୍ଦ) ଜଣେ ଅବିସ୍ମରଣୀୟ ବ୍ୟକ୍ତି । ଓଡ଼ିଶାର ଶାସନ, ସଂସ୍କୃତ ସାହିତ୍ୟ ବିଶେଷକରି ଧର୍ମଶାସ୍ତ୍ର ଓ ଦର୍ଶନକୁ ତାଙ୍କର ଅବଦାନ ଅତୁଳନୀୟ । ବ୍ରାହ୍ମଣ୍ୟ ଧର୍ମ ସହିତ ସଙ୍କୀୟ କର୍ମାନୁଷ୍ଠାନର ପୁନରୁତ୍ଥାନ ଓ ଅଦ୍ୱୈତବାଦର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ପୂର୍ବପୁରୁଷମାନଙ୍କ ପରମ୍ପରା ରକ୍ଷାକରିବାରେ ଅଗ୍ରଣୀଭାବେ ଗୋଦାବର ଥିଲେ ଜଣେ ସଫଳ ସାଧକ । ପିତାଙ୍କ ମୃତ୍ୟୁ (୧୫୧୦ ଖ୍ରୀଷ୍ଟାବ୍ଦ) ପରେ ସେ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜଗୁରୁ ହୋଇଥିଲେ ।୭୦। କାଞ୍ଚୀ ଅଭିଯାନକାଳରେ ସାଧକ ଗୋଦାବର ମନ୍ତ୍ରସିଦ୍ଧି ବଳରେ ଗୋଦାବରୀ ନଦୀରେ

---

୬୬ । ସରସ୍ୱତୀବିଳାସ—ପୃ. ୧୫ ।

୬୭ । History of Dharmasastra—Vol, I-P-41?.

୬୮ । (କ) ବ୍ୟାମୋହ ପ୍ରଶମୌଷଧଂ ମୁନିମନୋବୃତ୍ତି ପ୍ରବୃତ୍ତ୍ୟୌଷଧଂ
ଦୈତ୍ୟେନ୍ଦ୍ରାନ୍ତକରୌଷଧଂ ତ୍ରିଭୁବନସଞ୍ଜୀବନୈକୌଷଧମ୍ ।
ଭକ୍ତାର୍ତ୍ତିପ୍ରଶମୌଷଧଂ ଭବଭୟପ୍ରଧ୍ୱଂସନୈକୌଷଧଂ
ଶ୍ରେୟଃ ପ୍ରାପ୍ତିକରୌଷଧଂ ପିବ ମନଃ ଶ୍ରୀକୃଷ୍ଣଦିବ୍ୟୌଷଧମ୍ ଦିବ୍ୟୌଷଧମ ॥
(ଶ୍ରୀକ୍ଷେତ୍ର-ପୃ.୫୨୫)

(ଖ) Deccan College Mss. No. 981—1887-91.
and No. 1031—1884-87.

୬୯ । ଶ୍ରୀକ୍ଷେତ୍ର (ବଙ୍ଗଳା) ସୁନ୍ଦରାନନ୍ଦ ବିଦ୍ୟାବିନୋଦ—ପୃ-୫୨୫ ।

୭୦ । A. D. C. of Skt. Mss. Vol-I, PP-XVIII-XIX

ଅକାଳ ବନ୍ୟା ସୃଷ୍ଟି କରିପାରିଥିବାରୁ ଗଜପତି ପୁରୁଷୋତ୍ତମ ଦେବଙ୍କଦ୍ୱାରା ସେ 'ଗୋଦାବରୀ-ବର୍ଦ୍ଧନ' ଉପାଧିରେ ଭୂଷିତ ହୋଇଥିଲେ ।୭୧। ତାଙ୍କର ଅଗାଧ ପାଣ୍ଡିତ୍ୟରେ ସନ୍ତୁଷ୍ଟ ହୋଇ ପ୍ରତାପରୁଦ୍ର ଦେବ ଗୋଦାବରଙ୍କୁ ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ ଓ 'କବିପୁଙ୍ଗବ' ତଥା 'ପଣ୍ଡିତରାଜ' ଉପାଧି ପ୍ରଦାନ କରିଥିଲେ ।୭୨। ଗୋଦାବରଙ୍କ ପ୍ରଣୀତ 'ହରିହର ଚତୁରଙ୍ଗ' ଗ୍ରନ୍ଥର ଉଲ୍ଲେଖ ଅନୁସାରେ (୧) ତନ୍ତ୍ର-ଚିନ୍ତାମଣି,(୨) ଯୋଗ-ଚିନ୍ତାମଣି,(୩) ଅଦ୍ୱୈତ ଦର୍ପଣ (୪) ଅଧିକରଣ ଦର୍ପଣ, (୫) ନୀତି-ଚିନ୍ତାମଣି, (୬) ନୀତି କଳ୍ପଲତା, (୭) ଆଗୃର-ଚିନ୍ତାମଣି, (୮) ଜସ୍ତ୍ର-ଚିନ୍ତାମଣି, (୯) ସାମୁଦ୍ରିକ କାମଧେନୁ ଓ (୧୦) ପାତଞ୍ଜଳ ଦୀପିକା ପ୍ରଭୃତି ଗ୍ରନ୍ଥ ସେ ରଚନା କରିଥିଲେ ।୭୩। ତନ୍ମଧ୍ୟରେ ଆଗୃର-ଚିନ୍ତାମଣି, ନୀତି-ଚିନ୍ତାମଣି ଓ ନୀତିକଳ୍ପଲତା ଗ୍ରନ୍ଥତ୍ରୟ ରାଜଧର୍ମବିଷୟକ; କିନ୍ତୁ ଦୁର୍ଭାଗ୍ୟର କଥା, ଏଥିରୁ କୌଣସି ଗ୍ରନ୍ଥ ଉପଲବ୍ଧ ନୁହେ ।

ଗଜପତି ପୁରୁଷୋତ୍ତମ ଦେବଙ୍କ ନାମରେ ଭଣିତ 'ମୁକ୍ତି-ଚିନ୍ତାମଣି' ନିବନ୍ଧ ଗୋଦାବରଙ୍କ କୃତ ବୋଲି ବିଶ୍ୱାସ କରାଯାଏ ।୭୪। 'ଶାରଦା ଶରଦର୍ଚ୍ଚନ ପଦ୍ଧତି' ସ୍ମୃତିକାର ଗୋଦାବରଙ୍କ ଅନ୍ୟତମ ସ୍ମୃତିଗ୍ରନ୍ଥ । ଏହି ଗ୍ରନ୍ଥ ଅନୁସାରେ ଅଦ୍ୟାବଧି ଓଡ଼ିଶାରେ ଶରତ୍କାଳୀନ ଦୁର୍ଗାପୂଜା ସମ୍ପନ୍ନ ହେଉଛି । 'ଯୋଗ-ଚିନ୍ତାମଣି' ଗ୍ରନ୍ଥରେ ସେ ଛୟାଳିଶ ଜଣ ପୂର୍ବସୂରିଙ୍କୁ ଉଦ୍ଧାର କରିଥିବାବେଳେ 'ଶାରଦା ଶରଦର୍ଚ୍ଚନ ପଦ୍ଧତି'ରେ ମାତ୍ର ଆଠଟି ଗ୍ରନ୍ଥର ଉଦ୍ଧୃତ ଉଲ୍ଲେଖ କରିଛନ୍ତି ।୭୫। ଖୁବ୍ ସମ୍ଭବତଃ ଗୋଦାବର 'ଅଷ୍ଟାଦଶ ଚିନ୍ତାମଣି' ଗ୍ରନ୍ଥ ରଚନା କରିଥିଲେ ।

(କ) 'ହରିହର ଚତୁରଙ୍ଗ' ଗ୍ରନ୍ଥଟି ଏସ୍.କେ. ରାମଶାସ୍ତ୍ରୀଙ୍କ ଦ୍ୱାରା ସମ୍ପାଦିତ ହୋଇ ମାନ୍ଦ୍ରାଜର ଗଭର୍ଣ୍ଣମେଣ୍ଟ ଓରିଏଣ୍ଟାଲ ମେନୁସ୍କ୍ରିପ ଲାଇବ୍ରେରୀ ପକ୍ଷରୁ ୧୯୫୦ ମସିହାରେ ପ୍ରକାଶପାଇଛି । ସ୍ମୃତିକାର ଗୋଦାବର ଗ୍ରନ୍ଥ ଆରମ୍ଭରେ ଗଣେଶ, ହରିହର ଓ ଦୁର୍ଗାଦି ଦେବାଦେବୀଙ୍କୁ ବନ୍ଦନା କରିଛନ୍ତି । ଗ୍ରନ୍ଥଟି ରାଜାଙ୍କ ଚତୁରଙ୍ଗ ବଳ ଓ ରାଜ୍ୟ ଶାସନ ବିଷୟକୁ ଆଧାର କରି ପ୍ରଣୀତ ।୭୬। ଏଥିରେ ଥିବା ଆଠଟି ପରିଚ୍ଛେଦରେ ଯଥାକ୍ରମେ ଗଜ, ରଥ, ଅଶ୍ୱ, ପତ୍ତି, ଧନୁର୍ବିଦ୍ୟା, ନୀତି, ଯୁଦ୍ଧ ଓ କ୍ରୀଡ଼ାଦି ବିଷୟର ଆଲୋଚନା କରାଯାଇଛି ।

---

୭୧ । P. K. Gode Commemoration, Volume P. 63 67
୭୨ । A. D. C. of Skt. Mss. Vol-I, PP-XIX
୭୩ । ହରିହର ଚତୁରଙ୍ଗ—ପୃଷ୍ଠା-୧୬୬, ୧୬୯, ୧୭୮, ୧୯୬, ୨୧୬, ୨୧୯, ୧୪୩ ଓ ୧୯୫
୭୪ । A. D. C. of Skt. Mss. Vol-I, PP-XX
୭୫ । Orissa Historical Research Journal-Vol-III. No. 4. P-196.
୭୬ । ହରିହର ଚତୁରଙ୍ଗ—ପ୍ରଥମ ପରିଚ୍ଛେଦ—ଶ୍ଳୋକ-୧-୬

(ଖ) 'ଜୟଚନ୍ଦ୍ରାମଣି'ର ମଙ୍ଗଳାଚରଣରେ ସ୍ମୃତିକାର ଗୋଦାବର ଦଶାବତାର ନୀଳାଦ୍ରି ନାଥ ଶ୍ରୀଜଗନ୍ନାଥ, ଶିବ, ପାର୍ବତୀ ଓ ଗୁରୁଦେବଙ୍କୁ ବର୍ଣ୍ଣନା କରିଛନ୍ତି । ରାଜାମାନଙ୍କର ଜୟସାଧନଭୂତ 'ଜୟଚନ୍ଦ୍ରାମଣି' ଗ୍ରନ୍ଥର ଏକାଦଶ କିରଣ ମଧ୍ୟରେ ଦୈବବଳ, ଷଟ୍‌କର୍ମ, ଔଷଧବିଜ୍ଞାନ, ଗୃହାଙ୍ଗ, ସ୍ୱରୋଦୟ ଓ ବିଭିନ୍ନ ଚକ୍ରବ୍ୟୂହର ଉଲ୍ଲେଖ ଅଛି ।୭୭।

## ୨୯ । ଜଗନ୍ନାଥ ଦାସ

ଓଡ଼ିଶାର ଜାତୀୟ କବି ଜଗନ୍ନାଥ ଦାସ (୧୪୯୨-୧୫୩୫ ଖ୍ରୀଷ୍ଟାବ୍ଦ) ସ୍ମୃତିଶାସ୍ତ୍ର ଅନ୍ତର୍ଗତ ଭକ୍ତିପ୍ରସଙ୍ଗକୁ ନେଇ ଅନ୍ୟୂନ ଚାରିଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ପିତାଙ୍କ ନାମ ଭଗବାନ ଓ ମାତାଙ୍କ ନାମ ପଦ୍ମାବତୀ । ସେ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଶାସନରେ ଜନ୍ମ ଗ୍ରହଣ କରିଥିଲେ । ଜଗନ୍ନାଥ ଦାସଙ୍କ ରଚନା ମଧ୍ୟରେ (କ) କୃଷ୍ଣଭକ୍ତି କଳ୍ପଲତା ଫଳ, (ଖ) କୃଷ୍ଣଭକ୍ତି କଳ୍ପଲତା, (ଗ) ନିତ୍ୟଗୁପ୍ତଚୂଡ଼ାମଣି, (ଘ) ନୀଳାଦ୍ରିବିଳାସ ପ୍ରଭୃତି ସଂସ୍କୃତ ଗ୍ରନ୍ଥ ଏବଂ ଭାଗବତ, ଦାରୁବ୍ରହ୍ମ ଗୀତା, ତୁଳାଭିଣା, ଅର୍ଥକୋଇଲି, ବ୍ରହ୍ମାଣ୍ଡଭୂଗୋଳ ପ୍ରଭୃତି ଓଡ଼ିଆ ଗ୍ରନ୍ଥର ନାମ ଉଲ୍ଲେଖଯୋଗ୍ୟ । ତଦ୍‌ବ୍ୟତୀତ ସେ ସଂସ୍କୃତରେ ଉପାସନା ଶତକ, ପ୍ରେମସୁଧାମ୍ବୁଧି, ନୀଳାଦ୍ରି ନାଥ ଶତକ, ଜଗନ୍ନାଥ ଚେତୋମ୍ବୋଧି ସରଣୀ, ନିତ୍ୟାଚ୍ୟୁତାଦ୍ୱୈତଜିଜ୍ଞାସା-ସଦ୍ଭକ୍ତୋପାସନାବିଧି ଏବଂ ଓଡ଼ିଆରେ ପାଷଣ୍ଡଦଳନ, ଗଜସ୍ତୁତି, ମନଃଶିକ୍ଷା ଆଦି ବହୁ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । 'ଅତିବଡ଼ୀ ଜଗନ୍ନାଥ' ଭାବେ ସୁବିଦିତ ଶ୍ରୀଜଗନ୍ନାଥଙ୍କ ଭକ୍ତ ମହାତ୍ମା ଜଗନ୍ନାଥ ଦାସ 'ଅତିବଡ଼ୀ ବୈଷ୍ଣବ' ସମ୍ପ୍ରଦାୟର ଆଦ୍ୟ ପ୍ରବର୍ତ୍ତକ ଥିଲେ । ସଂସ୍କୃତ ଓ ଓଡ଼ିଆ ଭକ୍ତିସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ ।

---

୭୭ । (କ) ବେଦୋଦ୍ଧାରକରଂ ବହନ୍ତମବନୀଂ ଦଂଷ୍ଟ୍ରାଗ୍ରରାଜଦ୍‌ଭୁବଂ
ଲୀଳାଦାରିତ ଦୈତ୍ୟରାଜହୃଦୟଂ ମାୟାବଶାଦ୍ ବାମନମ୍ ।
କ୍ଷତ୍ରୌଘାନ୍ତକରଂ ଦଶାସ୍ୟଦଳନଂ ଧ୍ୱସ୍ତଂପ୍ରଲମ୍ବଂ କୃପା
ବାହଂ ମ୍ଲେଚ୍ଛବିନାଶନୈକନିପୁଣଂ ନୀଳାଦ୍ରି ନାଥଂ ଭଜେ ॥
(ଜୟଚନ୍ଦ୍ରାମଣି, Dh. No. 272)

(ଖ) ଜୟସାଧନଶାସ୍ତ୍ରାଣି ସମାଲୋଚ୍ୟ ମୁହୁର୍ମୁହୁଃ ।
ଜୟଚନ୍ଦ୍ରାମଣିଂ ବ୍ରୂମୋ ରାଜ୍ଞାଂ ବିଜୟସାଧନମ୍ ॥
(A. D. C. Vol-VIII P. 48)

(ଗ) ଅତ୍ର ଦୈବବଳଂ ବ୍ରୂମଃ ଷଟ୍‌କର୍ମାଣି ତତଃ ପରମ୍ ।
ବିଜ୍ଞାନମୌଷଧୀନାଂ ଚ ଗୃହାଙ୍ଗସ୍ୟ ଚ ସୂଚନମ୍ ॥
ସ୍ୱରୋଦୟଂ ତତୋ ବ୍ରୂମୋ ହଂସାଚାରମତଃ ପରଂ ।
ରାହୁ କାଳାନଳଂ ଚକ୍ରଂ ଗୂଢ଼କାଳାନଳଂ ତଥା ॥
(ଜୟଚନ୍ଦ୍ରାମଣି, Dh. No. 272)

(କ) 'କୃଷ୍ଣଭକ୍ତି କଳ୍ପଲତା ଫଳ' ଗ୍ରନ୍ଥଟି ବ୍ରହ୍ମପୁର ଶିରୋମଣି ପ୍ରେସ୍‌ରୁ ୧୬୭୯ ମସିହାରେ ପଣ୍ଡିତ କୁଳମଣି ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ଓ ପ୍ରକାଶିତ ହୋଇଅଛି । ଏହାର ଛଅଟି ଆସ୍ୱାଦରେ ଭକ୍ତିପ୍ରସଙ୍ଗ ଓ ରାଧାକୃଷ୍ଣଲୀଳା ବର୍ଣ୍ଣନା କରାଯାଇଛି ।

(ଖ) 'କୃଷ୍ଣଭକ୍ତି କଳ୍ପଲତା'ରେ ଥିବା ସାତୋଟି ଗୁଚ୍ଛରେ ବିଭିନ୍ନ ପୁରାଣୋକ୍ତ ମହାପ୍ରସାଦ ବୈଭବ, ଶ୍ରୀଜଗନ୍ନାଥକ୍ଷେତ୍ର ମାହାତ୍ମ୍ୟ ଓ ଶ୍ରୀଜଗନ୍ନାଥଚରିତ ସଂଗୃହୀତ ହୋଇଅଛି ।୭୮।

(ଗ) 'ନିତ୍ୟଗୁପ୍ତ ଚୂଡ଼ାମଣି' ଗ୍ରନ୍ଥର ଦ୍ୱାଦଶ ଆସ୍ୱାଦ୍ୟ ମଧ୍ୟରେ ବିଭିନ୍ନ ଶାସ୍ତ୍ର ପୁରାଣର ଉଦ୍ଧୃତି ଦ୍ୱାରା ଗୋପୀନାଥ-କୃଷ୍ଣ-ଶ୍ରୀଜଗନ୍ନାଥଙ୍କ ଶୁଦ୍ଧାଭକ୍ତି, ପ୍ରେମଭକ୍ତି ଓ ନବଧାଭକ୍ତି ତତ୍ତ୍ୱର ଆଲୋଚନା କରାଯାଇଛି । ସ୍ମୃତିକାର ଜଗନ୍ନାଥଙ୍କ ଅନ୍ୟତମ ଗ୍ରନ୍ଥ 'ନୀଳାଦ୍ରି ବିଳାସ'ର ଷୋଡ଼ଶ ବିଳାସ ମଧ୍ୟରେ ଶ୍ରୀଜଗନ୍ନାଥ ଚତୁର୍ଦ୍ଧା ମୂର୍ତ୍ତିଙ୍କ ସମ୍ବନ୍ଧରେ ତାତ୍ତ୍ୱିକ ବିଶ୍ଳେଷଣ ସହିତ ଜଗନ୍ନାଥତତ୍ତ୍ୱ ଆଲୋଚିତ ହୋଇଛି ।

## ୨୨ । ମୁରାରି ମିଶ୍ର :

କାହ୍ନୁ ମିଶ୍ରଙ୍କ ପୁତ୍ର ମୁରାରି ମିଶ୍ର (୧୬୦୦ ଖ୍ରୀଷ୍ଟାବ୍ଦ) 'ପ୍ରାୟଶ୍ଚିତ୍ତ ମନୋହର' ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । କିନ୍ତୁ ରାଜ୍ୟ ସଂଗ୍ରହାଳୟର ପୋଥି-ଭଣ୍ଡାରରେ ଥିବା ଅନ୍ୟ ଏକ ପୋଥିରେ କୃଷ୍ଣ ନାମଧେୟ ବ୍ୟକ୍ତି ଅନୁରୂପ ବିଷୟବସ୍ତୁକୁ ନେଇ 'ପ୍ରାୟଶ୍ଚିତ୍ତ ନିର୍ଣ୍ଣୟ' ଗ୍ରନ୍ଥ ରଚନା କରିଛନ୍ତି । ଉଭୟ ପୋଥିରେ ଥିବା ଗ୍ରନ୍ଥ ଶେଷ ଶ୍ଳୋକଟି ସମାନ ଭାବେ ଉଲ୍ଲିଖିତ ରହିଛି ।୭୯। ଖୁବ୍ ସମ୍ଭବତଃ ମୁରାରି ନିଜର ପିତା କାହ୍ନୁ ବା କୃଷ୍ଣଙ୍କ ନାମରେ ଏହି ଗ୍ରନ୍ଥଟି ଉତ୍ସର୍ଗ କରିଥିବାର ମନେହୁଏ । ଗ୍ରନ୍ଥକାର ବହୁ ପ୍ରାଚୀନ ସ୍ମୃତିକାରଙ୍କ ସହିତ ଶୂଳପାଣିଙ୍କ

---

୭୮ । ସପ୍ତଗୁଚ୍ଛ ବିରାଜିତା ଫଳପୁଷ୍ପରସାନ୍ୱିତା ।
ରୂପସ୍ଥାନ ନିରୂପାଦି ନିରୂପାଧି ମନୋରମା ॥
(OSM. Mss. Dh. No. 291)

୭୯ । (କ) ଶ୍ରୀମନ୍ମୁରାରିମିଶ୍ରେଣ କାହ୍ନୁମିଶ୍ରସ୍ୟ ସୂନୁନା ।
କ୍ରିୟତେ ବ୍ୟବହାରାର୍ଥଂ ପ୍ରାୟଶ୍ଚିତ୍ତମନୋହରମ୍ ॥
(OSM. Mss. Dh No. 114)

(ଖ) ନତ୍ୱା କୃଷ୍ଣପଦଦ୍ୱନ୍ଦ୍ୱଂ କୃଷ୍ଣେନ ମୁନିସତ୍ତମମ୍ ।
ପ୍ରାୟଶ୍ଚିତ୍ତ ନିର୍ଣ୍ଣୟାନାଂ ଗୋପାଳେନ ବିତନ୍ୟତେ ॥
(OSM. Mss. Dh. No. 55)

(ଗ) ଯାବଦ୍‌ଗଙ୍ଗାବ୍ଧିସଙ୍ଗଃ ପ୍ରତପତି ତପନଃ ଶମ୍ଭୋରମ୍ଭୋଜହସ୍ତୋ
ଯାବଦ୍‌ଧାତ୍ରୀ ଧରାଧ୍ରୁକ୍ ପ୍ରବହତି ପବନଶ୍ଚନ୍ଦ୍ର ଛନ୍ଦୋ ।ପ୍ୟୁତୋଦ୍ର ॥
ଗୋପୀନାଥପ୍ରସାଦାତ୍ ବିରଚିତରୁଚିରଃ କାହ୍ନୁମିଶ୍ରେଣ ତାବଦ୍-
ଗ୍ରନ୍ଥୋୟଂ କଣ୍ଠଦେଶେ ବିଲୁଠତୁ କୃତିନାଂ ହାରବନ୍ ଧୀଜନାନାମ୍ ॥
(OSM. Mss. Dh. No. 492 & 950)

(୧୩୭୫-୧୪୫୦ ଖ୍ରୀଷ୍ଟାବ୍ଦ) ଙ୍କ ସ୍ମୃତି ଉଲ୍ଲେଖ କରିଥିବାରୁ ତାଙ୍କୁ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭ କାଳୀନ ସ୍ମୃତିକାର ବୋଲି ଅନୁମାନ କରାଯାଏ । 'ସ୍ମୃତି ଚନ୍ଦ୍ରିକା' ମୁରାରିଙ୍କର ଅନ୍ୟତମ ଉଲ୍ଲେଖଯୋଗ୍ୟ ସ୍ମୃତିଗ୍ରନ୍ଥ ।୮୦।

(କ) 'ପ୍ରାୟଶ୍ଚିତ୍ତ ମନୋହର' ଗ୍ରନ୍ଥଟି ଉତ୍କଳାକ୍ଷରରେ ପଣ୍ଡିତ ଗୋବିନ୍ଦ ରଥଙ୍କ ଦ୍ୱାରା ସଂଶୋଧିତ ହୋଇ ୧୯୧୫ ମସିହାରେ ପ୍ରକାଶ ଲାଭ କରିଛି । ଅପ୍ରକାଶିତ ପୋଥି ଓ ପ୍ରକାଶିତ ଗ୍ରନ୍ଥରେ ମୁଖ୍ୟତଃ ପ୍ରାୟଶ୍ଚିତ୍ତ ସମ୍ବନ୍ଧୀୟ ବିଷୟଗୁଡ଼ିକ ଆଲୋଚିତ ହୋଇଛି । ମୁରାରିଙ୍କ (ଖ) ସ୍ମୃତିଚନ୍ଦ୍ରିକା ଗ୍ରନ୍ଥରେ ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ' ବର୍ଣ୍ଣିତ ବିଷୟ ବ୍ୟତୀତ ଓଡ଼ିଶାରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ବ୍ରତ, ପର୍ବ, ଶ୍ରାଦ୍ଧ ଓ କାଳ ସମ୍ବନ୍ଧୀୟ ଆଲୋଚନା ରହିଛି ।

## ୨୩ । ନରସିଂହ ବାଜପେୟୀ :

ସିଂହ ବାଜପେୟୀବଂଶର ମହାମହୋପାଧ୍ୟାୟ ଅଗ୍ନିଚିତ୍ ନରସିଂହ ବାଜପେୟୀ (୧୫୨୫-୧୫୮୦ ଖ୍ରୀଷ୍ଟାବ୍ଦ) ମନ୍ତ୍ରିବର ରାଜଗୁରୁ ଗୋଦାବର ମିଶ୍ରଙ୍କ ସଖ୍ୟ ଭାଜି ଧରାଧର ମିଶ୍ରଙ୍କ ପୌତ୍ର ଓ ମୁରାରି ମିଶ୍ରଙ୍କ ପୁତ୍ର ଥିଲେ । 'ସିଂହ ବାଜପେୟୀବଂଶାବଳୀ'ର ଉଲ୍ଲେଖ ଅନୁସାରେ ସିଂହ ବାଜପେୟୀ ନାମରେ ବିଖ୍ୟାତ ନରସିଂହ ନିଜର ଜ୍ୟେଷ୍ଠଭ୍ରାତା ବିଘ୍ନେଶ୍ୱର ମିଶ୍ରଙ୍କଠାରୁ ଶିକ୍ଷା-ଲାଭ କରିଥିଲେ । ସିଦ୍ଧେଶ୍ୱରୀ ଦେବୀଙ୍କ ପ୍ରସାଦରୁ ସେ ଷଡ଼ଦର୍ଶନରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ନରସିଂହ ଗୌଡ଼ ଦେଶରୁ ଆସିଥିବା ଜନୈକ ତାର୍କିକଙ୍କୁ ବିଦ୍ୟାବାଦରେ ପରାସ୍ତ କରି ରାଜା ମୁକୁନ୍ଦ ଦେବଙ୍କ ପ୍ରିୟପାତ୍ର ହୋଇଥିଲେ । ସେ ଏକାଧାରରେ ମୀମାଂସକ, ବେଦାନ୍ତବିତ୍, ସୁକବି ଓ ସ୍ମୃତିଜ୍ଞ ଥିଲେ ଏବଂ ଅଷ୍ଟାଦଶ ବିଦ୍ୟାରେ ଅଠରଟି ପ୍ରଦୀପ ଗ୍ରନ୍ଥ ରଚନା କରିଥିଲେ । ସେ 'ସମୟ ପ୍ରଦୀପ' ଗ୍ରନ୍ଥ ସଂକଳନ କରି ଜନସାଧାରଣଙ୍କ ଧର୍ମାଧର୍ମ ରୂପ ଅଜ୍ଞାନ-ଅନ୍ଧକାର ଦୂର କରିବାରେ ସମର୍ଥ ହୋଇଥିଲେ । ଅଷ୍ଟାଦଶ ବିଦ୍ୟାରେ ପାରଙ୍ଗମ ଥିବାରୁ ସେ ଦିଲ୍ଲୀଶ୍ୱରଙ୍କୁ ସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ନିଜର ପୃଷ୍ଠପୋଷକ ରାଜା ମୁକୁନ୍ଦ ଦେବଙ୍କ ଖ୍ୟାତି ବଢ଼ାଇଥିଲେ ।୮୧। ମୁକୁନ୍ଦ ଦେବ (୧୫୫୯-୧୫୬୮ ଖ୍ରୀଷ୍ଟାବ୍ଦ) ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା । ଦିଲ୍ଲୀ ବାଦଶାହ ଓ ବଙ୍ଗଳାର ସୁଲେମାନଙ୍କ

---

୮୦ । ପ୍ରଣମ୍ୟ ଗିରିଜାନାଥମେଣାଙ୍କକୃତଶେଖରମ୍ ।
ନାନାଗ୍ରନ୍ଥସମାକୃଷ୍ୟ କରୋମି ସ୍ମୃତିଚନ୍ଦ୍ରିକାମ୍ ॥
(A. D. C. of Skt. Mss. Vol. VII-P. 99)

୮୧ । (କ) ମୁନିଜନସମୁପାସ୍ୟାଂ କୁନ୍ଦବୃନ୍ଦାବଦାତାଂ
ଶତଦଳ ତଳସଂସ୍ଥାଂ ବାଞ୍ଛିତାର୍ଥପ୍ରଦାଂ ଯଃ ।
ଶଶିଶକଲ ଧରାମାରାଧ୍ୟ ସିଦ୍ଧେଶ୍ୱରୀଂ ତାଂ
କରବଦରସମାନଂ ଶାସ୍ତ୍ରଷଟ୍କଂ ଦଦର୍ଶ ॥

ବିରୋଧର ସମାଧାନ ପାଇଁ ଠାକୁରରାଜା ମୁକୁନ୍ଦ ଦେବ ବାଦଶାହ ଆକ୍‌ବରଙ୍କ ନିକଟକୁ ଭାରତବିଖ୍ୟାତ କବି ଓ ସଙ୍ଗୀତଜ୍ଞ ତଥା ମହାପଣ୍ଡିତ ଉପାଧ୍ୟାୟୀ ଜନୈକ ବ୍ୟକ୍ତିଙ୍କୁ ହାସାନ୍ ଖାଁଙ୍କ ସହିତ ପଠାଇଥିଲେ । ସେ ଦୁହେଁ ଚୁକ୍ତି ସମ୍ପାଦନ ପରେ ମୁକୁନ୍ଦ ଦେବଙ୍କ ଦୂତ ରାୟ ପରମାନନ୍ଦଙ୍କ ସହିତ ଦିଲ୍ଲୀରୁ ଫେରିଆସିଲେ । ମୋଗଲ ଦରବାରରେ ଥିବା "ଆଇନ୍-ଇ-ଆକ୍‌ବରୀ" ଗ୍ରନ୍ଥ ବର୍ଣ୍ଣିତ କବି ନରସିଂହ ଓ ପରମାନନ୍ଦ ନାମରେ ଯେଉଁ ଦୁଇଜଣ କୃତବିଦ୍ୟଙ୍କ ନାମ ଉଲ୍ଲିଖିତ ଅଛି, ସେ ଦୁହେଁ ପୂର୍ବୋକ୍ତ ବ୍ୟକ୍ତିଦ୍ୱୟ ବୋଲି ନିଃସନ୍ଦେହରେ କୁହାଯାଇପାରେ ।୮୨।

'ସିଂହ ବାଜପେୟୀବଂଶାବଳୀ'ର ଉଲ୍ଲେଖ ଅନୁଯାୟୀ ନରସିଂହ ଅଠରଟି ପ୍ରଦୀପ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ତନ୍ମଧ୍ୟରୁ ପ୍ରକାଶିତ 'ନିତ୍ୟାଚାର ପ୍ରଦୀପ' ଗ୍ରନ୍ଥରେ ବର୍ଷ ପ୍ରଦୀପ, ଭକ୍ତି ପ୍ରଦୀପ, ପ୍ରାୟଶ୍ଚିତ୍ତ ପ୍ରଦୀପ, ଶ୍ରାଦ୍ଧ ପ୍ରଦୀପ, ପ୍ରତିଷ୍ଠା ପ୍ରଦୀପ, ଶାନ୍ତ୍ୟ ପ୍ରଦୀପ ପ୍ରଭୃତି ଗ୍ରନ୍ଥର ନାମତଃ ପରିଚୟ ମିଳେ ।୮୩। ଐତିହାସିକ ହଣ୍ଟରଙ୍କ ଇତିହାସରୁ ସେ 'ବ୍ୟବସ୍ଥା-

---

(ଖ) ବିଜିତ୍ୟ ବାଦେନ ସମାନ୍ତରାଲେ ତଂ ଗୌଡ଼ଦେଶାଗତ ତାର୍କିକେନ୍ଦ୍ରମ୍ ।
ମୁକୁନ୍ଦ ଭୂମିନୃପତେର୍ଜିଗାମ ନାନାବିଧାନୁଗ୍ରହପାତ୍ରତାଂ ଯଃ ॥

(ଗ) ମୀମାଂସକାନାଂ ଧୂରିକୀର୍ତ୍ତିମାସ୍ତେ ବେଦାନ୍ତବେଦୀ ସୁକବିଃ ସୁଦ୍ଧକ୍ଷଃ ।
ବିଦ୍ୟାସୁ ଯେଽଷ୍ଟାଦଶସୁ ପ୍ରଦୀପଂ ନିର୍ମାୟ ଯୋଗେନ ଜଗାମ ସିଦ୍ଧିମ୍ ॥

(ଘ) ଯେନ ପ୍ରଣୀତଂ ସମୟ-ପ୍ରଦୀପମାସାଦ୍ୟ ସର୍ବାଗମପାରଗେଣ ।
ତମସ୍ତ୍ରିରସ୍କୃତ୍ୟ ସୁଧର୍ମମାର୍ଗଂ ସୁଖେନ ଜାନନ୍ତି ଜନାଃ ସମସ୍ତାଃ ॥

(ଙ) ଦିଲ୍ଲୀଶ୍ୱରଂ ଯଃ ପରିତୋଷ୍ୟ ବାଗ୍‌ଭିଃ ବିଦ୍ୟାଭିରଷ୍ଟାଦଶଭିଃ ପ୍ରବୀଣଃ ।
ମୁକୁନ୍ଦଦେବସ୍ୟ ପ୍ରଶସ୍ତିବାଦଃ ସମାନୟତ୍ର ସର୍ବଜନସ୍ୟ ମଧ୍ୟେ ॥
(ସିଂହ ବାଜପେୟୀବଂଶାବଳୀ– ଶ୍ଳୋକ-୨୬, ୨୭, ୩୦, ୨୯ ଓ ୩୧)

୮୨ । A. D. C. of Skt. Mss. Vol.-I, PP-XXIV

୮୩ । (କ) ଯଦ୍‌ବା ବୃନ୍ଦମାସେ ହୋତା......ଚୈତଦ୍ ବର୍ଷପ୍ରଦୀପେ ପ୍ରପଞ୍ଚିତ ମସ୍ମାଭିଃ ।
(ଖ) ତଦସ୍ମାଭିଃ ବିସ୍ତରେଣ ଭକ୍ତିପ୍ରଦୀପେ ପ୍ରପଞ୍ଚିତମିତି ନେହ ପ୍ରଣୀୟତେ ।
(ଗ) ତଥୋକ୍ତଂ ପ୍ରାୟଶ୍ଚିତ୍ତପ୍ରଦୀପେ ଅସ୍ମାଭିଃ ।
(ଘ) ବ୍ୟକ୍ତଂ ଚୈତଦସ୍ମାଭିଃକୃତେ ଶ୍ରାଦ୍ଧପ୍ରଦୀପେ ।
(ଙ) ପଞ୍ଚରାତ୍ରାନୁସାରେଣ ପ୍ରତିଷ୍ଠାପ୍ରଦୀପେ ଅସ୍ମତ୍କୃତେ ବିସ୍ତରେଣୋକ୍ତା ।
(ଚ) ସଦାଚାର···ପ୍ରାମାଣ୍ୟମିତି ଶାଙ୍କରଭାଷ୍ୟପ୍ରଦୀପେ ପ୍ରପଞ୍ଚିତମସ୍ମାଭିଃ ।
(ନିତ୍ୟାଚାରପ୍ରଦୀପ – ପ୍ରଥମ ଭାଗ-ପୃ.—୭୭, ୨୪୭, ଦ୍ୱିତୀୟ ଭାଗ—ପୃ-୧୦୧, ୩୦୧, ୨୮୮, ୩୯୫, ୫୩୫)

ପ୍ରଦୀପ', 'ବାଜପେୟସ୍ମୃତି' ଓ 'ଦାନସାର ଗ୍ରନ୍ଥ' ଲେଖିଥିବାର ଜଣାଯାଏ ।୮୪। ଏକ ହଜାର ଶ୍ଳୋକସମ୍ବଳିତ 'ଚନ୍ଦନ ପ୍ରଦୀପ' ତାଙ୍କର ଅନ୍ୟତମ ଉଲ୍ଲେଖଯୋଗ୍ୟ ସ୍ମୃତିଗ୍ରନ୍ଥ ।୮୫।

ଶମ୍ଭୁକର ମିଶ୍ର ବାଜପେୟୀଙ୍କ କୃତ 'ଶ୍ରାଦ୍ଧପଦ୍ଧତି' ଗ୍ରନ୍ଥର ଏକ କାରିକା ନରସିଂହ ରଚନା କରିଥିବାର ସୂଚନା କବି ବାସୁଦେବ ରଥଙ୍କ ପ୍ରଣୀତ 'ଗଙ୍ଗବଂଶାନୁଚରିତଚମ୍ପୂ'ରୁ ମିଳେ ।୮୬। ତଦ୍‌ବ୍ୟତୀତ ସେ ଗଣେଶ ମାନସିକ ପୂଜା, ସାମବେଦୀୟବ୍ରତପଦ୍ଧତି ଓ ଶିବରାତ୍ରି-ବ୍ରତବିଧି ଗ୍ରନ୍ଥମାନ ରଚନା କରିଥିଲେ ।୮୭। 'ଗ୍ରହଯଜ୍ଞପଦ୍ଧତି' ତାଙ୍କର ଅନ୍ୟତମ ପ୍ରସିଦ୍ଧ ଗ୍ରନ୍ଥ ।

ଧର୍ମଶାସ୍ତ୍ର କ୍ଷେତ୍ରରେ ହେମାଦ୍ରି, ମାଧବାଚାର୍ଯ୍ୟ, ଚଣ୍ଡେଶ୍ୱର, ରଘୁନନ୍ଦନ ପ୍ରଭୃତିଙ୍କ ସହିତ ନରସିଂହଙ୍କର ତୁଳନା କରାଯାଇପାରେ । ଭାରତପ୍ରସିଦ୍ଧ ଧର୍ମଶାସ୍ତ୍ରକାରମାନଙ୍କ ମଧ୍ୟରେ ସ୍ମୃତିକାର ନରସିଂହଙ୍କ ସ୍ଥାନ ଉଲ୍ଲେଖଯୋଗ୍ୟ, ଏଥିରେ ସନ୍ଦେହ ନାହିଁ ।

(କ) 'ନିତ୍ୟାଚାର ପ୍ରଦୀପ' ଗ୍ରନ୍ଥଟି ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ମହାମହୋପାଧ୍ୟାୟ ସଦାଶିବ ମିଶ୍ର ଓ ପଣ୍ଡିତ ବିନୋଦବିହାରୀ ଭଟ୍ଟାଚାର୍ଯ୍ୟଙ୍କ ସମ୍ପାଦନାରେ ପ୍ରକାଶ ପାଇଛି । ଗ୍ରନ୍ଥଟିର ପ୍ରଥମ ଭାଗ ୧୯୦୭ ଓ ଦ୍ୱିତୀୟ ଭାଗ ୧୯୨୮ ମସିହାରେ ମୁଦ୍ରିତ ହୋଇଛି । ସ୍ମୃତିକାର ନରସିଂହ ଗ୍ରନ୍ଥ ଆରମ୍ଭରେ ଶ୍ରୀଜଗନ୍ନାଥ, ଲିଙ୍ଗରାଜ, ନୃସିଂହ, ଗୋପୀନାଥଙ୍କ ବନ୍ଦନା ପରେ ସ୍ୱବଂଶର ପରିଚୟ ପ୍ରଦାନ କରିଛନ୍ତି ।୮୮। ଗ୍ରନ୍ଥର ବିଷୟବସ୍ତୁ ପରିଭାଷା ପ୍ରକରଣ ବ୍ୟତୀତ ଚାରି ଭାଗରେ ବିଭକ୍ତ । ଏଥିରେ ନିତ୍ୟ, ନୈମିତ୍ତିକ ଓ କାମ୍ୟକର୍ମର ସୁବିସ୍ତୃତ ପର୍ଯ୍ୟାଲୋଚନା କରାଯାଇଛି ।

---

୮୪ । Hunter's Orissa, Vol.-II, Appendix—9, P-206.

୮୫ । (କ) Notices of Skt. Mss. Vol-IV. No. 84 by H. P. Shastri.

(ଖ) D.C. of Skt. Mss. (ASB) Vol-III, No. 2304, P 401.

୮୬ । A. D. C. of Skt Mss. Vol-I, PP-XXVI.

୮୭ । ତସ୍ୟାସୀନ୍ନଖିଳବିଦ୍ୟା ଗୁରୁରଖିଳକଳାକୋବିଦଃ କୋବିଦେନ୍ଦ୍ରଃ
ମିଶ୍ରଃ ଶ୍ରୀରାମଚନ୍ଦ୍ରୋ ଦ୍ୱିଜକୁଳତରଣିଃ କୌତ୍ସବଂଶାବତଂସଃ ।
ନିତ୍ୟାଚାରପ୍ରଦୀପ ମୁଖନବ ବିଦଧେ ଧର୍ମଶାସ୍ତ୍ରପ୍ରଣେତା
ଭୂୟୋ ଯତ୍ର ପୂର୍ବବଂଶେଽପି ଜଗମଗୁରୁର୍ବାଜପେୟୀ ନୃସିଂହଃ ॥
(ଗଙ୍ଗବଂଶାନୁଚରିତଚମ୍ପୂ OSM. Mss. Sns P. 903)

୮୮ । ନିତ୍ୟାଚାର ପ୍ରଦୀପ----ଶ୍ଳୋକ-୧-୪, ୬-୧୦

(ଖ) 'ମହାସୌରଶାନ୍ତି'ରେ ସବିତୃମନ୍ତ୍ର, ସୌରମନ୍ତ୍ର, ଆଦିତ୍ୟମନ୍ତ୍ର, ଆଦିତ୍ୟ-ସ୍ତୋତ୍ର, ସୂର୍ଯ୍ୟୋପସ୍ଥାପନ ପ୍ରଭୃତିର ଉଲ୍ଲେଖ ଅଛି । ଏହି ଗ୍ରନ୍ଥର ବିଷୟ ଅଂଶବିଶେଷ ରୂପେ 'ନିତ୍ୟାଗ୍ନିର ପ୍ରଦୀପ' ଗ୍ରନ୍ଥରେ ମଧ୍ୟ ସନ୍ନିବେଶିତ ହୋଇଛି ।୮୯। (ଗ) 'ଗ୍ରହଯଜ୍ଞପଦ୍ଧତି'ରେ ନବଗ୍ରହଙ୍କ ମଣ୍ଡପ, କୁଣ୍ଡ, ହୋମ, ଦାନାଦି ବିଷୟ ଏବଂ (ଘ) 'ପ୍ରତିଷ୍ଠା ପ୍ରଦୀପ'ରେ ବିଭିନ୍ନ ପ୍ରତିଷ୍ଠା ସମ୍ବନ୍ଧୀୟ ବିଧିବିଧାନ ବର୍ଣ୍ଣିତ ହୋଇଛି ।୯୦।

**୨୪ । ବିଷ୍ଣୁଶର୍ମା :**

ସ୍ମୃତିକାର ବିଷ୍ଣୁଶର୍ମା (୧୫୫୦ ଖ୍ରୀଷ୍ଟାବ୍ଦ) ବିଷ୍ଣୁ, ଗଣେଶ, ଗୋଭିଲାଦି ଋଷିଙ୍କ ବନ୍ଦନା ସହିତ ଆଠଟି ଖଣ୍ଡରେ ବିଭକ୍ତ 'ସ୍ମୃତି ସରୋଜ କଳିକା' ଗ୍ରନ୍ଥ ରଚନା କରିଛନ୍ତି ।୯୧। ସ୍ମୃତିକାରଙ୍କ ପରିବାର ଓ ସମୟ ବିଷୟରେ ଉକ୍ତ ଗ୍ରନ୍ଥରୁ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ମିଳୁ ନ ଥିଲେ ମଧ୍ୟ ବିଷ୍ଣୁଶର୍ମା ଗ୍ରନ୍ଥୋଲ୍ଲିଖିତ ବାକ୍ୟାବଳୀ ମଧ୍ୟରେ ଶତାନନ୍ଦ, ବିଦ୍ୟାକର ପ୍ରଭୃତିଙ୍କ ସହିତ କାଳିଦାସ ଚୟନିଙ୍କ 'ଶୁଦ୍ଧି ଚନ୍ଦ୍ରିକା' ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି । ତେଣୁ ଗ୍ରନ୍ଥକାର ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ 'ସ୍ମୃତି ସରୋଜ କଳିକା' ପ୍ରଣୟନ କରିଥିବାର ଅନୁମାନ କରାଯାଏ ।

**୨୫ । କବି ଚିନ୍ତାମଣି ମିଶ୍ର :**

ଅଳଙ୍କାରଗ୍ରନ୍ଥ 'ବାଙ୍ମୟ ବିବେକ'ର ପ୍ରଣେତା କବି ଚିନ୍ତାମଣି ମିଶ୍ର (୧୫୫୦ ଖ୍ରୀଷ୍ଟାବ୍ଦ) 'କୃତ୍ୟ ପୁଷ୍ପାବଳୀ' ନାମରେ ଖଣ୍ଡିଏ ସ୍ମୃତି ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ପ୍ରଥମ

---

୮୯ । ନିତ୍ୟାଗ୍ନିର ପ୍ରଦୀପ—ପୃଷ୍ଠା-୧୫୫

୯୦ । (କ) ଶାଖାଭିଃ ସକଳାଭିରୁକ୍ରମହିମା ନୀଳାଦ୍ରି ମୂଳସ୍ଥିତଃ
ପୀନସ୍କନ୍ଧ ଧୃତପ୍ରସୂନବିଭବ ଆନନ୍ଦକନ୍ଦୋଦୟ ।
ଯଃ ଶୋଣାଧରପଲ୍ଲବଃ ସୁଜନମାସାଦିଃ ସତାମାର୍ତ୍ତିଦା
ଭକ୍ତେଭ୍ୟୋ ବିତରନ୍ ଫଳାନି ଜୟତି ଶ୍ରୀକୃଷ୍ଣ କଳ୍ପଦ୍ରୁମଃ ।।

(ଖ) ହୟଗ୍ରୀବଂ ନମସ୍କୃତ୍ୟ ନରସିଂହେନ ଧୀମତା ।
ପ୍ରଣୀୟତେଽଥ ପ୍ରତିଷ୍ଠାପ୍ରଦୀପଃ କୃଷ୍ଣତୁଷ୍ଟୟେ ।।

(A. D. C. S. Vol. I, P-55)

୯୧ । (କ) ନତ୍ୱା ବିଷ୍ଣୁଂ ଗଣେଶଂ ଚ ଗୋଭିଲାଦୀନୃଷିଂସ୍ତଥା ।
ନିସ୍ୟତେ ନିତ୍ୟକୃତ୍ୟେଷୁ ଛନ୍ଦୋଗାନାଂ ଚ ପଦ୍ଧତିଃ ।।
ରଚିତା ବିଷ୍ଣୁଶର୍ମ୍ମଣ ପ୍ରୟତ୍ନେନ ସ୍ଫୁଟୀକୃତା ।
ସରୋଜକଳିକା ନାମ୍ନା ସ୍ମୃତିସ୍ନାନାଦି କର୍ମ୍ମଣା ।।

(ଖ) ସରୋଜକଳିକାଗ୍ରନ୍ଥଃ ସ୍ମୃତିଖଣ୍ଡାତ୍ମକଂ ଶ୍ରୁତମ୍ ।
ନାନା ସ୍ମୃତିଂ ସମାଲୋକ୍ୟ ନିସ୍ୟତେ ବିଷ୍ଣୁଶର୍ମ୍ମଣା ।।

ଗ୍ରନ୍ଥଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଛି; ମାତ୍ର ସ୍ମୃତିଗ୍ରନ୍ଥଟି ଅଦ୍ୟାବଧି ଉପଲବ୍ଧ ନୁହେଁ । ୯୨ । ଏତଦ୍ ବ୍ୟତୀତ ସେ 'କାଦମ୍ବରୀ ସାର' ଓ 'ସମ୍ବରଣଚରିତ' ନାମରେ କାବ୍ୟଗ୍ରନ୍ଥ ଦୁଇଟି ରଚନା କରିଛନ୍ତି । ୯୩ ।

# ଅନ୍ତ୍ୟ ପର୍ବ

ଏହି ପର୍ବରେ ଖୋର୍ଦ୍ଧାର ରାଜା ଗଜପତି ରାମଚନ୍ଦ୍ର ଦେବଙ୍କଠାରୁ ବୀରକେଶରୀ ଦେବଙ୍କ (୧୫୬୮-୧୭୯୩ ଖ୍ରୀଷ୍ଟାବ୍ଦ) ରାଜତ୍ୱ କାଳରେ ରଚିତ ଅଠତିରିଶ ଖଣ୍ଡ ସ୍ମୃତିଗ୍ରନ୍ଥ ଓ ଅଣତିରିଶ ଜଣ ସ୍ମୃତିକାରଙ୍କ ପରିଚୟ ଆଲୋଚିତ ହୋଇଛି ।

## ୬୭ । ଗଜପତି ରାମଚନ୍ଦ୍ର ଦେବ :

ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ଗଜପତି ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ (୧୫୬୮ ଖ୍ରୀଷ୍ଟାବ୍ଦ) ଭୋଇବଂଶର ପ୍ରଧାନମନ୍ତ୍ରୀ ଜନାର୍ଦ୍ଦନ ବିଦ୍ୟାଧରଙ୍କ (୧୫୩୫-୧୫୫୯ ଖ୍ରୀଷ୍ଟାବ୍ଦ) ପୁତ୍ର ଗଜପତି ରାମଚନ୍ଦ୍ର ଦେବ (୧୫୬୮-୧୬୦୭ ଖ୍ରୀଷ୍ଟାବ୍ଦ) ଖୋର୍ଦ୍ଧା ରାଜ-ସିଂହାସନରେ ଅଭିଷିକ୍ତ ହୋଇଥିଲେ । ସେ ଗୌଡ଼ ସୁଲତାନଙ୍କ ଦୁର୍ଦ୍ଧର୍ଷ ସେନାପତି କଳାପାହାଡ଼ ଦ୍ୱାରା ବିଧ୍ୱସ୍ତ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା କରିବାରୁ ତାଙ୍କୁ ଓଡ଼ିଶାର ତଥା ସମଗ୍ର ହିନ୍ଦୁ ଜନତାର ଜାତୀୟ ବୀର ରୂପେ ସମ୍ମାନ ଦିଆଯାଇଛି । ସେହି କାଳରୁ ସେ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ଭାବେ ଖ୍ୟାତି ଲାଭ କରିଛନ୍ତି ।୯୪। ଗଜପତି ରାମଚନ୍ଦ୍ର ଦେବଙ୍କ ପ୍ରଣୀତ 'ଶ୍ରୀକୃଷ୍ଣଭକ୍ତବାତ୍ସଲ୍ୟଚରିତ' ନାଟକ ଓ କବି ହଳଧର ମିଶ୍ରଙ୍କ ପ୍ରଣୀତ 'ବସନ୍ତୋତ୍ସବ ମହାକାବ୍ୟ'ର ଉଲ୍ଲେଖରୁ ଉକ୍ତ ବିଷୟର ସତ୍ୟତା ପ୍ରମାଣିତ ହୁଏ । ହିନ୍ଦୁ-ରାଜ୍ୟର ପ୍ରତିଷ୍ଠା ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ପୂଜା-ଯାତ୍ରା-ମହୋତ୍ସବାଦିର ପ୍ରଚଳନ ତଥା ମୋଗଲ ଓ ଗୋଲକୁଣ୍ଡାମାନଙ୍କ ସହିତ ବୀରତ୍ୱପୂର୍ଣ୍ଣ ଯୁଦ୍ଧ କରିଥିବାରୁ ଇତିହାସରେ ଗଜପତି ରାମଚନ୍ଦ୍ର ଦେବଙ୍କ ନାମ ଚିରସ୍ମରଣୀୟ ହୋଇ ରହିବ ।

ସେ 'ଦୁର୍ଗୋତ୍ସବ ଚନ୍ଦ୍ରିକା' ନାମକ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଜଣାଯାଏ । କିନ୍ତୁ ସେହି ଗ୍ରନ୍ଥର ଅନ୍ୟ ଏକ ପୋଥିରେ ଥିବା ପୁଷ୍ପିକାରୁ ଗଜପତି ରାମଚନ୍ଦ୍ର ଦେବଙ୍କ ଗୁରୁ ତଥା କବିଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ପୁତ୍ର ବର୍ଦ୍ଧନ ମହାପାତ୍ର ଏହାର ପ୍ରକୃତ ରଚୟିତା

---

୯୨ । A. I. O. Conf. 1946, P-295

୯୩ । ଖୁର୍ଦ୍ଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର, ପୃ-୩୮

୯୪ । ମାଦଳା ପାଞ୍ଜି—ପ୍ରାଚୀ ପ୍ରକାଶନ—ପୃ. ୬୨

ବୋଲି ପ୍ରମାଣିତ ହୁଏ ।୧୫। ରାଜଗୁରୁ ବର୍ଦ୍ଧନ ନିଜର ପାଣ୍ଡିତ୍ୟ ଦ୍ୱାରା ସୁଧୀ ସମାଜରେ ଭାରତୀଭୂଷଣ ବର୍ଦ୍ଧନ ମହାପାତ୍ର ରୂପେ ସୁବିଦିତ ଥିଲେ । ଖୁବ୍ ସମ୍ଭବତଃ ସେ ଏହି ଗ୍ରନ୍ଥଟି ଅନ୍ୟ ପଣ୍ଡିତମାନଙ୍କ ପରି ନିଜର ପୃଷ୍ଠପୋଷକଙ୍କ ନାମରେ ଉତ୍ସର୍ଗ କରିଥିଲେ ।

'ଦୁର୍ଗୋତ୍ସବ ଚନ୍ଦ୍ରିକା' ଗ୍ରନ୍ଥଟି ଓଡ଼ିଆ ଅକ୍ଷରରେ ୧୯୦୪ ମସିହାରେ କଟକ ଅରୁଣୋଦୟ ପ୍ରେସ୍‌ରୁ ଗୋବିନ୍ଦ ରଥଙ୍କ ଦ୍ୱାରା ପ୍ରକାଶିତ ହୋଇଛି । କିନ୍ତୁ ଅପ୍ରକାଶିତ ତାଳପତ୍ର ପୋଥିରେ ଗ୍ରନ୍ଥର ବିଷୟ ଚଉଦଟି ପ୍ରକାଶରେ ବିଭକ୍ତ । ଏଥିରେ ଦୁର୍ଗାପୂଜାର ବିଧି ବିଧାନ ସହିତ ଦାରୁଦେବୀ ଓ ଧାତବ ପ୍ରତିମା ବିଧି, ଦୁର୍ଗା ରଥଯାତ୍ରାଦିର ଉଲ୍ଲେଖ ରହିଛି ।

## ୨୬ । ଶ୍ରୀଧର ମିଶ୍ର :

ଶ୍ରୀଧର ମିଶ୍ର (୧୬୦୦-୧୬୩୫ ଖ୍ରୀଷ୍ଟାବ୍ଦ) ଶାଣ୍ଡିଲ୍ୟଗୋତ୍ରୀୟ ହରିହର ମିଶ୍ରଙ୍କ ପୁତ୍ର ରୂପେ ପରିଚିତ ।୧୬। ସେ 'ଆଚାର ଚନ୍ଦ୍ରାମଣି' ଓ 'ଦାନ ବାକ୍ୟାବଳୀ' ନାମରେ ଦୁଇଖଣ୍ଡ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି ।

'ନୈଷଧଚରିତ'ର ଟୀକାକାର ତଥା 'ନୀଳାଦ୍ରିନାଥ ଶତକ' ପ୍ରଣେତା କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀଧରଙ୍କୁ ହିଁ ସ୍ମୃତିକାର ଶ୍ରୀଧର ରୂପେ ଗ୍ରହଣ କରାଯାଇ-

---

୧୫ । (କ) ସକଳାଗମସାରତନ୍ତ୍ରବେତ୍ତା ସ କଳାବାନିବ ସର୍ବତୋଽନବଦ୍ୟଃ ।
ତନୁତେ ଭୁବି ରାମଚନ୍ଦ୍ରଦେବ ଶରଣାମ୍ଭୋରୁହଭକ୍ତମଗ୍ନିକାୟାଃ ॥
(ଦୁର୍ଗୋତ୍ସବ ଚନ୍ଦ୍ରିକା—ପୃ-୧)

(ଖ) ଯାବଦ୍‌ଜ୍ୟାବନ୍ଧଭୂୟଂ ବିଦଧତି ମଧୁରାଃ କାର୍ମୁକେ ଶମ୍ବରାରେଃ
ଯାବତ୍ତଦ୍‌ବୈରିକଣ୍ଠେ ସ ଭବତି ଭଗବାନ୍ ଭୂଷଣଃ ପନ୍ନଗେଶଃ ।
ଯାବତ୍ତତ୍ତଲ୍ପଶାୟୀ ବିହରତି ରମୟା ସ୍ୱୈରମାସ୍ୟାନ୍ତଗୂଢ଼-
ସ୍ତାବଚ୍ଛ୍ରୀ ରାମଚନ୍ଦ୍ରଃ କ୍ଷିତିପତିରଚିତା ନିର୍ମିତ ପ୍ରୀତିରସ୍ତାମ୍ ॥
(A. D. C. S. Vol -I, P-XXVIII)

(ଗ) ଶ୍ରୀଜୀବ କବିତଣ୍ଡିମୋ ନୃପଗୁରୁଃ ଷଡ୍‌ଦର୍ଶନୀ ଦେଶିକଃ
ତସ୍ୟାୟଂ ତନୟୋ ନୟୋତ୍ତମଧନଃ ଶ୍ରୀବର୍ଦ୍ଧନସ୍ତାଦୃଶଃ ॥
ସୋଽୟଂ ଭୂପୁରୁହୂତ ରାମନୃପତେରାଦେଶତଃ ଶୈଳଜା
ପୂଜା କର୍ମକୃତେ ସତାମଭିମତାଂ କାଞ୍ଚିତ୍ କୃତିଂ ନିର୍ମମେ ॥
(A. D. C. S. Vol.-I, P. XXVIII)

୧୬ । ଆସୀଚ୍ଛାଣ୍ଡିଲ୍ୟବଂଶ୍ୟୋ ହରିହରସୁକୃତୀ ବ୍ରହ୍ମଦେବେଷୁଧୀର-
ସ୍ତତ୍ପୁତ୍ରାନେକନଷ୍ଟୋ ହରିପଦମନିଶଂ ଚନ୍ତ୍ୟସ୍ତନ୍ମାତ୍ରରୂପମ୍ ।
ତତ୍ ପୁତ୍ରଃ ଶ୍ରୀଧରୋଽହଂ ନୃହରିପଦଯୁଗଂ ପ୍ରାର୍ଥୟେ ଯୋଗିଚିନ୍ତ୍ୟଂ
ସ୍ୱାନ୍ତଂ ଯେ ସର୍ବକାଳଂ ଭବତୁ କଲିମଲଧ୍ୱଂସିନୀ ଶ୍ରୀମୁକୁନ୍ଦେ ॥
(OSM. Mss. Dh. No. 524)

ପାରେ ।୯୭। ଶ୍ରୀଧରଙ୍କ ପିତା ହରିହର ଓ ପୁରୁଷୋତ୍ତମ ମିଶ୍ରଙ୍କ ପିତା ଆନନ୍ଦ ମିଶ୍ର ସହୋଦର ଥିବା ବିଶ୍ୱାସ କରାଯାଏ ।୯୮।

ସ୍ମୃତିକାର ଶ୍ରୀଧର ଶେଷଶାସ୍ତ୍ରୀ ବିଷ୍ଣୁଙ୍କ ବନ୍ଦନା କରି (କ) 'ଆଗ୍ନିର ଚନ୍ଦ୍ରାମଣି' ଗ୍ରନ୍ଥ ଆରମ୍ଭ କରିଛନ୍ତି । ଏଥିରେ ଆଗ୍ନିର ପ୍ରଶଂସା, କାଳ ବିଭାଗ, ଶୌଚବିଧି, ନ୍ୟାସ, ହୋମ, ମନ୍ତ୍ରପୁରଶ୍ଚରଣ, ବନଯାଗ, ଦେବପ୍ରତିମା ଓ ମନ୍ଦିର ନିର୍ମାଣ ବିଧି ପର୍ଯ୍ୟାଲୋଚିତ ହୋଇଛି । ତାଙ୍କର ଅନ୍ୟତମ ଗ୍ରନ୍ଥ (ଖ) 'ଦାନ ବାକ୍ୟାବଳୀ'ରେ ବିଭିନ୍ନ ପ୍ରକାର ଦାନର ବିଧିବିଧାନ ଉଲ୍ଲେଖ କରାଯାଇଛି ।

## ୨୮ । ହଳଧର ମିଶ୍ର :

ହଳଧର ମିଶ୍ର (୧୬୧୧-୧୬୪୭ ଖ୍ରୀଷ୍ଟାବ୍ଦ) ଭୋଇବଂଶୀୟ ଗଜପତି ନରସିଂହ ଦେବଙ୍କ ରାଜସଭାର ଜଣେ ବିଶିଷ୍ଟ କବି-ପଣ୍ଡିତ ଭାବେ ଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଶାର ପ୍ରସିଦ୍ଧ ଧର୍ମଶାସ୍ତ୍ରକାର ବାଜପେୟୀ ଦିନ୍ନକର ମିଶ୍ରଙ୍କ ପରିବାରରେ ସେ ଜନ୍ମ ହୋଇଥିଲେ । ତାଙ୍କ ପିତା ଓ ମାତାଙ୍କ ନାମ ଥିଲା ଦିନକର ଓ ପଦ୍ମାବତୀ ।୯୯। ସେ 'ବସନ୍ତୋତ୍ସବ ମହାକାବ୍ୟ,' 'ସଙ୍ଗୀତ କଳ୍ପଲତା', 'ହଳଧର ପଦ୍ଧତି' ଓ 'ହରିହର ପ୍ରକାଶ' ପ୍ରବନ୍ଧ ପ୍ରଭୃତିର ରଚୟିତା ଭାବେ ସୁବିଦିତ । ଉକ୍ତ ଗ୍ରନ୍ଥ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ 'ଗୁଣ୍ଡିଚା ଯାତ୍ରା' ବିଷୟକୁ ନେଇ ବାଇଶ ସର୍ଗରେ ବସନ୍ତୋତ୍ସବ ମହାକାବ୍ୟ ରଚିତ ହୋଇଛି । ଦ୍ୱିତୀୟ ଗ୍ରନ୍ଥ ସଙ୍ଗୀତଶାସ୍ତ୍ର ସମ୍ବନ୍ଧୀୟ । ଚତୁର୍ଥ ଗ୍ରନ୍ଥଟି ଅଦ୍ୟାବଧି ଉପଲବ୍ଧ ନୁହେଁ । ତୃତୀୟଟି ସ୍ମୃତି-ଜ୍ୟୋତିଷ ସମ୍ବନ୍ଧୀୟ ଏକ ଉପାଦେୟ ଗ୍ରନ୍ଥ ।

---

୯୭ । (କ) ଶାଣ୍ଡିଲ୍ୟାନ୍ୱୟଦୁଗ୍ଧବାରିଧି ସୁଧାଧାମାଧରୀକୃତଲା-
ଲଙ୍କାରେ ମଧୁସୂଦନବଦ୍ୟ ଗୁଣବାନ୍ନାନନ୍ଦମିଶ୍ରୋଽଭବତ୍ ।
ତତ୍ର ସୂନୋଃ ପୁରୁଷୋତ୍ତମସ୍ୟ ବିଦୁଷାମାନନ୍ଦହେତୌ କୃତୌ
ଶ୍ରୀମନ୍ନୈଷଧକାବ୍ୟଗୂଢ଼ ବିବୃତୌ ସର୍ଗୋଽୟମାଦ୍ୟୋ ଗତଃ ॥
(A. D. C. S.-Vol-II, P-63)

(ଖ) ଉଦ୍ୟଦ୍‌ବ୍ୟାକୃତିଭବ୍ୟକାବ୍ୟରଚନାଲଙ୍କାରସାଂଖ୍ୟଶ୍ରୁତି-
ସ୍ମୃତ୍ୟାନେକ-ପୁରାଣନାଟକ ତଥା କୋଷାଦି ଭାଷାବିଦଃ ।
ଧୀର ଶ୍ରୀଧରମିଶ୍ରପାଦକମଳାଦ୍ ଭ୍ରାତୁର୍ମମ ଜ୍ୟାୟସୋଽ-
ଧୀତଂ ଯତ୍ତଦିହ ବ୍ୟଲେଖି ଯଦଦଂ ଗୀତଂ ହି ତନ୍ନାମକମ୍ ॥
(A. D. C. S. Vol. II, PP-Cl. III)

୯୮ । A. D. C. of Skt. Mss. Vol-II, PP-5

୯୯ । A. D. C. S. Vol. VII, PP-206

କବି ହଳଧର 'ହଳଧର ସଂହିତା' ଗ୍ରନ୍ଥ ଆରମ୍ଭରେ ଶିବଙ୍କ ବନ୍ଦନା ଓ ସଜ୍ଜନମାନଙ୍କ ସ୍ତୁତିଗାନ କରିଛନ୍ତି ।୧୦୦। ଗ୍ରନ୍ଥଟି ଦ୍ୱାଦଶ ଅଧ୍ୟାୟରେ ବିଭକ୍ତ । ଏଥିରେ ଗ୍ରହରାଶିନକ୍ଷତ୍ର-ବାରାଦି ଶୁଦ୍ଧି, ପୁଷ୍ପବତ୍ୟାଦି ନିରୂପଣ, ଶୁଭାଶୁଭ ଯୋଗ, ଜାତକର୍ମାଦି ସଂସ୍କାର, ଗୃହାରମ୍ଭ ତଥା ଯାତ୍ରାଦି ବିଷୟର ପର୍ଯ୍ୟାଲୋଚନା କରାଯାଇଛି ।

୬୯ । ବିଶ୍ୱନାଥ ମିଶ୍ର :

ସ୍ମୃତିକାର ବିଶ୍ୱନାଥ ମିଶ୍ରଙ୍କ (୧୬୫୦ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'ସ୍ମୃତିସାର ସଂଗ୍ରହ' ଗ୍ରନ୍ଥ ଓଡ଼ିଶାରେ ସର୍ବତ୍ର ବିଶେଷ ଆଦୃତି ଲାଭ କରିଥିଲା । ଏପର୍ଯ୍ୟନ୍ତ ମିଳିଥିବା ଉକ୍ତ ଗ୍ରନ୍ଥର ବହୁ ପୋଥି ମଧ୍ୟରୁ ଗୋଟିକର ପୁଷ୍ପିକାରେ ଉଲ୍ଲେଖ ଅଛି ଯେ ଏହା ରାଜା ଗୋପୀନାଥ ଦେବଙ୍କ ତୃତୀୟ ଅଙ୍କରେ ନକଲ ହୋଇଛି । ଖୋର୍ଦ୍ଧା ରାଜା ଗୋପୀନାଥ ଦେବଙ୍କ (୧୬୫୮-୧୬୬୫ ଖ୍ରୀଷ୍ଟାବ୍ଦ) ତୃତୀୟ ଅଙ୍କ ୧୬୧୯ ଖ୍ରୀଷ୍ଟାବ୍ଦରେ ପଡ଼ିଥିଲା ।୧୦୧। ଦିବ୍ୟସିଂହ ମହାପାତ୍ରଙ୍କ 'ଶ୍ରାଦ୍ଧଦୀପ'ରେ ବିଶ୍ୱନାଥଙ୍କ ନାମ ଉଲ୍ଲିଖିତ ଅଛି । ତେଣୁ ବିଶ୍ୱନାଥ ଖ୍ରୀ ସମ୍ଭବତଃ ସପ୍ତଦଶ ଶତାବ୍ଦୀ ପ୍ରଥମାର୍ଦ୍ଧର ସ୍ମୃତିକାର ବାଜପେୟୀ ନରସିଂହଙ୍କ ସମସାମୟିକ ଥିଲେ ।୧୦୨। ବିଶ୍ୱନାଥଙ୍କ ପିତା, ମାତା ଓ ଜନ୍ମସ୍ଥାନ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ଏପର୍ଯ୍ୟନ୍ତ ମିଳି ନାହିଁ । ସ୍ମୃତିକାର ବିଶ୍ୱନାଥ ଓଡ଼ିଶାରେ ପାଳିତ ହେଉଥିବା ପ୍ରଥମାଷ୍ଟମୀ ପର୍ବର ଲୌକିକ ବିଧି ବିଷୟରେ ପ୍ରଥମ ସୂଚନା ଦେଇଛନ୍ତି ।୧୦୩। 'ସ୍ମୃତିସାର ସଂଗ୍ରହ' ଗ୍ରନ୍ଥଟି ଗୋବିନ୍ଦ

---

୧୦୦ । (କ) କଣ୍ଠୀରବ-ପଟୀକୃତ-ଗଜାଜିନା-ଧୂର୍ଜଟୀ
ଜଟାପଟଲମଣ୍ଡିତ ତ୍ରିପୁରଖଣ୍ଡନେ ପଣ୍ଡିତଃ ।
ଦୁରୁଦ୍ଭର ଭବାରୁର୍ବନୀକୃତାଦନେ ମେ ମନୋ
ବିନୋଦଭରଭୂରିଭୂଃ ସପଦି ସନ୍ନିଧତ୍ତାଂ ହୃଦି ॥
(ଖ) ଅମୂବସୁଗତ ଦୁଃଖେ ସମ୍ପ୍ରବୃତ୍ତୋଽପି ସନ୍ତଃ
ପରକୃତମପରାଧଃ ସର୍ବଦା ଯତ୍ର କ୍ଷମନ୍ତେ ।
ସ୍ୱପରରଚିତ ପଦ୍ୟୈଃ ସଂହିତାଂ କର୍ତ୍ତୁମିଚ୍ଛୋଃ
ମମତଦଖିଲମନ୍ତୁଂ କ୍ଷନ୍ତୁକାମା ଭବନ୍ତୁ ॥ (ହଳଧର ସଂହିତା)

୧୦୧ । ଗୋପୀନାଥନୃପସ୍ୟାଙ୍କେ ତୃତୀୟେ ମାର୍ଗିକାର୍ତ୍ତିକେ ।
ବାସରେଽର୍କେ ଭଗବତା ଲିଖିତଃ ସ୍ମୃତି-ସଂଗ୍ରହ ॥
(OSM, Mss. Dh. No. 1C8)

୧୦୨ । A. D. C. S. Vol.-I, PP-XXX.

୧୦୩ । ଅଥ ପ୍ରଥମାଷ୍ଟମୀ ଅନେକ୍ଳଲେଷୁ ଅଧୁନା ପୂଜାବନ୍ଦାପନାଦିକଂ କୁର୍ବନ୍ତି ।
ଦେଶାନ୍ତରେ ନାସ୍ତି ତଥାର୍ଥବଚନମପି ନାସ୍ତି ॥
(ସ୍ମୃତିସାର ସଂଗ୍ରହ-୧୯୧୫ ସଂସ୍କରଣ, ପୃ-୭୬)

ରଥଙ୍କ ଦ୍ୱାରା ଉତ୍କଳାକ୍ଷରରେ ୧୯୧୫ ମସିହାରେ କଟକର ଦତ୍ତ ପ୍ରେସ୍‌ରେ ମୁଦ୍ରିତ ହୋଇଛି । ଓଡ଼ିଶାର ସବୁ ଅଞ୍ଚଳରେ ଏହାର ବହୁସଂଖ୍ୟକ ପୋଥି ମିଳୁଥିବାରୁ ଗ୍ରନ୍ଥଟି ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବାର ଜଣାଯାଏ । ବିଶ୍ୱନାଥ ମନ୍ୱାଦି ସ୍ମୃତିଶାସ୍ତ୍ର ଅନୁଶୀଳନପୂର୍ବକ କାଳ, ଆଚାର ଓ ଶ୍ରାଦ୍ଧ ବିଷୟକୁ ନେଇ ଦୁଇହଜାର ଦୁଇଶହ ପରିମିତ ଶ୍ଳୋକବିଶିଷ୍ଟ ଏହି ଗ୍ରନ୍ଥ ରଚନା କରିଛନ୍ତି ।୧୦୪।

**୩୦ । ବିପ୍ର ମିଶ୍ର :**

ବିପ୍ର ମିଶ୍ର (୧୬୫୦ ଖ୍ରୀଷ୍ଟାବ୍ଦ) 'ଶ୍ରାଦ୍ଧ ପ୍ରଦୀପ' ନାମରେ ସ୍ମୃତିଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ସେ ଏହି ଗ୍ରନ୍ଥ ଆରମ୍ଭରେ ତାଙ୍କର ପୂର୍ବବର୍ତ୍ତୀ ସ୍ମୃତିକାରମାନଙ୍କ ମଧ୍ୟରେ ସ୍ୱୀୟ ଗୁରୁ ନରସିଂହ ମିଶ୍ରଙ୍କୁ ବନ୍ଦନା କରିଛନ୍ତି । ସେହି ନରସିଂହଙ୍କୁ ଆଲୋଚକମାନେ ପ୍ରସିଦ୍ଧ ସ୍ମୃତିକାର ବାଜପେୟୀ ନରସିଂହ ମିଶ୍ର ବୋଲି ମତ ପ୍ରକାଶ କରନ୍ତି ।୧୦୫। ଶ୍ରାଦ୍ଧଦୀପରେ ନାମୋଲ୍ଲେଖ ଥିବାରୁ ବିପ୍ର ମିଶ୍ର ଦିବ୍ୟସିଂହ ମହାପାତ୍ରଙ୍କ ପୂର୍ବବର୍ତ୍ତୀ ଥିଲେ । ଶ୍ରାଦ୍ଧ ପ୍ରଦୀପ ଗ୍ରନ୍ଥଟି ଅଦ୍ୟାପି ଲୋକଲୋଚନକୁ ଆସିନାହିଁ ।

**୩୧ । ଦିବ୍ୟସିଂହ ମହାପାତ୍ର :**

ସ୍ମୃତିକାର ଦିବ୍ୟସିଂହ ମହାପାତ୍ର (୧୬୫୦-୧୬୮୦ ଖ୍ରୀଷ୍ଟାବ୍ଦ) ବତ୍ସଗୋତ୍ରୀୟ ବ୍ରାହ୍ମଣ-ପରିବାରରେ ଜନ୍ମଗ୍ରହଣ କରିଥିଲେ । ଗ୍ରନ୍ଥର ମଙ୍ଗଳାଚରଣରେ କୃଷ୍ଣ ଓ ଭବାନୀଶଙ୍କରଙ୍କର ବନ୍ଦନା କରିଥିବାରୁ ସେ ଭୁବନେଶ୍ୱରର ଅଧିବାସୀ ବା ଭୁବନେଶ୍ୱର ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ ଥିବାର ବିଶ୍ୱାସ କରାଯାଏ । ଦିବ୍ୟସିଂହଙ୍କ ଗ୍ରନ୍ଥ ମଧ୍ୟରେ ଶ୍ରାଦ୍ଧଦୀପ, କାଳଦୀପ ଓ ଦିବ୍ୟସିଂହ-କାରିକାର ନାମ ଉଲ୍ଲେଖଯୋଗ୍ୟ ।୧୦୬। ସେ ସ୍ମୃତିକାର ଗଦାଧର ରାଜଗୁରୁଙ୍କ

---

୧୦୪ । (କ) ମନ୍ୱାଦି ଶାସ୍ତ୍ରାଣି ଗୁରୋରଧୀତା ସମ୍ୟକ୍ ତଥାଭ୍ୟସ୍ୟ ଚିରଂ ଯଥାର୍ଥମ୍ ।
ଦୃଷ୍ଟ୍ୱା ଚ ଶିଷ୍ୟାଚରଣଂ ଚକାର ଶ୍ରୀବିଶ୍ୱନାଥଃ ସ୍ମୃତିସାର-ସଂଗ୍ରହମ୍ ॥
(OSM Mss. Dh. No. 287)

(ଖ) ଶ୍ଳୋକାନାଂ ତୁ ସହସ୍ରେ ଦ୍ୱେ ଦ୍ୱେ ଶତେ ଦ୍ୱେ ଚ ବିଂଶତିଃ ।
ତତୋ ଦଶ ପୁନଃ ଶ୍ଳୋକାଃ ଗ୍ରନ୍ଥସଂଖ୍ୟା ପ୍ରକୀର୍ତ୍ତିତାଃ ॥
(OSM. Mss. Dh. No. 108)

୧୦୫ । ଚତୁରଙ୍ଗ—୨ୟ ଭାଗ, ସଂଖ୍ୟା-୫, ୧୯୪୭, ପୃ-୨୨୩ ।

୧୦୬ । (କ) ବତ୍ସଗୋତ୍ରେ ସମୁତ୍ପନ୍ନୋ ଦିବ୍ୟସିଂହାଭିଧଃ ସୁଧୀଃ ।
ଶ୍ରାଦ୍ଧଦୀପାଭିଧଂ ଗ୍ରନ୍ଥଂ ଚକାର ବିଦୁଷାଂ ମୁଦେ ॥
(ଖ) ବତ୍ସଗୋତ୍ରେ-କାଳଦୀପାଭିଧଂ ଗ୍ରନ୍ଥଂ ଚକାର କୃତିନା ମୁଦେ ॥
(OSM. Mss. Dh. No. 41 a & b)

ପୂର୍ବବର୍ତ୍ତୀ ଥିଲେ ବୋଲି 'କାଳସାର' ଓ 'ଆଗ୍ରସାର' ଗ୍ରନ୍ଥରୁ ଜଣାଯାଏ । ଶ୍ରାଦ୍ଧଦୀପ ଗ୍ରନ୍ଥରେ ନରସିଂହ ବାଜପେୟୀ, ବପ୍ର ମିଶ୍ର, ବିଶ୍ୱନାଥ ମିଶ୍ର ପ୍ରଭୃତିଙ୍କ ଉଦ୍ଧୃତ ଉଲ୍ଲେଖ ଥିବାର ଦେଖାଯାଏ ।

ଶ୍ରୀକୃଷ୍ଣ ଓ ଭବାନୀଶଙ୍କରଙ୍କୁ ବନ୍ଦନାକରି ସ୍ମୃତିକାର ଦିବ୍ୟସିଂହ (କ) 'କାଳଦୀପ' ଗ୍ରନ୍ଥର ଶୁଭାରମ୍ଭ କରିଛନ୍ତି ।୧୦୭। ଏଥିରେ ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ' ଓ ମୁରାରି ମିଶ୍ରଙ୍କ 'ସ୍ମୃତିଚନ୍ଦ୍ରିକା' ଗ୍ରନ୍ଥଦ୍ୱୟ ବର୍ଣ୍ଣିତ ବିଷୟ ବ୍ୟତୀତ ତିଥି ଓ କାଳ ନିରୂପଣ, ଓଡ଼ିଶାରେ ପାଳିତ ହେଉଥିବା ଯମଦ୍ୱିତୀୟା, ଦୁର୍ଗାପୂଜା, ଦୂର୍ବାଷ୍ଟମୀ ବ୍ରତାଦିର ଆଲୋଚନା କରାଯାଇଛି ।

(ଖ) 'ଶ୍ରାଦ୍ଧଦୀପ' ଗ୍ରନ୍ଥଟି ପଣ୍ଡିତ ଯାଦବେନ୍ଦ୍ରନାଥ ରାୟଙ୍କ ଦ୍ୱାରା 'ପ୍ରଭାଟୀକା'ଯୁକ୍ତ ଓ ସମ୍ପାଦିତ ହୋଇ ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ୧୯୭୭ରେ ପ୍ରକାଶ ଲାଭ କରିଛି । ଏଥିରେ 'କାଳଦୀପ' ଅନୁରୂପ ଉପକ୍ରମଣିକା ପରେ ଶ୍ରାଦ୍ଧ, ଅନୁଗମନ କ୍ରିୟାକର୍ମ୍ମ ଓ ଶୁଦ୍ଧିବିଷୟର ଅଷ୍ଟକାଦି ଶ୍ରାଦ୍ଧ, ଦୀପଦାନ, ସାମ୍ବତ୍ସରିକ ଶ୍ରାଦ୍ଧ ପ୍ରଭୃତି ବିଷୟ ଆଲୋଚିତ ହୋଇଛି । ତାଙ୍କ ପ୍ରଣୀତ ତୃତୀୟ ଗ୍ରନ୍ଥ (ଗ) 'ଦିବ୍ୟସିଂହ-କାରିକା'ରେ ସ୍ମୃତିକାର ଦିବ୍ୟସିଂହ ବିଭିନ୍ନ ସ୍ମୃତି-ବାକ୍ୟାବଳୀ ଉଦ୍ଧାରପୂର୍ବକ ନିତ୍ୟାଚାର, ସଂସ୍କାର, ଶୁଦ୍ଧି, ଶ୍ରାଦ୍ଧାଦି ବିଷୟର ସଙ୍କଳନ କରିଛନ୍ତି ।୧୦୮।

### ୩୨ । ନାରାୟଣ ମଙ୍ଗରାଜ :

ସ୍ମୃତିକାର ନାରାୟଣ ମଙ୍ଗରାଜ (୧୬୫୦ ଖ୍ରୀଷ୍ଟାବ୍ଦ) ଥିଲେ ଖଣ୍ଡପଡ଼ାର ରାଜା । ସେ ଭାଗବତଭକ୍ତିମୂଳକ 'ହରିଭକ୍ତି-ସୁଧାକର' ଶୀର୍ଷକ ଗ୍ରନ୍ଥ ଶକାବ୍ଦ ୧୬୨୦ ବା ୧୬୮

---

(ଗ) ସ୍ୱେନୈବକୃତେ କାଳଦୀପ ଶ୍ରାଦ୍ଧଦୀପାଖ୍ୟେ ସ୍ମୃତିସଂଗ୍ରହେ
ଯାନ ବାହୁଲ୍ୟା ଦୁକ୍ତାନି କର୍ତ୍ତବ୍ୟକର୍ମୋପଧାୟକାନି ବଚନାନି
ଇହ ତୁ ସଂକ୍ଷେପେଣ ବର୍ଣ୍ଣନମ୍ ॥ (ଦିବ୍ୟସିଂହ-କାରିକା)
(A. D. C. S. Vol -I, PP. XXXI)

୧୦୭ । ପ୍ରଣମ୍ୟ ଦେବଂ ଶ୍ରୀକୃଷ୍ଣଂ ଭବାନୀଶଙ୍କରମପି ।
ତନ୍ୟତେ କାଳଦୀପୋଽୟଂ ଦିବ୍ୟସିଂହେନ ଧୀମତା ॥
(OSM.. Mss. Dh. No. 129)

୧୦୮ । ବିଦ୍ୟାନୁଗ୍ରହସମ୍ପୂର୍ଣ୍ଣୋ ଦିବ୍ୟସିଂହାଭିଧଃ ସୁଧୀଃ ।
ଏକତ୍ର ସ୍ମୃତିବାକ୍ୟାନି ସ୍ତୋପସ୍ଥିତେ ଲିଖାମ୍ୟହମ୍ ॥ (ଦିବ୍ୟସିଂହ-କାରିକା)

ଖ୍ରୀଷ୍ଟାବ୍ଦରେ ରଚନା ଶେଷ କରିଥିବାର ଜଣାଯାଏ ।୧୦୯। ସେହି ଖଣ୍ଡପଡ଼ା ରାଜବଂଶର ଊନବିଂଶ ଶତକର ରାଜକବି ନଟବର ସ୍ୱନାମାଙ୍କିତ 'କୃଷ୍ଣକଳ୍ପଲତା' ନାମକ କୃଷ୍ଣଭକ୍ତି-ସମ୍ବନ୍ଧୀୟ ଓଡ଼ିଆ କାବ୍ୟରେ ଆଲୋଚ୍ୟ ନାରାୟଣ ମଙ୍ଗରାଜ ଜଣେ ବରିଷ୍ଠ ସ୍ମୃତିଜ୍ଞ, କବି, କୋବିଦ-ପୃଷ୍ଠପୋଷକ ଓ ସଙ୍ଗୀତଜ୍ଞ ଥିଲେ ବୋଲି ଉଲ୍ଲେଖ କରିଛନ୍ତି ।୧୧୦। 'ସଙ୍ଗୀତ ନାରାୟଣ' କବି ନାରାୟଣଙ୍କ ପ୍ରଣୀତ ଅନ୍ୟତମ ଗ୍ରନ୍ଥ । ଏହି ଗ୍ରନ୍ଥଟି ଅଦ୍ୟାବଧି ଉପଲବ୍ଧ ନୁହେଁ । 'ହରିଭକ୍ତି-ସୁଧାକର' ଗ୍ରନ୍ଥଟି ଷୋଡ଼ଶ କଳାରେ ବିଭକ୍ତ । ଏଥିରେ ପୁରାଣାଦି ପ୍ରଶଂସା, ବିରାଗାଦିବୋଧିନୀ, ସତ୍ସଙ୍ଗ ଫଳ, ବୃଷୋତ୍ସର୍ଗ, ଶ୍ରବଣ, କୀର୍ତ୍ତିନାଦି ଭକ୍ତିପ୍ରସଙ୍ଗ ପର୍ଯ୍ୟାଲୋଚିତ ହୋଇଅଛି ।

## ୩୩ । ମାଗୁଣି ମିଶ୍ର :

ପଣ୍ଡିତାଗ୍ରଣୀ ମାଗୁଣି ମିଶ୍ର (୧୬୭୫-୧୭୫୦ ଖ୍ରୀଷ୍ଟାବ୍ଦ) ଶୈବଦର୍ଶନ ଓ ପ୍ରତିଷ୍ଠାପଦ୍ଧତି ବିଷୟରେ ଜଣେ ଉଲ୍ଲେଖଯୋଗ୍ୟ ସ୍ମୃତିକାର ଭାବେ ପରିଚିତ । ତାଙ୍କ ପ୍ରଣୀତ ଗ୍ରନ୍ଥ ମଧ୍ୟରେ (କ) ଶୈବ ପଦ୍ଧତି, (ଖ) ପ୍ରତିଷ୍ଠା ପଦ୍ଧତି, ପ୍ରତିଷ୍ଠାସାର ଓ ପ୍ରତିଷ୍ଠା-ପଞ୍ଜିକର ନାମ ଉଲ୍ଲେଖ-ଯୋଗ୍ୟ ।୧୧୧। 'ଜଳାଶୟ ପ୍ରତିଷ୍ଠା' ତାଙ୍କର ଅନ୍ୟତମ ରଚନା ବୋଲି ବିଶ୍ୱାସ କରାଯାଏ । ପୁରୀ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ 'ପ୍ରତିଷ୍ଠା ପଦ୍ଧତି'ର ବହୁଳ ପ୍ରଚଳନ ଥିବାର ଜଣାଯାଏ ।

## ୩୪ । ଲକ୍ଷ୍ମୀଧର ମିଶ୍ର :

ଲକ୍ଷ୍ମୀଧର ମିଶ୍ର (୧୬୭୫ ଖ୍ରୀଷ୍ଟାବ୍ଦ) ଏକାମ୍ରକବାସୀ କୌଶିକଗୋତ୍ରୀୟ ପ୍ରଦ୍ୟୁମ୍ନ ମିଶ୍ରଙ୍କ ପୌତ୍ର ଓ ରାମକୃଷ୍ଣଙ୍କ ପୁତ୍ର ବୋଲି ଶୈବଧର୍ମ ସମ୍ବନ୍ଧୀୟ 'ଶୈବ କଳ୍ପଦ୍ରୁମ' ଗ୍ରନ୍ଥ-ପୁଷ୍ପିକାରୁ

---

୧୦୯ । (କ) ଇହର୍ଷିଭୌ ସର୍ବଗୁଣୈରୁପେତଃ ସଙ୍ଗୀତବିଦ୍ ଭୂରିଯଶା ସୁଗାଢ଼ଃ ।
ଯୋଽଗଂସି ବିଦ୍ୟାର୍ଣ୍ଣବ କର୍ଣ୍ଣଧାରଃ ବିଭାତି ନାରାୟଣ ମଙ୍ଗରାଜଃ ॥

(ଖ) ମହାନଦୀ ଦକ୍ଷିଣ ଭୂପ୍ରଦେଶେ ଦେଶେ ତଦୀୟେ ବି ସହାଣକାଢେ ।
ଗତେ ନଭଶ୍ଚନ୍ଦ୍ରରସେନ୍ଦୁସଙ୍ଖ୍ୟେ ବିନିର୍ମିତୋ ଭକ୍ତିସୁଧାକରୋଽୟମ୍ ॥
(Sns. No. 43, P-5-6)

୧୧୦ । କୃଷ୍ଣକଳ୍ପଲତା—OSM. Mss. O. L. No. 968

୧୧୧ । (କ) ଶିବାଂଘ୍ରିସ୍ମୃତିସଂଶୁଦ୍ଧି ଚେତସା ଗୁରୁସେବନା
କୃତନେୟଂ ମାଗୁଣିନା ଲିଖିତୋ ଶୈବପଦ୍ଧତିଃ ॥
(OSM. Mss. Dh. No. 78)

(ଖ) ପ୍ରତିଷ୍ଠା ପଦ୍ଧତି—OSM. Mss. Dh. No. 57.

ଜଣାଯାଏ ।୧୧୨। ପ୍ରଦ୍ୟୁମ୍ନ ମିଶ୍ର ଭୋଇବଂଶୀୟ ରାଜା ନରସିଂହ ଦେବଙ୍କ (୧୬୨୨- ୧୬୪୭ ଖ୍ରୀଷ୍ଟାବ୍ଦ) ସମସାମୟିକ ଥିଲେ । ତେଣୁ ଲକ୍ଷ୍ମୀଧରଙ୍କୁ ସପ୍ତଦଶ ଶତାବ୍ଦୀର ଶେଷପାଦର ସ୍ମୃତିକାର ବୋଲି ଆପାତତଃ ସ୍ଥିର କରଯାଇପାରେ । ତାଙ୍କ ପ୍ରଣୀତ ଶୈବଦର୍ଶନବିଷୟକ 'ଶୈବ ଚନ୍ଦ୍ରାମଣି' ଅନ୍ୟତମ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ।୧୧୩।

ସ୍ମୃତିକାର ଲକ୍ଷ୍ମୀଧର (କ) 'ଶୈବଚନ୍ଦ୍ରାମଣି' ଗ୍ରନ୍ଥ ଆରମ୍ଭରେ ଶିବବନ୍ଦନା ଶେଷରେ ଏହାକୁ ଶିବଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି । ଶିବୋପାସନା ଓ ଶୈବ ମତବାଦ ଉପରେ ଆଧାରିତ ଏହି ଗ୍ରନ୍ଥଟି ଆଠଟି ପଟଳରେ ବିଭକ୍ତ ।୧୧୪। ତାଙ୍କ ପ୍ରଣୀତ ଦ୍ୱିତୀୟ ଗ୍ରନ୍ଥ (ଖ)

---

୧୧୨ । (କ) ଏକାମ୍ରେ ଭୁବନେଶ୍ୱରପ୍ରିୟକରେ ଚକ୍ରେଽଧ୍ୱରାଂ ଯଃ ପୁର
ଶାଳାଦ୍ୱାସ୍ଥ ମୁକୁନ୍ଦବାରଣପଠଂ କୌସ୍ତ୍ରାନ୍ୟସ୍ୟାବ୍‌ଧୀନ୍ଦୁତଃ ।
ପ୍ରଦ୍ୟୁମ୍ନାହ୍ୱୟ ଏଷ ଶଙ୍କରତନୁଃ ସାକ୍ଷାଦଧପ୍ରାଗହାତ୍
ପାଦୌ ଯସ୍ୟ ବିଲୋକ୍ୟ ଖଲନୟନଃ ଶ୍ରୀମନ୍ନୃସିଂହୋନୃପଃ ।।
(OSM. Mss. Dh. No. 33)

(ଖ) ତତ୍ପୁତ୍ରୋ ମଧୁସୂଦନାଗଜ ଉଦଗ୍ରୋଜାଽଗ୍ନିହୋତ୍ରୀ ଶିବ-
ଧ୍ୟାନାନନ୍ଦ ବିକାଶିହୃତ୍ ସରସିଜଃ ଶ୍ରୀରାମକୃଷ୍ଣାଭିଧଃ ।
ତସ୍ୟାଭୂତ୍ତନୟୋଽମ୍ବିକା ପତିର୍ମତି ଲକ୍ଷ୍ମୀଧରୋ ମନ୍ଦଧୀ-
ସ୍ତେନାୟଂ ରଚିତଂ ସତାଂ ସୁଖକରଃ ଶ୍ରୀଶୈବକଲ୍ପଦ୍ରୁମଃ ।।
(OSM. Mss. Dh. No. 33)

୧୧୩ । ବ୍ରହ୍ମାବନୀଜଠରକାନ୍ତଧରଃ ଷକାରୋ ମୀନେଶ୍ୱରୋଽଗ୍ନିରଥନେନ୍ଦ୍ରଯୁତା ଚ ବନ୍ଦ୍ୟା ।
ଭୂମ୍ୟାଦିକୋଜ୍ଜ୍ୱଳନ ଝିଣ୍ଟିଯୁତୋଽଥ ଶାନ୍ତୋ ନାମାନ୍ତ କର୍ତ୍ତୃରୁଦିତଂ
ଭବଦୁଃଖିତସ୍ୟ ।। ୮୩ ।। (OSM. Mss, Dh. No. 413)

୧୧୪ । (କ) ପ୍ରଣମ୍ୟାଦୌ ମହାଦେବଂ ଦ୍ରମବଦ୍ଧନୟାପଠମ୍ ।
ଶୈବଚନ୍ଦ୍ରାମଣି ଗ୍ରନ୍ଥୋ ବକ୍ଷ୍ୟତେ ମୁକ୍ତୟେ ନୃଣାମ୍ ।।
(OSM. Mss. Dh. No. 37)

(ଖ) କୃତ୍ୱୈବଂ ଶିବଶାସ୍ତ୍ରସଂଶୟମିଦଂ ଶ୍ରୀଶୈବଚନ୍ଦ୍ରାମଣିଂ
ଶମ୍ଭୋଃ ପାଦସରୋରୁହେଽମ୍ବୁଜଭବାଦ୍ୟୈଃ ସେବିତେ ହ୍ୟର୍ପିତଃ ।
ଶାନ୍ତା ମେ ଶିବଭକ୍ତିରେବ ହୃଦୟେ ପୂର୍ଣ୍ଣା ସଦା ନିଶ୍ଚଳା ।
ଯାଂ କୃତ୍ୱାମରସିଦ୍ଧିମାନବପରାଃ ପ୍ରାପୁଃ ପଦଂଶାଙ୍କରମ୍ ।।
(OSM. Mss. Dh. No. 37)

(ଗ) ପଟଳୈରଷ୍ଟଭିମସ୍ତିଭିରେତଂ ନିଗମମାଗମାଗଣସମ୍ମତଂ ଯଃ ।
ସୁଜନୋ ହୃଦୟେ କଲ ଧତ୍ତେ ଶିବଗେହକରଂ ସ ପାତୁତେ ।।
(OSM. Mss. Dh. No. 413)

'ଶୈବ କଳ୍ପଦ୍ରୁମ'ର ଆରମ୍ଭରେ ସେ ଗଣେଶଙ୍କୁ ବନ୍ଦନା କରି ଶ୍ରୁତି-ସ୍ମୃତି ପୁରାଣାଦିର ବାକ୍ୟାବଳୀ ଆଧାରରେ ଆଠଟି କାଣ୍ଡରେ ବିଭକ୍ତ ଏହି ଗ୍ରନ୍ଥଟି ରଚନା କରିଥିବାର ଉଲ୍ଲେଖ କରିଛନ୍ତି । ଉକ୍ତ ଗ୍ରନ୍ଥରେ ଶୈବମାନଙ୍କ ଆଚାର, ବିଚାର, ଦୀକ୍ଷା, ବୈଦିକ ଓ ତାନ୍ତ୍ରିକ ଉପାସନା ମାର୍ଗ, ଶିବାୟତନ ନିର୍ମାଣ, ଲିଙ୍ଗପ୍ରତିଷ୍ଠା, ଏକାମ୍ରକ୍ଷେତ୍ର ମାହାତ୍ମ୍ୟର ଆଲୋଚନା କରାଯାଇଛି ।୧୧୫।

### ୩୪ । ବିଶ୍ୱମ୍ଭର ବିଦ୍ୟାଭୂଷଣ :

ବିଶ୍ୱମ୍ଭର ମିଶ୍ର ବିଦ୍ୟାଭୂଷଣ (୧୭୦୦ ଖ୍ରୀଷ୍ଟାବ୍ଦ) 'ସ୍ମୃତିଦୀପିକା' ନାମରେ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ ।୧୧୬। ସେ ସ୍ମୃତିକାର ଦିବ୍ୟସିଂହ ମହାପାତ୍ରଙ୍କ ପରବର୍ତ୍ତୀ ହୋଇଥିବାରୁ ତାଙ୍କର ସମୟ ଅଷ୍ଟାଦଶ ଶତକର ପ୍ରଥମାର୍ଦ୍ଧରେ ସ୍ଥିର କରାଯାଇପାରେ ।୧୧୭। 'ସ୍ମୃତିଦୀପିକା' ଗ୍ରନ୍ଥଟି ଦଶ ପ୍ରକାଶରେ ରଚିତ ହୋଇଥିବାର ସୂଚନା ମିଳେ ।୧୧୮। କିନ୍ତୁ ଗ୍ରନ୍ଥଟି ଅଦ୍ୟାବଧି ଲେଖକଲୋଚନକୁ ଆସିନାହିଁ । 'ପ୍ରତିଷ୍ଠା କର୍ମପଦ୍ଧତି' ଓ 'ଶୁଦ୍ଧି ପ୍ରକାଶ' ବିଶ୍ୱମ୍ଭରଙ୍କ ପ୍ରଣୀତ ଅନ୍ୟ ଦୁଇଟି ସ୍ମୃତିଗ୍ରନ୍ଥ । 'ପ୍ରତିଷ୍ଠା କର୍ମପଦ୍ଧତି' ଗ୍ରନ୍ଥ-ପୁଷ୍ପିକାରୁ ଏହା ୧୮୦୮ ଶକାବ୍ଦ ବା ୧୮୮୬ ଖ୍ରୀଷ୍ଟାବ୍ଦରେ ନକଲ ହୋଇଥିବାର ଜଣାଯାଏ ।୧୧୯।

---

୧୧୫ । (କ) ଏକଦନ୍ତମୁମାପୁତ୍ରଂ ଗଜବକ୍ତ୍ରଂ ତ୍ରିଲୋଚନମ୍ ।
ଚନ୍ଦ୍ରାର୍ଦ୍ଧଧାରିଣଂ ବନ୍ଦେ ସର୍ବବିଘ୍ନୋପଶାନ୍ତୟେ ॥
(OSM. Mss. Dh. No. 33)

(ଖ) ଶ୍ରୁତି ସ୍ମୃତି ପୁରାଣାନାଂ ଭାରତାଗମଧର୍ମିଣାମ୍ ।
ଭୂମ୍ନାଞ୍ଚ ବାକ୍ୟବୀଜାତ ଶୈବକଳ୍ପଦ୍ରୁମୋଦୟଃ ॥
(OSM. Mss. Dh. No. 33)

୧୧୬ । JASB. Vol. LXVI, 1897—P. 345.

୧୧୭ । ମନ୍ୱାଦିଶାସ୍ତ୍ରନିଚୟଂ ସ୍ୱଗୁରୋରଧୀତ୍ୟ ହେମାଦ୍ରିମାଧବମତାନି ବିମୃଶ୍ୟ ଯତ୍ନାତ୍ ।
ଶ୍ରୀବାଜପେୟୀ-କମଳାକର-ଦିବ୍ୟସିଂହ-ସ୍ମାର୍ତ୍ତାଦିତନ୍ତ୍ରମନୁସୃତ୍ୟ କରୋମି କିଞ୍ଚିତ୍ ॥
(A. D. C. S. Vol-1. PP. XXXVIII)

୧୧୮ । (କ) ସନ୍ତି ଯଦ୍ୟପି ଧୀରାଣାଂ ସ୍ମୃତିଗ୍ରନ୍ଥାସ୍ତୁ କୋଟିଶଃ ।
ତଥାପି ସାରମାକୃଷ୍ୟ କ୍ରିୟତେ ନୂତନୋଦ୍ୟମଃ ॥

(ଖ) ପ୍ରକାଶୈର୍ଦଶଭିର୍ନୂନଂ ସର୍ବଦିକ୍ ସୁପ୍ରକାଶକୈଃ ।
ବିଶ୍ୱମ୍ଭରେଣ ସୁଧିୟା କ୍ରିୟତେ ସ୍ମୃତିଦୀପିକା ॥
(JASB. Vol-LXVI-1897-P. 345)

୧୧୯ । ବୈଶାଖମାସେ କୃଷ୍ଣପକ୍ଷେ ଚତୁର୍ଦ୍ଦଶ୍ୟାଂ ଶନିବାସରେ ଅଷ୍ଟାଧିକାଷ୍ଟାଦଶାବ୍ଦେ ଶ୍ରୀଗୋପୀନାଥ-ଦେବସ୍ୟାତ୍ମଜମାର୍କଣ୍ଡନାମ୍ନା ଦ୍ୱିଜେନ ଲିଖିତମିଦମ୍ ॥

(କ) 'ପ୍ରତିଷ୍ଠା କର୍ମପଦ୍ଧତି' ଗ୍ରନ୍ଥଟି ରାଜ୍ୟ ସଂଗ୍ରହାଳୟର ଗ୍ରନ୍ଥ-ତାଲିକାରେ 'କର୍ମାଙ୍ଗ କାଣ୍ଡକାବଳୀ' ନାମରେ ସୂଚିତ । ଏହି ଗ୍ରନ୍ଥ ଆରମ୍ଭରେ ସ୍ମୃତିକାର ବିଶ୍ୱମ୍ଭର ପରମେଶ୍ୱରଙ୍କୁ ବନ୍ଦନାପୂର୍ବକ ପ୍ରାଣାୟାମ, ନ୍ୟାସ, ଦେବପୂଜା, ଶୈବାଗ୍ନି, ବୈଷ୍ଣବାଗ୍ନି-ସଂସ୍କାର ପ୍ରସଙ୍ଗର ପର୍ଯ୍ୟାଲୋଚନା କରିଛନ୍ତି ।୧୨୦। ତାଙ୍କ ପ୍ରଣୀତ ଦ୍ୱିତୀୟ ଗ୍ରନ୍ଥ (ଖ) 'ଶୁଦ୍ଧି ପ୍ରକାଶ' ଆରମ୍ଭରେ ବିଶ୍ୱମ୍ଭର ଲକ୍ଷ୍ମୀଶଙ୍କୁ ବନ୍ଦନା କରିଛନ୍ତି । ଏହି ଗ୍ରନ୍ଥର ଏକଶତ ବୟାଅଶୀ ଶ୍ଳୋକ ମଧ୍ୟରେ ବିଭିନ୍ନ ପ୍ରକାର ଅଶୌଚ ଓ ଶୁଦ୍ଧି ବିଷୟ ଆଲୋଚିତ ହୋଇଛି । ୧୨୧।

**୩୭ । ରାଜଗୁରୁ ଗଦାଧର ମହାପାତ୍ର :**

ଓଡ଼ିଶାର ସ୍ମୃତିକାରମାନଙ୍କ ମଧ୍ୟରେ ରାଜଗୁରୁ ଗଦାଧରଙ୍କ (୧୭୦୦-୧୭୫୦ ଖ୍ରୀଷ୍ଟାବ୍ଦ) ନାମ ଅବିସ୍ମରଣୀୟ । ତାଙ୍କ ପିତାମହ କୌଶିକଗୋତ୍ରୀୟ ବୃହସ୍ପତି ଶ୍ରୀକୃଷ୍ଣ ମହାପାତ୍ର 'ନୀତି ରତ୍ନାକର' ନାମରେ ଖଣ୍ଡିଏ ସ୍ମୃତିଗ୍ରନ୍ଥ ରଚନା କରିଥିଲେ । ଶ୍ରୀକୃଷ୍ଣଙ୍କର ହଳଧର, ନୀଳାମ୍ବର ଓ ଯମେଶ୍ୱର ନାମରେ ତିନି ପୁତ୍ର ଥିଲେ । ତନ୍ମଧ୍ୟରେ ହଳଧର ରାଜା ହରେକୃଷ୍ଣ ଦେବଙ୍କ (୧୭୧୫-୧୭୧୮ ଖ୍ରୀଷ୍ଟାବ୍ଦ) ଗୁରୁ ରୂପେ ପରିଚିତ । ନୀଳାମ୍ବର ବେଦାନ୍ତ-ସ୍ମୃତି-ଜ୍ୟୋତିଷ-ସାହିତ୍ୟ-ବ୍ୟାକରଣ-ନୀତିଶାସ୍ତ୍ରରେ ପ୍ରବୀଣ ପଣ୍ଡିତ ଥିଲେ । ସେ ମଧ୍ୟ ଅଳ୍ପ କେତେ ଦିନ ରାଜଗୁରୁ ପଦରେ ଅଧିଷ୍ଠିତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ସ୍ନାନୋତ୍ସବ ଉପଲକ୍ଷେ ନୀଳାମ୍ବର 'ସ୍ନାନୋତ୍ସବସ୍ତୋତ୍ର' ରଚନା କରିଥିବାର ଜଣାଯାଏ । ଶ୍ରୀକୃଷ୍ଣଙ୍କ ଅନ୍ୟତମ ପୁତ୍ର ଯମେଶ୍ୱର ମଧ୍ୟ ଜଣେ ବିଶିଷ୍ଟ ପଣ୍ଡିତ ଥିଲେ ।୧୨୨।

ଗଦାଧର ଥିଲେ ନୀଳାମ୍ବର ଓ ଜାନକୀଙ୍କ ଯଶସ୍ୱୀ ପୁତ୍ର ।୧୨୩। ସେ 'ଅଷ୍ଟାଦଶ ସାର' ଗ୍ରନ୍ଥର ପ୍ରଣେତାଭାବେ ସୁବିଦିତ । ଧର୍ମଶାସ୍ତ୍ରର ଅଷ୍ଟାଦଶ ତତ୍ତ୍ୱକୁ ନେଇ ରଚିତ ଅଷ୍ଟାଦଶ ସାର

---

୧୨୦ । ପ୍ରଣମ୍ୟ ପରମେଶାନଂ ଦ୍ୱିଜାନାଂ ହିତକାମ୍ୟୟା ।
ବିଶ୍ୱମ୍ଭରେଣ କ୍ରିୟତେ ପ୍ରତିଷ୍ଠାକର୍ମପଦ୍ଧତି ॥
(OSM . Mss. Dh. No. 831)

୧୨୧ । (କ) ପ୍ରଣମ୍ୟ ଲକ୍ଷ୍ମୀଶପଦାରବିନ୍ଦଂ ମନ୍ୱାଦିଶାସ୍ତ୍ରାଣି ବିଚାର୍ଯ୍ୟଯତ୍ନାତ୍ ।
ସଂକ୍ଷେପତୋବାଲଧିୟାଂ ହିତାୟ ଶୁଦ୍ଧିପ୍ରକାଶଃ କ୍ରିୟତେ ମୟାୟମ୍ ॥
(ଖ) ବିଶ୍ୱମ୍ଭରବିଦ୍ୟାଭୂଷଣକୃତିନା ମୟା କୃତାଃ ଶ୍ଳୋକାଃ ।
ଦ୍ୱ୍ୟଷ୍ଟାଧିକଶତ ଗଣିତାଃ ଶୁଦ୍ଧ୍ୟାଦିନାଂ ସୁବୋଧାର୍ଥାଃ ॥
(OSM. Mss. Dh. No. 453)

୧୨୨ । A. D. C. of Skt. Mss. Vol-I, PP.-XXXII.

୧୨୩ । ଶ୍ରୀ ନୀଳାମ୍ବରନାମ ରାଜଗୁରୁରାଖ୍ୟାତୋ ହରେକୃଷ୍ଣଭୂ-
ନାଥ ପ୍ରାପ୍ତଗଜାତପତ୍ର ତଦଭୂଦ୍ ଯୋ ଯାଯଜୂକଃ ସୁଧୀଃ ।
ଶ୍ରୀମାନ୍ ରାଜଗୁରୁର୍ଗଦାଧର ସୁଧୀସ୍ତସ୍ୟାତ୍ମଜଃ କୌଶିକୋ
ଗ୍ରନ୍ଥ ସଂଶୟନାଶକଂ ରଚିତବାନ୍ ଶ୍ରୀକାଳସାରାଭିଧମ୍ ॥ (କାଳସାର—ପୃ. ୧)

'ଗଦାଧର ପଦ୍ଧତି' ନାମରେ ଅଭିହିତ । ଗଦାଧରଙ୍କ କାଳସାର ଗ୍ରନ୍ଥରୁ ଆଚାର-କାଳ-ଶୁଦ୍ଧି-ଦାନ-ବ୍ରତ-ବିବାହ-ସଂସ୍କାର-ସ୍ନାନସାର ନାମରେ ଆଠ ଖଣ୍ଡି ଗ୍ରନ୍ଥର ସୂଚନା ମିଳେ ।୧୨୪। ତନ୍ମଧ୍ୟରେ ପ୍ରଥମ ଦୁଇଟି ପ୍ରକାଶିତ ଓ ତୃତୀୟଟି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅଛି । ପରବର୍ତ୍ତୀ ସ୍ମୃତିକାର କୃଷ୍ଣ ମିଶ୍ରଙ୍କ ପ୍ରଣୀତ 'କାଳସମ୍ବନ୍ଧ' ଗ୍ରନ୍ଥରେ ଗଦାଧରଙ୍କ ପ୍ରଣୀତ 'ଦୀକ୍ଷାସାର' ଓ 'ଯୋଗସାର' ଗ୍ରନ୍ଥ ଦୁଇଟିର ଉଦ୍ଧୃତି ମିଳେ ।୧୨୫। ଅନ୍ୟଗୁଡ଼ିକ ଏ ପର୍ଯ୍ୟନ୍ତ ଉପଲବ୍ଧ ନୁହେଁ ।

(କ) 'କାଳସାର' ଗ୍ରନ୍ଥଟି ଓଡ଼ିଆ ଅକ୍ଷରରେ ପୁରୀର ବରିଷ୍ଠ ପଣ୍ଡିତ ମଧୁସୂଦନ ତର୍କବାଚସ୍ପତିଙ୍କ ଦ୍ୱାରା ସମ୍ପାଦିତ ଓ ବାମଣ୍ଡାର ରାଜା ସୁବଳ ଦେବଙ୍କ ଆନୁକୂଲ୍ୟରେ ୧୮୯୮ ମସିହାରେ ଏବଂ ପଣ୍ଡିତ ସଦାଶିବ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ୧୯୦୪ ମସିହାରେ ନାଗରାକ୍ଷରରେ ପ୍ରକାଶ ପାଇଛି । ସ୍ମୃତିକାର ଗଦାଧର ପ୍ରଥମେ ଶ୍ରୀଜଗନ୍ନାଥ ଓ ଦେବୀ ବିମଳାଙ୍କ ବନ୍ଦନା ପରେ ସ୍ୱବଂଶର ପରିଚୟ ପ୍ରଦାନ କରିଛନ୍ତି ।୧୨୬। ଏଥିରେ ପୂର୍ବବର୍ତ୍ତୀ ସ୍ମୃତିଗ୍ରନ୍ଥ 'କୃତ୍ୟ କୌମୁଦୀ', 'ସ୍ମୃତି ଚନ୍ଦ୍ରିକା' ଓ 'ସ୍ମୃତିସାର ସଂଗ୍ରହ' ବର୍ଣ୍ଣିତ ବିଷୟ ବ୍ୟତୀତ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା, ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା, ଶୁକ୍ରାଶୁକ୍ର କାଳ ଓ ଅଶୌଚ ପ୍ରସଙ୍ଗ ଆଲୋଚିତ ହୋଇଛି ।

(ଖ) 'ଆଚାରସାର' ଗ୍ରନ୍ଥଟି ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ଓ ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ୧୯୦୮ ମସିହାରେ ମୁଦ୍ରିତ ହୋଇଛି । ସ୍ମୃତିକାର ଗଦାଧର ଗ୍ରନ୍ଥ ଆରମ୍ଭରେ କାଳସାର ଅନୁରୂପ ଉପକ୍ରମଣିକା ଦେଇଛନ୍ତି । ଏଥିରେ ଉତ୍କଳର ପୂର୍ବସୂରିଙ୍କ ମଧ୍ୟରେ ବାଜପେୟୀ ନରସିଂହ ମିଶ୍ରଙ୍କ 'ନିତ୍ୟାଚାର ପ୍ରଦୀପ' ଓ ଶ୍ରୀଧର ମିଶ୍ରଙ୍କ 'ଆଚାର ଚିନ୍ତାମଣି'ରେ ଉଲ୍ଲିଖିତ ବିଷୟ ବ୍ୟତୀତ ବିଶେଷ କରି ତର୍ପଣ, ପଞ୍ଚମହାଯଜ୍ଞ, ଭକ୍ଷ୍ୟାଭକ୍ଷ ବିଷୟ ପର୍ଯ୍ୟାଲୋଚିତ ହୋଇଛି । ଏକ ଅହୋରାତ୍ର ମଧ୍ୟରେ ବ୍ୟକ୍ତିର ନିତ୍ୟକୃତ ନିରୂପଣ ହିଁ ଏହି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ ।

(ଗ) 'ଶୁଦ୍ଧିସାର' ଗ୍ରନ୍ଥ ଆରମ୍ଭରେ ଗଦାଧର ଯଥାରୀତି ଇଷ୍ଟଦେବୀଙ୍କୁ ବନ୍ଦନା କରିଛନ୍ତି । ଏଥିରେ ମୁଖ୍ୟତଃ ଉତ୍କଳର ଆଚାରବିଧି ଉଲ୍ଲିଖିତ ଅଛି । ଗ୍ରନ୍ଥଟିର ଚାରୋଟି କାଣ୍ଡରେ ଯଥାକ୍ରମେ କାଳ, ଦ୍ରବ୍ୟ, କର୍ତ୍ତାର ବାହ୍ୟଶୁଦ୍ଧି ଓ ଆଭ୍ୟନ୍ତର ଶୁଦ୍ଧି ବିଷୟ ବିଭିନ୍ନ ପୁରାଣ, ସ୍ମୃତି ଓ ତନ୍ତ୍ରର ଉଦ୍ଧୃତି ସହିତ ଆଲୋଚିତ ହୋଇଅଛି ।

---

୧୨୪ । କାଳସାର—ଓଡ଼ିଆ ସଂସ୍କରଣ-୧୮୯୮- ପୃ୨୯, ୩୪, ୧୦୪, ୨୯୮, ୭,୨୬୫ ।

୧୨୫ । OHRJ. Vol-IV, Pt-I, P-62

୧୨୬ । କାଳସାର—ଶ୍ଳୋକ-୧-୨, ୩-୭ ।

(ଘ) ତାଙ୍କ ପ୍ରଣୀତ ବିଭିନ୍ନ ପ୍ରକାର ଦାନ ସମ୍ବନ୍ଧୀୟ 'ଦାନସାର' ଶୀର୍ଷକ ଉପଲବ୍ଧ ପୋଥିର ଆରମ୍ଭରେ ବା ଶେଷରେ ଗ୍ରନ୍ଥକାରଙ୍କ ନାମୋଲ୍ଲେଖ ନାହିଁ । ତେଣୁ ଏହା ଗଦାଧରଙ୍କ ରଚନା ବୋଲି ଦୃଢ଼ଭାବେ କହିବା ସମ୍ଭବ ନୁହେଁ ।

**୩୭ । ବାସୁଦେବ ରଥ :**

ରାଜଗୁରୁ ଗଦାଧର ମହାପାତ୍ରଙ୍କ ସମସାମୟିକ ବାସୁଦେବ ରଥ (୧୭୦୦-୧୭୫୦ ଖ୍ରୀଷ୍ଟାବ୍ଦ) 'ଅଷ୍ଟାଦଶ ପ୍ରକାଶ' ରଚନା କରିଥିବାର ଜଣାଯାଏ । ତାଙ୍କ ପିତାଙ୍କ ନାମ କାଶୀନାଥ ରଥ । ସେ ନ୍ୟାୟ-ମୀମାଂସା-ସ୍ମୃତି-ତନ୍ତ୍ରାଦି ବିଦ୍ୟାରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ବାସୁଦେବଙ୍କ 'ସ୍ମୃତିପ୍ରକାଶ', 'ନ୍ୟାୟପ୍ରକାଶ, 'ମୀମାଂସାପ୍ରକାଶ, 'ଭୁବନେଶ୍ୱରୀପ୍ରକାଶ', 'ମଣ୍ଡଳପ୍ରକାଶ' ପ୍ରଭୃତି ଅଷ୍ଟାଦଶ ପ୍ରକାଶ-ଗ୍ରନ୍ଥ ମଧ୍ୟରୁ ସ୍ମୃତିପ୍ରକାଶ, ମଣ୍ଡଳପ୍ରକାଶ ଓ ଭୁବନେଶ୍ୱରୀପ୍ରକାଶ ଗ୍ରନ୍ଥତ୍ରୟ ଉପଲବ୍ଧ ।

(କ) 'ସ୍ମୃତିପ୍ରକାଶ' ଗ୍ରନ୍ଥ ବଙ୍ଗଳାର ଏସିଆଟିକ୍ ସୋସାଇଟି ଦ୍ୱାରା ୧୯୧୬ ମସିହାରେ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶ ପାଇଛି । ସ୍ମୃତିକାର ବାସୁଦେବ ହରିବନ୍ଦନାପୂର୍ବକ ଗ୍ରନ୍ଥାରମ୍ଭ କରିଛନ୍ତି ।[୧୨୭] ଏଥିରେ ବିଶ୍ୱନାଥ ମିଶ୍ରଙ୍କ ପ୍ରଣୀତ 'ସ୍ମୃତିସାର ସଂଗ୍ରହ' ଗ୍ରନ୍ଥର ପ୍ରାୟ ସମସ୍ତ ବିଷୟ ପର୍ଯ୍ୟାଲୋଚିତ ହୋଇଛି ।

(ଖ) 'ମଣ୍ଡଳପ୍ରକାଶ' ଗ୍ରନ୍ଥଟି ଅଦ୍ୟାବଧି ପୂର୍ଣ୍ଣାଙ୍ଗଭାବେ ଉପଲବ୍ଧ ନୁହେଁ । ବାସୁଦେବ ସ୍ମୃତିପ୍ରକାଶର ଅନୁରୂପ ବନ୍ଦନା ପରେ ଏଥିରେ ବିଭିନ୍ନ ପ୍ରକାର ମଣ୍ଡଳର ଲକ୍ଷଣ ଓ ନିର୍ମାଣ-ବିଧି ଉଲ୍ଲେଖ କରିଛନ୍ତି ।[୧୨୮] ତାଙ୍କ ପ୍ରଣୀତ ତୃତୀୟ ଗ୍ରନ୍ଥ 'ଭୁବନେଶ୍ୱରୀପ୍ରକାଶ' ଶାକ୍ତ ଉପାସନା ସମ୍ବନ୍ଧୀୟ ଏକ ଉପାଦେୟ ଗ୍ରନ୍ଥ ।

**୩୮ । ବାସୁଦେବ ତ୍ରିପାଠୀ :**

ବାସୁଦେବ ତ୍ରିପାଠୀ (୧୭୦୦-୧୭୫୦ ଖ୍ରୀଷ୍ଟାବ୍ଦ) 'ପ୍ରାୟଶ୍ଚିତ୍ତ ବିଲୋଚନ' ନାମରେ ଏକ ବିରାଟ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି ।[୧୨୯] ଏଥିରେ ପ୍ରାୟ ଦୁଇହଜାର ଆଠ ଶହ ଶ୍ଳୋକ

---

୧୨୭ । ଯଙ୍କେ ଶ୍ରୁତି ସ୍ମୃତିଗ୍ରନ୍ଥେ ଯସ୍ୟ ସର୍ବେଶ୍ୱରସ୍ୟ ବୈ ।
ସଚ୍ଚିଦାନନ୍ଦରୂପାୟ ତସ୍ମୈ ଶ୍ରୀହରୟେ ନମଃ ॥ (ସ୍ମୃତିପ୍ରକାଶ, ପୃ-୧)

୧୨୮ । (କ) ସେବସ୍ୱେ ମହାମହାନନ୍ଦନଂ ମଣ୍ଡଳାୟ ସତତଂ ବିଲାସିନାମ୍ ।
ଶଙ୍କରସ୍ୟ ଶଶିଖଣ୍ଡମଣ୍ଡିନଂ ଚଣ୍ଡମୁଣ୍ଡମହିଷାସୁରର୍ଦ୍ଦିନୀମ୍ ॥

(ଖ) କୃତମତିଗଦବୀଶ୍ରୀଃ ଶୈବପାଦାବ୍ଜଭକ୍ତେ-
ଗୁରୁଜନକଜନନ୍ତଶ୍ରୀକାରପୂର୍ବଂ ରଥେନ ।
ନିଖିଳଜନହିତାର୍ଥଂ ସିଦ୍ଧିତାଂ ମଣ୍ଡଳାନା-
ମଲଭତ ପରପାର୍ଷୀ ବାସୁଦେବାଭିଧେନ ॥

୧୨୯ । Archaeological Survey of Mayurbhanj—Page-୫6.

ସନ୍ନିବେଶିତ ଅଛି । ଏହି ଗ୍ରନ୍ଥଟି ୧୬୭୪ ଶକାବ୍ଦ ବା ୧୭୪୨ ଖ୍ରୀଷ୍ଟାବ୍ଦରେ ନକଲ କରାଯାଇ-ଥିବାରୁ ତାହା ୧୭୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରଣୀତ ହୋଇଥିବାର ବିଶ୍ୱାସ କରାଯାଏ ।୧୩୦। ତାଙ୍କ ପ୍ରଣୀତ 'ହାର ପରୀକ୍ଷଣ' ନାମକ ସ୍ମୃତିଗ୍ରନ୍ଥରେ 'ହିଙ୍ଗୁଳା' ଦେବୀଙ୍କ ବନ୍ଦନା କରାଯାଇ-ଥିବାରୁ ଗ୍ରନ୍ଥକାର ତାଳଚେର ବା ତନ୍ନିକଟବର୍ତ୍ତୀ ଅଞ୍ଚଳର ଅଧିବାସୀ ଥିବାର ଜଣାଯାଏ ।୧୩୧। ବାସୁଦେବଙ୍କ ପ୍ରଣୀତ ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟରେ 'ବାସୁଦେବ ପଦ୍ଧତି' ଓ 'କୃତ୍ୟ ରତ୍ନାବଳୀ'ର ନାମ ଉଲ୍ଲେଖଯୋଗ୍ୟ । ତଦ୍‌ବ୍ୟତୀତ 'ଗୋପାଳାର୍ଚ୍ଚନ ବିଧି' ବା 'ଗୋପାଳାର୍ଚ୍ଚନ ପଦ୍ଧତି'ର ରଚୟିତା ବାସୁଦେବଙ୍କୁ ଆଲୋଚ୍ୟ ବାସୁଦେବ ତ୍ରିପାଠୀ ବୋଲି ଗ୍ରହଣ କରାଯାଇ-ପାରେ ।

ଗ୍ରନ୍ଥକାର ବାସୁଦେବ (କ) 'ଗୋପାଳାର୍ଚ୍ଚନ ପଦ୍ଧତି' ଆରମ୍ଭରେ ନୃସିଂହ ଓ ଗୋପାଳ-କୃଷ୍ଣଙ୍କ ବନ୍ଦନା ପରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପୂଜାବିଧି ଆଲୋଚନା କରିଛନ୍ତି ।୧୩୨। (ଖ) 'ପ୍ରାୟଶ୍ଚିତ୍ତ ବିବେଚନ' ଗ୍ରନ୍ଥ ଆରମ୍ଭରେ ବାସୁଦେବ ଶ୍ରୀରାମଙ୍କୁ ବନ୍ଦନା କରିଛନ୍ତି । ଏଥିରେ ଥିବା ଦଶଟି ପ୍ରକରଣରେ ମୁଖ୍ୟତଃ ପ୍ରାୟଶ୍ଚିତ୍ତର ସ୍ୱରୂପ ଓ ଶୁଦ୍ଧି

---

୧୩୦ । A. D. C. of Skt. Mss. Vol.-I, PP-XXXIX.

୧୩୧ । (କ) ତସ୍ୟାପି ସୂନୋର୍ମତିମାନ୍ମୁକୁନ୍ଦୋ ମୁକୁନ୍ଦପାଦାମ୍ବୁରୁହଦ୍ୱିରେଫଃ ।
ତସ୍ୟାପି ନାମ ଗ୍ରହଣେନ ଲୋକାଃ ପୂତା ଭବନ୍ତ୍ୟାମ୍ବୁଦଦୋ ବିଦୋଷି ॥
(ହାର ପରୀକ୍ଷଣ)

(ଖ) ତସ୍ୟାତ୍ମଜା ସ୍ୱରବଶେଷ ବିଚାରଦର୍ଶୀ ପକ୍ଷୋ ମହାସୁବହୁବାର୍ଷି ବଳଂ ନୃପାଣାମ୍ ।
ଶ୍ରୀହିଙ୍ଗୁଳାବ୍‌ଜଚରଣାପ୍ତବରପ୍ରସାଦା ଯୋ ବାସୁଦେବ ଇତି ବିଶ୍ରୁତ ନାମଧେୟଃ ॥
(ହାର ପରୀକ୍ଷଣ)

(ଗ) ତେନେଦମଳ୍ପମଖିଳାର୍ଥମଖିଷ୍ଟରଙ୍କ ଶାସ୍ତ୍ରଂ କୃତଂ ସୁକୃତନାଳପ୍ରକାରହେତୋଃ
ପଦ୍ୟୈର୍ମତୈରପି ଚ ହାରପରୀକ୍ଷଣମାଖ୍ୟଂ ଭୂଷ୍ୟଣୀବାସ୍ତୁ ପଂତାମିହ ସଜ୍ଜନାନାମ୍ ॥
(ହାର ପରୀକ୍ଷଣ—OSM. Mss. Dh. No. 336)

୧୩୨ । (କ) ବାଗୀଶୋ ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାନ୍ତେ ହୃଦୟେ ସମ୍ବିତ୍ ତଂ ନୃସିଂହମହଂ ଭଜେ ॥

(ଖ) ଗୋପାଳବାଳକଂ ନତ୍ୱା ବିବିଚ୍ୟ ବୈଷ୍ଣବୋଦ୍ଧମମ୍ ।
ବାସୁଦେବେନ କ୍ରିୟତେ ଗୋପାଳାର୍ଚ୍ଚନପଦ୍ଧତିଃ ॥
(A. D. C. S. Vol-I, P-33)

ପ୍ରସଙ୍ଗ ଆଲୋଚନା କରାଯାଇଛି ।[୧୩୩] ସ୍ମୃତିକାର ବାସୁଦେବଙ୍କ ତୃତୀୟ ଗ୍ରନ୍ଥ (ଗ) 'ବୀର ପରାକ୍ରମ'ରେ ସୂକ୍ତ ସମ୍ବନ୍ଧୀୟ ବିଭିନ୍ନ ପ୍ରକାର ଚକ୍ର ଏବଂ ଚତୁର୍ଥ ଗ୍ରନ୍ଥ (ଘ) 'କୃତ୍ୟ ରତ୍ନାବଳୀ'ରେ ଇଷ୍ଟଦେବ ବନ୍ଦନା ପରେ ଦିବାକୃତ୍ୟ, ରାତ୍ରିକୃତ୍ୟ, ଅଶୌଚ, ଶୁଦ୍ଧି, ଶ୍ରାଦ୍ଧାଦି ପ୍ରସଙ୍ଗ ଆଲୋଚିତ ହୋଇଛି । ଗ୍ରନ୍ଥପୁଷ୍ପିକାରୁ ବାସୁଦେବ କପିଷ୍ଠଳଗୋତ୍ରୀୟ ବ୍ରାହ୍ମଣ ଥିବାର ଜଣାଯାଏ ।[୧୩୪]

## ୩୯ । ମିଛୁ ମିଶ୍ର :

କୃଷ୍ଣାତ୍ରେୟଗୋତ୍ରୀୟ ସ୍ମୃତିକାର ମିଛୁ ମିଶ୍ର (୧୭୦୦-୧୭୫୦ ଖ୍ରୀଷ୍ଟାବ୍ଦ) ନୀଳାଚଳବାସୀ ଶ୍ରୀଜଗନ୍ନାଥଙ୍କ ବନ୍ଦନା ପରେ 'କଳ୍ପତରୁ ପଦ୍ଧତି' ଅନୁଯାୟୀ 'ପାର୍ବଣ-ଶ୍ରାଦ୍ଧ ପଦ୍ଧତି' ଗ୍ରନ୍ଥ ପ୍ରଣୟନ କରିଛନ୍ତି । ପରବର୍ତ୍ତୀ ସ୍ମୃତିକାର ରଘୁନାଥ ଦାଶଙ୍କ 'ଶ୍ରାଦ୍ଧ ନିର୍ଣ୍ଣୟ' ଗ୍ରନ୍ଥରେ ଆଲୋଚ୍ୟ ସ୍ମୃତିକାରଙ୍କ ନାମୋଲ୍ଲେଖ ଥିବାରୁ ମିଛୁ ମିଶ୍ର ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବିଦ୍ୟମାନ

---

୧୩୩ । (କ) ପ୍ରାୟଶ୍ଚିତ୍ତ ବିଶୁଦ୍ଧିସାଧନଧିୟୋ ଧ୍ୟାୟନ୍ତି ଧୀରା ଧ୍ରୁବଂ
ଯଂ ନିର୍ବ୍ୟାଜମଜଂ ଜରାଦିରହିତଂ ବୀଜଂ ଜଗତ୍ତ୍ରୟାରୁହଃ ।
ଶ୍ରୀରାମଂ ସ୍ମରକୋଟି ସୁନ୍ଦରତରଂ କାମଂ ନମସ୍କୃତ୍ୟ ତଂ
ପ୍ରାୟଶ୍ଚିତ୍ତ ବିଲୋଚନଂ ବିତନୁତେ ଶ୍ରୀବାସୁଦେବଃ ସୁଧୀଃ ।।
(OSM. Mss. Dh. No. 503)

(ଖ) ବିଦୁଷା ବାସୁଦେବେନ ପ୍ରାୟଶ୍ଚିତ୍ତ ବିଲୋଚନେ ।
ସଦ୍ରବ୍ୟଶୁଦ୍ଧି ବିବିଧପ୍ରାୟଶ୍ଚିତ୍ତମିତୀରିତମ୍ ।।
(OSM. Mss. Dh. No. 505)

୧୩୪ । (କ) ଇତି ବୀରପରାକ୍ରମାଦ୍ରସ୍ୟେ ସ୍ୱରଣାସ୍ତେ କ୍ଷିତିପାଳବଲ୍ଲଭେ ।
ପଥପଞ୍ଚମଚକ୍ରମୁତ୍ତମଂ କୃତମେତତ୍କୃତିନାଂ ପ୍ରମୋଦକୃତ୍ ।।
(Dh. No. 336)

(ଖ) ନରସିଂହଂ ନମସ୍କୃତ୍ୟ ନମସ୍କୃତ୍ୟ ସଦାଶିବମ୍ ।
ଭାରତୀମମ୍ବିକାଂ ଦେବୀଂ ଜଗନ୍ନାଥମେବ ଚ ।।
ଇତି ଶ୍ରୀମତ୍କପିଷ୍ଠଳବଂଶ କର୍ଣ୍ଣଧାରେଣ ଭଗବତ୍ପାଦାରବିନ୍ଦୈକଶରଣ୍ୟେନ ବାସୁଦେବାନନ୍ଦେନ (ବାସୁଦେବାଭିଧେନ) ବିରଚିତାୟାଂ କୃତ୍ୟରତ୍ନାବଲ୍ୟାଂ ଦିବାକୃତ୍ୟଂ ସମାପ୍ତମ୍ ।।
(OSM.-Mss. Dh. No. 504)

ଥିବାର ମନେହୁଏ । ଏଥିରେ ମାତ୍ର ଗତୋଟି ଶ୍ଲୋକରେ ଗ୍ରନ୍ଥର ଶ୍ରାଦ୍ଧସମ୍ବନ୍ଧୀୟ ପ୍ରତିପାଦ୍ୟ ବିଷୟ ଆଲୋଚିତ ହୋଇଛି ।୧୩୫।

## ୪୦ । ରଘୁନାଥ ଦାସ :

ପଣ୍ଡିତ କବି ରଘୁନାଥ ଦାଶ (୧୭୧୫-୧୭୫୦ ଖ୍ରୀଷ୍ଟାବ୍ଦ) ଥିଲେ କୌଣ୍ଡିନ୍ୟ ଗୋତ୍ରୀୟ ଦେବୀ ଅମ୍ବିକା ଓ ବାସୁଦେବ ଦାସଙ୍କ ଯଶସ୍ୱୀ ପୁତ୍ର । ପ୍ରାଚୀ ନଦୀର ଉତ୍ତରରେ ସାଇଲୋ ବିଷୟ ଅନ୍ତର୍ଗତ 'ଗଡ଼ଗଡ଼ା'ଗ୍ରାମର ସେ ଅଧିବାସୀ ଥିଲେ ।୧୩୬। ତାଙ୍କ ପାଣ୍ଡିତ୍ୟର ପରାକାଷ୍ଠା ଅତୁଳନୀୟ ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାଗରେ ସେ ବହୁ ଗ୍ରନ୍ଥ ଓ କେତୋଟି ମହାକାବ୍ୟର ଟୀକା ରଚନା କରିଛନ୍ତି । ଉପଲବ୍ଧ ଗ୍ରନ୍ଥଗୁଡ଼ିକ ମଧ୍ୟରେ ସାହିତ୍ୟଭୂଷଣ, ବୃତ୍ତାବଳି, ନଳୋଦୟ କାବ୍ୟଟୀକା, ରଘୁବଂଶ ଟୀକା, ଅମରକୋଷ ଟୀକା, ଭଟ୍ଟି ଟୀକା, ନ୍ୟାୟ ରତ୍ନାବଳୀ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।୧୩୭।

ରଘୁନାଥଙ୍କ ସ୍ମୃତିଗ୍ରନ୍ଥ ମଧ୍ୟରେ 'କାଳନିର୍ଣ୍ଣୟ', 'ଶ୍ରାଦ୍ଧନିର୍ଣ୍ଣୟ' ଓ 'ଉଦ୍ୱାହ ତରଙ୍ଗିଣୀ'ର ନାମ ଉଲ୍ଲେଖଯୋଗ୍ୟ । ତନ୍ମଧ୍ୟରେ ପ୍ରଥମଟି କୌଣ୍ଡିନ୍ୟ ବଂଶୀୟ ଅନନ୍ତ ଦାଶ ଗଜପତି ରାମଚନ୍ଦ୍ର ଦେବ (୨)ଙ୍କ (୧୭୨୭-୧୭୩୬ ଖ୍ରୀଷ୍ଟାବ୍ଦ) ଚତୁର୍ଥ ଅଙ୍କରେ ଅର୍ଥାତ୍ ୧୯।୧୦।୧୭୨୮ ମସିହାରେ ନକଲ ଶେଷ କରିଥିବାରୁ 'କାଳନିର୍ଣ୍ଣୟ'ର ରଚନା କାଳ ୧୭୧୫-୧୭୨୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ଥିର କରାଯାଇପାରେ ।୧୩୮। ଦ୍ୱିତୀୟ ଗ୍ରନ୍ଥଟି ୧୭୧୫-୧୭୩୦ ଖ୍ରୀଷ୍ଟାବ୍ଦ

---

୧୩୫ । (କ) ନୀଳାଚଳଶିରୋରତ୍ନଂ ଜଗନ୍ନାଥଂ କୃପାନିଧିମ୍ ।
ପ୍ରଣମ୍ୟ ପାର୍ବଣଶ୍ରାଦ୍ଧଂ ବକ୍ଷ୍ୟେ କଳ୍ପତରୋରିତମ୍ ॥
(ଖ) କୃଷ୍ଣାତ୍ରେୟସଗୋତ୍ରେଣ ମିଶ୍ରମିଶ୍ରେଣ ଧୀମତା ।
ନିର୍ମିତା ବାଲବୋଧାୟ ଶ୍ଲୋକେନ ଶ୍ରାଦ୍ଧପଦ୍ଧତିଃ ॥

୧୩୬ । (କ) କୌଣ୍ଡିନ୍ୟକୁଲଜାତେନ ବାସୁଦେବାମ୍ବିକାଭୁବା ।
ସାହିତ୍ୟଭୂଷଣମିଦଂ ରଘୁନାଥେନ ତନ୍ୟତେ ॥
(ଖ) ଓଡ୍ରେ ନୀବୃତି ସାଇଲୋବିଷୟକେ ପ୍ରାଚ୍ୟୁତ୍ତରସ୍ୟାଂ ଦିଶି
ଗ୍ରାମ ଯତ୍ର ବିରାଜତେ ଗଡ଼ଗଡ଼ାନାମା ଚିରାତ୍ ପାଳିତଃ ।
ନାମ୍ନା ଚକ୍ରଧରେଣ ଦୁର୍ଗବିଲସଦ୍ ଗଙ୍ଗେଶ୍ୱର ସ୍ୱାମିନା
ତତ୍ରସ୍ଥଂ ରଘୁନାଥ ନାମ ବିଦିତଂ ବିପ୍ରଂ ନୃସିଂହୋଽବତୁଃ ॥
(O.S.M. Mss. AL. No. 34)

୧୩୭ । O.H.R.J—Vol.-XI, No. 2, P-81—82.

୧୩୮ । ଶ୍ରୀରାମଚନ୍ଦ୍ରଦେବସ୍ୟ ନୃପତେଷ୍ଟୁର୍ଯ୍ୟେଽଙ୍କେ କାର୍ତ୍ତିକେମାସି କୃଷ୍ଣପକ୍ଷେ ତ୍ରୟୋଦଶ୍ୟାଂ ତିଥୌ ଶୌରିଦାସରେ ଶ୍ରୀମତ୍କୌଣ୍ଡିନ୍ୟକୁଳସମ୍ଭୂତାନନ୍ତ ଦାସେନ ଲିଖିତମିଦଂ ପୁସ୍ତକମ୍ ।

ମଧ୍ୟରେ ପ୍ରଣୀତ ହୋଇଥିବାର ଅନୁମାନ କରାଯାଏ । 'ଉତ୍ପାତ ତରଙ୍ଗିଣୀ'ରେ କବି ସ୍ୱବଂଶାବଳୀ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ।

(କ) ପଣ୍ଡିତ ରଘୁନାଥ ଇଷ୍ଟଦେବ ନୃସିଂହଙ୍କୁ ନମସ୍କାର ଜଣାଇ ବିଭିନ୍ନ ସ୍ମୃତିଗ୍ରନ୍ଥର ଉକ୍ତିକୁ ନେଇ 'କାଳନିର୍ଣ୍ଣୟ' ଗ୍ରନ୍ଥ ରଚନା କରିଛନ୍ତି ।୧୩୯। ଗ୍ରନ୍ଥଟି ମୁଖ୍ୟତଃ ପାଞ୍ଚଟି ପ୍ରକରଣରେ ବିଭକ୍ତ । ଗଦାଧରଙ୍କ ପ୍ରଣୀତ 'କାଳସାର ଗ୍ରନ୍ଥ'ର ଶୈଳୀରେ ସଂକଳିତ ଆଲୋଚ୍ୟ ଗ୍ରନ୍ଥଟି ଗୋବର୍ଦ୍ଧନପୂଜାବିଧି, ଲଳିତା ସପ୍ତମୀ, ରାଧାଷ୍ଟମୀ, ରାଧାଦାମୋଦରପୂଜା ଏକାମ୍ର କ୍ଷେତ୍ରରେ ପାଳିତ ହେଉଥିବା ଯମଦ୍ୱିତୀୟା, ଅକ୍ଷୟ ତୃତୀୟା, ପ୍ରାବରଣ ଷଷ୍ଠୀ, ଭୈମୀ ଏକାଦଶୀ, ଦମନକ ଚତୁର୍ଦ୍ଦଶୀ ତଥା ମାଘ ସପ୍ତମୀର ବିସ୍ତୃତ ପର୍ଯ୍ୟାଲୋଚନା ଦୃଷ୍ଟିରୁ ଓଡ଼ିଶାର ସ୍ମୃତି-ସାହିତ୍ୟରେ ଆଦର୍ଶ ସ୍ଥାନୀୟ ହୋଇ ରହିଛି । ତାଙ୍କ ପ୍ରଣୀତ ବିଭିନ୍ନ ପ୍ରକାର ଶ୍ରାଦ୍ଧ ସମ୍ବନ୍ଧୀୟ (ଖ) 'ଶ୍ରାଦ୍ଧନିର୍ଣ୍ଣୟ' ଗ୍ରନ୍ଥଟି ସାତଟି ପ୍ରକରଣରେ ବିଭକ୍ତ ଏବଂ (ଗ) 'ଉତ୍ପାତ ତରଙ୍ଗିଣୀ' ଗ୍ରନ୍ଥଟି ବଲ୍ଲାଳସେନ ଓ ପାତ୍ର ଯୋଗୀଶ୍ୱରଙ୍କ ବିରଚିତ 'ଅଦ୍ଭୁତ ସାଗର' ଶୈଳୀରେ ସଙ୍କଳିତ ହୋଇଛି । ଗ୍ରନ୍ଥକାର ରଘୁନାଥ ଆରମ୍ଭରେ ଲକ୍ଷ୍ମୀ-ନୃସିଂହଙ୍କ ବନ୍ଦନା ପରେ ଆଲୋଚ୍ୟ ବିଭିନ୍ନ ଶକୁନ ବିଷୟ-ବସ୍ତୁକୁ ଅଣଷଠିଟି ତରଙ୍ଗରେ ବିଭକ୍ତ କରିଛନ୍ତି ।

### ୪୧ । ଗୋପୀନାଥ ପଟ୍ଟନାୟକ :

ଗୋପୀନାଥ ପଟ୍ଟନାୟକ (୧୭୨୫ ଖ୍ରୀଷ୍ଟାବ୍ଦ) ଶୂଦ୍ର ଜାତିର ବ୍ୟବହାର ନିମିତ୍ତ 'ଶୂଦ୍ରାହ୍ନିକ ପଦ୍ଧତି' ନାମକ ସ୍ମୃତିଗ୍ରନ୍ଥ ରଚନା କରିଥିଲେ । ତାଙ୍କର ପିତାଙ୍କ ନାମ ଭରତ ପଟ୍ଟନାୟକ ଓ ପ୍ରପିତାମହଙ୍କ ନାମ ଦାମୋଦର ପଟ୍ଟନାୟକ ।୧୪୦। ଭରତ ପଟ୍ଟନାୟକ ଖୁରୁଧା ରାଜା

---

୧୩୯ । (କ) ଶ୍ରୀନୃସିଂହ ନମସ୍କୃତ୍ୟ ଭଗବନ୍ତଂ ଭବଚ୍ଛିଦମ୍ ।
ଶ୍ରୀମତା ରଘୁନାଥେନ କ୍ରିୟତେ କାଳନିର୍ଣ୍ଣୟଃ ॥

(ଖ) ତତ୍ତଦ୍‌ଗ୍ରନ୍ଥେଭ୍ୟ ଆହୃତ୍ୟ ସ୍ମୃତିବାକ୍ୟାନି ସର୍ବଶଃ ।
ଏକତ୍ର ଲିଖ୍ୟତେ ଯତ୍ନାଦ୍ରଘୁନାଥେନ ଧୀମତା ॥

(O.S.M. Mss. Dh. No. 552)

୧୪୦ । (କ) ତିଥିକ୍ଷୁଣା ନିଷ୍ଟୃହମାନସେନ ବର୍ଣ୍ଣାଶ୍ରମାଗ୍ରର ସମୁଦ୍ୟତେନ ।
ଯଃ ପ୍ରାପ୍ୟତେ ଶୁଦ୍ଧତରେଣ ପୁଂସାଂ ନାରାୟଣଂ ତଂ ସତତଂ ସ୍ମରାମି ॥

(ଖ) ଶ୍ରୀ ଦାମୋଦର ପଟ୍ଟନାୟକ ସୁତୋଽନଲ୍ପୈର୍ଗୁଣୈରନ୍ୱିତୋ
ବିଖ୍ୟାତୋ ଭରତୋ ବ୍ୟରାଜତ ସଦା ସମ୍ଭାବିତୋ ଭୂଭୁଜା ।
ତସ୍ୟ ଶ୍ରୀପତିପାଦଚନ୍ଦ୍ରନିରତସ୍ୟାଜ୍ଞା ବିଶେଷାକୃତୋ
ଗୋପୀନାଥ କୃତୀ ତନୋତି ବିଶଦାଂ ଶୂଦ୍ରାହ୍ନିକୀଂ ପଦ୍ଧତିମ୍ ॥

(O.S.M. Mss. Dh. No. 66)

ପ୍ରଥମ ମୁକୁନ୍ଦ ଦେବଙ୍କ (୧୬୫୭-୧୬୮୩ ଖ୍ରୀଷ୍ଟାବ୍ଦ) ମନ୍ତ୍ରୀ ଥିଲେ । ତେଣୁ ଗୋପୀନାଥଙ୍କୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦର ସ୍ମୃତିକାର ବୋଲି କୁହାଯାଇପାରେ ।୧୪୧।

୪୨ । ଗୋପୀନାଥ ବାଜପେୟୀ :

ରାଜଗୁରୁ ଗୋପୀନାଥ ବାଜପେୟୀ (୧୭୨୫-୧୭୩୬ ଖ୍ରୀଷ୍ଟାବ୍ଦ) ଖୁର୍ଦ୍ଧା ରାଜା ଗଜପତି ରାମଚନ୍ଦ୍ର ଦେବ-୨ଙ୍କ (୧୭୨୫-୧୭୩୬ ଖ୍ରୀଷ୍ଟାବ୍ଦ) ସଭା-ପଣ୍ଡିତ ଥିଲେ । ପ୍ରସିଦ୍ଧ ନାଟ୍ୟକାର 'ମଧୁରାନିରୁଦ୍ଧ ନାଟକ' ପ୍ରଣେତା ଚମ୍ପୂନ ଚନ୍ଦ୍ରଶେଖର ରାୟଗୁରୁଙ୍କ ସେ ଜନକ । ସେ ସପ୍ତସୋମଯାଜୀ ପଣ୍ଡିତ ଥିବା ଜଣାଯାଏ । ପରବର୍ତ୍ତୀ ସ୍ମୃତିକାର ମହାମହୋପାଧ୍ୟାୟ କୃଷ୍ଣ ମିଶ୍ର ସ୍ମୃତିକାର ଗୋପୀନାଥଙ୍କୁ ତାଙ୍କ ପ୍ରଣୀତ 'କାଳସର୍ବସ୍ୱ' ଗ୍ରନ୍ଥରେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଛନ୍ତି । ଦୁର୍ଭାଗ୍ୟବଶତଃ ସ୍ମୃତିକାର ଗୋପୀନାଥଙ୍କର କୌଣସି ସ୍ମୃତି ଗ୍ରନ୍ଥ ଲୋକ-ଲୋଚନକୁ ଆସିନାହିଁ ।୧୪୨।

୪୩ । ଚନ୍ଦ୍ରଶେଖର ମିଶ୍ର :

ସ୍ମୃତିକାର ଚନ୍ଦ୍ରଶେଖର (୧୭୩୬-୧୭୯୭ ଖ୍ରୀଷ୍ଟାବ୍ଦ) 'ପ୍ରତିଷ୍ଠାସାରସଂଗ୍ରହ' ନାମରେ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ପିତାଙ୍କ ନାମ ପ୍ରଭାକର ମିଶ୍ର । ସେ ଏହି ଗ୍ରନ୍ଥର ରଚନା ବୀରକେଶରୀ ଦେବ-୧ଙ୍କ (୧୭୩୬-୧୭୯୨ ଖ୍ରୀଷ୍ଟାବ୍ଦ) ୪୮ ଅଙ୍କରେ ଶେଷ କରିଥିଲେ । ଏହି ଗ୍ରନ୍ଥଟି ୧୬-୧୨-୧୭୭୪ରେ ନକଲ କରାଯାଇଥିବାର ଜଣାଯାଏ ।୧୪୩। ଅନ୍ୟତମ ସ୍ମୃତି ଗ୍ରନ୍ଥ 'ପୁରଶ୍ଚରଣଦୀପିକା'ର ପ୍ରଣେତା ଚନ୍ଦ୍ରଶେଖର ଓ ପୂର୍ବୋକ୍ତ ସ୍ମୃତିକାର ଚନ୍ଦ୍ର-ଶେଖର ମିଶ୍ରଙ୍କୁ ଅଭିନ୍ନ ବ୍ୟକ୍ତି ରୂପେ ଗ୍ରହଣ କରାଯାଇପାରେ ।

(କ) 'ପ୍ରତିଷ୍ଠାସାରସଂଗ୍ରହ' ଗ୍ରନ୍ଥରେ ବିଭିନ୍ନ ଦେବଦେବୀଙ୍କ ପ୍ରତିମା ପ୍ରତିଷ୍ଠା ବିଧି ଆଲୋଚିତ ହୋଇଛି । (ଖ) 'ପୁରଶ୍ଚରଣଦୀପିକା'ର ପାଞ୍ଚୋଟି ପ୍ରକାଶରେ ବିଭିନ୍ନ ତନ୍ତ୍ରୋକ୍ତ ପୁରଶ୍ଚରଣ, ବୀରସାଧନ, ପରକାୟପ୍ରବେଶାଦି ବିଷୟ ଆଲୋଚନା କରାଯାଇଛି ।୧୪୪।

---

୧୪୧ । A. D. C. of Skt. Mss. Vol.-I, PP. XLI

୧୪୨ । A. D. C. of Skt Mss. Vol.-I, PP-XXXVI-XLI

୧୪୩ । (କ) ପ୍ରଭାକରସ୍ୟ ପୁତ୍ରେଣ ପୁସ୍ତକଂ ଲିଖିତଂ ମୟା ।
ନାନା ବେଦପୁରାଣୋକ୍ତଂ ପ୍ରତିଷ୍ଠାସାରସଂଗ୍ରହମ୍ ॥
(ଖ) ବାସୁଦେବାଙ୍କ ଶରଦି ବୀରକେଶରୀ ଭୂପତେଃ ।
ମାର୍ଗଶୀର୍ଷେ ସିତେ ପକ୍ଷେ ପୌର୍ଣ୍ଣିମ୍ୟାଂ ଭୃଗୁବାସରେ ॥
(OSM. Mss. Dh. No. 144)

୧୪୪ । ଶ୍ରୀଚନ୍ଦ୍ରଶେଖରେବିପ୍ରଃ ସମ୍ପ୍ରଦାୟକ୍ରମାଗତଃ ।
ନାନାଗୁରୁମତଂ ଜ୍ଞାତ୍ୱା ସଦ୍‌ଗୁରୁଣାଂ ମତଂ ଶୁଭମ୍ ॥
ସର୍ବତନ୍ତ୍ରାନୁସାରେଣ ମନ୍ତ୍ରିଣାଂ ହିତକାମ୍ୟୟା
ତନୋତି ସର୍ବମନ୍ତ୍ରାଣାଂ ପୁରଶ୍ଚରଣ-ଦୀପିକାମ୍ ॥
(OSM. Mss. Dh. No. 52-a)

୪୪ । କୃଷ୍ଣ ଦାଶ :

କୃଷ୍ଣ ଦାଶ (୧୭୩୬-୧୭୯୬ ଖ୍ରୀଷ୍ଟାବ୍ଦ) ଗୃହସ୍ଥମାନଙ୍କ ପାଳନୀୟ ଆଶ୍ରବଧିକୁ ନେଇ 'ନିତ୍ୟାଚାର ପଦ୍ଧତି' ଗ୍ରନ୍ଥଟି ରଚନା କରିଛନ୍ତି । ଏହି ଗ୍ରନ୍ଥଟି ନିତ୍ୟାଚାର ସୂଚକା ତଥା ନିତ୍ୟାଚାର ପ୍ରକରଣ ନାମରେ ଅଭିହିତ । ୱୀରକେଶରୀ ଦେବଙ୍କ ୧୧ ଅଙ୍କ ବା ୧୭୪୪ ଖ୍ରୀଷ୍ଟାବ୍ଦରେ ଗ୍ରନ୍ଥଟି ନକଲ କରାଯାଇଛି ।୧୪୫।

୪୫ । ଗୋପାଳ ନନ୍ଦ :

ଗୋପାଳ ନନ୍ଦ (୧୭୫୦ ଖ୍ରୀଷ୍ଟାବ୍ଦ) ସାମବେଦୀୟ ବ୍ରାହ୍ମଣମାନଙ୍କ ନିମିତ୍ତ 'ନିତ୍ୟାଚାର ପଦ୍ଧତି' ଶୀର୍ଷକ ଖଣ୍ଡିଏ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଭ୍ରମବଶତଃ ଗ୍ରନ୍ଥକାରଙ୍କ ନାମ ଗୋପାଳାନନ୍ଦ ରୂପେ ପ୍ରକାଶ କରିଛନ୍ତି ।୧୪୬। ନିତ୍ୟାଚାର ପଦ୍ଧତିର ମଙ୍ଗଳାଚରଣରେ ଗ୍ରନ୍ଥକାର ରାଧାକୃଷ୍ଣଙ୍କୁ ସ୍ତୁତି କରିଛନ୍ତି । ଉତ୍କଳୀୟ ଧର୍ମଶାସ୍ତ୍ରରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶ୍ରୀରାଧାପୂଜା ଆରମ୍ଭ ହୋଇଥିବାରୁ ସ୍ମୃତିକାର ଗୋପାଳ ସେହି ସମୟରେ ବର୍ତ୍ତମାନ ଥିବାର ନିର୍ଦ୍ଧାରଣ କରାଯାଇପାରେ । ଦୁର୍ଭାଗ୍ୟର ବିଷୟ, ଏହି ଗ୍ରନ୍ଥଟି ଅଦ୍ୟାବଧି ଉପଲବ୍ଧ ନୁହେଁ ।

୪୬ । ଧର୍ମୁ ପାଠୀ :

ଭରଦ୍ୱାଜଗୋତ୍ରୀୟ ଧର୍ମୁ ପାଠୀ (୧୭୫୦ ଖ୍ରୀଷ୍ଟାବ୍ଦ) 'କାଳଚନ୍ଦ୍ରିକା' ନାମରେ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି । କାଳଚନ୍ଦ୍ରିକା ଗ୍ରନ୍ଥରେ ଗୋପାଳ ଭଟ୍ଟଙ୍କ (୧୫୩୩ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'ହରିଭକ୍ତି ବିଳାସ'ର ଉଦ୍ଧୃତି ଏବଂ ରାଧାକୃଷ୍ଣଙ୍କ ବନ୍ଦନା ଓ ଚୈତନ୍ୟଜନ୍ମାଦି ବିଷୟ ଥିବାରୁ ଧର୍ମୁ ପାଠୀଙ୍କୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟକାଳୀନ ସ୍ମୃତିକାର ଭାବେ ଗ୍ରହଣ କରାଯାଇ ପାରେ ।୧୪୭।

---

୧୪୫ । (କ) ନାରାୟଣଂ ପ୍ରଣମ୍ୟାଦୌ ଋଷୀନ୍ ଶାସ୍ତ୍ରପ୍ରଣେତୃକାନ୍ ।
ଗୁରୂନ୍ ଚୈବ ଗୃହସ୍ଥାନାମାଚାରୋ ବକ୍ଷ୍ୟତେ କ୍ରମାତ୍ ॥
(ଖ) କେଶରୀ ଦେବ ନୃପତେ ରୁଦ୍ରାଙ୍କେ ଲିଖିତଂ ମୟା ।
ଲୋକନାଥେନ ନାମ୍ନା ବୈ ବିପ୍ରେଣାଧର ଶର୍ମ୍ମଣା ॥
(OSM. Mss. Dh. No. 27)

୧୪୬ । Notices of Sans. Mss. Vol. IV—
by H. P. Shastri, P-110

୧୪୭ । (କ) ଭରଦ୍ୱାଜସ ଗୋତ୍ରେଣ ସୁଧିୟା ଧର୍ମୁପାଠିନା ।
ସ୍ମୃତିଃସର୍ବା ପରାମୃଶ୍ୟ ତନ୍ୟତେ କାଳଚନ୍ଦ୍ରିକା ॥
(ଖ) ପ୍ରଣମ୍ୟ ରାଧିକାକୃଷ୍ଣୌ ତଦାଙ୍ଘ୍ରିଂ ଶିରସା ବହନ୍ ।
କାଳନିର୍ଣ୍ଣୟ-ବୋଧାୟ କୁର୍ବେଽହଂ କାଳଚନ୍ଦ୍ରିକାମ୍ ॥
(କାଳଚନ୍ଦ୍ରିକା—OSM. Dh. No. 291)

## ୪୭ । ବଳଦେବ ବିଦ୍ୟାଭୂଷଣ :

ବଳଦେବ ବିଦ୍ୟାଭୂଷଣ (୧୭୫୦ ଖ୍ରୀଷ୍ଟାବ୍ଦ) ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ରେମୁଣା ନିକଟବର୍ତ୍ତୀ ମରେଇ ଗାଁରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନ୍ମଗ୍ରହଣ କରିଥିଲେ । ସେହି ପବିତ୍ର ଗ୍ରାମରେ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାଗ୍‌ଭାଗରେ ପୁଣ୍ୟାତ୍ମା ଶ୍ରୀଧର ସ୍ୱାମୀଙ୍କର ଆବିର୍ଭାବ ଘଟିଥିଲା । ବଳଦେବ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟରେ 'ଏକାନ୍ତୀ ଗୋବିନ୍ଦ ଦାସ' ନାମରେ ପ୍ରସିଦ୍ଧ । ସେ ବହୁ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ପ୍ରଣୀତ ଗ୍ରନ୍ଥ ମଧ୍ୟରେ ବ୍ରହ୍ମସୂତ୍ରର ଗୋବିନ୍ଦ ଭାଷ୍ୟ, ଭାଷ୍ୟପୀଠକର ସିଦ୍ଧାନ୍ତରତ୍ନ, ବେଦାନ୍ତ ମନ୍ତ୍ରକ, ପ୍ରମେୟ ରତ୍ନାବଳୀ, ସିଦ୍ଧାନ୍ତ ଦର୍ପଣ, ସାହିତ୍ୟ କୌମୁଦୀ, ବ୍ୟାକରଣ କୌସ୍ତୁଭ, ବ୍ୟାକରଣ କୌମୁଦୀ, ପଦକୌସ୍ତୁଭ, ବୈଷ୍ଣବାନନ୍ଦନୀ (ଭାଗବତ ୧୦ମ ସ୍କନ୍ଧର ଟୀକା), ଗୋପାଳତାପିନୀ ଭାଷ୍ୟ, ଈଶାଦିଦଶୋପନିଷଦ୍ ଭାଷ୍ୟ, ଶ୍ରୀ ଗୀତାଭୂଷଣ ଭାଷ୍ୟ, ବିଷ୍ଣୁସହସ୍ରନାମ ଭାଷ୍ୟ, ସଂକ୍ଷେପ ଭାଗବତାମୃତ ଟିପ୍‌ପଣୀ, ସାରଙ୍ଗ ରଙ୍ଗଦା, ତତ୍ତ୍ୱସନ୍ଦର୍ଭ ଟୀକା, ସ୍ତବମାଳା ବିଭୂଷଣ ଭାଷ୍ୟ, ନାଟକ ଚନ୍ଦ୍ରିକାଟୀକା, ଛନ୍ଦ କୌସ୍ତୁଭ ଭାଷ୍ୟ, ଶ୍ୟାମାନନ୍ଦ ଶତକ ଟୀକା, ଚନ୍ଦ୍ରାଲୋକ ଟୀକା, ସାହିତ୍ୟକୌମୁଦୀ ଟୀକା, କୃଷ୍ଣାନନ୍ଦନୀ, ଶ୍ରୀଗୋବିନ୍ଦଭାଷା ଟୀକା-ସୂକ୍ଷ୍ମା ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।୧୪୮। ଏଥିରୁ ବଳଦେବ କାବ୍ୟ, ବ୍ୟାକରଣ, ଅଳଙ୍କାର, ନ୍ୟାୟ, ବେଦ, ବେଦାନ୍ତ ଧର୍ମଶାସ୍ତ୍ର ପ୍ରଭୃତିରେ ମହାପଣ୍ଡିତ ଥିବାର ଜଣାଯାଏ ।

## ୪୮ । ମହାମହୋପାଧ୍ୟାୟ କୃଷ୍ଣ ମିଶ୍ର :

ମହାମହୋପାଧ୍ୟାୟ କୃଷ୍ଣ ମିଶ୍ର (୧୭୫୦ ଖ୍ରୀଷ୍ଟାବ୍ଦ) ଜଣେ ଅସାଧାରଣ ପଣ୍ଡିତ ଥିବା ତାଙ୍କ ପ୍ରଣୀତ 'କାଳସର୍ବସ୍ୱ' ଗ୍ରନ୍ଥପୁଷ୍ପିକାରୁ ସୂଚିତ ହୁଏ ।୧୪୯। 'ସାହିତ୍ୟ ରତ୍ନାକର' ନାମକ ଅଳଙ୍କାରଗ୍ରନ୍ଥର 'ସୁଧାକର' ଟୀକାକାର କୃଷ୍ଣ ମିଶ୍ର ଓ 'କାଳସର୍ବସ୍ୱ'କାର କୃଷ୍ଣ ମିଶ୍ରଙ୍କ ପ୍ରପିତାମହ ଏକ ହୋଇଥିବାରୁ ଉଭୟ ଅଭିନ୍ନ ବ୍ୟକ୍ତି ରୂପେ ଗ୍ରହଣ କରାଯାଇ-ପାରେ ।୧୫୦।

କାଳସର୍ବସ୍ୱବର୍ଣ୍ଣିତ ବଂଶାବଳୀ ଅନୁସାୟୀ କୌତ୍ସଗୋତ୍ରୀୟ ରାମଚନ୍ଦ୍ର ମିଶ୍ର ଗଜପତି ନରସିଂହ ଦେବ-୪ଙ୍କ (୧୬୨୭-୧୪୦୧ ଖ୍ରୀଷ୍ଟାବ୍ଦ) ମନ୍ତ୍ରୀ କୃଷ୍ଣାନନ୍ଦ ସାନ୍ଧିବିଗ୍ରହିକ ମହାପାତ୍ରଙ୍କ ପ୍ରଣୀତ 'ସହୃଦାନନ୍ଦ ମହାକାବ୍ୟ'ର 'ବୁଧ ନନ୍ଦିନୀ' ଟୀକା ରଚନା କରିଥିଲେ ।

---

୧୪୮ । ଶ୍ରୀକ୍ଷେତ୍ର (ବଙ୍ଗଳା) —ପୃ-୬୦୫-୬୦୬ ॥

୧୪୯ । ଇତି ଶ୍ରୀମତ୍କୌତ୍ସକୁଲକୈରବଶରନ୍ନିଶାକର ବୈଶେଷିକ ମୀମାଂସାଶେଷଭାଷ୍ୟାଦିଶାସ୍ତ୍ରାକ୍‌ପାର-ପାରଙ୍ଗମ-ସାହିତ୍ୟସଙ୍ଗୀତଛନ୍ଦପ୍ରାକୃତଃ ଜ୍ୟୋତିଃ ପାଟୀବୀଜାଦିବିଦାଂ ଗର୍ବସର୍ବଙ୍କଷ ମହାମହୋପାଧ୍ୟାୟ କବି-କୋବିଦ କୃଷ୍ଣମିଶ୍ରେ ବିରଚିତେ 'କାଳସର୍ବସ୍ୱେ' ବୈଷ୍ଣବପ୍ରକରଣଂ ସମାପ୍ତମ୍ ॥ (OSM. Mss. Dh. No. 115)

୧୫୦ । ଖୁର୍ଦ୍ଧା ଇତିହାସ—ପୃ-୨୫୧ ।

ରାମଚନ୍ଦ୍ର ଥିଲେ ମୃତ୍ୟୁଞ୍ଜୟ ମିଶ୍ରଙ୍କ ପୁତ୍ର । ରାମଚନ୍ଦ୍ରଙ୍କ ପୁତ୍ର ପଣ୍ଡିତ ପରମାନନ୍ଦ ଥିଲେ ସ୍ମୃତିକାର କୃଷ୍ଣମିଶ୍ରଙ୍କ ପିତା । ଗଜପତି ରାମଚନ୍ଦ୍ର ଦେବ-୨ଙ୍କ (୧୭୨୬-୧୭୩୬ ଖ୍ରୀଷ୍ଟାବ୍ଦ) ରାଜଗୁରୁ ଗୋପୀନାଥ ବାଜପେୟୀ ତଥା ଗଦାଧରଙ୍କ ଦୀକ୍ଷାସାର, ଯୋଗସାର ପ୍ରଭୃତିର ବାକ୍ୟାବଳୀ ଉଦ୍ଧାର କରିଥିବାରୁ କୃଷ୍ଣ ମିଶ୍ର ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଥିବାର ଜଣାଯାଏ ।

୧୭୫୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ପ୍ରଣୀତ ଓଡ଼ିଶାର ସ୍ମୃତିଗ୍ରନ୍ଥ ମଧ୍ୟରେ ସ୍ୱତନ୍ତ୍ରଭାବେ ମାଧ୍ୱାଚାର୍ଯ୍ୟ-ପନ୍ଥୀ ବୈଷ୍ଣବମାନଙ୍କ ଉପବାସ ଓ ଉତ୍ସବାଦି ବିଧି ସର୍ବପ୍ରଥମେ ଦିବ୍ୟସିଂହ ମହାପାତ୍ରଙ୍କ (୧୬୪୦-୧୬୮୦ ଖ୍ରୀଷ୍ଟାବ୍ଦ) 'କାଳଦୀପ'ରେ ଉଲ୍ଲେଖ କରାଯାଇଛି । ଗଦାଧର ମହାପାତ୍ର (୧୭୦୦-୧୭୫୦-ଖ୍ରୀଷ୍ଟାବ୍ଦ) ଗୌଡ଼ୀୟ ତଥା ଉତ୍କଳୀୟ ବୈଷ୍ଣବମାନଙ୍କ ନିମିତ୍ତ ଏକାଦଶୀ ପ୍ରକରଣ ନାମରେ ଏକ ସ୍ୱତନ୍ତ୍ର ଅଧ୍ୟାୟ 'କାଳସାର'ରେ ସନ୍ନିବେଶିତ କରିଛନ୍ତି । ପରବର୍ତ୍ତୀ ସ୍ମୃତିକାର ରୂପେ କୃଷ୍ଣ ମିଶ୍ର 'କାଳସର୍ବସ୍ୱ' ଗ୍ରନ୍ଥର ଦ୍ୱିତୀୟାର୍ଦ୍ଧରେ ମାଧ୍ୱବୈଷ୍ଣବ ଓ ଉତ୍କଳୀୟ ବୈଷ୍ଣବମାନଙ୍କ ବ୍ରତ ଓ ଉପବାସ ବିଧି ବିସ୍ତୃତ ଭାବେ ପର୍ଯ୍ୟାଲୋଚନା କରିଛନ୍ତି । ଉକ୍ତ ଗ୍ରନ୍ଥରୁ ତାଙ୍କ ପ୍ରଣୀତ 'ଶୁଦ୍ଧିସର୍ବସ୍ୱ' ଓ 'ବୈଷ୍ଣବସର୍ବସ୍ୱ' ଗ୍ରନ୍ଥର ନାମତଃ ସୂଚନା ମିଳେ ।୧୫୧। ଲଳିତାଷ୍ଟମୀ ଓ ରାଧାଷ୍ଟମୀ ପ୍ରଥମେ ରଘୁନାଥ ଦାଶଙ୍କ କାଳନିର୍ଣ୍ଣୟରେ ଉଲ୍ଲିଖିତ ଅଛି । ଗୋପାଳ ନନ୍ଦଙ୍କ 'ନିତ୍ୟାଚାର ପଦ୍ଧତି' ଧର୍ମୁ ପାଠୀଙ୍କ 'କାଳ ଚନ୍ଦ୍ରିକା' ପରେ ଆଲୋଚ୍ୟ 'କାଳସର୍ବସ୍ୱ'ରେ ତାହା ବିଶେଷ ଭାବେ ଆଲୋଚିତ ହୋଇଛି ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ବଳଦେବ ବିଦ୍ୟାଭୂଷଣ, ରସିକାନନ୍ଦ ଗୋସ୍ୱାମୀ ତଥା ଅନ୍ୟ ପ୍ରଚାରକଙ୍କ ଦ୍ୱାରା ରାଧାକୃଷ୍ଣ-ଉପାସନା ଉତ୍କଳରେ ବିଶେଷ ପ୍ରସାର ଲାଭ କରି-ଥିବାରୁ କୃଷ୍ଣ ମିଶ୍ର ତାଙ୍କ ଗ୍ରନ୍ଥରେ ସେ ସବୁର ପର୍ଯ୍ୟାଲୋଚନା କରିଛନ୍ତି ।

(କ) 'କାଳସର୍ବସ୍ୱ' ଆରମ୍ଭରେ ଗ୍ରନ୍ଥକାର ଶ୍ରୀକୃଷ୍ଣଙ୍କ ବନ୍ଦନା ସହିତ ସ୍ମାର୍ତ୍ତ ଓ ବୈଷ୍ଣବ-ମାନଙ୍କ କ୍ରିୟାବିଧି ବିଷୟରେ ଏହା ରଚନା କରିଥିବାର ସୂଚନା ଦେଇଛନ୍ତି । ଉକ୍ତ ବିଷୟର ପୁରାଣ 'ସ୍ମୃତି' ଓ ଜ୍ୟୋତିଷଶାସ୍ତ୍ରରେ ଥିବା ମତଭେଦ ନିରାକରଣରେ ଏହା ସହାୟକ ହେବ ବୋଲି ଗ୍ରନ୍ଥପୁଷ୍ପିକାରେ ସ୍ମୃତିକାର ଆଶା ପୋଷଣ କରିଛନ୍ତି ।୧୫୨।

---

୧୫୧ । A. D C. of Skt. Mss. Vol. I. PP—XXXVIII.

୧୫୨ । (କ) ସଗ୍ରହଣ ପଞ୍ଚାଙ୍ଗସ୍ପୃଷ୍ଟ ମଭିଧାୟାପରାମର୍ଷିଭେ ଶ୍ଳୌ ।
ନତ୍ୱା କୃଷ୍ଣଃ ସୁଧୀଶଃ କରୁତେ ସକାଳ ସର୍ବସ୍ୱମ୍ ॥

(ଖ) ସ୍ମାର୍ତ୍ତାଚାର ସ୍ଥିତଂ କିଞ୍ଚିଦତି ଦର୍ଶ୍ୟେତ ବୈଷ୍ଣବେ ।
ବୈଷ୍ଣବସ୍ଥଂ ତଥା ସ୍ମାର୍ତ୍ତେ ସଦୁକ୍ତଂ ବିଚାରନ୍ନୟା ॥
ଷୋଡ଼ଶାନାଂ ତଥୀନାଂ ଚ ଦ୍ୱୈଧେନୁଷ୍ଠାନ ନିର୍ଣ୍ଣୟଃ ।
ସ୍ମାର୍ତ୍ତବୈଷ୍ଣବୟୋଃ ପ୍ରୋକ୍ତଃ ହସୋଗୋ ଲାଘବାନ୍ନୟା ॥

ଏହି ଗ୍ରନ୍ଥ ସ୍ମାର୍ତ୍ତ ଓ ବୈଷ୍ଣବ ପ୍ରକରଣ ଭାବରେ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ସ୍ମାର୍ତ୍ତ ଭାଗରେ ଉତ୍କଳର ପୂର୍ବସୂରିଙ୍କ ଆଲୋଚିତ ବିଷୟ ସହିତ ଶୀତାବିବାହାଦି ଏବଂ ବୈଷ୍ଣବ ପ୍ରକରଣରେ ଦ୍ୱାଦଶମାସ କୃତ୍ୟ ଦୀକ୍ଷାଦାନ, ରାମନବମୀ, ପୁଷ୍ପଦୋଳାବିଧି, ଗୃହାନୟନ, ବୈଶାଖ ପୂର୍ଣ୍ଣିମା, ଆଷାଢ଼ ଶୁକ୍ଳ-ଦ୍ୱାଦଶୀ (କ୍ଷୀରବିଧିଶୟନୋତ୍ସବ), ଜଳଭାଜନମ୍, ଜନ୍ମାଷ୍ଟମୀ ବା ରାଧାଷ୍ଟମୀ, ଦାମୋଦରଜନ୍ମ (ଗିରି ଗୋବର୍ଦ୍ଧନ) ଓ ଅଧିମାସ-କୃତ୍ୟାଦି ବର୍ଣ୍ଣିତ ହୋଇଛି ।

(ଖ) 'ଶୁଦ୍ଧି-ସର୍ବସ୍ୱ' ଆରମ୍ଭରେ ସ୍ମୃତିକାର କୃଷ୍ଣ ମିଶ୍ର କୁଳଦେବତାଙ୍କୁ ବନ୍ଦନା କରିଛନ୍ତି । ।୧୫୩। ଏଥିରେ ମୁଖ୍ୟତଃ ଆଚାର, ଅଶୌଚ, ଶୁଦ୍ଧି, ଭକ୍ଷ୍ୟାଭକ୍ଷ୍ୟ, ଶ୍ରାଦ୍ଧ-ଉପବାସାଦିର ବିଚାର କରାଯାଇଛି ।

ଆଲୋଚ୍ୟ, 'ଶୁଦ୍ଧିସର୍ବସ୍ୱ'ରେ କ୍ଷୌରବିଷୟରେ ଓଡ଼ିଶାର ଆଚାର-ବିଧି ସୂଚିତ ହୋଇଅଛି । ଗଙ୍ଗା-ପ୍ରୟାଗାଦି ତୀର୍ଥରେ ସମସ୍ତଙ୍କର ମୁଣ୍ଡନ ବ୍ୟବସ୍ଥା ଥିଲେ ମଧ୍ୟ ଓଡ଼ିଶାର ସ୍ତ୍ରୀଲୋକମାନେ ମୁଣ୍ଡିତ ହୁଅନ୍ତି ନାହିଁ । ଅଶୌଚରେ ଓଡ଼ିଶାର ବ୍ରାହ୍ମଣମାନେ କକ୍ଷ ଓ ଉପସ୍ଥ କ୍ଷୌର ହୁଅନ୍ତି ନାହିଁ ବୋଲି ଏଥିରେ ଉଲ୍ଲେଖ କରାଯାଇଛି ।

## ୪୯ । ପୀତାମ୍ବର ଦ୍ୱିଜ :

ଦ୍ୱିଜ ପୀତାମ୍ବର (୧୬୫୦-୧୬୮୬ ଖ୍ରୀଷ୍ଟାବ୍ଦ) ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଚିଦାମଲ୍ଲନ ଚକଡି ରାଜ୍ୟର ରାଜା କବି ଯଦୁମଣି ରାଉତରାୟଙ୍କ ପ୍ରପୌତ୍ର କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ସଭାପଣ୍ଡିତ ଥିଲେ । ସେ ବିଭିନ୍ନ ପୁରାଣ ଓ ତନ୍ତ୍ରାଦି ଗ୍ରନ୍ଥର ଉଦ୍ଧୃତି ସହିତ 'ଶ୍ରୀକୃଷ୍ଣାର୍ଚ୍ଚନବିଧି' ନାମରେ ଏକ ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି ।୧୫୪।

---

(ଗ) ଗ୍ରନ୍ଥାଃ ସନ୍ତି ପୁରାତନା ଇହ ନବା ଯଦ୍ୟପ୍ୟନେକେ ସ୍ମୃତୌ
ପ୍ରାୟସ୍ତେ ତଦପୀହ ସଂଶୟଫଳା ନିର୍ଣ୍ଣାୟକା ନତ୍ୟତଃ ।
ଜ୍ୟୋତ୍ସ୍ନଃ ସାଧନକର୍ମୋପପତ୍ତିକବଚଃ ସ୍ମାର୍ତ୍ତେ ତଥା ବୈଷ୍ଣବେ
ଭୋ ଧୀରା ଅଧିକଂ କ୍ୱଚିଚ୍ଚ ଚନୁତ ଶ୍ରୀକାଳସର୍ବସ୍ୱତଃ ।।
(OSM Mss. Dh. No. 115)

୧୫୩ । ଶ୍ରୀରାମଂ କୁଳଦେବଂ ଚ ସିଦ୍ଧେଶୀଂ କୃଷ୍ଣସୁନ୍ଦରୀ ।
ପ୍ରଣମ୍ୟ ଶୁଦ୍ଧିସର୍ବସ୍ୱଂ ସତାଂ ବୋଧାୟ ରଚ୍ୟତେ ।।

୧୫୪ । ଖ୍ୟାତୋଽସ୍ମିନ୍ କ୍ଷିତିମଣ୍ଡଳେ ଚ ଚକଡୀ ବିଦ୍ୱଜ୍ଜନୈରନ୍ୱିତ ।
ରାଜା ଯତ୍ର ନୃପେନ୍ଦ୍ର ଦେବ ଉଦିତଚ୍ଛନ୍ଦୋ ଦ୍ୱିତୀୟୋ ଯଥା ।
ତସ୍ୟାଜ୍ଞାବଶତଦ୍ଭନୋତି କୁତୁକୀ ପୀତାମ୍ବରାଖ୍ୟୋ ଦ୍ୱିଜଃ
ସୂତ ଭୂରି ମହାପୁରାଣମୁଦେ ଗ୍ରନ୍ଥଂ ହରେରର୍ଚ୍ଚନମ୍ ।।
(OSM. Mss. Dh. No. 422)

## ୫୦ । ଯୋଗୀ ପ୍ରହରାଜ ମହାପାତ୍ର :

ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ନୀଳକଣ୍ଠ ପ୍ରହରାଜଙ୍କ ପୁତ୍ର ଯୋଗୀ ପ୍ରହରାଜ ମହାପାତ୍ର (୧୭୫୦-୧୭୮୧ ଖ୍ରୀଷ୍ଟାବ୍ଦ) 'ସଂକ୍ଷିପ୍ତ ସ୍ମୃତିଦର୍ପଣ' ନାମରେ ଖଣ୍ଡିଏ ସ୍ମୃତିଗ୍ରନ୍ଥ ରଚନା କରିଥିଲେ । ତାଙ୍କ ପ୍ରଣୀତ 'ବୈଦ୍ୟ ହୃଦୟାନନ୍ଦ' ନାମକ ଚିକିତ୍ସା ଗ୍ରନ୍ଥ ପ୍ରକାଶିତ ହୋଇଛି । ସେ ନନ୍ଦପୁର (କୋରାପୁଟ) ରାଜ୍ୟର ବିକ୍ରମ ଦେବଙ୍କ (୧୭୫୮-୧୭୮୧ ଖ୍ରୀଷ୍ଟାବ୍ଦ) ସଭାକବି ଥିଲେ ।୧୫୫। ତାଙ୍କ ସ୍ମୃତିଗ୍ରନ୍ଥଟି ଅଦ୍ୟାପି ସଂଗୃହୀତ ହୋଇପାରିନାହିଁ ।

## ୫୧ । କବିଭୂଷଣ ଗୋବିନ୍ଦ ସାମନ୍ତରାୟ :

ଗୋବିନ୍ଦ ସାମନ୍ତରାୟ (୧୭୫୦ ଖ୍ରୀଷ୍ଟାବ୍ଦ) 'ସ୍ମୃତିସର୍ବସ୍ୱ' ଗ୍ରନ୍ଥର ରଚୟିତାଭାବେ ସୁବିଦିତ । ଏହି ଗ୍ରନ୍ଥର ଶେଷ ସଂଗ୍ରହରେ ଗ୍ରନ୍ଥକାରଙ୍କ ବଂଶାବଳୀର ବିସ୍ତୃତ ବର୍ଣ୍ଣନା ରହିଛି । ପୁରୀ ଜିଲ୍ଲାର ପିପିଲି ନିକଟବର୍ତ୍ତୀ ଦୁର୍ଗାଦାସପୁର ଶାସନର ପ୍ରତିଷ୍ଠାତା ଭରଦ୍ୱାଜଗୋତ୍ରୀୟ ଦୁର୍ଗାଦାସଙ୍କ ପୁତ୍ର କବିଚନ୍ଦ୍ର ବିଶ୍ୱନାଥ ସାମନ୍ତରାୟ ରାଜା ମାନସିଂହଙ୍କ ସହାୟତାରୁ ନିଜର ପାଣ୍ଡିତ୍ୟ ତଥା କବିପ୍ରତିଭାର ପରିଚୟ ଦେଇ ସମ୍ରାଟ୍ ଆକବରଙ୍କ ଦ୍ୱାରା ଦିଲ୍ଲୀ ଦରବାରରେ ସମ୍ମାନିତ ହୋଇଥିଲେ ।୧୫୬। ବିଶ୍ୱନାଥଙ୍କ ମୃତ୍ୟୁ ପରେ ଦୁଇପୁଅ ମହାଦେବ ଓ ମହେଶ୍ୱର ମନ୍ତ୍ରୀ ଦାସ ବିଦ୍ୟାଧରଙ୍କ (୧୫୬୮-୧୬୨୮ ଖ୍ରୀଷ୍ଟାବ୍ଦ) ଆଶ୍ରୟରେ କିଛିକାଳ ଅତିବାହିତ କରିଥିଲେ । ତୋଡ଼ରମଲ୍ଲଙ୍କ ଆକ୍ରମଣରେ ଦାସ ବିଦ୍ୟାଧର ମୃତ୍ୟୁବରଣ କରିବାରୁ ତାଙ୍କ ବିଧବାପତ୍ନୀଙ୍କୁ ନେଇ ଦୁଇ ଭାଇ ତତ୍କାଳୀନ ବାଙ୍କୀ ରାଜ୍ୟରେ ସ୍ଥାୟୀ ଭାବରେ ବସବାସ କରିଥିଲେ ।୧୫୭।

ମହେଶ୍ୱରଙ୍କ ପୁତ୍ର ତ୍ରିଲୋଚନଙ୍କଠାରୁ କୃଷ୍ଣଚନ୍ଦ୍ର ଓ ତାଙ୍କ ପୁତ୍ର ପଦ୍ମନାଭଙ୍କଠାରୁ ଦାଶରଥି ଜନ୍ମଗ୍ରହଣ କଲେ । ବୃହସ୍ପତିତ ରାମଚନ୍ଦ୍ର ସାମନ୍ତରାୟ ଥିଲେ ଦାଶରଥିଙ୍କ ପୌତ୍ର ଓ ବିଶ୍ୱନାଥଙ୍କ ପୁତ୍ର । ସେହି ରାମଚନ୍ଦ୍ର ସାମନ୍ତରାୟ ବା ରାମ ଶର୍ମାଙ୍କ ଯଶସ୍ୱୀ ପୁତ୍ର ଥିଲେ ଗୋବିନ୍ଦ । ସେ ନିଜ ପାଣ୍ଡିତ୍ୟର ପରିଚୟ ଦେଇ ଖୋର୍ଦ୍ଧାର ରାଜା ବୀରକେଶରୀ ଦେବଙ୍କ (୧୭୩୬-୧୭୯୩ ଖ୍ରୀଷ୍ଟାବ୍ଦ)ଠାରୁ 'କବିଭୂଷଣ' ଉପାଧି ଲାଭ କରିଥିବାର ବିଶ୍ୱାସ କରାଯାଏ । ସ୍ମୃତିସର୍ବସ୍ୱ ଗ୍ରନ୍ଥର ଉଲ୍ଲେଖ ଅନୁଯାୟୀ କବିଭୂଷଣ ଗୋବିନ୍ଦ ସଂସ୍କୃତ ଗଦ୍ୟ, ପଦ୍ୟ, ଛନ୍ଦାଦି ଶାସ୍ତ୍ରରେ ପାରଦର୍ଶୀ ଥିଲେ ।୧୫୮।

---

୧୫୫ । (କ) A. D. C. of Skt. Mss. Vol. I, PP-XLII.

(ଖ) ଏହାର ଏକ ପୋଥି ଢଗପଡ଼ିଣ୍ଡିନିବାସୀ ଡମ୍ବରୁଧର ମିଶ୍ରଙ୍କ ପାଖରେ ଥିବାର ଜଣାଯାଏ । (ଲେଖକ)

୧୫୬ । ସ୍ମୃତିସର୍ବସ୍ୱ—ସଂଗ୍ରହ-୪୦, ଶ୍ଳୋକ-୯-୧୧ ।

୧୫୭ । ଖୁର୍ଦ୍ଧା ଇତିହାସ—ପୃ. ୨୫୧-୨୫୨ ।

୧୫୮ । ସ୍ମୃତିସର୍ବସ୍ୱ—ସଂଗ୍ରହ-୪-ଶ୍ଳୋକ-୪ ।

ଐତିହାସିକ ହଣ୍ଟର, ମନମୋହନ ଚକ୍ରବର୍ତ୍ତୀ ତଥା ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଉଲ୍ଲେଖ ଅନୁଯାୟୀ କବିଭୂଷଣଙ୍କ ପ୍ରଣୀତ ତିନୋଟି ଗ୍ରନ୍ଥର ସୂଚନା ମିଳେ । ତନ୍ମଧ୍ୟରେ 'ଶୂଦ୍ରସର୍ବସ୍ୱ' ସାମାଜିକ ବ୍ୟବସ୍ଥା, 'ସାରସର୍ବସ୍ୱ' ନୀତିବିଷୟକ ତଥା 'ସମୃଦ୍ଧ ମାଧବ ନାଟକ' କୃଷ୍ଣଲୀଳା ଉପରେ ଆଧାରିତ । ତିଗିରିଆର ରାଜା ଗୋପୀନାଥ ଭୃଙ୍ଗଙ୍କ ପ୍ରଣୀତ ରାଜଧର୍ମବିଷୟକ 'ସାରସର୍ବସ୍ୱ' ବ୍ୟତୀତ ଗୋବିନ୍ଦଙ୍କ ପ୍ରଣୀତ ଗ୍ରନ୍ଥ ଅଦ୍ୟାବଧି ମିଳିନାହିଁ । 'ସମୃଦ୍ଧ ମାଧବ' ନାଟକଟି ରୂପଗୋସ୍ୱାମୀଙ୍କ 'ବିଦଗ୍ଧମାଧବ ନାଟକ' ଶୈଳୀରେ ସାତୋଟି ଅଙ୍କରେ ପ୍ରଣୀତ । କବିଭୂଷଣଙ୍କ ପୌତ୍ର କମଳଲୋଚନ ଖଡ୍‌ଗରାୟଙ୍କ ଉଲ୍ଲେଖ ଅନୁସାରେ ସ୍ମୃତିକାର ଗୋବିନ୍ଦ ଖଣ୍ଡିଏ ଚିତ୍ରକାବ୍ୟ ମଧ୍ୟ ରଚନା କରିଥିଲେ ।୧୫୯।

'ଶୂଦ୍ରସର୍ବସ୍ୱ' ଗ୍ରନ୍ଥଟି ଷୋଳଗୋଟି ସଂଗ୍ରହରେ ବିଭକ୍ତ । ଏହାର ପ୍ରଥମ ଏକୋଇଶ ସଂଗ୍ରହକୁ ପୂର୍ବ ଖଣ୍ଡ ଓ ପରବର୍ତ୍ତୀ ସଂଗ୍ରହଗୁଡ଼ିକ ଉତ୍ତରଖଣ୍ଡ ରୂପେ ନାମିତ । ଏଥିରେ ନିତ୍ୟକୃତ୍ୟ, ବୈଦିକ ଓ ତାନ୍ତ୍ରିକ ଉପାସନା ପଦ୍ଧତି ଆଲୋଚିତ ହୋଇଛି ।୧୬୦।

## ୫୨ । ଖଞ୍ଜ ଗୋବିନ୍ଦ ଦାସ :

ଖଞ୍ଜ ଗୋବିନ୍ଦ ଦାସ (୧୬୭୫ ଖ୍ରୀଷ୍ଟାବ୍ଦ) ସାମ୍ପ୍ରତିକ ଆନ୍ଧ୍ରର ଶ୍ରୀକାକୁଲମ୍ ଜିଲ୍ଲା ଅନ୍ତର୍ଗତ ମଞ୍ଜୁଷାରେ 'ସର୍ବ ସ୍ମୃତିସାର ସଂଗ୍ରହ' ଗ୍ରନ୍ଥ ରଚନା କରିଥିଲେ । ସେ ରାଜା ଶ୍ରୀନିବାସ ରାଜମଣିଙ୍କ ପୃଷ୍ଠପୋଷକତାରେ ଏହି ଗ୍ରନ୍ଥ ସଂକଳନ କରିଥିବାର ଦେଖାଯାଏ ।୧୬୧। ଗ୍ରନ୍ଥାରମ୍ଭରେ ସେ କୌଣ୍ଡିନ୍ୟବଂଶୀୟ କୃଷ୍ଣ ନାମକ ସ୍ୱଗୁରୁଙ୍କ ବନ୍ଦନା କରିଛନ୍ତି ।୧୬୨। ପରବର୍ତ୍ତୀ ସାତୋଟି ଶ୍ଳୋକରେ ମଞ୍ଜୁଷାର ରାଜା ହରିଶରଣ ବର୍ମା ତାଙ୍କ ପୁତ୍ର ଶ୍ରୀ ଲକ୍ଷ୍ମଣ ରାଜମଣି ଓ ପୌତ୍ର ଶ୍ରୀନିବାସ ରାଜମଣିଙ୍କ ପରିଚୟ ବର୍ଣ୍ଣିତ ହୋଇଅଛି ।

---

୧୫୯ । ଆସୀତ୍ ଶ୍ରୀ ବିଶ୍ୱନାଥ ପ୍ରବରତର ଭରଦ୍ୱାଜବଂଶାବତଂସଃ
ଶାନ୍ତାତ୍ମା କୃଷ୍ଣଭକ୍ତୋଽଭବଦଥତନୁଜୋ ଯସ୍ତତୋ ରାମଚନ୍ଦ୍ରଃ ।
ତତ୍ପୁତ୍ରଃ ଚିତ୍ରକାବ୍ୟାଗମରଚନପଟୁଃ ଶ୍ରୀଲ ଗୋବିନ୍ଦନାମା
ତସ୍ୟାସୀନ୍ନନ୍ଦନୋ ଯଃ ସକଳଗୁଣବଳାବନ୍ଦିତଃ କୃଷ୍ଣଚନ୍ଦ୍ରଃ ॥
(ଶୂଦ୍ରସର୍ବସ୍ୱ—ବେଙ୍ଗଲ ଏସିଆଟିକ୍ ସୋସାଇଟି ସଂସ୍କରଣ, ୧୯୧୨—ପୃ-୧)

୧୬୦ । ଶୂଦ୍ରସର୍ବସ୍ୱ—ସଂଗ୍ରହ ୨୧-ଶ୍ଳୋକ ୧୦୧ ଏବଂ ସଂଗ୍ରହ ୩୯-ଶ୍ଳୋକ-୭୨

୧୬୧ । ଭରଦ୍ୱାଜକୁଳୋତ୍ପନ୍ନ ମଞ୍ଜୁଷାଧରଣୀଧବ ଶ୍ରୀଲକ୍ଷ୍ମଣରାଜବର୍ମତନୁଜ ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବବର୍ମଣାନୁକୂଲେନ ତଦାଶ୍ରିତୈଃ ପ୍ରତିଷ୍ଠିତଃ ପଣ୍ଡିତ ଖଞ୍ଜ ଗୋବିନ୍ଦଦାଶପ୍ରମୁଖୈଃ ବିଦ୍ୱଦ୍‌ଭିର୍ମହତା ଯତ୍ନେନ ସଂଗୃହୀତଃ ପରିଷ୍କୃତଷ୍ଟାୟଂ ଗ୍ରନ୍ଥଃ ॥
(OHRJ-Vol-XI, No. 4, 1963)

୧୬୨ । ବେଦାନ୍ତପୁଣ୍ୟପରଣୀଳନ ଶୁଦ୍ଧବୁଦ୍ଧିଂ ଶାନ୍ତଂ ମୁନୀନ୍ଦ୍ରସ୍ୱମତାଚରଣପ୍ରବୀଣମ୍ ।
କୌଣ୍ଡିନ୍ୟବଂଶଭବମଚ୍ୟୁତ ଭକ୍ତନିଷ୍ଠଂ କୃଷ୍ଣାଭିଧଃ ନିଜଗୁରୁଂ ଦ୍ୱିଜବର୍ଯ୍ୟ ମୀଡ଼େ ॥

ଯୋଗେନ୍ଦ୍ର ବିଶାରଦଙ୍କ ପ୍ରଣୀତ 'ମଞ୍ଜୁଷା ରାଜବଂଶାବଳୀ' ଗ୍ରନ୍ଥରୁ ଜଣାଯାଏ ଯେ ଲକ୍ଷ୍ମଣ ରାଜମଣି ୧୭୦୧ ଶକାବ୍ଦ ବା ୧୭୭୯ ଖ୍ରୀଷ୍ଟାବ୍ଦରେ ମଞ୍ଜୁଷା ରାଜସିଂହାସନରେ ଅଭିଷିକ୍ତ ହୋଇଥିଲେ । ସେ ଦୀର୍ଘ ୪୪ ବର୍ଷ ରାଜତ୍ୱ କରିଥିଲେ । ଏହି ସମୟ ମଧ୍ୟରେ ଆଲୋଚ୍ୟ ଗ୍ରନ୍ଥଟି ସଙ୍କଳିତ ହୋଇଥିଲା । ଶ୍ରୀନିବାସଙ୍କ ବିଷୟରେ 'ମଞ୍ଜୁଷା ରାଜବଂଶାବଳୀ'ରେ ଲିଖିତ ବିବରଣୀରୁ ଜଣାଯାଏ ଯେ ସ୍ମୃତିକାର ଗୋବିନ୍ଦ ଦାସଙ୍କ ସହିତ ସାହିତ୍ୟ, ସଙ୍ଗୀତ, ଆୟୁର୍ବେଦବିଦ୍ ପଣ୍ଡିତଗଣ ତାଙ୍କ ସଭା ମଣ୍ଡନ କରୁଥିଲେ । ପଣ୍ଡିତମାନଙ୍କ ସହାୟତାରେ ସେ (ରାଜମଣି) ରତିଶାସ୍ତ୍ରବିଷୟକ 'ଯୁବଜୀବନ', 'ସର୍ବ ସ୍ମୃତିସାର ସଂଗ୍ରହ' ଓ 'ଅଭିନୟ ଚନ୍ଦ୍ରିକା' ଗ୍ରନ୍ଥମାନ ରଚନା କରିଥିଲେ ।୧୬୩ କିଂବଦନ୍ତୀ ଅନୁସାରେ ସ୍ମୃତିକାର ଗୋବିନ୍ଦ ମଞ୍ଜୁଷାର ଅଧିବାସୀ ନ ଥିଲେ । ରାଜାଙ୍କ ଅଗ୍ନିଷ୍ଟୋମ ଯଜ୍ଞରେ ପୌରୋହିତ୍ୟ କରିବା ନିମିତ୍ତ ସେ ଓଡ଼ିଶାର ଅନ୍ୟ ସ୍ଥାନରୁ ଆସିଥିଲେ । ସେଠାରେ ସେ ରାଜାଙ୍କ ଦ୍ୱାରା ନିଜର ଅଭିଳାଷ ଅନୁସାରେ 'ଖଣ୍ଡ' ଉପାଧିରେ ଭୂଷିତ ହୋଇଥିଲେ ।୧୬୪।

**୫୩ । ଗୋପୀନାଥ ତୁଙ୍ଗ :**

ଚନ୍ଦ୍ରବଂଶାନ୍ତର୍ଗତ ତୁଙ୍ଗବଂଶୀୟ ରାଜାମାନେ ଭାରତର ବିଭିନ୍ନ ସ୍ଥାନରେ ରାଜତ୍ୱ କରୁଥିଲେ । ତାମ୍ରଫଳକର ଉଲ୍ଲେଖ ଅନୁଯାୟୀ ଓଡ଼ିଶାର ଢେଙ୍କାନାଳ ଓ ବଣେଇଠାରେ ତୁଙ୍ଗବଂଶର ରାଜତ୍ୱ ଥିଲା । ସେହି ବଂଶର ରାଜା ଗୋପୀନାଥ ତୁଙ୍ଗ (୧୭୭୮ ଖ୍ରୀଷ୍ଟାବ୍ଦ) ତ୍ରିଗୃହ ବା କଟକ ଜିଲ୍ଲାନ୍ତର୍ଗତ ଆଧୁନିକ ତିଗିରିଆର ରାଜା ଥିଲେ ।

'ବୀରସର୍ବସ୍ୱ' ଗ୍ରନ୍ଥବର୍ଣ୍ଣିତ ବିବରଣ ଅନୁଯାୟୀ ଶ୍ରୀମହିନ୍ଦ୍ରଙ୍କର ନନ୍ଦ ତୁଙ୍ଗ, ପୀତାମ୍ବର ତୁଙ୍ଗ, ନିତ୍ୟାନନ୍ଦ ତୁଙ୍ଗ ନାମକ ତିନିପୁଅ ମଧ୍ୟରୁ କନିଷ୍ଠ ଭ୍ରାତୃଦ୍ୱୟ ଗୌତମଗୋତ୍ରୀୟ କୌଣସି ବ୍ରାହ୍ମଣ ଦ୍ୱାରା ଉପଦିଷ୍ଟ ହୋଇ ଶ୍ରୀଜଗନ୍ନାଥଦର୍ଶନ ନିମିତ୍ତ ପୁରୀ ଗଲେ । ସେଠାରେ ଜଗନ୍ନାଥଙ୍କ ଦୟାରୁ ସ୍ୱପ୍ନାଦିଷ୍ଟ ହୋଇ ଦେବପ୍ରଦତ୍ତ ଖଡ୍‌ଗ ଦୁଇଟି ନେଇ ତିଗିରିଆରେ ରାଜତ୍ୱ ପ୍ରତିଷ୍ଠା କଲେ । ପରେ ନିତ୍ୟାନନ୍ଦଙ୍କ ପୁତ୍ର ତ୍ରିପୁରାରି ଓ ତାଙ୍କ ପୁତ୍ର ନରୋତ୍ତମ ରାଜତ୍ୱ କଲେ । ନରୋତ୍ତମଙ୍କ ଷଡ୍‌ପୁତ୍ର ମଧ୍ୟରେ ରଘୁନାଥ ତୁଙ୍ଗ ଧନୁର୍ବିଦ୍ୟା ବିଷୟରେ 'ଶୂରଭୂଷଣ' ନାମକ ଗ୍ରନ୍ଥ ରଚନା କରିଥିଲେ । ନରୋତ୍ତମଙ୍କ ବଡ଼ପୁଅର ପୁଅ ପୀତାମ୍ବର ରାଜା ହେଲେ ।

---

୧୬୩ । ଖଣ୍ଡ ଗୋବିନ୍ଦଦାସାଦ୍ୟୈଃ ଶିଷ୍ଟୈର୍ଯୁକ୍ତଂ ବୁଧା ନୃପମ୍ ।
ସ୍ମୃତି-ସାହିତ୍ୟ-ସଙ୍ଗୀତ-ରସଶାସ୍ତ୍ରବିଶାରଦୈଃ ॥
ପଣ୍ଡିତୈଃ ସହ ସମ୍ମନ୍ତ୍ର୍ୟାଟକେ ଗ୍ରନ୍ଥାନ୍ ସ୍ୱୟଂ ବହୂନ୍ ।
ଯୁବଜୀବନମିତ୍ୟେକଂ ରତିଶାସ୍ତ୍ରଂ ମନୋରମମ୍ ॥
ସ୍ମାର୍ତ୍ତାଦିତ୍ରିମତଗ୍ରାହ୍ୟଂ ସ୍ମୃତୀନାଂ ସାରସଂଗ୍ରହମ୍ ।
ତଥା ରଚିତବାନେଷ ନାଟ୍ୟେଽଭିନୟ ଚନ୍ଦ୍ରିକାମ୍ ॥

୧୬୪ । OHRJ Vol-IX, No. 4, P. 266-272.

ସେ 'ଖଡ଼୍ଗାଭରଣ' ନାମକ ଯୁଦ୍ଧଶାସ୍ତ୍ର ରଚନା କରିଥିଲେ । ପୀତାମ୍ବରଙ୍କ ପୁଅ ବାସୁଦେବ ଓ ହରି । ବାସୁଦେବ ଅଶ୍ୱଶାସ୍ତ୍ରରେ ଧୁରୀଣ ଥିଲେ ଏବଂ 'ସାଦି କୌତୂହଳ' ନାମରେ ଅଶ୍ୱଶାସ୍ତ୍ର ରଚନା କରିଥିଲେ । ବାସୁଦେବଙ୍କ ସାତପୁଅ ମଧ୍ୟରୁ ବଡ଼ପୁଅ ଶ୍ରୀଧରଙ୍କ ଷଟ୍ପୁତ୍ର ଜନ୍ମ ହେଲେ । ତନ୍ମଧ୍ୟରେ ଜ୍ୟେଷ୍ଠ ପୁତ୍ର କୃପାସିନ୍ଧୁଙ୍କ ସପ୍ତପୁତ୍ର ମଧ୍ୟରେ ବଡ଼ପୁଅ ସଙ୍କର୍ଷଣଙ୍କ ପୁତ୍ର ଗୋପୀନାଥ ଉକ୍ତ ଗ୍ରନ୍ଥ ରଚନା କରିଛନ୍ତି । ଗ୍ରନ୍ଥକାର ଓଡ଼ିଶାର ପୂର୍ବସୂରିମାନଙ୍କ ମଧ୍ୟରୁ କାଳିଦାସ ଚୟନିଙ୍କ ପ୍ରଣୀତ 'ଶୁଦ୍ଧି ଚନ୍ଦ୍ରିକା' ଗ୍ରନ୍ଥକୁ ଉଦ୍ଧାର କରିଥିବାରୁ ଗୋପୀନାଥଙ୍କ ସମୟ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ବୋଲି କେହି କେହି ସ୍ଥିର କରନ୍ତି । କିନ୍ତୁ ଶାନ୍ତି-ନିକେତନର ପୋଥିବିଭାଗରେ ଥିବା ଭୋଜରାଜପ୍ରଣୀତ 'ପାତଞ୍ଜଳୀୟ ଯୋଗଶାସ୍ତ୍ର ବୃତ୍ତି' ଗ୍ରନ୍ଥର ପୁଷ୍ପିକାରୁ ଜଣାଯାଏ ଯେ କବୀନ୍ଦ୍ର ଗୋବିନ୍ଦ ଉକ୍ତ ଗ୍ରନ୍ଥଟି ଓଡ଼ିଆ ଅକ୍ଷରରେ ରାଜା ଗୋପୀନାଥ ଭୃଙ୍ଗଙ୍କ ନିର୍ଦ୍ଦେଶରେ ୧୭୮୦ ଶକାବ୍ଦରେ ନକଲ କରିଥିଲେ ।୧୬୫। ତେଣୁ ଗୋପୀନାଥଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀର ଶେଷପାଦରେ ନିର୍ଦ୍ଧାରଣ କରାଯାଇପାରେ ।

'ବୀରସର୍ବସ୍ୱ' ଗ୍ରନ୍ଥଟି ମୁକ୍ତିମଣ୍ଡପ ପଣ୍ଡିତ ସଭାର ସହସମ୍ପାଦକ ତଥା ସଂସ୍କୃତ ମହାବିଦ୍ୟାଳୟର ଧର୍ମଶାସ୍ତ୍ରାଧ୍ୟାପକ ପଣ୍ଡିତ ଆନନ୍ଦ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ ସ୍ୱର୍ଣ୍ଣପୁରାଧୀଶ୍ୱର ବୀରମିତ୍ରୋଦୟ ସିଂହ ଦେବଙ୍କ ଦ୍ୱାରା ୧୯୨୨ରେ ପୁରୀ ପୁରୁଷୋତ୍ତମ ପ୍ରେସରେ ମୁଦ୍ରିତ ହୋଇଛି । ପ୍ରକାଶିତ ଗ୍ରନ୍ଥଟି ଅସମ୍ପୂର୍ଣ୍ଣ ।

ଗ୍ରନ୍ଥକାର ଆରମ୍ଭରେ ହରିହର, ବାଣୀ ଓ ଗଣେଶଙ୍କୁ ବନ୍ଦନା କରିଛନ୍ତି ।୧୬୬। 'ଭୂପାଳ କୃତ୍ୟ' ଆଲୋଚନା ହିଁ 'ବୀରସର୍ବସ୍ୱ'ର ପ୍ରତିପାଦ୍ୟ ବିଷୟ । ଏଥିରେ ମୁଖ୍ୟତଃ କ୍ଷତ୍ରିୟକୁଳ ପରିଚୟ, ରାଜା, ରାଜପରିଷଦ୍, ଦୁର୍ଗ, ଅସ୍ତ୍ରଶସ୍ତ୍ର ନିର୍ମାଣ, ଯୁଦ୍ଧ, ଷଟ୍କର୍ମନିରୂପଣ, ରାଜଧର୍ମ, ଯୋଗିନୀ ସାଧନା ଓ ଅସ୍ତ୍ରଶସ୍ତ୍ରଶିକ୍ଷାଦି ବିଷୟ ଆଲୋଚନା କରାଯାଇଛି ।୧୬୭।

---

୧୬୫ । ଦଶସପ୍ତଶତେ ଶାକେ ବର୍ଷରେ ଫାଲ୍ଗୁନେ ସିତେ ।
ଭୌଜୀ ପାତଞ୍ଜଳବୃତ୍ତିଃ ଗୋବିନ୍ଦେନ କବୀନ୍ଦୁନା ॥
ଲିଖିତା ନାଗରଲିପେରୁଦ୍ଧୃତ୍ୟ ସ୍ୱମତାକ୍ଷରୈଃ ।
ନିଦେଶାଦ୍ଭୃଙ୍ଗରାଜସ୍ୟ ଗୋପୀନାଥାଭିଧସ୍ୟ ଚ ॥

(Shantiniketan Mss. No. 333)

୧୬୬ । ହରିଷ୍ଟଙ୍କା କର୍ତ୍ତୁକୃପାଂ କୃପାଳୁର୍ହରିରେମଣି ମାଷ୍ଟୁର୍ମତେର୍ମଲଂ ନଃ ।
ବାଣୀପ୍ରସାଦଂ ବିଦଧାତୁ ବାଣୀ ବିଘ୍ନେଶ୍ୱରୋଽସ୍ମିନ୍ ବିନିହନ୍ତୁ ବିଘ୍ନମ୍ ।
(ବୀରସର୍ବସ୍ୱ—ପୃ-୧)

୧୬୭ । (କ) ଶାସ୍ତ୍ରାଣି ସନ୍ତି ସକଳାଶ୍ରମ ବର୍ଣ୍ଣଧର୍ମଚର୍ଯ୍ୟା ବିଚାର ଚତୁରାଣି ପୁରାକୃତାନି ।
ତେଷ୍ୱ କ୍ୱଚିତ୍କ୍ୱଚିଦକୃତ୍ସ୍ନ ସ୍ମୃତଶ୍ରୟୋକ୍ତମସ୍ତି (?)
ଶସ୍ତ୍ରାସ୍ତ୍ରବାହନ ନିରୂପିତଭୂପ କୃତ୍ୟମ୍ ॥

## ୫୪ । ବାଳୁଙ୍କି ପାଠୀ :

ସ୍ମୃତିକାର ବାଳୁଙ୍କି ପାଠୀ (୧୭୧୬ ଖ୍ରୀଷ୍ଟାବ୍ଦ) 'ଯାତ୍ରା-ଭାଗବତ' ଗ୍ରନ୍ଥ ରଚନା କରିଛନ୍ତି । ଏହି ଗ୍ରନ୍ଥରୁ ସ୍ମୃତିକାରଙ୍କ ସମୟ ବିଷୟରେ କୌଣସି ସୂଚନା ମିଳେ ନାହିଁ । ଇତିହାସ-ଦୃଷ୍ଟିରୁ ବିଚାର କଲେ ଗଜପତି ଦିବ୍ୟସିଂହ ଦେବଙ୍କ (୧୭୧୬-୧୭୨୮ ଖ୍ରୀ: ଅ:) ପୂର୍ବରୁ ଓଡ଼ିଶା, ବିଶେଷକରି ଶ୍ରୀଜଗନ୍ନାଥ ମନ୍ଦିର ବାରମ୍ବାର ମୁସଲମାନମାନଙ୍କ ଦ୍ୱାରା ଆକ୍ରମିତ ହୋଇଥିଲା । କିନ୍ତୁ ଦିବ୍ୟସିଂହଙ୍କ ରାଜତ୍ୱ ସମୟ ଅପେକ୍ଷାକୃତ ଶାନ୍ତିପୂର୍ଣ୍ଣ ଥିବାରୁ ଶ୍ରୀଜଗନ୍ନାଥ ମନ୍ଦିରର ନାନାବିଧ ଉନ୍ନତିସାଧନ କରାଯାଇଥିଲା । ଏହି ସମୟରେ ବଡ଼ଦେଉଳରେ ଚୂନ ଦିଆଯାଇଥିଲା । ସିଂହଦ୍ୱାରରେ ଅରୁଣସ୍ତମ୍ଭ ପ୍ରତିଷ୍ଠା ଓ ରତ୍ନସିଂହାସନର ପଥର କାନ୍ଥ ନିର୍ମିତ ହୋଇଥିଲା । ପୁରୀରେ ପ୍ରଥମକରି ଶ୍ରୀରାଧାକୃଷ୍ଣଙ୍କ ଝୁଲଣଯାତ୍ରା ଅନୁଷ୍ଠିତ ହେଲା । ତେଣୁ ଦିବ୍ୟସିଂହ ଦେବଙ୍କ ରାଜତ୍ୱ କାଳରେ ଆଲୋଚ୍ୟ 'ଯାତ୍ରା-ଭାଗବତ' ଗ୍ରନ୍ଥଟି ପ୍ରଣୀତ ହୋଇଥିବାର ମନେହୁଏ । ସ୍ମୃତିକାର ବାଳୁଙ୍କି ପାଠୀ ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ବନ୍ଦନାଦ୍ୱାରା ଏହି ଗ୍ରନ୍ଥର ଶୁଭାରମ୍ଭ କରିଛନ୍ତି ।୧୬୮। ଏହାର ଚବିଶଟି ଅଧ୍ୟାୟରେ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ସହିତ ମାର୍ଗଶୀର୍ଷାଦି ଦ୍ୱାଦଶ ମାସର ପାଳନୀୟ ବ୍ରତୋତ୍ସବଗୁଡ଼ିକ ବର୍ଣ୍ଣିତ ହୋଇଛି ।୧୬୯।

---

(ଖ) ଆଲୋକ୍ୟ ତାନ୍ୟମଲସ୍ୟାଚଲସ୍ୟାମୃତୁଷ୍ଟ୍ୟା ରୁଷ୍ଟ୍ୟା
ସତାଂ ନିଖିଳବାହୁଜଧର୍ମ କୃତ୍ୟମ୍ ।
ଏକତ୍ର ତତ୍ର ଭବତା ବିଧୁବଂଶଜେନ ସଂଗୃହ୍ୟତେ ନୃପତିନା କଲକେନଚନ୍ଦ୍ରୁ ।।

(ଗ) ଭୂପାଳାନାଂ ଭାବିନାଂ କ୍ଷତ୍ରିୟାଣାଂ ମର୍ଯ୍ୟାଦାୟୈ ଶସ୍ତ୍ରବିଦ୍ୟୋପଯୋଗି ।
ପ୍ରାଦୁର୍ଭୂତଂ ସାରସର୍ବସ୍ୱମେତ ଚ୍ଛାସ୍ତ୍ରଂ ଧୀରାଃ ସନ୍ତତଂ ଶୀଲୟନ୍ତୁ ।
(ସାରସର୍ବସ୍ୱ—ପୃ-୧)

୧୬୮ । (କ) ରାସୋଲ୍ଲାସଭରେଣ ନୃତ୍ୟତି ମହାକଲ୍ପଦ୍ରୁମାଧଃ ସଦା
ନାନାଭୂଷଣରତ୍ନହାରନିକରୈରାନ୍ଦୋଳିତୋ ବକ୍ଷସି ।
ଲାବଣ୍ୟୈକ ନିକେତନଂ ଶ୍ରୁତିଗୁଣ୍ଟଂବ୍ରହ୍ମେନ୍ଦ୍ରରୁଦ୍ରୈଃ ସ୍ତୁତଂ
ବନ୍ଦେ ଶ୍ରୀବ୍ରଜସୁନ୍ଦରୀରଗତାକୃତଂ ବୃନ୍ଦାବନେଶଂ ହରିମ୍ ।
(OSM. Dh. No. 103)

(ଖ) ଖୋର୍ଦ୍ଧା ଇତିହାସ—ପୃ-୨୮୭-୨୮୮

୧୬୯ । ଶ୍ରୀକୃଷ୍ଣଲୀଳା ଜ୍ଞାନାର୍ଥଂ ଜନାନାମୁପକାରକମ୍ ।
ଯାତ୍ରା-ଭାଗବତଂ ନାମ ଗ୍ରନ୍ଥଂ ବକ୍ଷ୍ୟାମ୍ୟହଂ ଶୁଭମ୍ ।
(OSM. Dh. No. 103)

ପୂର୍ବାଲୋଚିତ ତେଇଶଜଣ ସ୍ମୃତିକାରଙ୍କ ପ୍ରଣୀତ ବିଭିନ୍ନ ଶୀର୍ଷକର ପଚାଶ ଖଣ୍ଡ ସ୍ମୃତିଗ୍ରନ୍ଥ ବ୍ୟତୀତ ପରବର୍ତ୍ତୀ କାଳରେ ରଚିତ ସ୍ମୃତିକାର ଦାମୋଦରଙ୍କ 'ବିବାହ ପଦ୍ଧତି', 'ଗଣେଶାଚାର ଚନ୍ଦ୍ରିକା' ଓ 'ବୃଷୋତ୍ସର୍ଗ ବିଧି', ବାଂଶୀଦାସ ବଡ଼ପଣ୍ଡାଙ୍କ 'ସଦାଚାର ବିବେକ', ସଚ୍ଚିଦାନନ୍ଦ ମିଶ୍ରଙ୍କ 'ପ୍ରତିଷ୍ଠାସାର ସଂଗ୍ରହ' ଏବଂ ଇଂରେଜ ରାଜତ୍ୱ ସମୟରେ ପ୍ରକାଶିତ ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ (୧୮୫୭-୧୯୨୮ ଖ୍ରୀଷ୍ଟାବ୍ଦ) 'କଳ୍ପାପଦ୍ ଧର୍ମସର୍ବସ୍ୱ', ପଣ୍ଡିତ ବିହାରୀଲାଲଙ୍କ 'ବିବାହ କର୍ମକାଣ୍ଡ', ପଣ୍ଡିତ ବାଳକୃଷ୍ଣ କରଙ୍କ ସଂକଳିତ, ଗୃହସ୍ଥଗରେ ବିଭକ୍ତ 'ପୁରୋହିତସର୍ବସ୍ୱ' ଓ ପଣ୍ଡିତ ଯତିରାଜ ଆଚାର୍ଯ୍ୟଙ୍କ ବୃହଦାକାର 'ସୁଦର୍ଶନ ଯଜ୍ଞ-ପଦ୍ଧତି' ଗ୍ରନ୍ଥର ନାମ ମୁଖ୍ୟତଃ ଉଲ୍ଲେଖଯୋଗ୍ୟ ।୧୭୦। □ □ □

୧୭୦ । (a) A. D. C. of Skt. Mss.—Vol. I, P-14-28, 50-109.

(b) A. D. C. of Skt. Mss. Vol. VII, P. 25, 26, 164, 167

# ଚତୁର୍ଥ ଅଧ୍ୟାୟ

## ବିଭିନ୍ନ ସ୍ମୃତି ବିଭାଗ ଓ ସମୀକ୍ଷା

ସ୍ମୃତି ଓ ଧର୍ମଶାସ୍ତ୍ର ସମାର୍ଥବାଚକ ।[୧] 'ଅନୁଭୂତ ବିଷୟ ଜ୍ଞାନ' ଓ 'ସ୍ମାମ୍ୟାଶ୍ରିତ କ୍ରିୟା-ସଂସ୍କାରଜନ୍ୟଜ୍ଞାନ'କୁ 'ସ୍ମୃତି' ରୂପେ ଅର୍ଥ କରାଯାଏ ।[୨] ତେଣୁ 'ସ୍ମରନ୍ତି ବେଦମନସ୍ୟା ବା ମହର୍ଷିଭିର୍ବେଦାର୍ଥ ଚନ୍ଦ୍ରନଂ ସ୍ମୃତିଃ' ବୋଲି କୁହାଯାଇଛି । ସ୍ମୃତି ସମ୍ପର୍କିତ ଗ୍ରନ୍ଥ 'ସ୍ମୃତିଶାସ୍ତ୍ର' ନାମରେ ଅଭିହିତ । ପ୍ରାଚୀନ ସ୍ମୃତିକାରମାନଙ୍କ ମଧ୍ୟରେ ପ୍ରଧାନତଃ ମନୁ, ଅତ୍ରି, ବିଷ୍ଣୁ, ହାରୀତ, ଯାଜ୍ଞବଲ୍କ୍ୟ, ଉଶନସ, ଅଙ୍ଗିରା, ଯମ, ଆପସ୍ତମ୍ବ, ପ୍ରଚେତା, ସମ୍ବର୍ତ୍ତ, ବୃହସ୍ପତି, ପରାଶର, ବ୍ୟାସ, ଶଙ୍ଖଲିଖିତ, ଦକ୍ଷ, ଗୋତମ, ଶାତାତପ, ବଶିଷ୍ଠ ପ୍ରଭୃତିଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ତଦ୍‌ବ୍ୟତୀତ ପ୍ରାଚୀନ ଧର୍ମଶାସ୍ତ୍ର-ପ୍ରବର୍ତ୍ତକ ତଥା ସ୍ମୃତିକାରମାନଙ୍କ ନାମ ଓ ସଂଖ୍ୟା ବିଷୟରେ ମତଭେଦ ରହିଛି । ଏହି ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ତାହା ଆଲୋଚିତ ହୋଇଅଛି ।

ପୁରାଣର ଉଲ୍ଲେଖ ଅନୁସାରେ ସମଗ୍ର ସ୍ମୃତି-ସାହିତ୍ୟକୁ ସାତ୍ତ୍ୱିକ, ରାଜସ ଓ ତାମସାଦି ଭେଦରେ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ତନ୍ମଧ୍ୟରେ ବଶିଷ୍ଠ, ହାରୀତ, ବ୍ୟାସ, ପରାଶର, ଭରଦ୍ୱାଜ ଓ କାଶ୍ୟପ ସ୍ମୃତି ସାତ୍ତ୍ୱିକ ଶ୍ରେଣୀସ୍ଥ ଓ ମୁକ୍ତିପ୍ରଦ, ଚ୍ୟବନ, ଆତ୍ରେୟ, ଯାଜ୍ଞବଲ୍କ୍ୟ ଦକ୍ଷ, କାତ୍ୟାୟନ ଓ ବିଷ୍ଣୁ ସ୍ମୃତି ରାଜସ ଓ ସ୍ୱର୍ଗପ୍ରଦ, ଗୌତମ, ବାର୍ହସ୍ପତ୍ୟ, ସମ୍ବର୍ତ୍ତ, ଯମ, ଶାଙ୍ଖ ଓ ଔଶନସ ସ୍ମୃତି ତାମସ ଶ୍ରେଣୀସ୍ଥ ଓ ନରକପ୍ରଦ ରୂପେ ଅଭିହିତ ।[୩]

ସ୍ମୃତିଶାସ୍ତ୍ରର ବିଷୟ ବିଭାଗରେ ମଧ୍ୟ ଭିନ୍ନ ଭିନ୍ନ ମତ ଥିବାର ଦେଖାଯାଏ । ମହାଭାରତରେ ଅଠର, ରାମାୟଣରେ ସାତ, ପୁରାଣ-ସାହିତ୍ୟରେ ତିରିଶ, ବଙ୍ଗୀୟ ସ୍ମୃତିକାର ରଘୁନନ୍ଦନଙ୍କ

---

୧ । ଶ୍ରୁତିସ୍ତୁ ବେଦୋ ବିଜ୍ଞେୟୋ ଧର୍ମଶାସ୍ତ୍ରଂ ତୁ ବୈ ସ୍ମୃତିଃ ।
ତେ ସର୍ବାର୍ଥେଷ୍ୱମୀମାଂସ୍ୟେ ତାଭ୍ୟାଂ ଧର୍ମୋହି ନିର୍ବଭୌ ॥
(ମନୁସ୍ମୃତି—ଚୌଖମ୍ବା ସଂସ୍କରଣ-୧୯୬୭—୨-୧୦)

୨ । ଶବ୍ଦକଳ୍ପଦ୍ରୁମ—ପଞ୍ଚମଭାଗ, ପୃ-୪୬୩

୩ । ପଦ୍ମୋତ୍ତରଖଣ୍ଡ—ଅଧ୍ୟାୟ-୪୩

'ସ୍ମୃତିତତ୍ତ୍ୱ' ଗ୍ରନ୍ଥରେ ଅଠେଇଶ ପ୍ରକାର ବିଷୟର ପର୍ଯ୍ୟାଲୋଚନା କରାଯାଇଛି ।୪। ଉତ୍କଳୀୟ ସ୍ମୃତିକାରଗଣ ବିଷୟ ବିଭାଗ ଅନୁଯାୟୀ ଧର୍ମଶାସ୍ତ୍ରର ଅଶୌଚ, ଆଚାର, ଆହ୍ନିକ, କାଳ, ଦାନ, ପ୍ରତିଷ୍ଠା, ପ୍ରାୟଶ୍ଚିତ୍ତ, ଭକ୍ତି, ଯଜ୍ଞ, ରାଜଧର୍ମ, ବ୍ରତ, ଶାନ୍ତି, ଶୁଦ୍ଧି, ଶ୍ରାଦ୍ଧ, ସଂସ୍କାରାଦି ପଞ୍ଚଦଶ ପ୍ରକରଣକୁ ନେଇ ଗ୍ରନ୍ଥ ରଚନା କରିଛନ୍ତି । ଅକାରାଦିକ୍ରମେ ସଜ୍ଜିତ ପ୍ରତ୍ୟେକ ପ୍ରକରଣରେ ଓଡ଼ିଶାର ସ୍ମୃତିକାର ଓ ସ୍ମୃତିଗ୍ରନ୍ଥଗୁଡ଼ିକର ପର୍ଯ୍ୟାଲୋଚନା କରାଯାଇପାରେ ।

## ୧ । ଅଶୌଚ ପ୍ରକରଣ :

'ଶୁଚେର୍ଭାବଃ କର୍ମ ବା ଶୌଚମ୍ । ନ ଶୌଚମ୍ ଅଶୌଚମ୍'—ଅର୍ଥାତ୍ ଶୁଚିର ଅଭାବ ହିଁ ଅଶୌଚ ରୂପେ ଅଭିହିତ ।୫। ଶାସ୍ତ୍ରକାରମାନେ ଶୁଚି ଓ ଶୁଦ୍ଧିକୁ ଏକ ପର୍ଯ୍ୟାୟବାଚୀ ଶବ୍ଦ-ରୂପେ ଗ୍ରହଣ କରିଛନ୍ତି । ସାଧାରଣତଃ ଅଶୌଚ ଜନ୍ମ ଓ ମରଣକାଳୀନ ଅଶୁଚି ବା ଅଶୁଦ୍ଧିକୁ ବୁଝାଇଥାଏ । ପାଣିନି ଅଶୌଚ ଓ ଆଶୌଚ ଉଭୟ ଶବ୍ଦକୁ ଅଶୁଦ୍ଧି ଅର୍ଥରେ ହିଁ ବ୍ୟବହାର କରିଛନ୍ତି ।୬। 'ଦେବଳ ସ୍ମୃତି' ଓ 'ହାରଲତା'ରେ ଅଶୁଚ୍ୟ ଓ ଅଶୌଚ ଶବ୍ଦ ଅଶୁଚି ଅର୍ଥରେ ପ୍ରୟୋଗ କରାଯାଇଛି । ବୈଦିକ ସାହିତ୍ୟରେ ପାପ ଅର୍ଥରେ ବ୍ୟବହୃତ ହୋଇଥିବା 'ଅଘ' ଶବ୍ଦ ଶାଂଖ୍ୟାୟନ ଶ୍ରୌତସୂତ୍ର ଓ ମନୁସ୍ମୃତିରେ 'ଅଶୌଚ' ଅର୍ଥରେ ଗ୍ରହଣ କରାଯାଇଛି ।୭। ଯାଜ୍ଞବଲ୍କ୍ୟ ସ୍ମୃତିର ମିତାକ୍ଷରା ଟୀକା ଅନୁସାରେ ଅଶୌଚକୁ ପୁରୁଷ ସମ୍ପର୍କିତ ବୋଲି କୁହାଯାଇଛି; କାରଣ ଏହି ସମୟରେ ସେ ସ୍ଥାନ ଓ କାଳଠାରୁ ଦୂରରେ ରହେ; ମୃତବ୍ୟକ୍ତିକୁ ପିଣ୍ଡ, ଜଳ ଆଦି ଦାନ କରେ ଏବଂ ବେଦ ଅଧ୍ୟୟନ ଓ ଅଧ୍ୟାପନା ତଥା ଅନ୍ୟାନ୍ୟ ଧର୍ମକୃତ୍ୟ ତ୍ୟାଗ କରିଥାଏ । ସ୍ମୃତିକାର ହରଦତ୍ତ ବ୍ୟକ୍ତିବିଶେଷର ଧର୍ମକାର୍ଯ୍ୟ ସମ୍ପାଦନରେ ଅଧିକାର-ହୀନତା, ଅଭୋଜ୍ୟାନ୍ନତା, ଅସ୍ପୃଶ୍ୟତା ଓ ଦାନ ପ୍ରଦାନ ଅନଧିକାରିତାକୁ ଅଶୌଚ ଶବ୍ଦର ଅର୍ଥରୂପେ ଗ୍ରହଣ କରିଛନ୍ତି ।୮। ଅଶୌଚ ବା ଅଶୁଦ୍ଧି କୌଣସି ସପିଣ୍ଡ ବା କୁଟୁମ୍ବର ଜନ୍ମ ବା ମରଣ ଅବସରରୁ ସୃଷ୍ଟି ହୋଇଥାଏ ।୯।

ଅଶୌଚ ଦୁଇ ପ୍ରକାର । ଜନ୍ମଜନିତ ଅଶୌଚକୁ ଜନନାଶୌଚ ବା ସୂତକ ଏବଂ ମରଣଜନିତ ଅଶୌଚକୁ ଶାବାଶୌଚ, ମୃତକାଶୌଚ ବା ମରଣାଶୌଚ କୁହାଯାଏ ।

---

୪ । History of Dharmashastra—Vol-I, P-416.

୫ । ପାଣିନି—୫।୧।୧୩୧ ।

୬ । ତତ୍ରୈବ—୭।୩।୩୦ ।

୭ । ଧର୍ମଶାସ୍ତ୍ର କା ଇତିହାସ - ୩ୟଭାଗ, ପୃ-୧୧୫୭ ।

୮ । ତତ୍ରୈବ—ପୃ-୧୧୫୮

୯ । ଜନନେ ମରଣେ ନିତ୍ୟମଶୌଚମନୁଧାବତି ।
ସପିଣ୍ଡାନ୍ ପିତୃବନ୍ଧୂଂଶ୍ଚ ଯଜ କ୍ୱଚନତିଷ୍ଠତି ॥ (କାଳସାର—ପୃ-୬୭୧)

ସୂଚକ ଶତ ମନୁଙ୍କ ଅନୁସାରେ ଜନ୍ମକାଳୀନ ଅଶୁଚି; ଗୋଭିଲ ସ୍ମୃତି ଅନୁଯାୟୀ ଜନ୍ମ ଓ ମରଣ ପର ଅଶୁଚି ଏବଂ ଦକ୍ଷସ୍ମୃତି ଅନୁସାରେ ମରଣଜନିତ ଅଶୁଚି—ଏପରି ତିନି ପ୍ରକାର ଅର୍ଥ କରାଯାଇଥିବାର ଦେଖାଯାଏ ।୧୦। ସୂତ୍ର, ସ୍ମୃତି ଓ ପୁରାଣ ସାହିତ୍ୟରେ ଥିବା ଆଲୋଚନା ବ୍ୟତୀତ ଅଶୌଚ ବିଷୟରେ ବହୁ ନିବନ୍ଧ ଗ୍ରନ୍ଥ ରଚିତ ହୋଇଛି । ଚତୁର୍ବର୍ଣ୍ଣର ଅଶୌଚ କାଳ ବିଷୟରେ ସ୍ମୃତିକାରମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଛି ।୧୧। ଅତ୍ରି, ପରାଶର ଓ ଦକ୍ଷଙ୍କ ଅନୁସାରେ ବୈଦିକ, ଅଗ୍ନିହୋତ୍ରୀ ତଥା ବେଦାଧିକାରୀ ବ୍ରାହ୍ମଣ ଜନନ-ମରଣାଦି ଶୌଚରୁ ଏକ ଦିନରେ ମୁକ୍ତ ହୁଏ; କିନ୍ତୁ କେବଳ ବେଦାଧିକାରୀ ତିନି ଦିନରେ ଓ ଉଭୟ ବିଧିଭ୍ରଷ୍ଟ ବ୍ରାହ୍ମଣ ଦଶଦିନରେ ଅଶୌଚରୁ ମୁକ୍ତିଲାଭ କରେ ।୧୨। ବୃହସ୍ପତିଙ୍କ ଅନୁସାରେ ବେଦଜ୍ଞ କିନ୍ତୁ ଶ୍ରୌତାଗ୍ନି ହୀନ ପାଞ୍ଚ ଦିନରେ, କେବଳ ବ୍ରାହ୍ମଣ ଯେ ଅଗ୍ନିହୋତ୍ରୀ ନୁହେଁ କି ବେଦଜ୍ଞ ବା ଶ୍ରୋତ୍ରିୟ ନୁହେଁ, ଦଶଦିନରେ ଶୁଦ୍ଧ ହୁଏ ।୧୩।

ଅଶୁଚି ବା ଅଶୌଚର ସମୟସୀମା ଜାତି ଅନୁସାରେ ନିର୍ଦ୍ଧାରଣ କରାଯାଏ । ମନୁ, ଦକ୍ଷ, ଯାଜ୍ଞବଲ୍କ୍ୟ, ଅତ୍ରି, ଶଙ୍ଖ ଆଦି ସ୍ମୃତିକାର ତଥା ମତ୍ସ୍ୟ, ବ୍ରହ୍ମ ଓ ବିଷ୍ଣୁପୁରାଣର ଉଲ୍ଲେଖ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କ ନିମିତ୍ତ ଯଥାକ୍ରମେ ଦଶ, ବାର, ପନ୍ଦର ଓ ଏକମାସ ଅବଧି ଅଶୌଚ କାଳର ବ୍ୟବସ୍ଥା ଦିଆଯାଇଛି ।୧୪। କିନ୍ତୁ ବଶିଷ୍ଠ କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ନିମିତ୍ତ ଯଥାକ୍ରମେ ପନ୍ଦର ଓ କୋଡ଼ିଏ ଦିନ ଅଶୌଚ କାଳ ଗ୍ରହଣ କରିଥିବା-ବେଳେ ।୧୫। ଓଡ଼ିଶାର ସ୍ମୃତିକାର ବାଜପେୟୀ ନରସିଂହ ମିଶ୍ର ଓ ଗଦାଧର ମହାପାତ୍ର ପ୍ରଭୃତି ଅଙ୍ଗିରେଙ୍କୃତ ଶାତାତପଙ୍କ ମତ ଉଦ୍ଧାର କରି ଗୃହବର୍ତ୍ତୀ ନିମିତ୍ତ ଜନନାଶୌଚ ବା ମରଣାଶୌଚର କାଳ ଦଶଦିନ ପାଳନୀୟ ବୋଲି ବ୍ୟବସ୍ଥା ଦେଇଛନ୍ତି ।୧୬। ମହର୍ଷି ପରାଶରଙ୍କ ଅନୁଯାୟୀ ଏକବଂଶଜ ସପିଣ୍ଡ ବା କୁଟୁମ୍ବର ଚତୁର୍ଥ ପୁରୁଷ ହୋଇଥିଲେ ଦଶ

---

୧୦ । ଧର୍ମଶାସ୍ତ୍ର କା ଇତିହାସ—ପୃ-୧୧୬୮

୧୧ । ମଦନ ପାରିଜାତ—ପୃ-୩୯୨

୧୨ । କାଳସାର—ପୃ-୩୦୦ ।

୧୩ । ଧର୍ମଶାସ୍ତ୍ର କା ଇତିହାସ-ତୃୟ—ପୃ-୧୦୫୯ ।

୧୪ । (କ) ମନୁସ୍ମୃତି—୫-୮୩ । (ଖ) ଦକ୍ଷସ୍ମୃତି—୬-୭ ।
(ଗ) ଯାଜ୍ଞବଲ୍କ୍ୟସ୍ମୃତି—୩-୨୨ । (ଘ) ଅତ୍ରି ସ୍ମୃତି—୮୫ ।
(ଙ) ଶଙ୍ଖସ୍ମୃତି—୧୫-୨-୩ । (ଚ) ମତ୍ସ୍ୟପୁରାଣ—୧୮-୨-୩ ।
(ଛ) ବ୍ରହ୍ମପୁରାଣ—୨୨୦-୬୩ । (ଜ) ବିଷ୍ଣୁପୁରାଣ—୨୨-୧-୪ ।

୧୫ । ବଶିଷ୍ଠ-ସ୍ମୃତି—୪-୨୭-୩୦ ।

୧୬ । (କ) ନିତ୍ୟାଗ୍ନିର ପଦ୍ଧତି—ପୃ-୧୧୫ । (ଖ) କାଳସାର—ପୃ-୨୯୯ ।

ଦିନରେ, ପଞ୍ଚମ ପୁରୁଷ ଛଅ ଦିନରେ, ଷଷ୍ଠ ପୁରୁଷ ଚାରିଦିନରେ ଓ ସପ୍ତମ ପୁରୁଷ ଏକ ଦିନରେ ଶୁଦ୍ଧ ହେବେ । ଦୁଇ ବର୍ଷରୁ କମ୍ ବୟସର ପିଲା ମରିଗଲେ କେବଳ ପିତାମାତା ଦଶଦିନ ଅଶୌଚ ପାଳନ କରିବେ ବୋଲି ମିତାକ୍ଷରା ମତବ୍ୟକ୍ତ କରିଛନ୍ତି ।୧୭।

ଅଶୌଚର ଅବଧି ବିଭିନ୍ନ ପରିସ୍ଥିତି ଉପରେ ଆଧାରିତ । ଜନ୍ମ ଓ ମରଣର ଅଶୌଚରେ ଅବଧିର ଭିନ୍ନତା ସ୍ୱୀକାର କରାଯାଇଛି । ମୃତକାଶୌଚରେ ମୃତ ବ୍ୟକ୍ତିର ବୟସ, ଜାତି, ମୃତକର ସମ୍ପର୍କୀୟଙ୍କ ଅବସ୍ଥିତି, ମୃତ୍ୟୁ-ସମ୍ବାଦପ୍ରାପ୍ତିକାଳ ଆଦି ବିଚାର କରାଯାଏ । ରଜସ୍ୱଳା, ସୂତିକା, ଜନ୍ମାଶୁଦ୍ଧି ଓ ମରଣାଶୁଦ୍ଧିରେ ଅଶୌଚର ତୀବ୍ରତା ପ୍ରକଟିତ ହୋଇଥାଏ । ସ୍ମୃତିକାର ଦକ୍ଷଙ୍କ ଅନୁସାରେ ତାତ୍କାଳିକ, ଏକ, ଦୁଇ, ତିନି, ଚାରି, ଛଅ, ଦଶ ବାରଦିନ, ଏକ ପକ୍ଷ ଓ ଜୀବନାବଧି—ଏପରି ଦଶପ୍ରକାର ଅଶୌଚ ପାଳନୀୟ । ଅସ୍ନାତଭୋଜୀ, ଦେବାହୁତି, ଅଦାତା, ଅଦାନୀ, ବ୍ୟାଧିଗ୍ରସ୍ତ, ଲୋଭୀ, ଋଣଗ୍ରସ୍ତ, କ୍ରିୟାହୀନ, ମୂର୍ଖ, ସ୍ତ୍ରୀବଶ୍ୟ, ବ୍ୟସନାସକ୍ତ, ପରାଧୀନ, ଶ୍ରଦ୍ଧାହୀନ ଓ ତ୍ୟାଗହୀନ ବ୍ୟକ୍ତି ଜୀବନାବଧି ଅଶୁଦ୍ଧ ରହନ୍ତି ।୧୮।

ବୈଦିକ ଯୁଗରୁ ଜନନାଶୌଚ ଦଶଦିନବ୍ୟାପୀ ପାଳିତ ହୋଇଆସୁଥିବାର ଜଣାଯାଏ । ଚାରିମାସ ମଧ୍ୟରେ ଗର୍ଭହାନିକୁ 'ସ୍ରାବ', ଷଷ୍ଠମାସରେ 'ପାତ' ଏବଂ ସାତମାସରୁ ପରବର୍ତ୍ତୀ ସମୟ ମଧ୍ୟରେ ଜନନକୁ ପ୍ରସୂତି ବା ପ୍ରସବ କୁହାଯାଏ । ସ୍ରାବରେ ଜନନୀ ତିନିଦିନ, ପାତରେ ଯେତେ ମାସରେ ପାତ ହୋଇଥାଏ ସେତେ ଦିନ ଏବଂ ପ୍ରସୂତିରେ ସପରିବାର ଦଶଦିନ ଅଶୌଚ ପାଳନ କରନ୍ତି ।୧୯। ଗୌତମ, ପରାଶର, ମନୁ ଓ ଯାଜ୍ଞବଲ୍କ୍ୟଙ୍କ ଅନୁସାରେ ଜନ୍ମ ତଥା ସପ୍ତମ, ଅଷ୍ଟମ ବା ନବମ ମାସିକ ଗର୍ଭପାତରେ ମାତା ଦଶଦିନ ଅସ୍ପୃଶ୍ୟା ରହେ; ଅନ୍ୟମାନେ ସ୍ନାନାନ୍ତର ଶୁଦ୍ଧ ହୁଅନ୍ତି ।୨୦। କିନ୍ତୁ ପ୍ରାଚୀନ କାଳରୁ ଦଶଦିନ ପରେ ଶୁଦ୍ଧ

---

୧୭ । ଯାଜ୍ଞବଲ୍କ୍ୟ ସ୍ମୃତି---୩-୧୮

୧୮ । ଅସ୍ନାତା ଚାପ୍ୟହୁତ୍ୱା ଚ ହ୍ୟଦତ୍ୱା ଯେ ତୁ ଭୁଞ୍ଜତେ ।
ଏବଂବିଧାନାଂ ସର୍ବେଷାଂ ଯାବଜ୍ଜୀବଂ ତୁ ସୂତକମ୍ ॥
ବ୍ୟାଧିତସ୍ୟ କଦର୍ଯ୍ୟସ୍ୟ ଋଣଗ୍ରସ୍ତସ୍ୟ ସର୍ବଦା ।
କ୍ରିୟାହୀନସ୍ୟ ମୂର୍ଖସ୍ୟ ସ୍ତ୍ରୀଜିତସ୍ୟ ବିଶେଷତଃ ॥
ବ୍ୟସନାସକ୍ତଚିତ୍ତସ୍ୟ ପରାଧୀନସ୍ୟ ନିତ୍ୟଶଃ ।
ଶ୍ରଦ୍ଧାତ୍ୟାଗବିହୀନସ୍ୟ ଭସ୍ମାନ୍ତଂ ସୂତକଂ ଭବେତ୍ ॥ (ଦକ୍ଷସ୍ମୃତି—୬-୮-୧୦)

୧୯ । କାଳସାର—ପୃ-୩୦୩ ।

୨୦ । (କ) ଗୌତମସ୍ମୃତି—୧୪-୧୫-୧୬ ।
(ଖ) ପରାଶରସ୍ମୃତି—୩-୨୪ ।
(ଗ) ମନୁସ୍ମୃତି—୩-୨୪ ।
(ଘ) ଯାଜ୍ଞବଲ୍କ୍ୟସ୍ମୃତି—୩-୨୦ ।

ହେଲେ ମଧ୍ୟ ପୁତ୍ରର ଜନନୀ କୋଡ଼ିଏ ଦିନ ଓ ପୁତ୍ରୀର ଜନନୀ ତିରିଶ ଦିନ ପର୍ଯ୍ୟନ୍ତ କୌଣସି ଧର୍ମକାର୍ଯ୍ୟ କରିପାରନ୍ତି ନାହିଁ ।୨୧।

ଧର୍ମଶାସ୍ତ୍ରରେ ମରଣାଶୌଚ ବିଷୟରେ ନାନାପ୍ରକାର ମତଭେଦ ଥିବାର ଦେଖାଯାଏ । ପାରସ୍କରଙ୍କ ଅନୁସାରେ ମରଣାଶୌଚ ତିନି ରାତି ପର୍ଯ୍ୟନ୍ତ ପାଳନୀୟ ।୨୨। କିନ୍ତୁ ପରବର୍ତ୍ତୀ ସ୍ମୃତିକାରମାନେ ଦଶଦିନବ୍ୟାପୀ ଅଶୌଚପାଳନକୁ ସ୍ୱୀକୃତି ଦେଇଛନ୍ତି । ସନ୍ତାନ ଜନ୍ମ ହେବାର ଦଶଦିନ ମଧ୍ୟରେ ମରିଗଲେ ମାତାପିତା ଜନନାଶୌଚ ପାଳନ କରନ୍ତି ଓ ଦଶଦିନ ପରେ ଶୁଦ୍ଧ ହୁଅନ୍ତି । ପିଲା ଦାନ୍ତ ଉଠିବା ପୂର୍ବରୁ ମରିଗଲେ ସପିଣ୍ଡ ଲୋକେ ସ୍ନାନମାତ୍ରେ ଶୁଦ୍ଧ ହେବେ; କିନ୍ତୁ ପିତାମାତା ପୁତ୍ର ଓ ପୁତ୍ରୀ ସ୍ଥଳେ ଯଥାକ୍ରମେ ତିନି ଦିନ ଓ ଏକଦିନ ଅଶୌଚ ପାଳନ କରିବେ ।୨୩। ଯଦି କନ୍ୟା ଚୂଡ଼ାକରଣ ବା ତିନି ବର୍ଷ ପରେ ଓ ଉପନୟନ ବା ବିବାହ ପୂର୍ବରୁ ମରିଯାଏ, ତେବେ ସପିଣ୍ଡ ଲୋକେ ତିନିଦିନ ପରେ ଓ ସମାନୋଦକ ଲୋକେ ସ୍ନାନମାତ୍ରେ ଶୁଦ୍ଧ ହେବେ; ବିବାହ ପରେ ସପିଣ୍ଡ ଲୋକେ ଦଶଦିନ ଓ ସମାନୋଦକ ଲୋକେ ତିନିଦିନ ଅଶୌଚ ପାଳନ କରିବେ ।୨୪।

ଶୂଦ୍ରଜାତିରେ ତିନି ବର୍ଷ ପରେ ଓ ବିବାହ ବା ଷୋହଳ ବର୍ଷ ପୂର୍ବର ମୃତ୍ୟୁରେ ତିନିଦିନ ଏବଂ ପରେ ବ୍ୟବସ୍ଥିତ ଅଶୌଚ ପାଳନୀୟ । କନ୍ୟାର ବାଗ୍‌ଦାନ ପରେ ବିବାହ ପୂର୍ବରୁ ମୃତ୍ୟୁ ହେଲେ ପିତାର ସପିଣ୍ଡ ଓ ପ୍ରସ୍ତାବିତ ପତିକୁ ତିନିଦିନ ଅଶୌଚ ପାଳିବାକୁ ହୁଏ । ବିବାହିତା କନ୍ୟା ପିତୃଗୃହରେ ମଲେ ତତ୍ସତ୍ୟ ଆତ୍ମୀୟଙ୍କୁ ଏକଦିନ ଓ ଅନ୍ୟତ୍ର ମୃତ୍ୟୁ ହେଲେ ଏକ ପକ୍ଷିଣୀ ଅର୍ଥାତ୍ ଦୁଇରାତି ଏକ ଦିନ ବା ଦୁଇଦିନ ଏକ ରାତି ଅଶୌଚ ପାଳନ କରିବାକୁ ପଡ଼େ ।୨୫। ବିବାହିତା ସ୍ତ୍ରୀ ପିତାମାତାଙ୍କ ମୃତ୍ୟୁରେ ଦଶଦିନ ଏବଂ ଉପନୀତ ଭ୍ରାତୃ-ଗୃହରେ ବିବାହିତା ଭଗିନୀର ମୃତ୍ୟୁରେ ଭ୍ରାତା ଓ ବିପରୀତ ଅବସ୍ଥାରେ ଭଗ୍ନୀ ତିନିଦିନ ତଥା ଅନ୍ୟତ୍ର ମୃତ୍ୟୁରେ ପକ୍ଷିଣୀ ଅଶୌଚ ପାଳନ କରିବେ ବୋଲି ଯାଜ୍ଞବଲ୍‌କ୍ୟ ମତବ୍ୟକ୍ତ କରିଛନ୍ତି ।୨୬। ନିଜର ପିତାମହ ଓ କକେଇଙ୍କ ମୃତ୍ୟୁରେ ବିବାହିତା ସ୍ତ୍ରୀ ସ୍ନାନମାତ୍ର ଶୁଦ୍ଧ ହେବେ; ମାମୁଁ ଭଣଜା, ଭଣିଜୀଙ୍କ ମୃତ୍ୟୁରେ ଏକ ପକ୍ଷିଣୀ ଅଶୌଚ ପାଳନ କରିବେ । ଅନୁପନୀତ ମାମୁର ମୃତ୍ୟୁରେ ଭଣଜା-ଭଣିଜୀଙ୍କୁ ଏକ ପକ୍ଷିଣୀ ଓ ଉପନୀତ ସ୍ଥଳେ ତିନିଦିନ ଅଶୌଚ ପାଳନ

---

୨୧ । ଧର୍ମଶାସ୍ତ୍ର କା ଇତିହାସ-୩ୟ—ପୃ-୧୧୬୨ ।

୨୨ । ପାରସ୍କର ଗୃହ୍ୟସୂତ୍ର—୩-୧୦-୨୯-୩୦ ।

୨୩ । କାଳସାର—ପୃ-୩୦୬ ।

୨୪ । କାଳସାର—ପୃ-୩୦୯ ।

୨୫ । କାଳସାର—ପୃ-୩୨୪ ।

୨୬ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୬୩ ।

କରିବାକୁ ପଡ଼େ । ଅଜା-ଆଈଙ୍କ ମୃତ୍ୟୁରେ ଯଥାକ୍ରମେ ତିନିଦିନ ଓ ଏକପକ୍ଷିଣୀ ଏବଂ ବିପରୀତ ପକ୍ଷେ ଅଜା-ଆଈ ତିନିଦିନ ଅଶୌଚ ପାଳନ କରିବେ ।

ସ୍ୱଗୃହରେ ତଥା ଅନ୍ୟତ୍ର ଶ୍ୱଶୁର ଓ ଶାଶୁଙ୍କ ମୃତ୍ୟୁରେ ଜାମାତା ଯଥାକ୍ରମେ ତିନିଦିନ ଓ ଏକପକ୍ଷିଣୀ ଏବଂ ବିପରୀତ ପକ୍ଷେ ଶାଶୁ-ଶ୍ୱଶୁର ଏକଦିନ ଅଶୌଚ ପାଳିବେ ବା ସଦ୍ୟ-ସ୍ନାନରେ ଶୁଦ୍ଧ ହେବେ; କିନ୍ତୁ ଜାମାତା ଶ୍ୱଶୁରାଳୟରେ ମଲେ ତିନିଦିନ ଅଶୌଚ ପାଳନୀୟ । ଉପନୀତ ଓ ଅନୁପନୀତ ଶ୍ୟାଳକର ମୃତ୍ୟୁରେ ଯଥାକ୍ରମେ ଏକଦିନ ଅଶୌଚ ଓ ସ୍ନାନମାତ୍ର ଶୁଦ୍ଧି-ବ୍ୟବସ୍ଥା ଦିଆଯାଇଛି । ମଉସା ମାଉସୀ ଓ ପିଉସା ପିଉସୀର ମୃତ୍ୟୁରେ ଏକ ପକ୍ଷିଣୀ ଏବଂ ସେମାନଙ୍କ ମଧ୍ୟରୁ କେହି ପୁରୁଷର ଘରେ ମଲେ ତିନିଦିନ ଅଶୌଚ ପାଳନୀୟ । ଆତ୍ମବନ୍ଧୁ, ପିତୃବନ୍ଧୁ ଓ ମାତୃବନ୍ଧୁର ମୃତ୍ୟୁରେ ଉପନୀତ ପକ୍ଷେ ଏକପକ୍ଷିଣୀ ଓ ଅନୁପନୀତ ପକ୍ଷେ ଏକଦିନ ଅଶୌଚ ପାଳନୀୟ ।୧୭। କିନ୍ତୁ ଏମାନଙ୍କ ମଧ୍ୟରୁ କାହାରି ସମ୍ପୃକ୍ତ ବ୍ୟକ୍ତିର ଗୃହରେ ମୃତ୍ୟୁ ହେଲେ ତିନିଦିନ ଅଶୌଚ ଏବଂ ଅନ୍ୟତ୍ର ମୃତ୍ୟୁରେ ସ୍ନାନମାତ୍ର ଶୁଦ୍ଧି ବ୍ୟବସ୍ଥା ଦିଆଯାଇଛି । ଉକ୍ତ ତିନିପ୍ରକାର ବନ୍ଧୁ ମଧ୍ୟରୁ ଆତ୍ମବନ୍ଧୁ ମଧ୍ୟରେ ପରସ୍ପର ମୃତାଶୌଚ ପାଳନ କରୁଥିଲେ ମଧ୍ୟ ଅନ୍ୟ ଦୁଇ ବନ୍ଧୁ କ୍ଷେତ୍ରରେ ଅଶୌଚ ପାଳିତ ହୁଏ ନାହିଁ ।୧୮। ଦତ୍ତକ ପୁତ୍ରର ମୃତ୍ୟୁରେ ଉଭୟ ପିତାମାତାଙ୍କୁ ତିନିଦିନ ଓ ସପିଣ୍ଡ ଲୋକଙ୍କୁ ଏକଦିନ ଅଶୌଚ ପାଳିବାକୁ ହୁଏ; କିନ୍ତୁ ଦତ୍ତକ ପୁତ୍ର ସଗୋତ୍ର, ସପିଣ୍ଡ ଓ ସମାନୋଦକ ହୋଇଥିଲେ ଯଥାକ୍ରମେ ଦଶଦିନ ଓ ତିନିଦିନ ଅଶୌଚ ପାଳିତ ହୁଏ । ଆଚାର୍ଯ୍ୟ (ଉପନୟନକର୍ତ୍ତା) ଓ ଗୁରୁଙ୍କ (ବୈଦିକ ମନ୍ତ୍ର ଶିକ୍ଷାଦାତା) ମୃତ୍ୟୁରେ ଶିଷ୍ୟଙ୍କୁ ତିନିଦିନ ଏବଂ ଶିକ୍ଷକଙ୍କ (ବେଦାଙ୍ଗ-ଅଧ୍ୟାପକ) ମୃତ୍ୟୁରେ ଏକଦିନ ଅଶୌଚ ପାଳିବାକୁ ହୁଏ । ଶିଷ୍ୟ, ଋତ୍ୱିକ ବା ପୁରୋହିତ, ଯଜମାନ, ଆଶ୍ରିତ ଶ୍ରୋତ୍ରିୟ, ସହପାଠୀ ତଥା ମିତ୍ରର ମୃତ୍ୟୁରେ ଏକଦିନ ଅଶୌଚ ପାଳନୀୟ । ଓଡ଼ିଶାରେ ଏ ପ୍ରକାର ଅଶୌଚପାଳନର ପରମ୍ପରା ନାହିଁ ।୧୯। ସମ୍ପର୍କୀୟ ଯତି ଓ ବ୍ରହ୍ମଚାରୀଙ୍କ ପାଇଁ ଅଶୌଚ ପାଳିତ ହୁଏ ନାହିଁ; କିନ୍ତୁ ସନ୍ନ୍ୟାସୀର ମୃତ୍ୟୁରେ ସପିଣ୍ଡ ଲୋକେ ସ୍ନାନମାତ୍ର ଶୁଦ୍ଧ ହେବେ । ରାଜାଙ୍କ ମୃତ୍ୟୁରେ ଏକ ଅହୋରାତ୍ର ଅଶୌଚ ପାଳିତ ହୋଇଥାଏ ।

---

୧୭ । (କ) ଆତ୍ମପିତୃଷ୍ୱସୁଃ ପୁତ୍ରା ଆତ୍ମମାତୃଷ୍ୱସୁଃ ସୁତାଃ ।
ଆତ୍ମମାତୁଲ ପୁତ୍ରାଶ୍ଚ ବିଜ୍ଞେୟା ଆତ୍ମବାନ୍ଧବାଃ ॥
(ଖ) ପିତୁଃ ପିତୃଷ୍ୱସୁଃ ପୁତ୍ରାଃ ପିତୁଃ ମାତୃଷ୍ୱସୁଃ ସୁତାଃ ।
ପିତୃମାତୁଲପୁତ୍ରାଶ୍ଚ ବିଜ୍ଞେୟାଃ ପିତୃବାନ୍ଧବାଃ ॥
(ଗ) ମାତୁଃ ପିତୃଷ୍ୱସୁଃ ପୁତ୍ରାଃ ମାତୁର୍ମାତୃଷ୍ୱସୁଃ ସୁତା ।
ମାତୁର୍ମାତୁଲପୁତ୍ରାଶ୍ଚ ବିଜ୍ଞେୟା ମାତୃବାନ୍ଧବାଃ ॥ (କାଳସାର—ପୃ-୩୭୫)

୧୮ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୯୧୭୪ ।

୧୯ । କାଳସାର— ପୃ-୩୨୭ ।

ଗ୍ରାମରେ ଶବ ଥିବାଯାଏ ସାରା ଗ୍ରାମ ଅଶୁଦ୍ଧ ରହେ; କିନ୍ତୁ ବଡ଼ ଗ୍ରାମ ବା ଶ୍ରେଷ୍ଠ ସହରରେ ଏ ନିୟମ ପାଳିତ ହୁଏ ନାହିଁ । ବ୍ରାହ୍ମଣ ଗୃହରେ କୁକୁର, ଶୂଦ୍ର, ପତିତ ଓ ମ୍ଲେଚ୍ଛର ମୃତ୍ୟୁ ହେଲେ ଗୃହଟି ଯଥାକ୍ରମେ ଦଶଦିନ, ଏକମାସ, ଦୁଇମାସ ଓ ଚାରିମାସ ଅଶୁଦ୍ଧ ରହେ । ଇଷ୍ଟକାଦି ନିର୍ମିତ ଗୃହ ସୂର୍ଯ୍ୟ ଓ ଚନ୍ଦ୍ରକିରଣଦ୍ୱାରା ସ୍ୱତଃ ମୁକ୍ତ ହୋଇଥାଏ ।୩୦। ବିଦେଶସ୍ଥ ସପିଣ୍ଡ ବ୍ୟକ୍ତି ଜନ୍ମ ବା ମୃତ୍ୟୁର ସମ୍ବାଦ ଶ୍ରବଣଦିନଠାରୁ ଅଶୌଚାବଧି ଅଶୁଦ୍ଧି ପାଳନ କରିବେ ।

ଅତିକ୍ରାନ୍ତ ଅଶୌଚ ଆତ୍ମୀୟଙ୍କ ପକ୍ଷରେ ଏକ ଅହୋରାତ୍ର ପାଳନୀୟ । ଏ ବିଷୟରେ ସ୍ମୃତି ଓ ପୁରାଣରେ ନାନାପ୍ରକାର ମତ ଅଛି । ବଶିଷ୍ଠଙ୍କ ମତରେ ସମ୍ପୃକ୍ତ ବ୍ୟକ୍ତି ମୃତ୍ୟୁର ଦଶଦିନ ପରେ ଓ ତିନି ମାସ ମଧ୍ୟରେ ମୃତ୍ୟୁ-ସମ୍ବାଦ ପାଇଲେ ତିନିଦିନ, ଛଅମାସ ମଧ୍ୟରେ ଏକ-ପକ୍ଷିଣୀ, ନଅମାସ ମଧ୍ୟରେ ଏକଦିନ ଓ ନଅମାସ ପରେ ବର୍ଷକ ମଧ୍ୟରେ ସ୍ନାନମାତ୍ରେ ଶୁଦ୍ଧ ହେବେ । କିନ୍ତୁ ପୁତ୍ର ମାତା-ପିତାଙ୍କ ମୃତ୍ୟୁ-ସମ୍ବାଦ ଯେବେ ପାଇବେ ସେହିଦିନଠାରୁ ଦଶ-ଦିନ ଅଶୌଚ ପାଳନ କରିବେ । ସେହିପରି ପତି, ପତ୍ନୀ ଓ ସପତ୍ନୀଙ୍କ ପକ୍ଷରେ ଅତିକ୍ରାନ୍ତା-ଶୌଚ ଦଶଦିନାବଧି ପାଳନୀୟ । ଓଡ଼ିଶାରେ ଅତିକ୍ରାନ୍ତ ସୂତକାଶୌଚ ପାଳିତ ହୁଏ ନାହିଁ ।୩୧।

ବୃହସ୍ପତିଙ୍କ ଅନୁସାରେ ମହାନଦୀ, ପର୍ବତ ଓ ଭାଷାଭେଦ ଅନ୍ତରାୟ ସହିତ ସ୍ଥାନବିଶେଷ ଯଦି ଷାଠିଏ, ଚାଳିଶ ବା ତିରିଶ ଯୋଜନ ଦୂରବର୍ତ୍ତୀ ହୋଇଥିବ, ତେବେ ତାହାକୁ ବିଦେଶ ବା ଦେଶାନ୍ତର କୁହାଯିବ । ଅନ୍ୟାନ୍ୟ ସ୍ମୃତି, ପୁରାଣ ଓ ତୀର୍ଥ ସମ୍ବନ୍ଧୀୟ ଗ୍ରନ୍ଥରେ 'ଦେଶାନ୍ତର' ଶବ୍ଦର ଅର୍ଥ ଭିନ୍ନ ଭିନ୍ନ ରୂପେ ବର୍ଣ୍ଣିତ ହୋଇଛି । ଜୀବିତାବସ୍ଥାରେ ବିଦେଶ ଯାଇଥିବା ବ୍ୟକ୍ତିର କୌଣସି ସମ୍ବାଦ ନ ମିଳିଲେ ତାହାର ପୁତ୍ର ଓ ଅନ୍ୟ ସମ୍ପର୍କୀୟମାନେ କୋଡ଼ିଏ ବର୍ଷ ପରେ ଚାନ୍ଦ୍ରାୟଣ ବ୍ରତ ସହିତ କୁଶ ବା ପଳାଶ ପୁତ୍ତଳିକା ଦହନପୂର୍ବକ ଅଶୌଚ ପାଳନ ଓ ଶ୍ରାଦ୍ଧାଦି କାର୍ଯ୍ୟ କରିବେ; କିନ୍ତୁ ଓଡ଼ିଶାରେ ସାଧାରଣ କ୍ଷେତ୍ରରେ ବାରବର୍ଷ ଓ ପିତାଙ୍କ କ୍ଷେତ୍ରରେ ପନ୍ଦର ବର୍ଷ ଅପେକ୍ଷା କରାଯାଏ ।୩୨।

ରାତ୍ରିକାଳୀନ ଜନ୍ମମୃତ୍ୟୁରେ ରାତ୍ରିକୁ ତିନିଭାଗ ବା ଦୁଇଭାଗ କରି ପ୍ରଥମ ଭାଗଦ୍ୱୟ ବା ପୂର୍ବାର୍ଦ୍ଧକୁ ପୂର୍ବଦିନ ସହିତ ଗଣନା କରି ଅଶୌଚ ପାଳିତ ହୁଏ । ବ୍ରାହ୍ମଣ ଚାରିବର୍ଣ୍ଣର ସ୍ତ୍ରୀ ଗ୍ରହଣ କରିଥିଲେ ସେମାନଙ୍କର ଜନନ ବା ମରଣ ଅଶୌଚ ଯଥାକ୍ରମେ ଦଶ, ଛ, ତିନି ଓ ଏକ ଦିନ ପାଳିତ ହେବ ।୩୩।

---

୩୦ । ଶୁଦ୍ଧିସାର—ପୃ-୨୨ ।

୩୧ । ନିତ୍ୟାଚାର ପ୍ରଦୀପ—ପୃ-୧୨୭ ।

୩୨ । ଶ୍ରାଦ୍ଧଦୀପ—ଶ୍ଳୋକ ୧୦୯-୧୧୧ ।

୩୩ । ଦକ୍ଷସ୍ମୃତି—୬.୧୨ ।

ଶବଦାହ ସପିଣ୍ଡ ଲୋକଙ୍କ କର୍ତ୍ତବ୍ୟ । ବ୍ରାହ୍ମଣ ଅସପିଣ୍ଡର ଶବ ସ୍ପର୍ଶ କଲେ ତିନିଦିନ ପରେ ଶୁଦ୍ଧ ହେବେ; କିନ୍ତୁ ମୃତକର ଗୃହବାସୀ ହୋଇଥିଲେ ଦଶଦିନ ଅଶୌଚ ପାଳନ କରିବେ ।

ଯଦି କେହି ଲୋଭବଶତଃ ଶବ ସ୍ପର୍ଶ କରେ, ତେବେ ବର୍ଣ୍ଣାନୁକ୍ରମେ ତାକୁ ଦଶ, ବାର, ପନ୍ଦର ବା ତିରିଶ ଦିନ ଅଶୌଚ ପାଳନ କରିବାକୁ ପଡ଼େ । ଏହାକୁ ନିର୍ହାରାଶୌଚ କୁହାଯାଏ ।

ବ୍ରାହ୍ମଣ ବା କ୍ଷତ୍ରିୟର ଶବଯାତ୍ରାରେ ଗଲେ ବ୍ରାହ୍ମଣ ଯଥାକ୍ରମେ ସ୍ନାନ ଓ ଅଗ୍ନି ସ୍ପର୍ଶନ ତଥା ଏକଦିନ ଅଶୌଚ ଓ ପଞ୍ଚଗବ୍ୟ ପାନକରିବେ । ବୈଶ୍ୟ ଓ ଶୂଦ୍ର ଶବଯାତ୍ରାରେ ଗଲେ ଯଥାକ୍ରମେ ଦୁଇଦିନ ଓ ତିନିଦିନ ଅଶୌଚ ପାଳନ ଓ ସମୁଦ୍ରଗାମୀ ନଦୀରେ ସ୍ନାନ କରିବେ । ବ୍ରାହ୍ମଣ ମୃତ ଅସପିଣ୍ଡର ଘରକୁ ଗଲେ ଏକଦିନ ଅଶୌଚ ପାଳିବେ, ମୃତ କ୍ଷତ୍ରିୟ ଓ ବୈଶ୍ୟର ଘରକୁ ଗଲେ ସ୍ନାନମାତ୍ର ଶୁଦ୍ଧ ହେବେ ଏବଂ ମୃତ ଶୂଦ୍ରର ଘରକୁ ଗଲେ ତିନିଦିନ ଅଶୌଚ ପାଳନ କରିବେ; କିନ୍ତୁ ଏ ସବୁ କ୍ଷେତ୍ରରେ ଅସ୍ଥି ସଂଚୟନ ପରେ ଗଲେ ସ୍ନାନମାତ୍ରେ ଶୁଦ୍ଧି ହେବେ । ଉପନୟନ, ବିବାହୋତ୍ସବ ଓ ଜ୍ୟୋତିଷ୍ଟୋମାଦି ଯଜ୍ଞକାଳର ମଧ୍ୟଭାଗରେ ଜନନ ବା ମରଣାଶୌଚ ହେଲେ ତାହା ଅବଶିଷ୍ଟ କାର୍ଯ୍ୟକାଳର ବାଧକ ହୁଏ ନାହିଁ ।୩୪। ଏ କ୍ଷେତ୍ରରେ ଗୃହସ୍ଥର ହାତରୁ ନ ନେଇ ତାହାର ଅନୁମତିରେ ଫଳ, ପୁଷ୍ପ, କଞ୍ଚାଶାଗ, ଲବଣ, ଇନ୍ଧନ, ତକ୍ର, ଦଧି, ଘୃତ, ତୈଳ, ଔଷଧି, ଦୁଗ୍ଧ ଏବଂ ଲଡ଼ୁକାଦି ଶୁଷ୍କ ଭୋଜନସାମଗ୍ରୀ ଗ୍ରହଣ କରାଯାଇଥାଏ ।୩୫।

ଅଶୌଚ ସମ୍ପାତ ବା ଅଶୌଚ ସନ୍ନିପାତରେ ଅର୍ଥ ହେଲା, ଏକପ୍ରକାର ଅଶୌଚ ପାଳନ କାଳରେ ଅନ୍ୟ ଅଶୌଚର ସମ୍ପାଦପ୍ରାପ୍ତି । ଏ କ୍ଷେତ୍ରରେ ସାଧାରଣତଃ ପ୍ରଥମ ଅଶୌଚର ଅବଧି ପାଳିତ ହୋଇଥାଏ; କିନ୍ତୁ ଏ ବିଷୟରେ ନାନାପ୍ରକାର ମତଭେଦ ରହିଛି । ଯଦି ଦୁଇଟି ଜନନାଶୌଚ ବା ମରଣାଶୌଚ ମଧ୍ୟରୁ ଦ୍ୱିତୀୟଟି ପ୍ରଥମର ସମକାଳ ବା ଅଳ୍ପକାଳ-ବ୍ୟାପୀ ହୋଇଥିବ, ତେବେ ପ୍ରଥମ ଅଶୌଚର କାଳ ପାଳିତ ହେବ । ୩୬। ଦ୍ୱିତୀୟଟି ଅଧିକ କାଳବ୍ୟାପୀ ହୋଇଥିଲେ ତଦନୁଯାୟୀ ଶୁଦ୍ଧିବ୍ୟବସ୍ଥା ଗ୍ରହଣୀୟ । ଜନନାଶୌଚ ମଧ୍ୟରେ ମରଣାଶୌଚ ପଡ଼ିଲେ ମରଣାଶୌଚରେ କାଳ ପାଳନୀୟ । ଯଦି ପ୍ରଥମଟି ମରଣାଶୌଚ ଓ ଦ୍ୱିତୀୟଟି ଅଧିକ କାଳବ୍ୟାପୀ ଜନନାଶୌଚ ହୋଇଥିବ, ତେବେ ଉଭୟ ଅବଧି ଯଥାରୀତି

---

୩୪ । କାଳସାର—ପୃ-୨୭୭ ।

୩୫ । (କ) ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୭୧ ।
(ଖ) କାଳସାର—ପୃ-୨୮୩-୨୮୪ ।

୩୬ । କାଳସାର—ପୃ-୩୧୪ ।

ପାଳିତ ହେବ । କିନ୍ତୁ ମାତା ଓ ପିତା ବା ପିତା ଓ ମାତାଙ୍କ ମୃତ୍ୟୁରେ ପିତୃମରଣ ଅଶୌଚ କାଳ ପାଳନୀୟ ।୩୭।

ସଦ୍ୟଶୌଚ ଦିବା ବା ରାତ୍ରିର ଅଂଶବିଶେଷକୁ ବୁଝାଏ । ନିମ୍ନଲିଖିତ ପାଞ୍ଚଟି ଶ୍ରେଣୀ ନିମିତ୍ତ ସଦ୍ୟଶୌଚର ବ୍ୟବସ୍ଥା ପ୍ରଦାନ କରାଯାଇଛି । କିନ୍ତୁ ଓଡ଼ିଶାରେ ଏହାର ପ୍ରଚଳନ ନାହିଁ ।୩୮। ଯଜ୍ଞ ନିମିତ୍ତ ବରଣ ହୋଇଥିବା ପୁରୋହିତ, ସୋମଯାଗ ନିମିତ୍ତ ଦୀକ୍ଷିତ, ଦାନ ଗୃହସ୍ଥ ଦାତା, ବ୍ରହ୍ମଚାରୀ, ସ୍ନାତକ, ସନ୍ନ୍ୟାସୀ, ବିବାହ-ଯୁଦ୍ଧ-ଦେଶବିପ୍ଲବ-ଆପତ୍କାଳସ୍ଥ ବ୍ୟକ୍ତି ଅଶୌଚ ଦୋଷମୁକ୍ତ ହୋଇଥାନ୍ତି ।୩୯। ଶିଳ୍ପୀ, କାରୁକ, ବୈଦ୍ୟ, ଦାସ, ଦାସୀ, ବାଳକ ଶ୍ରୋତ୍ରିୟ ଆଦି ସଦ୍ୟଶୌଚ ରୂପେ ଘୋଷିତ ।୪୦। ଅଶୌଚଯୁକ୍ତ ହେଲେ ମଧ୍ୟ ବ୍ୟକ୍ତି-ବିଶେଷ ଶ୍ରୌତାଗ୍ନି କୃତ୍ୟ କରିଥାନ୍ତି । ଯେଉଁମାନେ ମହାଯାତ୍ରା, ଉପବାସ, ଅସ୍ତ୍ରଶସ୍ତ୍ର, ଅଗ୍ନି, ବିଷ ବା ଜଳରେ ଆତ୍ମହନ୍ତା ବା ଆତ୍ମହତ୍ୟା କରିଥାନ୍ତି, ସେମାନଙ୍କ ନିମିତ୍ତ ଅଶୌଚ ପାଳିତ ହୁଏ ନାହିଁ । ସ୍ୱଧର୍ମିଣୀ, ଆଶ୍ରମଧର୍ମହୀନା, ପତିଘ୍ନୀ ଚୌର୍ଯ୍ୟବୃତ୍ତିଧାରିଣୀ, ବ୍ୟଭିଚାରିଣୀ, ମଦ୍ୟପାୟିନୀ, ଆତ୍ମହତ୍ୟାକାରିଣୀ ସ୍ତ୍ରୀର ମୃତ୍ୟୁରେ ଅଶୌଚ ପାଳିତ ହୁଏ ନାହିଁ । ଶେଷୋକ୍ତ ଅଶୌଚଦ୍ୱୟରେ ଦାହ, ଅନ୍ତ୍ୟେଷ୍ଟିକ୍ରିୟା, ଅସ୍ଥି ସଂଚୟନ, ରୋଦନ ପିଣ୍ଡଦାନ, ଶ୍ରାଦ୍ଧାଦି କାର୍ଯ୍ୟ କରାଯାଏ ନାହିଁ ।୪୧। ପୁନଶ୍ଚ ଯେ ଜାଣିଶୁଣି ଚଣ୍ଡାଳ ସହିତ ଯୁଦ୍ଧ କରି ବା ଜଳ, ସର୍ପ, ବ୍ରାହ୍ମଣ, ବିଜୁଳି ବା ତୀକ୍ଷ୍ଣ ଦନ୍ତଯୁକ୍ତ ପଶୁଙ୍କ ଦ୍ୱାରା ଜୀବନ ତ୍ୟାଗ କରନ୍ତି, ତାଙ୍କ ନିମିତ୍ତ ଅଶୌଚ ପାଳିତ ହୁଏ ନାହିଁ ।୪୨। କିନ୍ତୁ ଅତ୍ୟଧିକ ବୃଦ୍ଧ, ଦୁର୍ବଳ, ରୋଗୀ, ଇନ୍ଦ୍ରିୟ-ସୌରେଚ୍ଛାହୀନ ତଥା ମହାପ୍ରସ୍ଥାନୀ ବ୍ୟକ୍ତି ଆତ୍ମହତ୍ୟା କଲେ ମଧ୍ୟ ସେମାନଙ୍କ ନିମିତ୍ତ ଅଶୌଚ ବିଧି ଯଥାରୀତି ପାଳିତ ହେବ ।୪୩।

ଦକ୍ଷଙ୍କ ଉଲ୍ଲେଖ ଅନୁସାରେ କାଳ ସୁସ୍ଥ ଓ ଶାନ୍ତିମୟ ଥିଲେ ଅଶୌଚର ସମସ୍ତ ବିଧି ପାଳିତ ହେବ: ମାତ୍ର ଆପତ୍କାଳରେ ସେ ସମସ୍ତ ଅନିବାର୍ଯ୍ୟ ନୁହେଁ ।୪୪। ଅଶୌଚ ପରେ ଗ୍ରାମ ବାହାରେ ବାଳକର୍ତ୍ତନ, ତିଳ ବା ଶ୍ୱେତସର୍ଷପକଳ୍କ ଲେପନ, ସ୍ନାନ, ନବବସ୍ତ୍ର ପରିଧାନ-ପୂର୍ବକ ଗୃହପ୍ରବେଶ କରଣୀୟ । ଏହାପରେ ଶାନ୍ତିକୃତ୍ୟ ଓ ବ୍ରାହ୍ମଣଙ୍କୁ ଭୋଜନ ଦାନ

---

୩୭ । ନିତ୍ୟାଚାର ପ୍ରଦୀପ—ପୃ-୧୨୭ ।
୩୮ । ନିତ୍ୟାଚାର ପ୍ରଦୀପ—ପୃ-୧୨୬ ।
୩୯ । ଶ୍ରାଦ୍ଧଦୀପ—ଶ୍ଳୋକ-୫୮-୬୦ ।
୪୦ । (କ) ନିତ୍ୟାଚାର ପ୍ରଦୀପ—ପୃ-୧୩୩ । (ଖ) ଶୁଦ୍ଧିସାର—ପୃ-୪୫ ।
୪୧ । ଅଗ୍ନି ପୁରାଣ—୧୫୯-୨-୪ ।
୪୨ । କାଳସାର—ପୃ-୩୨୯ ।
୪୩ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୭୯ ।
୪୪ । ଶୁଦ୍ଧିସାର—ପୃ-୧୨୫ ।

ବିଧେୟ ।୪୫। ଅଶୀତି ବିଷୟ ଅନ୍ତର୍ଗତ ଅନ୍ତ୍ୟେଷ୍ଟି କ୍ରିୟାବିଧିର ପ୍ରାସଙ୍ଗିକ ଉଲ୍ଲେଖ କରାଯାଇପାରେ ।

ବ୍ରାହ୍ମଣମାନଙ୍କଦ୍ୱାରା ପାଳିତ ହେଉଥିବା ଷୋଡ଼ଶ ସଂସ୍କାର ମଧ୍ୟରେ ଅନ୍ତ୍ୟେଷ୍ଟି ଏକ ସଂସ୍କାର । ବିଭିନ୍ନ ଦେଶରେ ବିଭିନ୍ନ ସମୟରେ ଅନ୍ତ୍ୟେଷ୍ଟି କ୍ରିୟା ଭିନ୍ନ ଭିନ୍ନ ରୀତିରେ ପାଳିତ ହେଉଥିବାର ଦେଖାଯାଏ । ତନ୍ମଧ୍ୟରେ ଶବଦାହ, ଭୂପ୍ରୋଥିତ ବା କବର ଦେବା, ଜଳରେ ଭସାଇବା, ମୁକ୍ତାକାଶ ତଳେ ତ୍ୟାଗ କରିବା, କୁମ୍ଭରେ ସୁରକ୍ଷିତ କରିବା ଆଦି ବିଧି ଉଲ୍ଲେଖଯୋଗ୍ୟ । ବୈଦିକ ଯୁଗରେ ଶବକୁ ଭୂପ୍ରୋଥିତ କରାଯାଉଥିଲା ।୪୬। ଶବଦାହ, ଅସ୍ଥିସଂଚୟ ଓ ଅସ୍ଥିପାତ୍ରକୁ ଭୂପ୍ରୋଥିତ କରିବା, ଶାନ୍ତି-କର୍ମ ଓ ଶ୍ମଶାନ ବା ସମାଧି-ନିର୍ମାଣାଦି ଚାରୋଟି ସ୍ତରରେ ଅନ୍ତ୍ୟେଷ୍ଟି କ୍ରିୟା ପାଳିତ ହୁଏ । ବିଷ୍ଣୁପୁରାଣ ଅନୁସାରେ ମରଣୋପରାନ୍ତ କ୍ରିୟା ପୂର୍ବ, ମଧ୍ୟମ ଓ ଉତ୍ତର ଭାଗ କୃତ୍ୟ ରୂପେ ତିନି ଭାଗରେ ବିଭକ୍ତ ।୪୭। ଶବଦାହଠାରୁ ଦ୍ୱାଦଶ ଦିବସାବଧି କାର୍ଯ୍ୟ ପୂର୍ବକୃତ୍ୟ, ମାସିକ, ସପିଣ୍ଡୀକରଣ ଓ ଏକୋଦ୍ଦିଷ୍ଟ ଶ୍ରାଦ୍ଧ ମଧ୍ୟମ କୃତ୍ୟ ଏବଂ ସପିଣ୍ଡୀକରଣ କ୍ରିୟାର ପରବର୍ତ୍ତୀ ବିଧି ଉତ୍ତର କୃତ୍ୟ ଭାବେ ଗୃହୀତ । ପୂର୍ବ ଓ ମଧ୍ୟମ କୃତ୍ୟ ପିତା, ମାତା, ସପିଣ୍ଡ, ସମାନୋଦକ, ସଗୋତ୍ର ତଥା ରାଜାଙ୍କ ଦ୍ୱାରା କରାଯାଇପାରେ; ମାତ୍ର ଉତ୍ତର କୃତ୍ୟ କେବଳ ପୁତ୍ର, ପୌତ୍ର, ପ୍ରପୌତ୍ର, ଦୌହିତ୍ର ପୁତ୍ର ଦ୍ୱାରା ସମ୍ପାଦିତ ହୁଏ ।୪୮। ମୃତାହ କର୍ମ ମଧ୍ୟରେ ପଞ୍ଚଶ୍ରାଦ୍ଧ, ଷଟ୍‌ଶ୍ରାଦ୍ଧ ବା ନବଶ୍ରାଦ୍ଧ କରାଯାଏ । ଶ୍ରାଦ୍ଧ-ପ୍ରକରଣରେ ଶ୍ରାଦ୍ଧର ବିଭିନ୍ନ ବିଧି ପର୍ଯ୍ୟାଲୋଚିତ ହୋଇଛି ।

ଅନ୍ତ୍ୟେଷ୍ଟି କ୍ରିୟା ମଧ୍ୟରେ ପାଳିତ ବିଧିବିଧାନ ମଧ୍ୟରେ ବୃଷୋତ୍ସର୍ଗ ବିଧି ଅନ୍ୟତମ । ମୃତ୍ୟୁର ଦ୍ୱାଦଶ ଦିବସରେ ପରଲୋକରେ ମୃତ ବ୍ୟକ୍ତିର ଶାନ୍ତି ନିମିତ୍ତ ବୃଷୋତ୍ସର୍ଗ କରାଯାଏ ।୪୯। ଗୃହ୍ୟସୂତ୍ରରେ ବୃଷୋତ୍ସର୍ଗ ବିଷୟର ଉଲ୍ଲେଖ ମିଳେ । ଏକ ପୁଷ୍ଟ, ସୁନ୍ଦର, ଲୋହିତ ବା ନୀଳବର୍ଣ୍ଣ ବୃଷଭକୁ ଚକ୍ର ଓ ତ୍ରିଶୂଳ ଚିହ୍ନିତ କରି ଯଥାବିଧି ମନ୍ତ୍ରପାଠପୂର୍ବକ ଉତ୍ତର-ପୂର୍ବ ଦିଗକୁ ଛାଡ଼ିଦିଆଯାଏ । ଏଥିରେ ବ୍ରାହ୍ମଣ ତଥା ଲୌହକାରକୁ ଇଚ୍ଛାନୁରୂପ ପୁରସ୍କାର ଦିଆଯାଏ । ପରବର୍ତ୍ତୀ କାଳରେ କୁଶ, ଅଟା ବା ମାଟିରେ ନିର୍ମିତ ପ୍ରତୀକାତ୍ମକ ବୃଷଭ ଉତ୍ସର୍ଗ କରାଯାଉଛି ।୫୦।

---

୪୫ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୭୯

୪୬ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୩୮

୪୭ । ବିଷ୍ଣୁ ପୁରାଣ—୩।୧୩-୩୪-୩୯

୪୮ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୧୫୩

୪୯ । ଶ୍ରାଦ୍ଧଦୀପ—ଶ୍ଳୋକ-୧୨୯-୧୩୧

୫୦ । ଧର୍ମଶାସ୍ତ୍ର କା ଇତିହାସ-୩ୟ—ପୃ-୧୨୯୧

ଓଡ଼ିଶାର ଅଧିକାଂଶ ସ୍ମୃତିକାର ସ୍ୱ-ସ୍ୱ ଗ୍ରନ୍ଥରେ ଅଶୌଚ ପ୍ରସଙ୍ଗ ଆଲୋଚନା କରିଛନ୍ତି । ତଦ୍‌ବ୍ୟତୀତ ବାଜପେୟୀ ଶମ୍ଭୁକର ମିଶ୍ରଙ୍କ 'ଦୁର୍ବଳ କୃତ୍ୟ' ବା ପ୍ରେତ କୃତ୍ୟ ଓ 'ଦୁର୍ବଳକର୍ମ-ପଦ୍ଧତି' ଗ୍ରନ୍ଥରେ ମରଣାଶୌଚ ଓ ଅନ୍ତ୍ୟେଷ୍ଟି କ୍ରିୟାର ବିଧି-ବିଧାନ ଆଲୋଚିତ ହୋଇଛି । ବିଦ୍ୟାକର ବାଜପେୟୀଙ୍କ 'ନିତ୍ୟାଚାର ପଦ୍ଧତି', ବାଜପେୟୀ ନରସିଂହ ମିଶ୍ରଙ୍କ 'ନିତ୍ୟାଚାର ପ୍ରଦୀପ', ରାଜଗୁରୁ ଗଦାଧର ମହାପାତ୍ରଙ୍କ 'କାଳସାର' ଗ୍ରନ୍ଥରେ ଅଶୌଚ ବିଷୟର ବିସ୍ତୃତ ବିବରଣୀ ଉଲ୍ଲିଖିତ ରହିଛି ।

୨ । ଆଚାର ପ୍ରକରଣ :

ଧର୍ମର ଉଦ୍‌ଗମ ବା ମୂଳାଧାର ଭାବେ ବେଦ, ବେଦବିତ୍‌ମାନଙ୍କ ବ୍ୟବହାର ଓ ପରମ୍ପରାକୁ ମୁଖ୍ୟତଃ ସ୍ୱୀକାର କରାଯାଇଛି ।୫୧। ମହର୍ଷି ଆପସ୍ତମ୍ବ ପରମ୍ପରା, ଆଚାର ତଥା ସାଧୁ ଉଦ୍ଭାବିତ କର୍ମକୁ ଧର୍ମର ଆଧାର ରୂପେ ଅଭିହିତ କରିଛନ୍ତି । ତଦନୁଯାୟୀ ଧର୍ମ ସମ୍ବନ୍ଧୀୟ କର୍ତ୍ତବ୍ୟ ବିଷୟରେ ଧର୍ମଜ୍ଞ ଓ ବେଦଜ୍ଞ ବ୍ୟକ୍ତିର ଆଚରଣ, ପରମ୍ପରା ତଥା ବ୍ୟବହାର ପ୍ରମାଣ ରୂପେ ଗ୍ରହଣୀୟ ।୫୨। ସ୍ମୃତିକାର ବଶିଷ୍ଠ, ମନୁ, ଯାଜ୍ଞବଲ୍‌କ୍ୟ ପ୍ରଭୃତି ଶ୍ରୁତି, ସ୍ମୃତି ଓ ଶିଷ୍ଟାଚାରକୁ ଧର୍ମର ମୂଳଭାବେ ଉଲ୍ଲେଖ କରିଛନ୍ତି ।୫୩। ତେଣୁ ଶୀଳ, ସମୟ, ଆଚାର, ସଦାଚାର ବା ଶିଷ୍ଟାଚାର ସ୍ଥୂଳତଃ 'ଆଚାର' ଅର୍ଥକୁ ହିଁ ବୁଝାଇଥାଏ । ଧର୍ମୀୟ ବିଧିବିଧାନ ନିମିତ୍ତ ଯେପରି ବେଦ ଓ ସ୍ମୃତିକୁ ପ୍ରମାଣ ରୂପେ ଗ୍ରହଣ କରାଯାଏ, ସେହିପରି ସମାଜଜୀବନର ପରିବର୍ତ୍ତିତ ପରିସ୍ଥିତିରେ ପ୍ରକୃତ ଧର୍ମବ୍ୟବସ୍ଥାର ଅବଗତି ନିମିତ୍ତ ଶିଷ୍ଟାଚାରକୁ ସ୍ୱୀକାର କରାଯାଏ ।୫୪। ମନୁ ପରମ୍ପରା ଅନ୍ତର୍ଗତ ଆଚାରକୁ ସୀମିତ କ୍ଷେତ୍ରରେ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ ମଧ୍ୟ ପରବର୍ତ୍ତୀ ଶାସ୍ତ୍ରକାରଗଣ ସଦାଚାର ବା ଆଚାରକୁ ବ୍ୟାପକଭାବେ ପ୍ରମାଣରୂପେ ଉଲ୍ଲେଖ କରିଛନ୍ତି ।୫୫।

ଧର୍ମର ମୂଳ ବା ପ୍ରମାଣ ଓ ଧର୍ମର ସ୍ଥାନ ମଧ୍ୟରେ ପାର୍ଥକ୍ୟ ରହିଛି । ପ୍ରମାଣଦ୍ୱାରା ଧର୍ମର ସ୍ୱରୂପ ଓ ଧର୍ମସ୍ଥାନଦ୍ୱାରା ଧର୍ମର କାରଣ ବୁଝାଯାଏ । ଧର୍ମର ମୂଳସ୍ରୋତ ଭାବେ ।୫୬। ବେଦ,

---

୫୧ । ବେଦୋ ଧର୍ମମୂଳମ୍ । ତଦ୍‌ବିଦାଂ ଚ ସ୍ମୃତିଶୀଳେ ॥ (ଗୌତମ ଧର୍ମସୂତ୍ର-୧-୧-୨)

୫୨ । ଅଥାତ ସମୟାଚାରିକାନ୍ ଧର୍ମାନ୍ ବ୍ୟାଖ୍ୟା ସ୍ୟାମଃ ।
ଧର୍ମଜ୍ଞ ସମୟଃ ପ୍ରମାଣଂ ବେଦାଶ୍ଚ ॥ (ଆପସ୍ତମ୍ବ ଧର୍ମସୂତ୍ର— ୧-୧-୧-୧-୩)

୫୩ । (କ) ବଶିଷ୍ଠ ସ୍ମୃତି—୧-୪-୬, (ଖ) ଯାଜ୍ଞବଲ୍‌କ୍ୟ ସ୍ମୃତି—୧-୭,
(ଗ) ମନୁସ୍ମୃତି—୧-୬

୫୪ । ଆଚାରସାର—ପୃ-୧୨

୫୫ । ଧର୍ମଶାସ୍ତ୍ର କା ଇତିହାସ-୨ୟ ଭାଗ—ପୃ-୯୫୦

୫୬ । ପୁରାଣନ୍ୟାୟମୀମାଂସା ଧର୍ମଶାସ୍ତ୍ରାଙ୍ଗମିଶ୍ରିତାଃ ।
ବେଦାଃ ସ୍ଥାନାନି ବିଦ୍ୟାନାଂ ଧର୍ମସ୍ୟ ଚ ଚତୁର୍ଦ୍ଦଶ ॥ (ଯାଜ୍ଞବଲ୍‌କ୍ୟ—୧-୩)

ସ୍ମୃତି ପ୍ରଭୃତି ଧର୍ମର ପ୍ରମାଣ ଅପେକ୍ଷା ମଧ୍ୟସ୍ଥତାର କାର୍ଯ୍ୟ ସମ୍ପାଦନ କରୁଥିବାର ଦେଖାଯାଏ । ମୀମାଂସକ ମହର୍ଷି ଜୈମିନିଙ୍କ ଅନୁସାରେ ଯେଉଁମାନେ ବେଦଜ୍ଞ, ସେମାନେ ସ୍ମୃତିକୁ ପ୍ରମାଣ ରୂପେ ସ୍ୱୀକାର କରି ତଦନୁଯାୟୀ ଆଚରଣ କରନ୍ତି ।୫୭। ତନ୍ତ୍ରବାର୍ତ୍ତିକକାର କୁମାରିଲ ଭଟ୍ଟ ଅନୁମାନ, ପ୍ରତ୍ୟକ୍ଷ ଓ ଆପ୍ତବାକ୍ୟକୁ ଧର୍ମ-ପ୍ରାମାଣ୍ୟରୂପେ ଉଲ୍ଲେଖ କରିଛନ୍ତି । ତେଣୁ ଲକ୍ଷ୍ୟପୂର୍ତ୍ତି ପର୍ଯ୍ୟନ୍ତ ସ୍ମୃତି-ବାକ୍ୟକୁ ପ୍ରମାଣ ରୂପେ ଗ୍ରହଣ କରିବାର ବିଧି ଅଛି । ସ୍ମୃତିଶାସ୍ତ୍ରର ଯେଉଁ ଅଂଶ-ଗୁଡ଼ିକ ଧର୍ମ ଓ ମୋକ୍ଷ ସମ୍ପର୍କୀୟ, ବେଦ-ଆଧାରିତ, ଅର୍ଥ ଓ କାମ ସମ୍ପର୍କିତ ତଥା ଲୋକ-ବ୍ୟବହାର ଉପରେ ପର୍ଯ୍ୟବସିତ, ସେ ସମସ୍ତ ଧର୍ମର ସ୍ଥାନରୂପେ ଗ୍ରହଣୀୟ ।୫୮। କାରଣ ମହାଭାରତ, ପୁରାଣ ଓ ବେଦାଙ୍ଗର ବାକ୍ୟାବଳୀ ଅଂଶତଃ ବେଦ ଓ ସ୍ମୃତି ଏବଂ ଅଂଶତଃ ଲୌକିକ ଅନୁଭବକୁ ନେଇ ବର୍ଣ୍ଣିତ ହୋଇଥିବାର ଦେଖାଯାଏ ।୫୯।

ଧର୍ମଶାସ୍ତ୍ର ସମ୍ବନ୍ଧୀୟ ନିବନ୍ଧ ଗ୍ରନ୍ଥଗୁଡ଼ିକରେ ସ୍ମୃତିର ବିଷୟବସ୍ତୁକୁ ଦୃଷ୍ଟ (ବୃତ୍ତି-ଆଧାରିତ), ଅଦୃଷ୍ଟ (ପାରଲୌକିକ), ଦୃଷ୍ଟାଦୃଷ୍ଟ (ଉଭୟ ଉଦ୍ଦେଶ୍ୟସାଧ), ତର୍କ (ନ୍ୟାୟ-ଆଧାରିତ) ଏବଂ ଆପ୍ତବାକ୍ୟାତ୍ମକ ଭାବେ ପାଞ୍ଚଭାଗରେ ବିଭକ୍ତ କରାଯାଇଛି ।୬୦। ତନ୍ତ୍ରବାର୍ତ୍ତିକ ଅନୁସାରେ ବେଦ-ବିହିତ କୃତ୍ୟ ସମ୍ପାଦନ କରୁଥିବା ବ୍ୟକ୍ତିକୁ ଶିଷ୍ଟ କୁହାଯାଏ । ଶିଷ୍ଟଙ୍କ ଆଚରିତ କାର୍ଯ୍ୟାବଳୀ ହିଁ ସଦାଚାର ରୂପେ ଅଭିହିତ ।୬୧। ତଦନୁଯାୟୀ ଦାନ, ଜପ, ମାତୃଯଜ୍ଞ, ଇନ୍ଦ୍ରଧ୍ୱଜୋତ୍ସବ, ମନ୍ଦିରାନ୍ତର୍ଗତ ମେଳା, ଦୀପଦାନ, ବସନ୍ତୋତ୍ସବ ଆଦିକୁ ଧର୍ମୀୟ କାର୍ଯ୍ୟ ରୂପେ ତଥା କୃଷି, ରାଜସେବା, ବାଣିଜ୍ୟ, ମିଷ୍ଟାନ୍ନପାନ, ମୃଦୁ ଶୟନ,ଆସନ, ରମଣୀୟ ଗୃହୋଦ୍ୟାନ, ଆଲେଖ୍ୟ, ଗୀତ, ନୃତ୍ୟ,ଗନ୍ଧ-ପୁଷ୍ପ ଆଦି ଧର୍ମବିରୋଧି ଭାବେ ଉଲ୍ଲିଖିତ ଅଛି । ତେଣୁ ସବୁପ୍ରକାର ଶିଷ୍ଟାଚାରକୁ ସଦାଚାର ରୂପେ ଗ୍ରହଣ କରାଯାଇନପାରେ ।୬୨।

ଗୌତମ ଓ ଆପସ୍ତମ୍ବ ଧର୍ମସୂତ୍ରର ଆଲୋଚନା କରିବାକୁ ଯାଇ କୁମାରିଲ କହିଛନ୍ତି ଯେ, ପୂର୍ବେ ଶିଷ୍ଟଗଣ ବହୁ ବିଷୟରେ ଧର୍ମମାର୍ଗର ଉଲ୍ଲଙ୍ଘନ କରିଥିଲେ ମଧ୍ୟ ସେମାନେ ପ୍ରଭାବଶାଳୀ

---

୫୭ । ଧର୍ମଶାସ୍ତ୍ର କା ଇତିହାସ-୨ୟ ଭାଗ—ପୃ-୯୫୩ ।

୫୮ । ଆଗ୍ନିରସାର—ପୃ-୧୭ ।

୫୯ । ଧର୍ମଶାସ୍ତ୍ର କା ଇତିହାସ-୨ୟ ଭାଗ—ପୃ-୯୫୬-୯୫୭ ।

୬୦ । ଦୃଷ୍ଟାର୍ଥା ଚ ସ୍ମୃତି କାଚିଦଦୃଷ୍ଟାର୍ଥା ତଥା ପରା ।
ଦୃଷ୍ଟାଦୃଷ୍ଟାର୍ଥ ରୂପାନ୍ୟା ନ୍ୟାୟମୂଳା ତଥା ପରା ॥
ଅନୁବାଦ ସ୍ମୃତିସ୍ତ୍ୱନ୍ୟା ଶିଷ୍ଟୈର୍ଦୃଷ୍ଟା ତୁ ପଞ୍ଚମୀ ।
ସର୍ବା ଏତା ବେଦମୂଳା ଦୃଷ୍ଟାର୍ଥା ପରିହୃତ୍ୟ ତୁ ॥ (ଅପରାର୍କ—ପୃ-୬୨୬)

୬୧ । ଜୈମିନି—୧-୩-୭ ।

୬୨ । ଧର୍ମଶାସ୍ତ୍ରକା ଇତିହାସ-ଦ୍ୱିତୀୟ ଭାଗ—ପୃ-୯୫୯ ।

ହୋଇଥିବାରୁ ପାପଭୋଗୀ ହୋଇନାହାନ୍ତି ।୭୩। ପରବର୍ତ୍ତୀ କାଳରେ ସେହି କାର୍ଯ୍ୟ କରୁଥିବା ବ୍ୟକ୍ତି ନରକଯାତନା ଭୋଗ କରିଥାଏ । ତନ୍ତ୍ରବାର୍ତ୍ତିକରେ ବାରପ୍ରକାର ଦୁରାଚାରତାର ଉଦାହରଣ ଦିଆଯାଇଛି । ସେଗୁଡ଼ିକ ହେଲା--(୧) ସ୍ୱପୁତ୍ରୀ ଉଷା ସହିତ ବ୍ରହ୍ମାଙ୍କର ସମ୍ଭୋଗ, (୨) ଅହଲ୍ୟାଙ୍କ ସହିତ ଇନ୍ଦ୍ରଙ୍କ ରତି, (୩) ଇନ୍ଦ୍ରପଦ ଲାଭ କରିଥିବା ରାଜା ନହୁଷଙ୍କର ଶଚୀ ସହିତ ସମ୍ଭୋଗ-ଇଚ୍ଛା, (୪) ରାକ୍ଷସଙ୍କଦ୍ୱାରା ଶତପୁତ୍ର ଭକ୍ଷଣ ପରେ ବିପାଶା ନଦୀରେ ବଶିଷ୍ଠଙ୍କ ଆତ୍ମହତ୍ୟା, (୫) ଉର୍ବଶୀ ବିରହରେ ଦଉଡ଼ି ଦେଇ ପୁରୁରବାଙ୍କ ଆତ୍ମହତ୍ୟା ଉଦ୍ୟମ, (୬) ବିଶ୍ୱାମିତ୍ରଙ୍କ ଚଣ୍ଡାଳ ତ୍ରିଶଙ୍କୁର ଯଜ୍ଞରେ ପୌରୋହିତ୍ୟ, (୭) ଯୁଧିଷ୍ଠିରଙ୍କ ଦ୍ରୌପଦୀଙ୍କୁ ସ୍ତ୍ରୀ ରୂପେ ସ୍ୱୀକାର ଓ ଯୁଦ୍ଧରେ ମିଥ୍ୟା-ଭାଷଣ, (୮) ବ୍ରହ୍ମହତ୍ୟା ଭୀଷ୍ମଙ୍କ ଅଶ୍ୱମେଧ ଯଜ୍ଞକାର୍ଯ୍ୟ, (୯) ବ୍ୟାସଙ୍କ ସ୍ୱକନିଷ୍ଠ ଭ୍ରାତୃବଧୂ ସହିତ ସହବାସ, (୧୦) ସୀତାଙ୍କ ସୁବର୍ଣ୍ଣ ମୂର୍ତ୍ତି ସହିତ ଶ୍ରୀରାମଙ୍କର ଅଶ୍ୱମେଧ ଯଜ୍ଞ ସମ୍ପାଦନ,(୧୧) ଅନ୍ଧ ଧୃତରାଷ୍ଟ୍ରଙ୍କ ଯଜ୍ଞକାର୍ଯ୍ୟ, (୧୨) ବାସୁଦେବ ଓ ଅର୍ଜୁନଙ୍କ ମଦ୍ୟପାନ ଓ କନ୍ୟା ସହିତ ସହବାସ । ପରବର୍ତ୍ତୀ ଧର୍ମଶାସ୍ତ୍ରକାରଗଣ ଏ ସମସ୍ତ ଦୁରାଚରଣକୁ ଯୁକ୍ତିବାଦ ଦ୍ୱାରା ଶିଷ୍ଟାଚାର ଭାବେ ପ୍ରତିପାଦନ କରିଛନ୍ତି ।୭୪।

କୁମାରିଳ (୬୦୦-୭୦୦ ଖ୍ରୀଷ୍ଟାବ୍ଦ) ତତ୍କାଳୀନ ସମାଜରେ ପ୍ରଚଳିତ ଥିବା କେତେକ ଆଚରଣକୁ ବର୍ଜନୀୟ ବୋଲି ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରେ ମଥୁରାବାସିନୀ ନାରୀଙ୍କର ମଦ୍ୟପାନ, ଉତ୍ତରଭାରତୀୟ ବ୍ରାହ୍ମଣମାନଙ୍କର ଘୋଡ଼ା, ଗଧ, ଓଟ ପ୍ରଭୃତି ପଶୁଙ୍କ କ୍ରୟ ବିକ୍ରୟ ଓ ପତ୍ନୀ, ସନ୍ତାନ, ମିତ୍ରାଦିଙ୍କ ସହିତ ଏକପାତ୍ରରେ ଭୋଜନ, ଦକ୍ଷିଣ-ଭାରତରେ ମାତୁଳ କନ୍ୟା ସହିତ ବିବାହ ଓ ଖଟରେ ବସି ଭୋଜନ, ଉତ୍ତର ଓ ଦକ୍ଷିଣ ଉଭୟତ୍ର ପୂର୍ବରୁ ଖାଇସାରିଥିବା ସମ୍ବନ୍ଧୀୟଙ୍କ ଉଚ୍ଛିଷ୍ଟ ପାତ୍ରରେ ପୁନର୍ଭୋଜନ, ଅନ୍ୟବର୍ଣ୍ଣସ୍ପୃଷ୍ଟ ତାମ୍ବୁଳ ଭକ୍ଷଣ, ଧୋବାଦ୍ୱାରା ପରିଷ୍କୃତ ବସ୍ତ୍ର ପରିଧାନ, ମହାପାତକୀଠାରୁ ଦୂରରେ ଅବସ୍ଥାନ ନ କରିବା ପ୍ରଭୃତି । ଏ ସବୁ କ୍ଷେତ୍ରରେ ସ୍ମୃତି ଓ ସଦାଚାର ମଧ୍ୟରେ ଦ୍ୱିତୀୟଟି ଅପେକ୍ଷାକୃତ ବଳବାନ୍; କିନ୍ତୁ ଆଚାରକୁ ସେହି କ୍ଷେତ୍ରରେ ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ; ଯେଉଁଠାରେ ତାହା ସ୍ମୃତି-ମୂଳକ ଏବଂ ସେ ସ୍ମୃତି ମଧ୍ୟ ଶ୍ରୁତିମୂଳକ ହୋଇଥିବ । ମୀମାଂସକମାନଙ୍କ ଅନୁଯାୟୀ ପରମ୍ପରା, ପ୍ରାଚୀନ ଓ ଶ୍ରୁତି, ସ୍ମୃତି ତଥା ଶିଷ୍ଟମାନଙ୍କ ଦ୍ୱାରା ସମର୍ଥିତ ହେବା ଆବଶ୍ୟକ । ତଥାପି ମନୁସ୍ମୃତିର ଟୀକାକାର ମେଧାତିଥି, ମୀମାଂସା କୌସ୍ତୁଭ କୁମାରିଳ ପ୍ରଭୃତି ପ୍ରାଚୀନ ପରମ୍ପରାକୁ ଯଥାର୍ଥ ସ୍ୱୀକୃତି ଦେଇଥିବାର ଦେଖାଯାଏ ।୭୫।

---

୭୩ । (କ) ଦୃଷ୍ଟୋ ଧର୍ମବ୍ୟତିକ୍ରମଃ ସାହସଂ ଚ ମହତାମ୍ । ଅବର ଦୌର୍ବଲ୍ୟାତ୍ ॥

(ଗୌତମ-ଧର୍ମସୂତ୍ର—୧-୩-୪)

(ଖ) ସାହସଂ ଚ ପୂର୍ବେଷାମ୍ । ତେଷାଂ ତେଜୋବିଶେଷେଣ ପ୍ରତ୍ୟବାୟୋ ନ ବିଦ୍ୟତେ । ତଦନ୍ୱୀକ୍ଷ୍ୟ ପ୍ରଯୁଞ୍ଜାନଃ ସୀଦତ୍ୟବରଃ ॥ (ଆପସ୍ତମ୍ବ-ଧର୍ମସୂତ୍ର—୨-୬-୧୩-୭୯)

୭୪ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ-୯୬୦ ।

୭୫ । ଧର୍ମଶାସ୍ତ୍ର କା ଇତିହାସ—ପୃ. ୯୬୨-୯୬୪ ।

ସୂତ୍ରକାର ଆଶ୍ୱଳାୟନ ଦେଶ ବା ଗ୍ରାମବିଶେଷର ପରମ୍ପରାକୁ ଆଚାର ରୂପେ ଉଲ୍ଲେଖ କରିଛନ୍ତି ।୬୬। ଆପସ୍ତମ୍ବ କେତେକ ରୀତି ବିଷୟରେ ସ୍ତ୍ରୀମାନଙ୍କର ପରାମର୍ଶକୁ ସ୍ୱୀକୃତି ଦେଇଛନ୍ତି ।୬୭। ବୌଧାୟନ ଶ୍ରାଦ୍ଧ ବିଷୟରେ ଲୋକରୀତି ଅନୁସରଣୀୟ ବୋଲି ଉଲ୍ଲେଖ କରିଛନ୍ତି ।୬୮। ଯେଉଁ ପନ୍ଥା ସାଧୁ-ସଜ୍ଜନଙ୍କ ପିତା ଓ ପିତାମହ ଅନୁସରଣ କରିଆସିଛନ୍ତି, ସମସ୍ତେ ସେହି ପଥ ଅନୁସରଣ କରିବା ଉଚିତ ବୋଲି ସ୍ମୃତିକାର ମନୁ ପରାମର୍ଶ ଦେଇଛନ୍ତି ।୬୯। ଗୌତମଙ୍କ ଅନୁସାରେ ବୈଦିକ ବଚନକୁ ବିରୋଧ କରୁନଥିବା ଦେଶ, ଜାତି ଓ କୁଳଧର୍ମ ପ୍ରାମାଣିକ ଓ ଅନୁଲ୍ଲଙ୍ଘନୀୟ ।୭୦। ମନୁଙ୍କ ଅନୁସାରେ ବୈଦିକ ନିୟମର ଅଭାବରେ ଦେଶ, ଜାତି ଓ କୁଳ ପରମ୍ପରାର ରୀତି ଆଚାରଭାବେ ଗୃହୀତ ହୋଇଥାଏ ।୭୧। ତେଣୁ ଦକ୍ଷିଣରେ ପ୍ରଚଳିତ ରୀତି ଉତ୍ତରରେ ବା ଉତ୍ତରରେ ପ୍ରଚଳିତ ରୀତି ଦକ୍ଷିଣ ଭାରତରେ ସମ୍ମାନିତ ନ ହେଲେ ମଧ୍ୟ ସ୍ୱ-ସ୍ୱ କ୍ଷେତ୍ରରେ ତାହାର ପ୍ରାଧାନ୍ୟ ସ୍ୱୀକୃତ ହୋଇଅଛି ।୭୨।

ଆଚାରବାନ୍ ଲୋକ ଜଗତ୍‌ରେ ପୂଜା ପାଏ; ଦୁରାଚାରୀ ନିନ୍ଦିତ ହୁଏ । ଆଚାରର ମୂଳ ହେଉଛି କର୍ମ, କର୍ମରୁ ଜ୍ଞାନ ଓ ଜ୍ଞାନରୁ ପରମପଦ ଲଭିହୁଏ ।୭୩। ସ୍ନାନ, ଜପ, ପୂଜା, ଧ୍ୟାନ ଓ ହୋମ—ଏହି ପାଞ୍ଚଟି ନିତ୍ୟାଚାର ରୂପେ ଅଭିହିତ । ଦେବପୂଜା ମଧ୍ୟରେ ହିନ୍ଦୁମାନେ ପ୍ରତିଦିନ ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗାଦି ପଞ୍ଚଦେବତାଙ୍କୁ ପୂଜା କରନ୍ତି । ଏମାନଙ୍କ ବ୍ୟତୀତ ନିତ୍ୟପୂଜା ମଧ୍ୟରେ ନବଗ୍ରହ, ଲକ୍ଷ୍ମୀ, ସରସ୍ୱତୀ, ବ୍ରହ୍ମାଦିଙ୍କୁ ମଧ୍ୟ ପୂଜା କରାଯାଇଥାଏ । ଦେବଗଣ ମଧ୍ୟରେ ଅଭିଷେକରେ ଶିବ, ନୈବେଦ୍ୟରେ ଗଣେଶ, ଅଳଙ୍କାରରେ ବିଷ୍ଣୁ, ଅଧ୍ୟୟନରେ ବ୍ରହ୍ମା, ସଙ୍କାର୍ଯ୍ୟରେ ଇନ୍ଦ୍ର, ସର୍ପରେ ଗରୁଡ଼, ଅର୍ଘ୍ୟରେ ସୂର୍ଯ୍ୟ, ହୋମରେ ଗ୍ରହଗଣ, ମାଂସବଳିରେ ଚାମୁଣ୍ଡାଦି ଦେବୀ, ଆଚାରରେ ଧର୍ମ, ପାୟସରେ ଚନ୍ଦ୍ର, ପୁଷ୍ପରେ ମନ୍ମଥ, ପଦ୍ମରେ ଲକ୍ଷ୍ମୀ ସନ୍ତୁଷ୍ଟ ହୁଅନ୍ତି ବୋଲି ଉଲ୍ଲେଖ ଥିଲେ ମଧ୍ୟ ଧ୍ୟାନରେ ସମସ୍ତେ ପ୍ରୀତ ହୁଅନ୍ତି ।୭୪। ସମାଜର ଆବଶ୍ୟକତାକୁ ଭିତ୍ତିକରି ଶାସ୍ତ୍ରୀୟ ନିୟମରେ ପରିବର୍ତ୍ତନ କରାଯାଏ । ଉଦାହରଣ ସ୍ୱରୂପ ସ୍ମୃତିଶାସ୍ତ୍ରରେ ସ୍ପର୍ଶାସ୍ପର୍ଶ ବିଷୟରେ ବହୁ କଠୋର ନିୟମ ଥିଲେ ମଧ୍ୟ ତୀର୍ଥ, ବିବାହ,

---

୬୬ । ଆଶ୍ୱଳାୟନ ଧର୍ମସୂତ୍ର—୧।୭।୧-୨

୬୭ । ଆପସ୍ତମ୍ବ ଗୃହ୍ୟସୂତ୍ର — ୨-୧୫

୬୮ । ବୌଧାୟନ ଧର୍ମସୂତ୍ର—୧।୫।୧୩

୬୯ । ମନୁସ୍ମୃତି—୪-୧୭୮ ।

୭୦ । ଗୌତମ ଧର୍ମସୂତ୍ର—୧୧-୨୦

୭୧ । ମନୁସ୍ମୃତି—୨-୧୮ ।

୭୨ । ଧର୍ମଶାସ୍ତ୍ର କା ଇତିହାସ-୨ୟ ଭାଗ—ପୃ. ୯୬୬ ।

୭୩ । ଆଚାରସାର (ASB-Edn. 1908)-ପୃ. ୮

୭୪ । ନିତ୍ୟାଚାର ପ୍ରଦୀପ—ପୃ. ୫୪୨, ୫୮୮

ଯାତ୍ରା, ସଂଗ୍ରାମ, ଦେଶ-ବିପ୍ଲବ, ସହର, ଗ୍ରାମଦାହ, କୁଣ୍ଡ, ମଞ୍ଚ, ଶିଳାପୃଷ୍ଠ, ନୌକା, ଗଜ ଓ ବୃକ୍ଷରେ ସ୍ପର୍ଶଦୋଷ ଗୃହୀତ ହୁଏ ନାହିଁ ।୭୫।

କାଳକ୍ରମେ ସମସାମୟିକ ଆଗ୍ରହକୁ ଭିତ୍ତି କରି ପୁରାଣ ଓ ସ୍ମୃତି ନିବନ୍ଧ ଗ୍ରନ୍ଥଗୁଡ଼ିକରେ ପୂର୍ବ ପ୍ରଚଳିତ ପଞ୍ଚାବନଟି ବିଧି କଳିବର୍ଜ୍ୟ ରୂପେ ଅଭିହିତ ହୋଇଛି । ଏଥିରେ (୧) ଜ୍ୟେଷ୍ଠାଂଶ ଦାବୀ, (୨) ନିୟୋଗ, (୩) ଗୌଣ-ପୁତ୍ର, (୪) ବିଧବା ବିବାହ, (୫) ଆନ୍ତର୍ଜାତୀୟ ବିବାହ,(୬) ସଗୋତ୍ର କନ୍ୟା ବିବାହ, (୭) ପିତାପୁତ୍ରଙ୍କର ବିବାଦରେ ସାକ୍ଷ୍ୟ,(୮) ଆତତାୟୀ ବ୍ରାହ୍ମଣ ହତ୍ୟା, (୯) ବ୍ରାହ୍ମଣ ପକ୍ଷରେ ଶୂଦ୍ରାନ୍ନ ଅପହରଣ, (୧୦) ବ୍ରାହ୍ମଣର ସମୁଦ୍ର-ଯାତ୍ରା, (୧୧) ସତ୍ର, (୧୨) କମଣ୍ଡଳୁଧାରଣ, (୧୩) ମହାପ୍ରସ୍ଥାନ ଯାତ୍ରା, (୧୪) ଗୋବଧ, (୧୫) ସୋମ ଯଜ୍ଞରେ ମଦ୍ୟପାନ, (୧୬) ସ୍ରୁବ ଓ ସ୍ରୁଚ ଲେହନ, (୧୭) ବାନପ୍ରସ୍ଥ, (୧୮) ବେଦାଧ୍ୟାୟୀର ଅଶୌଚ ମୁକ୍ତି, (୧୯) ବ୍ରାହ୍ମଣରେ ପ୍ରାୟଶ୍ଚିତ୍ତ ସ୍ୱରୂପ ମୃତ୍ୟୁଦଣ୍ଡ, (୨୦) ପତିତ ସଂସର୍ଗଜନିତ ଅପବିତ୍ରତା, (୨୧) ଚୋରି ବ୍ୟତୀତ ଅନ୍ୟ ପାତକ ନିମିତ୍ତ ଗୁପ୍ତ ପ୍ରାୟଶ୍ଚିତ୍ତ, (୨୨) ବୈଦିକ କାର୍ଯ୍ୟରେ ପଶୁବଧ, (୨୩) ଅସବର୍ଣ୍ଣ ସ୍ତ୍ରୀ-ଗାମୀର ପ୍ରାୟଶ୍ଚିତ୍ତ ଉପରାନ୍ତ ସଂସର୍ଗ, (୨୪) ଜାତ ଦ୍ୱାରା ସଂଭୁକ୍ତ ମାତାର ପରିତ୍ୟାଗ, (୨୫) ଅନ୍ୟ ନିମିତ୍ତ ସ୍ତ୍ରୀ ଜୀବନ ତ୍ୟାଗ, (୨୬) ଉଚ୍ଛିଷ୍ଟ ଦାନ, (୨୭) ଆଜୀବନ କୌଣସି ଦେବମୂର୍ତ୍ତିର ପୂଜା, (୨୮) ଅସ୍ଥିସଞ୍ଚୟନୋପରାନ୍ତ ବ୍ୟକ୍ତିର ସ୍ପର୍ଶ, (୨୯) ଯଜ୍ଞରେ ବ୍ରାହ୍ମଣ କର୍ତ୍ତୃକ ପଶୁବଳି, (୩୦) ବ୍ରାହ୍ମଣ ଦ୍ୱାରା ସୋମ ବିକ୍ରୟ, (୩୧) ନିଜର ଦାସ ଓ ମିତ୍ର ଗୃହରେ ଭୋଜନ, (୩୨) ଦୂରତୀର୍ଥଯାତ୍ରା, (୩୩) ଗୁରୁପତ୍ନୀ ପ୍ରତି ଗୁରୁବତ୍ ବ୍ୟବହାର, (୩୪) ବିପଦକାଳରେ ବ୍ରାହ୍ମଣର ବୃତ୍ୟନ୍ତର ଗ୍ରହଣ, (୩୫) ପରବର୍ତ୍ତୀ ଦିନ ପାଇଁ ସମ୍ପତ୍ତିର ଅସଂରକ୍ଷଣ,(୩୬) ନବ ଜାତକ ନିମିତ୍ତ ବୈଦିକ ଅଗ୍ନି ସଂରକ୍ଷଣ, (୩୭) ବ୍ରାହ୍ମଣର ବାରମ୍ବାର ତୀର୍ଥଯାତ୍ରା, (୩୮) ଅଗ୍ନିକୁ ମୁଖବାୟୁରେ ପ୍ରଜ୍ୱଳିତ କରିବା, (୩୯) ବଳାତ୍କାରାଦି ଦ୍ୱାରା ଆନୀତ ଜାତ ସ୍ତ୍ରୀକୁ ଶାସ୍ତ୍ରାନୁମୋଦିତ ସାମାଜିକ ସମ୍ବନ୍ଧ ନିମିତ୍ତ ଅନୁମତି ଦେବା, (୪୦) ସନ୍ନ୍ୟାସୀର ସର୍ବବର୍ଣ୍ଣଠାରୁ ଭିକ୍ଷା ଗ୍ରହଣ, (୪୧) ନବୀନ ଜଳ ସେଚନ, (୪୨) ବ୍ରହ୍ମଚର୍ଯ୍ୟ ପରେ ଗୁରୁଦକ୍ଷିଣା ମାଗିବା, (୪୩) ବ୍ରାହ୍ମଣ ଗୃହରେ ଶୂଦ୍ରର ଭୋଜନ ପ୍ରସ୍ତୁତି, (୪୪) ଅଗ୍ନି ବା ଜଳରେ ବୃଦ୍ଧର ଆତ୍ମହତ୍ୟା, (୪୫) ଗୋ ତୃପ୍ତି ମାତ୍ର ଜଳରେ ଆଚମନ, (୪୬) ଭିକ୍ଷା ଦେଇଥିବା ଗୃହସ୍ଥଠାରେ ଯତିର ଆଶ୍ରୟ ନେବା,(୪୭) ସନ୍ନ୍ୟାସ ଗ୍ରହଣ, (୪୮) ଅଗ୍ନିହୋତ୍ର ପାଳନ, (୪୯) ନରମେଧ, (୫୦) ଅଶ୍ୱମେଧ, (୫୧) ରାଜସୂୟ, (୫୨) ନୈଷ୍ଠିକ ବ୍ରହ୍ମଚର୍ଯ୍ୟ, (୫୩) ଦୀର୍ଘକାଳ ବ୍ରହ୍ମଚର୍ଯ୍ୟ, (୫୪) ପଶୁବଳି ଓ (୫୫) ମଦ୍ୟପାନାଦି କାର୍ଯ୍ୟର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଅଭିଶାପ ବଚନ, ଅଶୁଭ ଚିହ୍ନ, ସ୍ୱପ୍ନ, ହସ୍ତବିଦ୍ୟା, ଅଲୌକିକ କଥା ଶ୍ରବଣ, ମନାସି, ଫଳିତ ଜ୍ୟୋତିଷର ଭବିଷ୍ୟତ୍ ବାଣୀ ଉପରେ ବିଶ୍ୱାସ ନ କରିବାପାଇଁ ମଧ୍ୟ ପରାମର୍ଶ ଦିଆଯାଇଛି ।୭୬। ଏହି ପଞ୍ଚାବନ ପ୍ରକାର କଳିବର୍ଜ୍ୟ ମଧ୍ୟରୁ ୧୧,

---

୭୫ । ନିତ୍ୟାଗ୍ନିର ପ୍ରଦୀପ-ପ୍ରଥମ ଭାଗ—ପୃ-୩୩୭ ।

୭୬ । ଧର୍ମଶାସ୍ତ୍ରକା ଇତିହାସ-ଦ୍ୱିତୀୟ ଭାଗ---ପୃ ୧୦୧୦ ।

୧୪-୧୬, ୨୧, ୩୦, ୩୮, ୪୮-୫୧ ଓ ୫୪ ସଂଖ୍ୟକ କାର୍ଯ୍ୟ ଯଜ୍ଞ ସହିତ ସମ୍ପୃକ୍ତ । ପ୍ରଥମ ନଅଟି ବ୍ୟବହାର ଓ ପାରିବାରିକ ସମ୍ପର୍କ ସମ୍ବନ୍ଧୀୟ । କେବଳ ଜାତିବିଶ୍ବରକୁ ନେଇ ୫, ୧୦, ୩୧, ୪୦ ଓ ୪୩ ତମ କାର୍ଯ୍ୟର ବିରୋଧ କରାଯାଇଛି । ସ୍ତ୍ରୀମାନଙ୍କ ପବିତ୍ରତା ରକ୍ଷା ନିମିତ୍ତ ୨-୪, ୯, ୧୫, ୨୩, ୨୪, ୩୩, ୩୯ ଓ ୫୫ ସଂଖ୍ୟକ କାର୍ଯ୍ୟ, ନ୍ୟାୟ ଓ ସମତା ଧାରଣାକୁ ନେଇ ୧, ୮, ୨୪, ୨୫ ଓ ୪୨ର କାର୍ଯ୍ୟ, ବ୍ରାହ୍ମଣର ପବିତ୍ରତା ପାଇଁ ୭, ୧୦, ୨୭, ୨୯ ଓ ୩୦ ତମ କାର୍ଯ୍ୟ, ସ୍ୱାସ୍ଥ୍ୟ କାରଣରୁ ୧୨, ୧୬, ୨୮, ୩୮, ୪୧ ଓ ୪୫ର କାର୍ଯ୍ୟ ଏବଂ ପାପ ଓ ପାପମୁକ୍ତିର ଧାରଣାରେ ୧୩, ୧୮-୨୧, ୨୮ ଓ ୪୪ ତମ କାର୍ଯ୍ୟର ବିରୋଧ କରାଯାଇଅଛି । ଏହି କାର୍ଯ୍ୟଗୁଡ଼ିକ ଦେଶ, କାଳ ଓ ପାତ୍ରର ଆଗ୍ରହକୁ ଭିତ୍ତିକରି ସମାଜରେ ବର୍ଜନୀୟ କାର୍ଯ୍ୟରୂପେ ଗୃହୀତ ହୋଇଅଛି ।୭୭।

ଓଡ଼ିଶାର ସ୍ମୃତିକାରମାନଙ୍କ ମଧ୍ୟରେ ବିଦ୍ୟାକର ବାଜପେୟୀ ଓ କୃଷ୍ଣଦାସଙ୍କ 'ନିତ୍ୟାଗ୍ରର ପଦ୍ଧତି', ବାଜପେୟୀ ନରସିଂହ ମିଶ୍ରଙ୍କ 'ନିତ୍ୟାଗ୍ରର ପ୍ରଦୀପ', ରାଜଗୁରୁ ଗଦାଧର ମହାପାତ୍ରଙ୍କ 'ଆଗ୍ରରସାର' ଓ ଶ୍ରୀଧର ଶର୍ମାଙ୍କ 'ଆଗ୍ରର ଚନ୍ଦ୍ରାମଣି' ଗ୍ରନ୍ଥରେ ସାଧାରଣ ଆଗ୍ରର, ସଦାଗ୍ରର, ଲୋକାଗ୍ରର ଓ ଦେଶାଗ୍ରରର ପର୍ଯ୍ୟାଲୋଚନା କରାଯାଇଛି ।

**୩ । ଆହ୍ନିକ ପ୍ରକରଣ :**

ସ୍ମୃତି, ପୁରାଣ ଓ ନିବନ୍ଧ ଗ୍ରନ୍ଥଗୁଡ଼ିକରେ ଗୃହସ୍ଥର କର୍ତ୍ତବ୍ୟ ବିସ୍ତୃତଭାବେ ବର୍ଣ୍ଣିତ ହୋଇଛି । ବୈଖାନସ ଗୃହ୍ୟସୂତ୍ର ଅନୁସାରେ ଗୃହସ୍ଥଙ୍କୁ ବାର୍ତ୍ତାବୃତ୍ତି, ଶାଲୀନ, ଯାଯାବର ଓ ଘୋରାଚାରିକ ଭାବେ ଚାରି ଭାଗରେ ବିଭକ୍ତ କରାଯାଇଛି । ତନ୍ମଧ୍ୟରେ ପ୍ରଥମ ଗୃହସ୍ଥ କୃଷି, ଗୋରକ୍ଷା, ବାଣିଜ୍ୟାଦି ବୃତ୍ତିଦ୍ୱାରା ଜୀବିକା ନିର୍ବାହ କରନ୍ତି । ଦ୍ୱିତୀୟ ଗୃହସ୍ଥ ପାକଯଜ୍ଞ, ଶ୍ରୌତାଗ୍ନି ସ୍ଥାପନ, ଦର୍ଶ ଓ ପୌର୍ଣ୍ଣମାସ ଯଜ୍ଞ, ପାକ୍ଷିକ ଓ ଚାତୁର୍ମାସ୍ୟ ବ୍ରତ, ଅର୍ଦ୍ଧବାର୍ଷିକ ପଶୁଯଜ୍ଞ, ବାର୍ଷିକ ସୋମଯଜ୍ଞ କରନ୍ତି । ତୃତୀୟ ଗୃହସ୍ଥ ହବିଯଜ୍ଞ, ସୋମଯଜ୍ଞ, ପୌରୋହିତ୍ୟ, ବେଦ ଅଧ୍ୟୟନ ଓ ଅଧ୍ୟାପନ, ଦାନ ଓ ପ୍ରତିଗ୍ରହାଦି ଷଟ୍‌କର୍ମନିରତ ଥାଆନ୍ତି । ଚତୁର୍ଥ ଗୃହସ୍ଥ ଉଞ୍ଛବୃତ୍ତିକ ଯଜ୍ଞ, ବେଦାଧ୍ୟୟନ, ଦାନ, ନାରାୟଣପୂଜା, ଅଗ୍ନିହୋତ୍ର, ମାର୍ଗଶୀର୍ଷାଦି ବ୍ରତ ଓ ବନୌଷଧିଦ୍ୱାରା ଅଗ୍ନି ସଂରକ୍ଷଣ କରନ୍ତି ।୭୮। କିନ୍ତୁ ସାଧାରଣ ଗୃହସ୍ଥ ପାଇଁ ଅହିଂସା, ସତ୍ୟ, ଦୟା, ଶମ, ଦାନାଦି ପଞ୍ଚପ୍ରକାର ଆଚରଣ ଉଲ୍ଲେଖ କରାଯାଇଛି ।୭୯।

---

୭୭ । History of Dharmashastra—Vol-II—P-956-957.

୭୮ । Ibid—Vol. II, Part-I—P. 642.

୭୯ । ଅହିଂସା ସତ୍ୟବଚନଂ ସର୍ବଭୂତାନୁକମ୍ପନମ୍ ।
ଶମୋ ଦାନଂ ଯଥାଶକ୍ତି ଗାର୍ହସ୍ଥ୍ୟୋ ଧର୍ମ ଉତ୍ତମଃ ।
ପରଦାରେଷ୍ୱସଂସର୍ଗୋ ନ୍ୟାସସ୍ତ୍ରୀପରିରକ୍ଷଣମ୍ ।
ଅଦତ୍ତାଦାନବିରମୋ ମଧୁମାଂସସ୍ୟ ବର୍ଜନମ୍ ।
ଏଷ ପଞ୍ଚବିଧୋ ଧର୍ମୋ ବହୁଶାଖଃ ସୁଖୋଦୟଃ ॥
(ମହାଭାରତ—ଅନୁଶାସନ ପର୍ବ—୧୪୧, ୨୫, ୬୦)

ପ୍ରାଚୀନ କାଳରୁ ପ୍ରତ୍ୟେକ ଗୃହସ୍ଥ ନିମିତ୍ତ ଆହ୍ନିକ ବା ଦୈନିକ କର୍ତ୍ତବ୍ୟ ନିରୂପିତ ହୋଇଛି । ପ୍ରଥମେ ଦିବସ ଅହ ଓ ରାତ୍ରି ବା ପୂର୍ବାହ୍ନ ଓ ଅପରାହ୍ନ ଭାବରେ ବିଭକ୍ତ । ଦିବାଭାଗ ପ୍ରାତଃ, ମଧ୍ୟାହ୍ନ ଓ ସାୟାହ୍ନ ରୂପେ ତିନି ଭାଗରେ ବା ପ୍ରାତଃ, ସଙ୍ଗବ, ମଧ୍ୟଦିନ, ଅପରାହ୍ନ ଓ ସାୟାହ୍ନ ରୂପେ ପାଞ୍ଚ ଭାଗରେ ବିଭକ୍ତ ।୮୦। କେତୋ ସ୍ମୃତି-ସାହିତ୍ୟରେ ଦିବସକୁ ଆଠ ଭାଗରେ ବିଭକ୍ତ କରାଯାଇଛି ।୮୧। ଏହି ଆଠଭାଗକୁ ଲକ୍ଷ୍ୟ ରଖି ମାନବର ଦୈନନ୍ଦିନ କାର୍ଯ୍ୟବିଧି ନିୟନ୍ତ୍ରିତ ହୋଇଥାଏ । ଏଥିରେ ମୁଖ୍ୟତଃ ଶଯ୍ୟାତ୍ୟାଗ, ପ୍ରାତଃସ୍ମରଣ, ଶୌଚ, ଦନ୍ତଧାବନ, ସ୍ନାନ, ସନ୍ଧ୍ୟା, ତର୍ପଣ, ପଞ୍ଚମହାଯଜ୍ଞ, ହୋମ, ମଧ୍ୟାହ୍ନ-ଭୋଜନ, ଧନାର୍ଜନ, ଅଧ୍ୟୟନ, ଅଧ୍ୟାପନ, ସାୟଂସନ୍ଧ୍ୟା, ଦାନ, ଶୟନାଦି ବିଧି ଅନ୍ତର୍ଗତ । ପରାଶରଙ୍କ ଅନୁସାରେ ଆହ୍ନିକ କୃତ୍ୟ ବା ଦୈନିକ କୃତ୍ୟ ମଧ୍ୟରେ ପ୍ରଧାନତଃ ସ୍ନାନ, ସନ୍ଧ୍ୟା, ଜପ, ହୋମ, ଦେବପୂଜା, ଅତିଥିସେବା ଓ ବୈଶ୍ୱଦେବାଦି ଷଟ୍‌କର୍ମ ଗୃହସ୍ଥର ପାଳନୀୟ ।୮୨।

ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟାତ୍ୟାଗ ଓ ଈଶ୍ୱର-ସ୍ମରଣ ଅବଶ୍ୟ କର୍ତ୍ତବ୍ୟ ।୮୩। ତଦନନ୍ତର ଆଠଟି ମଙ୍ଗଳସୂଚକ ଦର୍ଶନୀୟ ।୮୪। ଶୌଚ ବିଷୟରେ ଧର୍ମସୂତ୍ର ଓ ସ୍ମୃତିଗ୍ରନ୍ଥରେ ବହୁ ବିଧି-ବିଧାନ ଉଲ୍ଲେଖ ଅଛି । ଏଥିରେ ମାନବର ଧାର୍ମିକ, ଶାରୀରିକ, ମାନସିକ ଓ ନୈତିକ ଜୀବନର ଉନ୍ନତି ନିମିତ୍ତ ନିୟମମାନ ନିର୍ଦ୍ଦେଶିତ ହୋଇଛି ।୮୫। ମଳମୂତ୍ର ତ୍ୟାଗ କାଳରେ ସ୍ଥାନାସ୍ଥାନ, ଦିଗ ଓ ଅନ୍ୟାନ୍ୟ ବିଧି ମଧ୍ୟରେ ମୌନାଚରଣକୁ ଅଧିକ ଗୁରୁତ୍ୱ ଦିଆଯାଇଛି ।୮୬। ଆମୂରୁଷ୍ଟ ପର୍ଯ୍ୟନ୍ତ ମୃତ୍ତିକା ଓ ଜଳ ଦ୍ୱାରା ଶୌଚକାର୍ଯ୍ୟ କରଣୀୟ । ଶୌଚ ବାହ୍ୟ ଓ ଆଭ୍ୟନ୍ତର ଭେଦରେ ଦୁଇ ପ୍ରକାର । ହାରୀତଙ୍କ ଅନୁସାରେ ମାନସ, ଚକ୍ଷୁଷ, ଘ୍ରାଣ୍ୟ, ବାଚ୍ୟ ଓ ସ୍ୱାଦ୍ୟ ଭେଦରେ ଆଭ୍ୟନ୍ତର ଶୌଚ ପାଞ୍ଚ ପ୍ରକାର ।୮୭। ଦେହରେ ମେଦ, ବୀର୍ଯ୍ୟ, ରକ୍ତ, ମଜ୍ଜା,

---

୮୦ । History of Dharmashastra—Vol. II, Part-I—P. 644.

୮୧ । ଆହ୍ନିକସାର—ପୃ-୧୮

୮୨ । ସନ୍ଧ୍ୟାସ୍ନାନଂ ଜପୋ ହୋମୋ ଦେବତାତିଥିପୂଜନମ୍ ,
ଆତିଥ୍ୟଂ ବୈଶ୍ୱଦେବଂ ଚ ଷଟ୍‌କର୍ମାଣି ଦିନେ ଦିନେ ॥ (ପରାଶର ସ୍ମୃତି-୧-୩୯)

୮୩ । କୃତ୍ୟାଗ୍ନିର ପଦ୍ଧତି—ଏସିଆଟିକ୍ ସୋସାଇଟି ସଂସ୍କରଣ-୧୯୦୧—ପୃଷ୍ଠା-୮-୨୯

୮୪ । (କ) କୃତ୍ୟାଗ୍ନିର ପଦ୍ଧତି—ପୃଷ୍ଠା-୩୩ ।
(ଖ) କୃତ୍ୟାଗ୍ନିର ପ୍ରଦୀପ—ପୃ-୪୯୧-୪୯୨ ॥

୮୫ । History of Dharmashastra, Vol.-II. Part-I—P-649

୮୬ । ପ୍ରଭାତେ ମୈଥୁନେ ହୋମେ ପ୍ରସାବେ ଦନ୍ତଧାବନେ ।
ସ୍ନାନ ଭୋଜନ ଜାପ୍ୟେଷୁ ମୌନଂ ଚୈବାଷ୍ଟକର୍ମସୁ ॥ (ଆହ୍ନିକସାର-ପୃ-୨୯)

୮୭ । History of Dharmashastra Vol, II-Part I, P. 651.

ମଳ, ମୂତ୍ର, ସିଂଘାଣ, କର୍ଣ୍ଣମଳ, ଶ୍ଳେଷ୍ମା, ଅଶ୍ରୁ, ଚକ୍ଷୁମଳ, ସ୍ୱେଦାଦି ଦ୍ୱାଦଶ ପ୍ରକାର ମଳ ଥାଏ । ଏଥିରୁ ପ୍ରଥମ ଛଅଟି ମୃତ୍ତିକା ଓ ଜଳ ଏବଂ ଅପର ଛଅଟି କେବଳ ଜଳରେ ଶୁଦ୍ଧିଲାଭ କରିଥାଏ ।୮୮।

ଶୌଚ ପରେ ଆଚମନ ଓ ଦନ୍ତଧାବନ ବିଧେୟ । ଦନ୍ତକାଷ୍ଠ ନିମିତ୍ତ ନିର୍ଦ୍ଦିଷ୍ଟ ବୃକ୍ଷର ପତ୍ର ବା ଶାଖା ଗ୍ରହଣୀୟ । ତେଣୁ ଓଡ଼ିଶାରେ ନିର୍ଦ୍ଦିଷ୍ଟ ଦନ୍ତକାଷ୍ଠ ସହିତ କାର୍ଯ୍ୟ ବିଶେଷ ଉପଲକ୍ଷେ ଆମ୍ରପତ୍ରରେ ଦନ୍ତ ଧାବନ କରାଯାଏ ।୮୯। ଦନ୍ତଧାବନକାଳରେ କେତେକ ନିୟମ ପାଳିତ ହୁଏ । ଦନ୍ତକାଷ୍ଠର ଅଭାବରେ ଏକ ନିର୍ଦ୍ଦିଷ୍ଟ ଦିନରେ ଦ୍ୱାଦଶ ଗଣ୍ଡୂଷ ଜଳରେ ମଧ୍ୟ ମୁଖ ଶୁଦ୍ଧି କରାଯାଇଥାଏ ।୯୦। ନିତ୍ୟକର୍ମ ମଧ୍ୟରେ ସ୍ନାନ ହେଉଛି ମୁଖ୍ୟ କର୍ମ । ସ୍ନାତ ବ୍ୟକ୍ତି ହିଁ ସମସ୍ତ ଧର୍ମକାର୍ଯ୍ୟ କରିଥାଏ । ସ୍ନାନ ମୁଖ୍ୟ ଓ ଗୌଣ ବିଧିରେ ଦ୍ୱିବିଧ । ପୁନଶ୍ଚ ପ୍ରତ୍ୟେକେ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଭେଦରେ ତ୍ରିବିଧ ।୯୧। ଅଗ୍ନିପୁରାଣାଦିର ଉଲ୍ଲେଖ ଅନୁସାରେ ନିତ୍ୟ, ନୈମିତ୍ତିକ, କ୍ରିୟାଙ୍ଗ, ମଳାପକର୍ଷଣ (ଅଭ୍ୟଙ୍ଗ) ଓ କ୍ରିୟାସ୍ନାନ ଭେଦରେ ସ୍ନାନକୁ ଛଅ ଭାଗରେ ବିଭକ୍ତ କରାଯାଇଅଛି ।୯୨। ଯୋଗୀ ଯାଜ୍ଞବଲ୍କ୍ୟଙ୍କ ଅନୁସାରେ ଗୌଣସ୍ନାନ-ମନ୍ତ୍ର, ଭୌମ, ଆଗ୍ନେୟ, ବାୟବ୍ୟ, ଦିବ୍ୟ ଓ ମାନସସ୍ନାନ ନାମରେ ଷଡ଼୍‌ବିଧ ।୯୩। ଯତି, ସନ୍ନ୍ୟାସୀ, ବ୍ରହ୍ମଚାରୀଙ୍କ ନିମିତ୍ତ ଦିନରେ ଦୁଇଥର ବା ତିନିଥର ସ୍ନାନର ବ୍ୟବସ୍ଥା ଥିଲେ ମଧ୍ୟ ସମଗ୍ର ହିନ୍ଦୁ ଜନତା ଦିନକୁ ଥରଟିଏ ସ୍ନାନ କରିବା ଅନିବାର୍ଯ୍ୟ ।୯୪। ନଦୀ, ପୁଷ୍କରିଣୀ, ହ୍ରଦ, ଗଭୀର ଜଳାଧାର, ଝରଣା, କୂପ ପ୍ରଭୃତିର ଶୀତଳ ଜଳରେ ସ୍ନାନ ଅପେକ୍ଷା ଉଷ୍ମ ଜଳର ସ୍ନାନକୁ ଲଘୁ ଦୃଷ୍ଟିରେ ବିଚାର କରାଯାଇଛି ।୯୫। ସ୍ନାନକାଳରେ ନଗ୍ନ, ଭୁକ୍ତ, ଦେହଘର୍ଷଣ, ପାଦ ବା ହସ୍ତରେ ଜଳାଘାତ ପ୍ରଭୃତି ବର୍ଜନୀୟ ।୯୬। ସ୍ନାନ ଦ୍ୱାରା ବଳ, ରୂପ, ସ୍ୱର, ବର୍ଣ୍ଣ,

---

୮୮ । ମନୁସ୍ମୃତି—୫-୧୩୫

୮୯ । ଆଚାରସାର—ପୃ-୬୦

୯୦ । ଅଭାବେ ଦନ୍ତକାଷ୍ଠାନାଂ ନିଷିଦ୍ଧାୟାଂ ତଥା ତିଥୌ ।
ଅପାଂ ଦ୍ୱାଦଶଗଣ୍ଡୂଷୈର୍ବିଦଧ୍ୟାଦ୍ଦନ୍ତଧାବନମ୍ ॥ (ଆଚାରସାର—ପୃ-୬୦)

୯୧ । ନିତ୍ୟାଚାର ପଦ୍ଧତି—ପୃ ୨୦୨

୯୨ । ଆଚାରସାର—ପୃ-୬୪

୯୩ । ନିତ୍ୟାଚାର ପ୍ରଦୀପ-୧ମ ଭାଗ—ପୃ-୩୨୬ ।

୯୪ । History of Dh. Vol. II, Part-I, P-659

୯୫ । ବୃଥା ତପ୍ତୋଦକଂ ସ୍ନାନଂ ବୃଥା ଜାପ୍ୟମ ବୈଦିକମ୍ ।
ବୃଥାରତମପୁତ୍ରସ୍ୟ ବୃଥା ଭୁକ୍ତମସାକ୍ଷିକମ୍ ॥ (ଦକ୍ଷସ୍ମୃତି—୪-୬୪)

୯୬ । ଆଚାରସାର—ପୃ-୭୧

ସ୍ୱର୍ଣ୍ଣ, ଗନ୍ଧ, ଶ୍ରୀ, ସୌକୁମାର୍ଯ୍ୟ ଓ ସୁଶ୍ରୀ ରମଣୀ ଲାଭ ହୁଏ ବୋଲି ମହାଭାରତରେ ଘୋଷିତ ହୋଇଛି ।୯୭।

ସ୍ନାନକାଳରେ ଦେବତା, ମୁନି ଓ ପିତୃଗଣଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦାନ ବା ତର୍ପଣକୁ ଏକ ଆନୁଷଙ୍ଗିକ କ୍ରିୟା ରୂପେ ଉଲ୍ଲେଖ କରାଯାଇଛି । ଦେବତର୍ପଣରେ ଏକତ୍ରିଶ, ଅଠେଇଶି ବା ସତର ଜଣଙ୍କୁ ଓ ଋଷିଗଣଙ୍କ ମଧ୍ୟରେ ସନକ, ସନନ୍ଦ, ସନନ୍ଦନ, ସନାତନ, କପିଳ, ବୋଢ଼ୁ ଓ ପଞ୍ଚଶିଖ ନାମରେ ସାତଜଣଙ୍କୁ ଜଳାଞ୍ଜଳି ଦିଆଯାଏ ।୯୮। ପିତୃ-ତର୍ପଣରେ ପିତାମାତା ଜୀବିତ ଥିଲେ ପିତାମହ, ପ୍ରପିତାମହ, ବୃଦ୍ଧପ୍ରପିତାମହ ଓ ମାତାମହ, ପ୍ରମାତାମହ, ବୃଦ୍ଧ ପ୍ରମାତାମହଙ୍କୁ ତର୍ପଣ କରାଯାଏ । ପିତାମାତା ଜୀବିତ ନ ଥିଲେ ବୃଦ୍ଧ ପ୍ରପିତାମହ ଓ ବୃଦ୍ଧ ପ୍ରମାତାମହ ବାଦ୍ ଯାଆନ୍ତି । ତଦ୍‌ବ୍ୟତୀତ ଉକ୍ତ ପିତୃଗଣଙ୍କ ସ୍ତ୍ରୀ, ସ୍ୱାମୀ, ପୁତ୍ର, କନ୍ୟା, ଭ୍ରାତା, ଭଗ୍ନୀ, ମାତୁଳ, ଗୁରୁ ଓ ଶିଷ୍ୟଙ୍କୁ ମଧ୍ୟ ତର୍ପଣରେ ସ୍ମରଣ କରାଯାଏ । ସମୟାଭାବ କ୍ଷେତ୍ରରେ କେବଳ ତିନୋଟି ଅଞ୍ଜଳି ଜଳ ମଧ୍ୟରେ ଦେବ-ଋଷି-ପିତୃଗଣଙ୍କୁ ତର୍ପଣ କରାଯାଇପାରେ ।୯୯। କାରଣ ସ୍ଥାବର, ଜଙ୍ଗମ ସମସ୍ତେ ବ୍ରାହ୍ମଣଠାରୁ ଜଳ ଗ୍ରହଣ ଇଚ୍ଛା କରନ୍ତି ।୧୦୦।

ସ୍ନାନ ପରେ ବସ୍ତ୍ରପରିଧାନ, ତିଳକଧାରଣ, ସନ୍ଧ୍ୟା, ହୋମ, ଇଷ୍ଟମନ୍ତ୍ରଜପାଦି କାର୍ଯ୍ୟରେ ଦିବସର ପ୍ରଥମ ଭାଗ କୃତ୍ୟ ଶେଷ ହୁଏ ।୧୦୧। ଦ୍ୱିତୀୟ ଭାଗ କୃତ୍ୟରେ ବ୍ରାହ୍ମଣ ଗୃହସ୍ଥ ବେଦାଧ୍ୟୟନ, କାଷ୍ଠ, କୁଶ ଓ ପୁଷ୍ପାଦି ସଂଗ୍ରହ, ତୃତୀୟ ଭାଗ କୃତ୍ୟରେ ନିଜର ତଥା ଆଶ୍ରିତମାନଙ୍କ ନିମିତ୍ତ ଖାଦ୍ୟପେୟ ସଂଗ୍ରହ ଏବଂ ଚତୁର୍ଥ ଭାଗ କୃତ୍ୟରେ ମଧ୍ୟାହ୍ନ ସ୍ନାନ, ତର୍ପଣ, ପ୍ରାର୍ଥନା, ଦେବପୂଜାଦି କାର୍ଯ୍ୟ କରାଯାଇଥାଏ ।୧୦୨।

ବୈଦିକ ଯୁଗରୁ ଆହ୍ନିକ କୃତ୍ୟ ମଧ୍ୟରେ ଦେବଯଜ୍ଞ, ପିତୃଯଜ୍ଞ, ଭୂତଯଜ୍ଞ, ମନୁଷ୍ୟଯଜ୍ଞ ଓ ବ୍ରହ୍ମଯଜ୍ଞାଦି ପଞ୍ଚମହାଯଜ୍ଞର ପ୍ରଚଳନ ଅଛି । ହୋମ ବା ଅଗ୍ନିରେ ଆହୁତି ଦାନକୁ ଦେବ-

---

୯୭ । ଗୁଣାଦଶ ସ୍ନାନଶୀଳଂ ଭଜନ୍ତେ ବଳଂ ଚ ରୂପଂ ସ୍ୱରବର୍ଣ୍ଣଶୁଦ୍ଧିଃ ।
ସ୍ୱର୍ଣ୍ଣଞ୍ଚ ଗନ୍ଧଶ୍ଚ ବିଶୁଦ୍ଧତା ଚ ଶ୍ରୀଃ ସୌକୁମାର୍ଯ୍ୟଂ ପ୍ରବରାଶ୍ଚ ନାର୍ଯ୍ୟଃ ॥
(ମହାଭାରତ—ଉଦ୍‌ଯୋଗ ପର୍ବ-୩୭-୩୩)

୯୮ । ନିତ୍ୟାଗୃହ ପଦ୍ଧତି—ପୃ-୧୦୫-୧୧୦ ॥

୯୯ । History of Dh. Vol-II, Part-I, P-693.

୧୦୦ । ତଥାଭୂତାନି ସର୍ବାଣି ସ୍ଥାବରାଣି ଚରାଣି ଚ ।
ବିପ୍ରାଦୁଦକମିଚ୍ଛନ୍ତି ସର୍ବେହ୍ୟୁଦକକାଂକ୍ଷିଣଃ ॥ (ଆଗ୍ନିକସାର—ପୃ-୨୫୧)

୧୦୧ । ଆଗ୍ନିକସାର—ପୃ-୨୮-୨୦୩ ।

୧୦୨ । ନିତ୍ୟାଗୃହ ପଦ୍ଧତି—ପୃ-୫୩୨-୫୪୧ ।

ଯଜ୍ଞ, ଶ୍ରାଦ୍ଧକୁ ପିତୃଯଜ୍ଞ, ବଳି ବା ପ୍ରାଣୀଙ୍କୁ ଖାଦ୍ୟଦାନ ଭୂତଯଜ୍ଞ, ବ୍ରାହ୍ମଣଙ୍କୁ ଖାଦ୍ୟଦାନ ମନୁଷ୍ୟଯଜ୍ଞ ଏବଂ ସ୍ୱାଧ୍ୟାୟ ବା ବେଦାଧ୍ୟୟନକୁ ବ୍ରହ୍ମଯଜ୍ଞ ବୋଲି କୁହାଯାଇଛି ।୧୦୩। ଏହି ପଞ୍ଚମହାଯଜ୍ଞରେ ମାନବର ଭକ୍ତି, ଶ୍ରଦ୍ଧା, କୃତଜ୍ଞତା, ସମ୍ମାନ, ଜ୍ଞାନ, ଦୟା ଓ ସହୃଦୟତା ଭାବ ସୁଖ ପ୍ରଖ୍ୟାପିତ ହୋଇଥାଏ । ମନୁ ଏହାକୁ ପଞ୍ଚବିଧ ସଂସ୍କାର ଭାବେ ବର୍ଣ୍ଣନା କରିଛନ୍ତି । ଏହାଦ୍ୱାରା ମଣିଷର ଆତ୍ମା ସାଧାରଣ ସ୍ୱାର୍ଥାନ୍ଧତାରୁ ମୁକ୍ତ ହୋଇ ପରମପଦ ଲାଭ କରେ ।୧୦୪। ପରବର୍ତ୍ତୀ କାଳରେ ପଞ୍ଚମହାଯଜ୍ଞ ଗୃହସ୍ଥର ଦୈନିକ କୃତ୍ୟ ରୂପେ ସ୍ୱୀକୃତି ଲାଭ କରିଛି; କାରଣ ଗୃହସ୍ଥ ପ୍ରତିଦିନ ଚୂଲି, ଢେଙ୍କି, ଝାଡ଼ୁଣି, କୁଲା, ହାମାନଦସ୍ତା, ଘୋରଣା, ପାଣି କଳସୀ ପ୍ରଭୃତି ଦ୍ୱାରା ଅସଂଖ୍ୟ ଜୀବର ଜୀବନ ନଷ୍ଟ କରିଥାଏ । ସେହି ଦୁଷ୍କୃତିରୁ ମୁକ୍ତିଲାଭ ନିମିତ୍ତ ଋଷିଗଣ ପଞ୍ଚମହାଯଜ୍ଞର ବ୍ୟବସ୍ଥା ପ୍ରଦାନ କରିଛନ୍ତି ।୧୦୫। ଏହି ପଞ୍ଚଯଜ୍ଞ ଅହୁତ, ହୁତ, ପ୍ରହୁତ, ବ୍ରାହ୍ମହୁତ ଓ ପ୍ରାଶିତ ନାମରେ ମଧ୍ୟ ନାମିତ ହୋଇଛି । ଜପକୁ ଅହୁତ, ହୋମକୁ ହୁତ, ଭୂତବଳିକୁ ପ୍ରହୁତ, ବ୍ରାହ୍ମଣପୂଜାକୁ ବ୍ରାହ୍ମହୁତ ଓ ପିତୃତର୍ପଣକୁ ପ୍ରାଶିତ କୁହାଯାଏ ।୧୦୬।

ଦେବପୂଜା ପରେ ବୈଶ୍ୱଦେବବିଧି ଅନୁଷ୍ଠିତ ହୁଏ । ଦେବଯଜ୍ଞ, ଭୂତଯଜ୍ଞ ଓ ପିତୃଯଜ୍ଞକୁ ବୈଶ୍ୱଦେବ କୁହାଯାଏ ।୧୦୭। କାରଣ ଏଥିରେ ସିଦ୍ଧ ଅନ୍ନକୁ ସୂର୍ଯ୍ୟ, ପ୍ରଜାପତି, ସୋମ, ବନସ୍ପତି, ଅଗ୍ନୀଷୋମ, ଇନ୍ଦ୍ର, ଅଗ୍ନି, ଦ୍ୟାବା, ପୃଥିବୀ, ଧନନ୍ତ୍ୱରୀ, ଇନ୍ଦ୍ର, ବିଶ୍ୱେଦେବା, ବ୍ରହ୍ମା, ଜଳଦେବ, ଔଷଧି, ଗୃହ, ଗୃହଦେବତା, ବାସ୍ତୁଦେବତା, ଇନ୍ଦ୍ର, ଇନ୍ଦ୍ରପୁରୁଷ, ଯମ, ଯମପୁରୁଷ, ବରୁଣ, ବରୁଣପୁରୁଷ, ସୋମ, ସୋମପୁରୁଷ, ବ୍ରହ୍ମ, ବ୍ରହ୍ମପୁରୁଷ, ବିଶ୍ୱଦେବ, ସର୍ବଭୂତ, ରକ୍ଷ, ପିତୃ, ଶ୍ୟାମ, ଶବଳ, ସନକାଦି ସପ୍ତମନୁଷ୍ୟଙ୍କୁ ବଳିରୂପେ ସମର୍ପଣ

---

୧୦୩ । ଯଦଗ୍ନୌ ଜୁହୋତ୍ୟପି ସମିଧଂ ତଦ୍ଦେବଯଜ୍ଞଃ ସନ୍ତିଷ୍ଠତେ ।
ଯତ୍ପିତୃଭ୍ୟଃ ସ୍ୱଧା କରୋତ୍ୟପ୍ୟପସ୍ତଦ୍ପିତୃଯଜ୍ଞ ସନ୍ତିଷ୍ଠତେ ।
ଯଦ୍‌ଭୂତେଭ୍ୟୋ ବଳିଂ ହରତି ତଦ୍‌ଭୂତଯଜ୍ଞଃ ସନ୍ତିଷ୍ଠତେ ।
ଯଦ୍ ବ୍ରାହ୍ମଣେଭ୍ୟୋଽନ୍ନଂ ଦଦାତି ତନ୍ମନୁଷ୍ୟଯଜ୍ଞଃ ସନ୍ତିଷ୍ଠତେ ॥
ଯଦ୍ ସ୍ୱାଧ୍ୟାୟମଧୀୟତୈ କାମପ୍ୟୃଚଂ ଯଜୁଃ ସାମ ବା ତଦ୍ ।
ବ୍ରହ୍ମଯଜ୍ଞ ସନ୍ତିଷ୍ଠତେ ॥ (ତୈତ୍ତିରୀୟ ଆରଣ୍ୟକ—୧୧-୧୦)

୧୦୪ । ସ୍ୱାଧ୍ୟାୟେନ ବ୍ରତୈର୍ହୋମୈସ୍ତ୍ରୈବିଦ୍ୟେନେଜ୍ୟୟା ସୁତୈଃ ।
ମହାଯଜ୍ଞୈଶ୍ଚ ଯଜ୍ଞୈଶ୍ଚ ବ୍ରାହ୍ମୀୟଂ କ୍ରିୟତେ ତନୁଃ ॥ (ମନୁସ୍ମୃତି—୧୧-୨୮)

୧୦୫ । History of Dh. Vol-II. Part-I, P-698.

୧୦୬ । ମନୁସ୍ମୃତି—୩-୭୩-୭୪ ।

୧୦୭ । ତ ଏତେ ଦେବଯଜ୍ଞଭୂତଯଜ୍ଞପିତୃଯଜ୍ଞାସ୍ତ୍ରୟୋଽପି ବୈଶ୍ୱଦେବ ଶବ୍ଦେନୋଚ୍ୟନ୍ତେ ।
ଯତ୍ର ବିଶ୍ୱେଦେବା ଇଜ୍ୟନ୍ତେ ତଦ୍‌ବୈଶ୍ୱଦେବିକଂ କର୍ମ ॥
(History of Dh. Vol-II, Part-II, P. 741)

କରାଯାଏ ।୧୦୮। ବୈଶ୍ୱଦେବ ପରେ ମନୁଷ୍ୟଯଜ୍ଞ ବା ଅତିଥିସେବା ଶେଷରେ ଗୃହସ୍ଥ ଭୋଜନ କରେ । ବିଭିନ୍ନ ସ୍ମୃତି-ପୁରାଣାଦିରେ ଏକାନ୍ତ ସ୍ଥାନରେ ଭୋଜନ ନିମିତ୍ତ ପରାମର୍ଶ ଦିଆଯାଇଛି ।୧୦୯। ଯତି, ସନ୍ନ୍ୟାସୀ, ବ୍ରହ୍ମଚାରୀମାନଙ୍କ ନିମିତ୍ତ ଦିନକୁ ଏକାହାର ବ୍ୟବସ୍ଥା ଥିଲେ ମଧ୍ୟ ଗୃହସ୍ଥ ଦୁଇଥର ଭୋଜନ କରିପାରେ । ଖାଦ୍ୟପେୟ ପ୍ରସଙ୍ଗରେ ଭୋଜନୀୟ ଦ୍ରବ୍ୟ, ଭୋଜନ ଅନୁପଯୋଗୀ ଦ୍ରବ୍ୟ, ଭୋଜନ ବିଷୟରେ ତିଥି, କାଳ ପ୍ରଭୃତିର ବିସ୍ତୃତ ବିଚାର କରାଯାଇଛି ।୧୧୦। ଭୋଜନ ପରେ ତାମ୍ବୁଲସେବନ ଓ ଶୟନ କରଣୀୟ । ଶୟନ ପୂର୍ବରୁ ଯେଉଁ କେତେକ ବିଧି ପାଳିତ ହୁଏ, ତନ୍ମଧ୍ୟରେ ବେଦମନ୍ତ୍ରପାଠ, ଦେବତା ଓ ପଞ୍ଚଋଷିଙ୍କ ନାମସ୍ମରଣକୁ ପ୍ରାଧାନ୍ୟ ଦିଆଯାଇଛି ।୧୧୧।

ଓଡ଼ିଶାର ବିଭିନ୍ନ ସ୍ମୃତିଗ୍ରନ୍ଥରେ ଆଚାର ଓ ଆହ୍ନିକ ବିଧିବିଧାନର ପ୍ରାସଙ୍ଗିକ ଉଲ୍ଲେଖ ଅଛି । ତନ୍ମଧ୍ୟରେ ନୃସିଂହ ସୂରିଙ୍କ 'କୃତ୍ୟକୌମୁଦୀ', ଶ୍ରୀଧର ଶର୍ମାଙ୍କ 'ଆଚାର ଚନ୍ଦ୍ରମଣି', କୃଷ୍ଣଦାସଙ୍କ 'ନିତ୍ୟାଚାର ପଦ୍ଧତି', ଗୋପୀନାଥ ପଟ୍ଟନାୟକଙ୍କ 'ଶୂଦ୍ରାହ୍ନିକ ପଦ୍ଧତି' ଓ ବାସୁଦେବ ତ୍ରିପାଠୀଙ୍କ 'କୃତ୍ୟରତ୍ନାବଳୀ' ଗ୍ରନ୍ଥରେ ଉପଯୁକ୍ତ ଆହ୍ନିକ ବିଧାନର ବିଶେଷ ପର୍ଯ୍ୟାଲୋଚନା କରାଯାଇଛି ।୧୧୨।

୪ । କାଳ ପ୍ରକରଣ :

ବୈଦିକ ସାହିତ୍ୟରେ କାଳ ବିଷୟରେ ଉଚ୍ଚକୋଟୀର ଚିନ୍ତା ପ୍ରକଟିତ ହୋଇଛି । ଅଥର୍ବ ବେଦର ଉଲ୍ଲେଖ ଅନୁସାରେ କାଳ ସପ୍ତରଶ୍ମିଯୁକ୍ତ ସହସ୍ରାକ୍ଷ, ଅଜର, ଶକ୍ତିଯୁକ୍ତ । କବିମାନେ

୧୦୮ । History of Dh. Vol-II, Part-II, P-747 ।

୧୦୯ । ନାଦତ୍ୱା ମୃଷ୍ଟମଶ୍ନୀୟାନ୍ନ ବହ୍ନୀନାଂ ଚ ପଶ୍ୟତାମ୍ ।
ନାଗ୍ନୀୟୁବହ୍ନୁତାନ୍ତୈବ ନଚାନୈକସ୍ୟ ପଶ୍ୟତଃ ॥
(History of Dh. Vol-II, Part-II, P-759)

୧୧୦ । History of Dh. Vol-II, Part-II, P-771-779.

୧୧୧ । ମଙ୍ଗଲ୍ୟଂ ପୂର୍ଣ୍ଣକୁମ୍ଭଂ ଚ ଶିରଃସ୍ଥାନେ ନିଧାୟଚ ।
ବୈଦିକୈର୍ଗାରୁଡୈର୍ମନ୍ତ୍ରୈ ରକ୍ଷାଂ କୃତ୍ୱା ସ୍ୱପେନ୍ନିଶି ॥
ରାତ୍ରିସୂକ୍ତଂ ଜପେତ୍ ସ୍ମୃତ୍ୱା ସର୍ବାଂଶ୍ଚ ସୁଖଶାୟିନଃ ।
ନମସ୍କୃତ୍ୱାବ୍ୟୟଂ ବିଷ୍ଣୁଂ ସମାଧିସ୍ଥଂ ସ୍ୱପେନ୍ନିଶି ॥
ଅଗସ୍ତିର୍ମାଧବଶ୍ଚୈବ ମୁଚକୁନ୍ଦୋ ମହାବଲଃ ।
କପିଲୋ ମୁନିରାସ୍ତୀକଃ ପଞ୍ଚୈତେ ସୁଖଶାୟିନଃ ॥
(History of Dh. Vol-II, Part-II, P-801)

୧୧୨ । Orissa State Museum Manuscripts.
(Dh. 524, 177, 86 & 504)

ତା' ଉପରେ ଆରୋହଣ କରନ୍ତି । ସମସ୍ତ ଭୁବନ ତାହାର ଚକ ସଦୃଶ; ସେ ସମସ୍ତ ଭୁବନକୁ ବ୍ୟାପିରହିଛି । ସେ ହିଁ ପିତା, ପୁତ୍ର ଓ ତେଜସ୍ୱୀ । ମନ, ପ୍ରାଣ, ନାମ କାଳର ଉଚ୍ଛ୍ୱାସ; କାଳରେ ହିଁ ସମାହିତ ହୁଏ । କାଳର ଆଗମନରେ ଜୀବଜଗତ୍ ପ୍ରସନ୍ନ ହୁଏ । ସମସ୍ତ ଜୀବ-ଜଗତ୍ ଭୂତ ଓ ଭବିଷ୍ୟତ, ଋକ୍ ଓ ଯଜୁର୍ବେଦ ଓ ସମସ୍ତ ଲୋକ କାଳରୁ ହିଁ ଜନ୍ମଗ୍ରହଣ କରନ୍ତି ।୧୧୩। ଏଥିରୁ ସାଧାରଣ କାଳ ଓ ମହାକାଳ (ପରମତତ୍ତ୍ୱରୂପ) ଦୁଇ ପ୍ରକାର କାଳର ଧାରଣା ସେ କାଳରେ ପ୍ରଚଳିତ ଥିଲା । ଉପନିଷଦରେ କାଳ ଶବ୍ଦ ସମୟ ଓ ଶେଷ ଅର୍ଥରେ ବ୍ୟବହୃତ ହୋଇଛି । ଅନୁରୂପ ଚିନ୍ତା ମଧ୍ୟ ମହାଭାରତ, ଭଗବତ୍‌ଗୀତା, ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ପ୍ରକାଶ ଲାଭ କରିଛି । କିନ୍ତୁ ମହାଭାଷ୍ୟକାର ପତଞ୍ଜଳି କାଳ ସମ୍ବନ୍ଧରେ ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତ ଉଲ୍ଲେଖ କରିଛନ୍ତି । ସେ ଅନୁସାରେ ଯାହାଦ୍ୱାରା କଠୋର ବସ୍ତୁର କ୍ଷୟ ଓ ବୃଦ୍ଧି ପରିଲକ୍ଷିତ ହୁଏ, ତାହାହିଁ କାଳ । ଯେତେବେଳେ କାଳ କ୍ରିୟାଯୁକ୍ତ ହୁଏ ସେତେବେଳେ ତାକୁ ଦିନ ଓ ରାତି କହନ୍ତି । ସୂର୍ଯ୍ୟଙ୍କ ଗତିକୁ କାଳର କ୍ରିୟାରୂପ ବୁଝାଯାଏ । ଏହି କ୍ରିୟାରୁ ମାସ ଓ ବର୍ଷର ସୃଷ୍ଟି ।୧୧୪। ବୈଶେଷିକ ସୂତ୍ରରେ ନବ ଦ୍ରବ୍ୟ ମଧ୍ୟରେ କାଳ ଅନ୍ୟତମ ।୧୧୫। ଯୋଗସୂତ୍ର ଭାଷ୍ୟ, ବୌଦ୍ଧ ଓ ଜୈନ ଗ୍ରନ୍ଥ, ପୁରାଣ, ଜ୍ୟୋତିଷବିଷୟକ ସିଦ୍ଧାନ୍ତ ଗ୍ରନ୍ଥ, ଚିକିତ୍ସା ଗ୍ରନ୍ଥ ପ୍ରଭୃତିରେ କାଳ ବିଷୟରେ ବିଶେଷ ପର୍ଯ୍ୟାଲୋଚନା କରାଯାଇଛି ।୧୧୬।

ବରାହମିହିରଙ୍କ ବୃହତ୍‌ସଂହିତା ଓ ବୈଶେଷିକ ସୂତ୍ରର ପ୍ରଶସ୍ତପାଦ ଭାଷ୍ୟରେ ବ୍ୟବହାରୋପଯୋଗୀ କାଳକୁ କ୍ଷଣ, ଲବ, ନିମେଷ, କାଷ୍ଠା, କଳା, ମୁହୂର୍ତ୍ତ, ଯାମ, ଅହୋରାତ୍ର, ଅର୍ଦ୍ଧମାସ, ମାସ, ଋତୁ, ଅୟନ, ସମ୍ବତ୍ସର, ଯୁଗ, ମନ୍ୱନ୍ତର, କଳ୍ପ, ପ୍ରଳୟ ଓ ମହାପ୍ରଳୟ ନାମରେ ବିଭକ୍ତ କରାଯାଇଛି । କାଳର ପରିମାପ ବିଷୟରେ ମତାନୈକ୍ୟ ଥିବାର ଦେଖାଯାଏ । ମହର୍ଷି ମନୁ ଓ କୋଷକାର ଅମରସିଂହଙ୍କ ଅନୁସାରେ ଅଠର ନିମେଷ= କାଷ୍ଠା, ତିରିଶ କାଷ୍ଠା=କଳା, ତିରିଶ କଳା=କ୍ଷଣ, ଦ୍ୱାଦଶ କ୍ଷଣ=ମୁହୂର୍ତ୍ତ ଓ ତିରିଶ ମୁହୂର୍ତ୍ତରେ ଏକ ଅହୋରାତ୍ର ହୁଏ ।୧୧୭।

ଷଡ଼୍‌ବେଦାଙ୍ଗ ମଧ୍ୟରେ ଜ୍ୟୋତିଃଶାସ୍ତ୍ରକୁ କାଳବିଧାନଶାସ୍ତ୍ର ବୁଝାଯାଏ । ଏହା ତନ୍ତ୍ର, ହୋରା ଓ ଶାଖା ରୂପେ ତିନି ଭାଗରେ ବିଭକ୍ତ । ଉକ୍ତ ତିନିଭାଗ ବା ସ୍କନ୍ଧକୁ ନେଇ ରଚିତ ହୋଇଥିବା ଗ୍ରନ୍ଥକୁ ସଂହିତା କହନ୍ତି । ତନ୍ମଧ୍ୟରୁ ହୋରା (ଜାତକ ନିର୍ମାଣ ପ୍ରକ୍ରିୟା) ଓ ଶାଖାର (ଶକୁନ ପରୀକ୍ଷା, ଲକ୍ଷଣ ପରୀକ୍ଷା ଓ ଭବିଷ୍ୟ ଜ୍ଞାନ) ପ୍ରଭାବ ଧର୍ମଶାସ୍ତ୍ର ଉପରେ ପଡ଼ିଥିବାର

---

୧୧୩ । ଅଥର୍ବବେଦ—୧୯।୫୩।୧-୧୦ ଓ ୧୯।୫୪।୧-୬

୧୧୪ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୨୩୯

୧୧୫ । ଭାରତୀୟ ଦର୍ଶନ—ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ —୧୯୭୨, ପୃ-୨୨୪

୧୧୬ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୨୪୨-୨୪୩

୧୧୭ । (କ) ମନୁସ୍ମୃତି—୧-୬୪ । (ଖ) ଅମରକୋଷ— ୧-୪-୧୧

ଦେଖାଯାଏ । କିନ୍ତୁ ଜ୍ୟୋତିଃଶାସ୍ତ୍ର ତଥା ଧର୍ମଶାସ୍ତ୍ରର ବିରୋଧ ସ୍ଥଳେ ଧର୍ମଶାସ୍ତ୍ରକାରଗଣ ସ୍ୱୀୟ ବିଭାଗର ମତକୁ ସ୍ୱୀକାର କରିଥାନ୍ତି ।

ବୈଦିକ ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥରେ ବର୍ଷ, ଋତୁ, ମାସ, ଅର୍ଦ୍ଧମାସ, ଦିନ, ଉତ୍ତରାୟଣ, ଦକ୍ଷିଣାୟନ, ରାଶି, ନକ୍ଷତ୍ର ପ୍ରଭୃତିର ଉଲ୍ଲେଖ ରହିଛି ।୧୧୮। ବୈଦିକ ଯଜ୍ଞକାର୍ଯ୍ୟ ନିମିତ୍ତ ଶୁଭ ଋତୁ, ଦିନ ଓ ନକ୍ଷତ୍ର ବିଷୟର ଆଲୋଚନା ବ୍ରାହ୍ମଣ, ଉପନିଷଦ୍ ଓ କଳ୍ପସୂତ୍ରଗୁଡ଼ିକରେ କରାଯାଇଛି ।୧୧୯। ପରବର୍ତ୍ତୀ କାଳରେ ଗୃହ୍ୟ କୃତ୍ୟ ନିମିତ୍ତ 'ମୁହୂର୍ତ୍ତ' ନିରୂପଣ ବିଷୟକୁ ନେଇ ସ୍ମୃତି ସାହିତ୍ୟରେ ବହୁ ଆଲୋଚନା ହୋଇଅଛି । ଆଥର୍ବଣ ଜ୍ୟୋତିଷ ଅନୁସାରେ ସଫଳତା-ଅଭିଳାଷୀ ବ୍ୟକ୍ତି ତିଥି, ନକ୍ଷତ୍ର, କରଣ ଓ ମୁହୂର୍ତ୍ତର ଶୁଭାଶୁଭ ବିଚାର କାର୍ଯ୍ୟାରମ୍ଭ କରିବା ଉଚିତ ।୧୨୦। ଉଚିତ ତିଥି ଅଭାବରେ ଅନ୍ୟ ତିନୋଟିର ଆଶ୍ରୟ ନିଆଯାଏ । ପ୍ରଥମ ଦୁଇଟିର ଅଭାବରେ ଶେଷ ଦୁଇଟିର ଏବଂ ପ୍ରଥମ ତିନୋଟିର ଅଭାବରେ କେବଳ ଉଚିତ ମୁହୂର୍ତ୍ତରେ କାର୍ଯ୍ୟ କରାଯାଏ । ଉକ୍ତ ଚାରୋଟି ଅଭାବରେ ବ୍ରାହ୍ମଣ-ବଚନ ଉପରେ ନିର୍ଭର କରି ମଧ୍ୟ ଧର୍ମକାର୍ଯ୍ୟ କରାଯାଇପାରେ ।୧୨୧। ତିଥି ଓ ଗ୍ରହର ଜ୍ୟୋତିଷିକ ଶୁଭାଶୁଭ ବିଚାର ସୁସ୍ଥ କାଳରେ ଅନୁସରଣୀୟ ହେଲେ ମଧ୍ୟ ଆର୍ତ୍ତ ଅବସ୍ଥାରେ କରାଯାଏ ନାହିଁ ।୧୨୨। ବାର ବିଚାରରେ ବୁଧବାର, ଗୁରୁବାର ଓ ଶୁକ୍ରବାର ଉତ୍ତମ; ରବିବାର ଓ ସୋମବାର ମଧ୍ୟମ ଏବଂ ମଙ୍ଗଳବାର ଓ ଶନିବାର ଅଧମ ଶ୍ରେଣୀୟ ବୋଲି କୁହାଯାଇଛି ।୧୨୩। ସଂସ୍କାର ମଧ୍ୟରେ ଜାତକର୍ମ ନିମିତ୍ତ ମୃଦୁ, ଧ୍ରୁବ ଓ କ୍ଷିପ୍ର ନକ୍ଷତ୍ର, ନାମ-କରଣରେ ବୃହସ୍ପତି ଓ ଶୁକ୍ରଗ୍ରହ, ଚୌଳ ଉପନୟନ ଓ ଗୋଦାନ ତଥା ବିବାହ ନିମିତ୍ତ ଉତ୍ତରାୟଣ, ଶୁକ୍ଳପକ୍ଷ ତଥା ଶୁଭ ନକ୍ଷତ୍ରର ବିଚାର କରାଯାଏ । ସାଧାରଣ କ୍ଷୌରକର୍ମରେ ନକ୍ଷତ୍ର ଓ ରାଶିର ଶୁଦ୍ଧାଶୁଦ୍ଧି ନିର୍ଦ୍ଦେଶିତ ହୋଇଥିଲେ ମଧ୍ୟ ରାଜା ଓ ବ୍ରାହ୍ମଣର ଆଦେଶରେ ବିବାହ ସମୟରେ ମୃତ ଓ ସୂତକ ଶୁଦ୍ଧିଦିନ, ବନ୍ଦିଗୃହରୁ ମୁକ୍ତ ହେବାଦିନ ଏବଂ ବୈଦିକ

---

୧୧୮ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥଭାଗ—ପୃ-୨୪୭-୨୫୩ ।

୧୧୯ । ତତ୍ରୈବ—ପୃ-୨୭୫ ।

୧୨୦ । ଚତୁର୍ଭିର୍କାରୟେତ୍କର୍ମସିଦ୍ଧିହେତୋର୍ବିଚକ୍ଷଣଃ ।
ତିଥିନକ୍ଷତ୍ରକରଣମୁହୂର୍ତ୍ତୈରିତି ନିଶ୍ଚୟଃ ॥
(ଧର୍ମଶାସ୍ତ୍ର କା ଇତିହାସ-୪ର୍ଥ ଭାଗ—ପୃ-୨୯୭)

୧୨୧ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୨୯୭ ॥

୧୨୨ । ଗ୍ରହଦିବସର ଶୁଦ୍ଧିଷ୍ଟ ନାର୍ତ୍ତକାଳମପେକ୍ଷତେ ।
ସ୍ୱସ୍ଥେ ସର୍ବମିଦଂ ଚିନ୍ତ୍ୟମିତ୍ୟାହ ଭଗବାନ୍ ଭୃଗୁଃ ॥ (ରାଜମାର୍ତ୍ତଣ୍ଡ—ଶ୍ଳୋକ-୩୮୮)

୧୨୩ । ନାରଦୀୟ ପୁରାଣ—୧।୫୬।୩୫୦-୬୯ ॥

ଯଜ୍ଞ ନିମିତ୍ତ ଦୀକ୍ଷା ଗ୍ରହଣ ଦିନ ରାଶି, ନକ୍ଷତ୍ର ଓ ବାରାଦିର ଶୁଭାଶୁଭ ବିଚାରବିନା କ୍ଷୌର କର୍ମ କରାଯାଇଥାଏ ।୧୨୪।

ଉପନୟନ ଜନ୍ମମାସ, ଦିନ ଓ ନକ୍ଷତ୍ରରେ ଅନୁଷ୍ଠିତ ହୁଏ ନାହିଁ । ଏଥିରେ ବୃହସ୍ପତିର ସ୍ଥିତି ମୁଖ୍ୟତଃ ବିଚାର୍ଯ୍ୟ । ବିବାହରେ ମଧ୍ୟ ଦିନ, ନକ୍ଷତ୍ର, ବୃହସ୍ପତି, ଶୁକ୍ର, ସୂର୍ଯ୍ୟ ଓ ଚନ୍ଦ୍ର ଗ୍ରହର ଅବସ୍ଥିତି ବିଚାର କରାଯାଏ । ଆଶ୍ୱଳାୟନଙ୍କ ଅନୁଯାୟୀ ଚୌଳ ଉପନୟନ, ଗୋଦାନ ଓ ବିବାହ ଉତ୍ତରାୟଣ ବା ଶୁକ୍ଳପକ୍ଷ ବା ଶୁଭ ନକ୍ଷତ୍ରରେ କରଣୀୟ ।୧୨୫। ବୌଧାୟନଙ୍କ ଅନୁସାରେ ଯେକୌଣସି ମାସରେ, କୌଶିକ ସୂତ୍ର ଅନୁଯାୟୀ କାର୍ତ୍ତିକ ପୂର୍ଣ୍ଣିମାଠାରୁ ବୈଶାଖ ପୂର୍ଣ୍ଣିମା ମଧ୍ୟରେ, ରାଜମାର୍ତ୍ତଣ୍ଡ ଅନୁସାରେ ଚୈତ୍ର ଓ ପୌଷ ବ୍ୟତୀତ ଅନ୍ୟ ସବୁ ମାସରେ ରୋହିଣୀ, ମୃଗଶିରା, ଉତ୍ତରଫାଲ୍ଗୁନୀ ଓ ସ୍ୱାତୀ ନକ୍ଷତ୍ରରେ ବିବାହ ଅନୁଷ୍ଠାନ କରାଯାଇ ପାରେ ।୧୨୬। ସିଂହ ବୃହସ୍ପତି ଯୋଗ, ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ, ଦକ୍ଷିଣାୟନ ଓ ମଳ ମାସରେ ସମସ୍ତ ଧର୍ମକାର୍ଯ୍ୟ ନିଷିଦ୍ଧ ହୋଇଥିଲେ ।୧୨୭। ମଧ୍ୟ ଓଡ଼ିଶାରେ ଶ୍ରାଦ୍ଧ, ସ୍ନାନ, ଦାନ, ଜପ ଓ ନିତ୍ୟନୈମିତ୍ତିକ କାର୍ଯ୍ୟ କରାଯାଏ; କିନ୍ତୁ ଉପନୟନ, ବିବାହ ଓ ତୀର୍ଥଯାତ୍ରାଦି କାର୍ଯ୍ୟ କରାଯାଏ ନାହିଁ ।୧୨୮। ଏତଦ୍‌ବ୍ୟତୀତ ଯାତ୍ରା, ଗୃହପ୍ରବେଶ, ଗୃହନିର୍ମାଣ, ଦେବତା-ପ୍ରତିଷ୍ଠାଦି କାର୍ଯ୍ୟରେ ମାସ, ଦିନ, ରାଶି, ନକ୍ଷତ୍ର ସହିତ କାଳର ଶୁଭାଶୁଭ ମୁହୂର୍ତ୍ତ ବିଚାର କରାଯାଇଥାଏ ।

ଓଡ଼ିଶାର ପ୍ରାପ୍ତ ଅଧିକାଂଶ ସ୍ମୃତିଗ୍ରନ୍ଥରେ ବିଶେଷକରି ଗଦାଧର ରାଜଗୁରୁଙ୍କ 'କାଳସାର', କୃଷ୍ଣମିଶ୍ରଙ୍କ 'କାଳସର୍ବସ୍ୱ', ଦିବ୍ୟସିଂହ ମହାପାତ୍ରଙ୍କ 'କାଳଦୀପ', ଧର୍ମୁପାଠୀଙ୍କ 'କାଳଚନ୍ଦ୍ରିକା' ଓ ରଘୁନାଥ ଦାଶଙ୍କ 'କାଳନିର୍ଣ୍ଣୟ' ଗ୍ରନ୍ଥରେ କାଳର ଶୁଭାଶୁଭ ବିଷୟ ପର୍ଯ୍ୟାଲୋଚିତ ହୋଇଛି ।୧୨୯ ।

---

୧୨୪ । ନୃପାଜ୍ଞୟା ବ୍ରାହ୍ମଣ ସମ୍ମତେନ ବିବାହକାଲେମୃତସୂତକେ ଚ ।
ବନ୍ଦସ୍ୟ ମୋକ୍ଷେ କ୍ରତୁଦୀକ୍ଷିତୋ ଚ ସର୍ବେଷୁ ଶସ୍ତଂ କ୍ଷୁରକର୍ମ ଭେଷୁ ॥
(ରାଜମାର୍ତ୍ତଣ୍ଡ—ଶ୍ଳୋକ-୨୭୯)

୧୨୫ । ଆଶ୍ୱଳାୟନ ଗୃହ୍ୟସୂତ୍ର—୧।୪।୧-୨

୧୨୬ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୩୦୦ ।

୧୨୭ । ଗୁର୍ବାଦିତ୍ୟେ ଗୁରୌ ସିଂହେ ନଷ୍ଟେଶୁକ୍ରେ ମଳମ୍ଲୁଚେ ।
ଯାମ୍ୟାୟନେ ହରୌସୁପ୍ତେ ସର୍ବକର୍ମାଣି ବର୍ଜୟେତ୍ ॥ (ଶୁଦ୍ଧିସାର—ପୃ-୩)

୧୨୮ । ଶୁଦ୍ଧିସାର—Dh. Cy. No 587, ପୃ-୭-୧୭ ।

୧୨୯ । OSM. Mss. Dh. No. 115, 41, 552 ।

**୫ । ଦାନ ପ୍ରକରଣ :**

କଳିଯୁଗରେ 'ଦାନ'କୁ ଧାର୍ମିକ ଜୀବନର ମୂଳ ଲକ୍ଷଣ ରୂପେ ସ୍ୱୀକାର କରାଯାଇଛି ।୧୩୦। ଗାର୍ହସ୍ଥ୍ୟ ଜୀବନରେ ଦାନ ହେଉଛି ପ୍ରଧାନ କର୍ମ; କାରଣ ତଦ୍ୱାରା ସେ ଅନ୍ୟାନ୍ୟ ଆଶ୍ରମବାସୀଙ୍କୁ ଖାଦ୍ୟ ଓ ଆବଶ୍ୟକୀୟ ଉପାଦାନ ଯୋଗାଇଥାଏ ।୧୩୧। ସନ୍ନ୍ୟାସୀ ନିଷ୍ଫଳତା, ବାନପ୍ରସ୍ଥୀ ସାଧାରଣ ଖାଦ୍ୟତ୍ୟାଗ, ଗୃହସ୍ଥ ଦାନ ଓ ବ୍ରହ୍ମଚାରୀ ଆଜ୍ଞାନୁବର୍ତ୍ତିତାଦି ଧର୍ମପାଳନ କରିଥାଆନ୍ତି । ମହାଭାରତର ଅନୁଶାସନ ପର୍ବ ଓ ପୁରାଣ ସାହିତ୍ୟରେ ବିଶେଷ କରି ଅଗ୍ନି, ମତ୍ସ୍ୟ ଓ ବରାହ ପୁରାଣାଦିରେ ଦାନର ଭୂରି ଭୂରି ପ୍ରଶଂସା କରାଯାଇଛି ।୧୩୨। ସ୍ମୃତି ସାହିତ୍ୟ ମଧ୍ୟରେ ହେମାଦ୍ରିଙ୍କ 'ଚତୁର୍ବର୍ଗ ଚିନ୍ତାମଣି'ର 'ଦାନକାଣ୍ଡ', ଗୋବିନ୍ଦାନନ୍ଦଙ୍କ 'ଦାନକ୍ରିୟା କୌମୁଦୀ', ନୀଳକଣ୍ଠଙ୍କ 'ଦାନମୟୂଖ', ବିଦ୍ୟାପତିଙ୍କ 'ଦାନ ବାକ୍ୟାବଳୀ', ବଲ୍ଲାଳସେନଙ୍କ 'ଦାନ ସାଗର', ମିତ୍ରମିଶ୍ରଙ୍କ 'ଦାନପ୍ରକାଶ' ଗ୍ରନ୍ଥରେ ଦାନବିଷୟ ବିସ୍ତୃତଭାବେ ପର୍ଯ୍ୟାଲୋଚିତ ହୋଇଅଛି ।

ଶାସ୍ତ୍ର ଅନୁସାରେ ଯାଗ, ହୋମ ଓ ଦାନ ମଧ୍ୟରେ ବିଶେଷ ଅର୍ଥ-ପାର୍ଥକ୍ୟ ରହିଛି । ବୈଦିକ ମନ୍ତ୍ରଦ୍ୱାରା ଦେବତାଙ୍କ ଉଦ୍ଦେଶ୍ୟରେ ଯାହା ଦିଆଯାଏ ତାହା ଯାଗ, ଅଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଯାହା ତ୍ୟାଗ କରାଯାଏ ତାହା ହୋମ ଏବଂ ସ୍ୱ ସ୍ୱତ୍ୱତ୍ୟାଗପୂର୍ବକ ପରସ୍ୱତ୍ୱୋତ୍ପାଦନ ଓ ଦାନୀୟ ପାତ୍ରର ସ୍ୱୀକରଣ ହେଉଛି ଦାନ । ୧୩୩। ଧର୍ମଶାସ୍ତ୍ରରେ ଦାନକୁ ପ୍ରତିଗ୍ରହ କହନ୍ତି; କିନ୍ତୁ ଭିକ୍ଷାଦାନ ବା ଉପାୟନ ପ୍ରଦାନକୁ 'ପ୍ରତିଗ୍ରହ' ବୋଲି ଅଭିହିତ କରାଯାଏ ନାହିଁ ।୧୩୪। ତେଣୁ ବିଦ୍ୟାଦାନ, ଦେବପ୍ରତିମା ଉଦ୍ଦେଶ୍ୟରେ ଦାନକୁ ସ୍ଥୂଳ ଅର୍ଥରେ ଗ୍ରହଣ

---

୧୩୦ । ତପଃ ପରଂ କୃତଯୁଗେ ତ୍ରେତାୟାଂ ଜ୍ଞାନମୁଚ୍ୟତେ ।
ଦ୍ୱାପରେ ଯଜ୍ଞମେବାହୁର୍ଦାନମେକଂ କଲୌଯୁଗେ ॥ (ମନୁସ୍ମୃତି—୧-୮୬)

୧୩୧ । ଯତୀନାଂ ତୁ ଶମୋ ଧର୍ମସ୍ତ୍ୱନାହାରୋ ବନୌକସାମ୍ ।
ଦାନମେବ ଗୃହସ୍ଥାନାଂ ଶୁଶ୍ରୂଷା ବ୍ରହ୍ମଚାରିଣାମ୍ ॥ (ଦାନକାଣ୍ଡ—ପୃ-୬)

୧୩୨ । History of Dh. Vol-II. Part. II, P. 837-841.

୧୩୩ । ଏଷ ଚ ଯଜିଃ ଯଦ୍‌ଦ୍ରବ୍ୟଂ ଦେବତାମୁଦ୍ଦିଶ୍ୟ ମନ୍ତ୍ରେଣ ତ୍ୟଜ୍ୟତେ । ସ୍ୱ ସ୍ୱତ୍ୱନିବୃତ୍ତି ପରସ୍ୱତ୍ୱୋତ୍ପାଦନଂ ଦାନମ୍ । ପରସ୍ୱତ୍ୱୋତ୍ପାଦନଂ ଚ ପରୋ ଯଦି ସ୍ୱୀକରୋତି ତଦା ସମ୍ପଦ୍ୟତେ ନାନ୍ୟଥା ॥

(History of Dh., Vol. II, Part. II, P-841)

୧୩୪ । ନୈବଂ ଗ୍ରହଣମାତ୍ରଂ ପ୍ରତିଗ୍ରହଃ । କିନ୍ତୁ ଏବ ସ୍ୱୀକାରେ ପ୍ରତିପୂର୍ବୋ ଗୃହ୍ଣାତିବର୍ତ୍ତତେ ଅଦୃଷ୍ଟବୁଦ୍ଧ୍ୟା ଦୀୟମାନଂ ମନ୍ତ୍ରପୂର୍ବଂ ଗ୍ରହଣଂ ପ୍ରତିଗ୍ରହୋ ଭବତି । ନ ଚ ଭୈକ୍ଷେ ଦେବସ୍ୟତ୍ୱାଦି ମନ୍ତ୍ରୋଚ୍ଚାରଣମସ୍ତି । ନ ଚ ପ୍ରାତ୍ୟାଦିନା ଦାନଗ୍ରହଣେ । ନ ଚ ତତ୍ର ପ୍ରତିଗ୍ରହ ବ୍ୟବହାରଃ ॥(History of Dh. Vol-II, Part.II,P-842)

କରାଯାଏ । କାରଣ ଦାନରେ ପ୍ରଦତ୍ତ ଦକ୍ଷିଣା ଗୁରୁଶିଷ୍ୟଙ୍କ ବ୍ୟତୀତ ନାହିଁ କି ପ୍ରତିମା ବିଶେଷ ଦକ୍ଷିଣା ଗ୍ରହଣ କରିପାରେ ନାହିଁ । ସତ୍ପାତ୍ରରେ ଦାନ ଗ୍ରହୀତାର ଦାନ ସ୍ୱୀକାର ଓ ବୈଦିକ ବା ଶାସ୍ତ୍ରୀୟ ବିଧାନୁଯାୟୀ ଦାନକୁ ପ୍ରକୃତ ଦାନ କୁହାଯାଏ ।୧୩୫।

ଦାତା, ପ୍ରତିଗ୍ରହୀତା, ଶ୍ରଦ୍ଧା, ଧର୍ମଯୁକ୍ତ, ଦେଶ ଓ କାଳ ରୂପେ ଦାନର ଛଅଟି ଅଙ୍ଗ ।୧୩୬। ଦାନରେ ଏଗୁଡ଼ିକ ଯଥାକ୍ରମେ ପାଳିତ ହୋଇଥାଏ । ଦାନକର୍ତ୍ତା ନୀରୋଗ, ଧର୍ମାତ୍ମା, ଅବିଳାସୀ, ଶୁଚି, ଅନିନ୍ଦ୍ୟ ବୃତ୍ତିଜୀବୀ ହେବା କାମ୍ୟନୀୟ ।୧୩୭। ମହାଭାରତରେ ଶୂର, ପଣ୍ଡିତ ବକ୍ତାମାନଙ୍କ ମଧ୍ୟରେ ଦାତାକୁ ଉତ୍କୃଷ୍ଟ ସ୍ଥାନ ଦିଆଯାଇଛି ।୧୩୮। ମନୁସ୍ମୃତି, ବିଷ୍ଣୁଧର୍ମ ସୂତ୍ର, ବୃହସ୍ପତିଙ୍କର ସ୍ମୃତି, ଦେବଳସ୍ମୃତି ପ୍ରଭୃତିରେ ଦାନଗ୍ରହୀତାର ଯୋଗ୍ୟତା ଓ ଅଯୋଗ୍ୟତା ବିଷୟରେ ବହୁ ଆଲୋଚନା କରାଯାଇଛି ।୧୩୯। ଧୂର୍ତ୍ତ, ଭାଟ, ଯୋଦ୍ଧା, କୁବୈଦ୍ୟ, କିତବ ଶଠ, ଗୃଟ, ଗୃରଣ ଚୋର ପ୍ରଭୃତିଙ୍କୁ ଦାନ ଦେଲେ ତାହା ନିଷ୍ଫଳ ହୁଏ ବୋଲି ଦକ୍ଷ ସ୍ମୃତିରେ ଉଲ୍ଲେଖ ଅଛି ।୧୪୦।

ଦେୟାଦେୟ ବସ୍ତୁ ବିଷୟରେ ବିଭିନ୍ନ ପ୍ରକାର ବିଧି ରହିଛି । ଉପଲବ୍ଧ ଓ ଆବଶ୍ୟକୀୟ ବସ୍ତୁ ଶ୍ରଦ୍ଧାର ସହିତ ସତ୍ପାତ୍ରରେ ଦାନ କରଣୀୟ ।୧୪୧। ଦାତା ନିଜ ପାଖରେ ଥିବା ଦେୟ ବସ୍ତୁର ଏକ-ଦଶମାଂଶ ଦାନ ଦେବା ଉଚିତ । ଦାନଯୋଗ୍ୟ ବସ୍ତୁକୁ ଉତ୍ତମ, ମଧ୍ୟମ ଓ ଅଧମ ଶ୍ରେଣୀରେ ବିଭକ୍ତ କରାଯାଇଛି । ଅନ୍ନ, ଦଧି, ମଧୁ, ତ୍ରାଣବସ୍ତୁ, ଧେନୁ, ଭୂମି, ସ୍ୱର୍ଣ୍ଣ, ଘୋଟକ ଓ ହସ୍ତୀ ଦାନ ଉତ୍ତମ ସ୍ଥାନୀୟ । ଶିକ୍ଷା, ବାସଗୃହ, ଗାର୍ହସ୍ଥ୍ୟ ଉପାଦାନ ଓ ଔଷଧିଦାନ

---

୧୩୫ । ପାତ୍ରେଭ୍ୟୋ ଦୀୟତେ ନିତ୍ୟମନବେକ୍ଷ୍ୟ ପ୍ରୟୋଜନମ୍ ।
କେବଳଂ ଧର୍ମବୁଦ୍ଧ୍ୟା ଯଦ୍ଧର୍ମଦାନଂ ତଦୁଚ୍ୟତେ ॥ ଦାନକାଣ୍ଡ—ପୃ-୪ ॥

୧୩୬ । ଦାତା ପ୍ରତିଗ୍ରହୀତା ଚ ଶ୍ରଦ୍ଧା ଦେୟଂ ଚ ଧର୍ମଯୁକ୍ ।
ଦେଶ କାଲୌଚ ଦାନାନାମଙ୍ଗାନ୍ୟେତାନି ଷଡ଼ବିଦୁଃ ॥ ଦାନକାଣ୍ଡ—ପୃ-୧୪ ॥

୧୩୭ । ଅପାପରୋଗୀ ଧର୍ମାତ୍ମାଦିତ୍ସୁରବ୍ୟସନଃ ଶୁଚିଃ ।
ଅନିନ୍ଦ୍ୟାଜୀବକର୍ମାଚ ଷଡ଼ଭିର୍ଦାତା ପ୍ରଶସ୍ୟତେ ॥ ଦାନକାଣ୍ଡ—ପୃ-୧୪ ॥

୧୩୮ । ଶତେଷୁଜାୟତେ ଶୂରଃ ସହସ୍ରେଷୁଚ ପଣ୍ଡିତଃ ।
ବକ୍ତା ଶତସହସ୍ରେଷୁ ଦାତା ଭବତି ବା ନବା ॥
(History of Dh. Vol-II Part-II P-845)

୧୩୯ । Histony of Dh. Vol. II Part-II P-846 ॥

୧୪୦ । ଧୂର୍ତ୍ତେ ବନ୍ଦିନ ମଲ୍ଲେଚ କୁବୈଦ୍ୟେ କିତବେ ଶଠେ ।
ଚୃଟଚାରଣ ଚୌରେଷୁ ଦତ୍ତଂ ଭବତି ନିଷ୍ଫଳମ୍ ॥ ଦକ୍ଷସ୍ମୃତି—୩-୧୮ ॥

୧୪୧ । ଯଦ୍ୟଦିଷ୍ଟତମଂ ଲୋକେ ଯଚ୍ଚାପି ଦୟିତଂ ଗୃହେ ।
ତତ୍ତଦ୍‌ଗୁଣବତେ ଦେୟଂ ତଦେବାକ୍ଷୟମିଚ୍ଛତା ॥
(ମହାଭାରତ-ଅନୁଶାସନ ପର୍ବ—୫୯-୭)

ମଧ୍ୟମସ୍ଥାନୀୟ । ଉପାନହ, ଦୋଳା, ଶକଟ, ଛତ୍ର, ପାତ୍ର, ଆସନ, ଦୀପ, କାଷ୍ଠୋପକରଣ, ଫଳ, ପ୍ରାଚୀନ ଓ ଜୀର୍ଣ୍ଣବସ୍ତୁ ତଥା ଅନ୍ୟାନ୍ୟ ଦାନ ନିକୃଷ୍ଟ ଶ୍ରେଣୀୟ ।୧୪୨। ଏ ବିଷୟରେ ବିଭିନ୍ନ ମତ ଅଛି । ମହର୍ଷି ବଶିଷ୍ଠଙ୍କ ଅନୁସାରେ ଗୋ, ଭୂମି ଓ ବିଦ୍ୟା ଦାନକୁ ଅତିଦାନ ଆଖ୍ୟା ଦିଆଯାଇଛି । ସବୁ ଦାନ ମଧ୍ୟରେ ବିଦ୍ୟାଦାନକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି ।୧୪୩। ପୁନଶ୍ଚ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଭେଦରେ ଦାନ ତିନି ଭାଗରେ ବିଭକ୍ତ ।୧୪୪। ଭଗବଦ୍-ଗୀତା ଅନୁସାରେ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ମଧ୍ୟ ଦାନ ତ୍ରିବିଧ ।୧୪୫। ନପୁଂସକ, ବେଶ୍ୟା ଓ ପତିତଙ୍କୁ ବାଦ୍ ଦେଇ ଅନ୍ୟ ବ୍ୟକ୍ତିର ସ୍ୱେଚ୍ଛାକୃତ ଦାନ ଗ୍ରହଣୀୟ । ଦାତା ନିଜ ଇଚ୍ଛାରେ ସମ୍ପର୍କୀୟ ବ୍ୟକ୍ତି ରାଜ୍ୟ, ଦାସାଦିଙ୍କୁ ଦାନ ରୂପେ ଦେବାକୁ ନିଷେଧ କରାଯାଇଛି । ତଦ୍‌ବ୍ୟତୀତ ନ୍ୟାସ, ଋଣ, ଅବିଭକ୍ତ ସମ୍ପତ୍ତି, ପୁତ୍ର, ସ୍ତ୍ରୀ ଓ ସନ୍ତାନ ଥିଲେ ନିଜର ସମସ୍ତ ସମ୍ପତ୍ତି ଦାନ କରି ପାରିବେ ନାହିଁ । ଶସ୍ତ୍ର, ବିଷ, ମଦ୍ୟ, ସ୍ୱର୍ଣ୍ଣ, ଭୂମି, ଘୋଟକ, ଧେନୁ, ଖାଦ୍ୟ, ଆଚ୍ଛାଦନ ଓ ଲବଣୀ ପ୍ରଭୃତି ଦାନ ବ୍ରାହ୍ମଣ ଗ୍ରହଣ କରିପାରିବେ ନାହିଁ ।୧୪୬।

ଧର୍ମଶାସ୍ତ୍ରରେ ଦାନର କାଳବିଷୟକ ବିଭିନ୍ନ ନିୟମର ଉଲ୍ଲେଖ ରହିଛି । ଦୈନିକ ଦାନ ବ୍ୟତୀତ ବ୍ୟକ୍ତିବିଶେଷ ଅମାବାସ୍ୟା, ପୂର୍ଣ୍ଣିମା, ସଂକ୍ରାନ୍ତି, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟୋପରାଗ, ତିଥିକ୍ଷୟ ଦିବସରେ ଦାନ କରଣୀୟ । ଗ୍ରହଣ, ବିବାହ, ସଂକ୍ରାନ୍ତି ତଥା ସନ୍ତାନ ଜନ୍ମ କ୍ଷେତ୍ରରେ ରାତ୍ରିରେ ମଧ୍ୟ ଦାନ କରାଯାଇପାରେ ।୧୪୭। ଦାନକ୍ଷେତ୍ର ବିଷୟରେ ମଧ୍ୟ ନିର୍ଦ୍ଦିଷ୍ଟ ମତ ଉଲ୍ଲେଖ

---

୧୪୨ । History of Dh. Vol. II Part-II P-847

୧୪୩ । ତ୍ରୀଣ୍ୟାହୁରତିଦାନାନି ଗାବଃ ପୃଥ୍ୱୀ ସରସ୍ୱତୀ ।
ଅତିଦାନଂ ହି ଦାନାନାଂ ବିଦ୍ୟାଦାନଂ ତତୋଽଧିକମ୍ ॥
(ବଶିଷ୍ଠ ସୂତ୍ର—୨୯-୧୯)

୧୪୪ । (କ) ପ୍ରପାରାମତଡ଼ାଗାଦି ସର୍ବକାମଫଳଂ ଧ୍ରୁବମ୍ ।
ତଦାଜସ୍ରିକ ମିତ୍ୟାହୁର୍ଦୀୟତେ ଯଦନେ ଦିନେ ॥
(ଖ) ଅପତ୍ୟବିଜୟୈଶ୍ୱର୍ଯ୍ୟ ସ୍ତ୍ରୀବାଲାର୍ଥଂ ଯଦୀଷ୍ୟତେ ।
ଇଚ୍ଛାସଂସ୍ଥାଂ ତୁ ତଦ୍ଦାନଂ କାମ୍ୟମିତ୍ୟଭିଧୀୟତେ ॥
(ଗ) କାଳପେକ୍ଷଂ କ୍ରିୟାପେକ୍ଷମର୍ଥାପେକ୍ଷମିତି ସ୍ମୃତମ୍ ।
ତ୍ରିଧା ନୈମିତ୍ତିକଂ ପ୍ରୋକ୍ତଂ ସହୋମଂ ହୋମବର୍ଜିତମ୍ ॥
(History of Dh. Vol-II, Part-II, P-848)

୧୪୫ । ଭଗବଦ୍‌ଗୀତା—୧୭-୨୦-୨୨ ।

୧୪୬ । History of Dh Vol-II, Part-II, P-851.

୧୪୭ । ରାହୁଦର୍ଶନ ସଂକ୍ରାନ୍ତିବିବାହାତ୍ୟୟବୃଦ୍ଧିଷୁ ।
ସ୍ନାନଦାନାଦିକଂ କୁର୍ଯ୍ୟୁର୍ନିଶି କାମ୍ୟବ୍ରତେଷୁ ଚ ॥ (ଦାନକାଣ୍ଡ—ପୃ-୮୧)

କରାଯାଇଛି । ଦେବଦେବୀ ଓ ସିଦ୍ଧ ଅଧ୍ୟୁଷିତ ସମସ୍ତ ପର୍ବତ, ସାଗର ଅଭିମୁଖୀ ସମସ୍ତ ନଦୀତୀର ଓ ତୀର୍ଥସ୍ଥାନ ଦାନର ପ୍ରଶସ୍ତ କ୍ଷେତ୍ରରୂପେ ଅଭିହିତ ।୧୪୮। ଗୃହରେ ଦାନକଲେ ଦଶଗୁଣ, ଗୋଷ୍ଠରେ ଶହେଗୁଣ, ତୀର୍ଥରେ ହଜାରେ ଗୁଣ ଏବଂ ଶିବ ସନ୍ନିଧିରେ ଅନନ୍ତ ଫଳ ମିଳିଥାଏ ।୧୪୯। ଦାନରେ ଦକ୍ଷିଣା ଅନିବାର୍ଯ୍ୟ । ଦାନୀୟ ଦ୍ରବ୍ୟ ମୂଲ୍ୟର ଏକ-ଦଶମାଂଶ ଦକ୍ଷିଣା ବା ସାମର୍ଥ୍ୟାନୁଯାୟୀ ଦକ୍ଷିଣା ଦିଆଯାଏ । କିନ୍ତୁ ବିନା ଦକ୍ଷିଣାରେ ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର, ଭୂମି, ଶସ୍ୟଦାନ, ଦୈନିକ ଶ୍ରାଦ୍ଧ ଓ ଦେବପୂଜା କରାଯାଇପାରେ ।୧୫୦।

ଦାନ ମଧ୍ୟରେ ଭୂମିଦାନ ଓ ଗ୍ରାମଦାନର ବହୁଳ ପ୍ରଶଂସା କରାଯାଇଛି । ଷୋଡ଼ଶ ମହାଦାନ ମଧ୍ୟରେ ତୁଳାପୁରୁଷ, ହିରଣ୍ୟଗର୍ଭ, ବ୍ରହ୍ମାଣ୍ଡ, କଳ୍ପବୃକ୍ଷ, ଗୋସହସ୍ର, କାମଧେନୁ, ହିରଣ୍ୟାଶ୍ୱ, ହିରଣ୍ୟାଶ୍ୱ ରଥ, ହେମହସ୍ତୀ ରଥ, ପଞ୍ଚଲାଙ୍ଗଳ, ଧରାଦାନ, ବିଶ୍ୱଚକ୍ର, କଳ୍ପଲତା, ସପ୍ତସାଗର, ରତ୍ନଧେନୁ ଓ ମହାଭୂତ ଘଟର ନାମ ଉଲ୍ଲେଖଯୋଗ୍ୟ ।୧୫୧। ଗୋଦାନ ମଧ୍ୟରେ ପ୍ରସବୋନ୍ମୁଖୀ ଧେନୁଦାନକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ଧେନୁଦାନ ମଧ୍ୟରେ ଗୁଡ଼, ଘୃତ, ତିଳ, ଜଳ, କ୍ଷୀର, ମଧୁ, ଶର୍କରା, ଦଧି, ରସ ଓ ଗୋଧେନୁ ଆଦି ଦଶବିଧ ଦାନର ପ୍ରଶଂସା କରାଯାଇଛି । ବୃଦ୍ଧା, ରୁଗ୍‌ଣା, ଦୁର୍ବଳା, ଦୁଗ୍‌ଧହୀନା ଧେନୁ ଦାନକାରୀ ଆନନ୍ଦରହିତ ଲୋକରେ ବାସକରେ ।୧୫୨। ମତ୍ସ୍ୟପୁରାଣ ଅନୁଯାୟୀ ଧାନ୍ୟ, ଲବଣ, ଗୁଡ଼, ହେମ, ତିଳ, କାର୍ପାସ, ଘୃତ, ରତ୍ନ, ରଜତ, ଶର୍କରାଦି ଦଶବିଧ ଦାନ ମେରୁଦାନ ନାମରେ ଅଭିହିତ ।୧୫୩। ଏହି ଦାନ ପର୍ବତ, ଶୈଳ ବା ଅଚଳ ଦାନ ନାମରେ ମଧ୍ୟ ନାମିତ ହୋଇଛି । ଅନ୍ୟାନ୍ୟ ଦାନ ମଧ୍ୟରେ ହାତୀ, ଘୋଡ଼ା, ମହିଷ, ବସ୍ତ୍ର, ମୃଗଚର୍ମ, ଛତ୍ର, ଉପାନହ, ରାମାୟଣ-ମହାଭାରତ-ଧର୍ମଶାସ୍ତ୍ର-ପୁରାଣ-ପୋଥିଦାନ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଦାନରେ ଗ୍ରହଶାନ୍ତି, ଦିକପାଳ ଓ ନବଗ୍ରହପୂଜା, ଗୁରୁ, ବ୍ରାହ୍ମଣାଦିଙ୍କୁ ଭୋଜନଦାନ, ଜପ, ହୋମ, ପ୍ରାୟଶ୍ଚିତ୍ତାଦି ବିଧିମାନ ପାଳିତ ହୋଇଥାଏ ।

---

୧୪୮ । History of Dh. Vol-II, Part-II, P-851.

୧୪୯ । ଗୃହେ ଦଶଗୁଣଂ ଦାନଂ ଗୋଷ୍ଠେ ଚୈବ ଶତାଧିକମ୍ ।
ପୁଣ୍ୟତୀର୍ଥେଷୁ ସାହସ୍ରମନନ୍ତଂ ଶିବସନ୍ନିଧୌ ॥ (ଦାନମୟୂଖ—ପୃ-୮)

୧୫୦ । History of Dh. Vol. II Part. II, P-855.

୧୫୧ । Ibid.—P. 869-877.

୧୫୨ । ପୀତୋଦକା ଜଗ୍‌ଧତୃଣା ଦୁଗ୍‌ଧଦୋହା ନିରିନ୍ଦ୍ରିୟାଃ ।
ଅନନ୍ଦା ନାମ ତେ ଲୋକାସ୍ତାନ୍ ସ ଗଚ୍ଛତି ତା ଦଦତ୍ ॥ (କଠୋପ—୧-୧-୩)

୧୫୩ । ମତ୍ସ୍ୟପୁରାଣ—ଅ: ୮୩-୯୨ ।

ଦାନ ସମ୍ବନ୍ଧରେ ବହୁ ଶାସ୍ତ୍ରୀୟ ପ୍ରମାଣ ଥିଲେ ମଧ୍ୟ କାଳକ୍ରମେ ତଥା ଅବସ୍ଥାଭେଦରେ ସେଗୁଡ଼ିକୁ ସୀମିତ କରାଯାଇଛି । ଆଜିକାଲି ସମାଜରେ ଶାଳଗ୍ରାମ, ତିଳକାଞ୍ଚନ, ଭୂମି, ଅନ୍ନ ଓ ଜଳ ବା ବସ୍ତ୍ର ବା ଦୀପ ନାମରେ ପଞ୍ଚଦାନ, ଗୋ, ଭୂମି, ସ୍ୱର୍ଣ୍ଣ, ବସ୍ତ୍ର, ଦୀପ, ଅନ୍ନ, ଜଳ, ତିଳ, ଶଯ୍ୟା ଓ ପ୍ରପାନକାଦି ଦଶଦାନ ଏବଂ ଗୋ, ଭୂମି, ସ୍ୱର୍ଣ୍ଣ. ଅନ୍ନ, ଜଳ, ବସ୍ତ୍ର, ରୌପ୍ୟ, ଦୀପ, ଆସନ, ତାମ୍ବୁଲ, କଠାଉ, ଛତ୍ର, ଚନ୍ଦନ, ପୁଷ୍ପହାର, ଫଳ ଓ ଶଯ୍ୟାଦି ଷୋଡ଼ଶ ଦାନର ପ୍ରଚଳନ ରହିଛି । ତଦ୍‌ବ୍ୟତୀତ କନକ, ଅଶ୍ୱ, ତିଳ, ନାଗ, ଦାସୀ, ରଥ, ମହୀ, ଗୃହ, କନ୍ୟା ଓ କପିଳାଧେନୁ—ଏହି ଦଶଟି ମହାଦାନ ନାମରେ ଅଭିହିତ । ଓଡ଼ିଶାର ଅନ୍ୟାନ୍ୟ ସ୍ମୃତିକାରଙ୍କ ସହିତ ବିଶେଷକରି ଯୋଗୀଶ୍ୱରଙ୍କ 'ଦାନ ଦୀପାବଳୀ' ଓ ଶ୍ରୀଧର ଶର୍ମାଙ୍କ 'ଦାନ ବାକ୍ୟାବଳୀ' ଗ୍ରନ୍ଥରେ ଏହି ଦାନଗୁଡ଼ିକର ସ୍ୱରୂପ, ଭେଦ ଓ ବାକ୍ୟାବଳୀ ବର୍ଣ୍ଣିତ ହୋଇଛି ।

୭ । ପ୍ରତିଷ୍ଠା ପ୍ରକରଣ :

ସାଧାରଣ ଜନତାର ହିତ ଉଦ୍ଦେଶ୍ୟରେ ଯଥାବିଧି ଉତ୍ସର୍ଜନ କାର୍ଯ୍ୟକୁ ପ୍ରତିଷ୍ଠା କୁହାଯାଏ ।୧୬୪। ପ୍ରତିଷ୍ଠା ଓ ଉତ୍ସର୍ଗ କାର୍ଯ୍ୟ ଦାନ ଓ ଯଜ୍ଞ ସହିତ ତୁଳନୀୟ । ପ୍ରତିଷ୍ଠା ବା ଉତ୍ସର୍ଗ କାର୍ଯ୍ୟ ଦ୍ୱାରା ବ୍ୟକ୍ତିବିଶେଷ ସଂସାରବନ୍ଧନରୁ ମୁକ୍ତିଲାଭ କରିଥାଏ ।୧୬୫। ବେଦ, ବେଦାଙ୍ଗ, ସ୍ମୃତି ଓ ପୁରାଣରେ ପ୍ରତିଷ୍ଠା ବିଧିବିଧାନର ବହୁଳ ଉଲ୍ଲେଖ ଥିବାରୁ ଦାନ ଓ ଯଜ୍ଞ ଅପେକ୍ଷା ଏହି କାର୍ଯ୍ୟ ପ୍ରତି ଭାରତୀୟ ଜନସାଧାରଣଙ୍କର ବିଶେଷ ଆଗ୍ରହ ଥିବାର ଜଣାଯାଏ ।୧୬୬। ସଂକଳ୍ପ, ହୋମ, ଉତ୍ସର୍ଗ, ଦକ୍ଷିଣାଦାନ, ବ୍ରାହ୍ମଣ-ଭୋଜନାଦି ଆନୁଷଙ୍ଗିକ କର୍ମଦ୍ୱାରା ପ୍ରତିଷ୍ଠାବିଧି ପାଳିତ ହୁଏ ।

ଜଳାଶୟ ପ୍ରତିଷ୍ଠା ଓ ବୃକ୍ଷରୋପଣ କାର୍ଯ୍ୟକୁ ଭାରତରେ ଯୁଗ-ଯୁଗ ଧରି ଉତ୍ସାହିତ କରାଯାଇଛି । କୂପ, ବାପୀ, ପୁଷ୍କରିଣୀ ଓ ତଡ଼ାଗରୂପେ ଜଳାଶୟ ଚତୁର୍ବିଧ । ବୃକ୍ଷ, ଲତା, ବଲ୍ଲୀ, ଗୁଳ୍ମ, ତୃଷାର ଓ ଘାସରୂପେ ସମଗ୍ର ବୃକ୍ଷଶ୍ରେଣୀ ଛ' ଭାଗରେ ବିଭକ୍ତ । ନିଜେ ରୋପଣ କରିଥିବା ବୃକ୍ଷକୁ ପୁତ୍ରବତ୍ ପାଳନ କରିବାକୁ ପରାମର୍ଶ ଦିଆଯାଇଛି । ୧୬୭ । ଅଶ୍ୱତ୍ଥ, ଅଶୋକ, ତେନ୍ତୁଳି, ଡାଳିମ୍ବ ଓ ଅନ୍ୟାନ୍ୟ ବୃକ୍ଷରୋପୟିତା ଯଥାକ୍ରମେ ଧନ, ସୁଖ, ଦୀର୍ଘଜୀବନ, ସ୍ତ୍ରୀ ଇତ୍ୟାଦି ଲାଭ କରିଥାନ୍ତି ।୧୬୮। ଚେଣ୍ଡି ଦଶ ପୁତ୍ର ଅପେକ୍ଷା ଏକ ବୃକ୍ଷରୋପଣକୁ

---

୧୬୪ । ପ୍ରତିଷ୍ଠାପଦଂ ସବିଧିକୋତ୍ସର୍ଜନମିତ୍ୟର୍ଥଃ ॥ (ଦାନକ୍ରିୟା କୌମୁଦୀ—ପୃ-୧୬୬)

୧୬୫ । ଇଷ୍ଟାପୂର୍ତ୍ତୌ ସ୍ମୃତୌ ଧର୍ମୌ ଶ୍ରୁତୌ ତୌ ଶିଷ୍ଟସମ୍ମତୌ ।
ପ୍ରତିଷ୍ଠାଦ୍ୟଂ ତୟୋଃ ପୂର୍ତ୍ତମିଷ୍ଟଂ ଯଜ୍ଞାଦି ଲକ୍ଷଣମ୍ ॥
ଭୁକ୍ତିମୁକ୍ତିପ୍ରଦଂ ପୂର୍ତ୍ତମିଷ୍ଟଂ ଭୋଗାର୍ଥ ସାଧନମ୍ ॥ (କୃତ୍ୟରତ୍ନାକର—ପୃ-୧୦)

୧୬୬ । History of Dh. Vol-II, Part-II, P-890-892.

୧୬୭ । ମହାଭାରତ-ଅନୁଶାସନ ପର୍ବ—୫୮, ୩୦-୩୧ ।

୧୬୮ । ହେମାଦ୍ରି-ଦାନକାଣ୍ଡ—୧୦୩୦-୧୦୩୧ ।

ଅଧିକ ଶ୍ରେୟସ୍କର କାର୍ଯ୍ୟରୂପେ ବର୍ଣ୍ଣନା କରାଯାଇଛି ।୧୫୯। ଅଶ୍ୱତ୍ଥ, ଉଦୁମ୍ବର, ପ୍ଲକ୍ଷ, ଚୂତ, ନ୍ୟଗ୍ରୋଧ ବୃକ୍ଷର ପତ୍ର ସର୍ବ କାର୍ଯ୍ୟରେ ଶୁଭକର ।୧୬୦। ପ୍ରତିଦିନ ଆମ୍ରଗଛ ମୂଳରେ ପାଣି ଦେଲେ ପିତୃଗଣ ସନ୍ତୁଷ୍ଟ ହୁଅନ୍ତି ।୧୬୧। ପୁତ୍ର କାମନା କରୁଥିବା ସ୍ତ୍ରୀଲୋକ ଅଶ୍ୱତ୍ଥାଦି ବୃକ୍ଷ-ପୂଜା କରନ୍ତି ।୧୬୨। ଭବିଷ୍ୟ ପୁରାଣ ଅନୁସାରେ ଏକ ଅଶ୍ୱତ୍ଥ, ପିଚୁମର୍ଦ୍ଦ ବା ନ୍ୟଗ୍ରୋଧ ବା ଦଶ ତେନ୍ତୁଳି ବା ତିନୋଟି ବିଲ୍ୱ ବା ଆମଳକ ବା ପାଞ୍ଚଟି ଆମ୍ରବୃକ୍ଷ ରୋପିସ୍ଥିତା କେବେହେଲେ ନରକଗାମୀ ହୁଏ ନାହିଁ ।୧୬୩। କୃଷି ଓ ଯଜ୍ଞ କାର୍ଯ୍ୟ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ପାଇଁ ପୁଷ୍ପିତ ବା ଫଳିତ ବୃକ୍ଷକୁ କେହି ନଷ୍ଟ କରିପାରିବେ ନାହିଁ ।୧୬୪। ସେ ଦୃଷ୍ଟିରୁ ସ୍ମୃତି ଓ ପୁରାଣ ସାହିତ୍ୟରେ ବୃକ୍ଷରୋପଣ, ଉଦ୍ୟାନ ନିର୍ମାଣ ଓ ସେଗୁଡ଼ିକ ଜନହିତାର୍ଥେ ଉତ୍ସର୍ଗ କରିବା କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରାଯାଇଛି ।୧୬୫।

ବୃକ୍ଷରୋପଣ ପରି ମନ୍ଦିର ଓ ପ୍ରାସାଦ ନିର୍ମାଣ, କୂପ, ପୁଷ୍କରିଣୀ ପ୍ରଭୃତିର ଖନନ ଓ ସେଗୁଡ଼ିକ ସାଧାରଣ ଉଦ୍ଦେଶ୍ୟରେ ଉତ୍ସର୍ଜନ କରିବା କାର୍ଯ୍ୟ ପୂର୍ତ୍ତଧର୍ମର ଅନ୍ତର୍ଗତ । ସ୍ତ୍ରୀ ଓ ଶୂଦ୍ର ଲୋକେ 'ଇଷ୍ଟା ପୂର୍ତ୍ତ' ମଧ୍ୟରୁ ଇଷ୍ଟଧର୍ମ ଓ ବୈଦିକ ଯଜ୍ଞାଦି କାର୍ଯ୍ୟ କରିବା ପାଇଁ ସମର୍ଥ ହୁଅନ୍ତି । ମାତ୍ର ସେମାନେ ପୂର୍ତ୍ତଧର୍ମ ପାଳନ କରିବେ ବୋଲି ସ୍ମୃତିଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଛି ।୧୬୬। ଶ୍ରୁତି ଓ ସୂତ୍ର ସାହିତ୍ୟରେ ପ୍ରପା (ଜଳଛତ୍ର), ପୁଷ୍କରିଣୀ, କୂପାଦି ଖନନର ଉଲ୍ଲେଖ ଅଛି ।୧୬୭। ମହାକବି ବାଣ ମଧ୍ୟ ସ୍ମୃତି-ବିଧାନ ଅନୁଯାୟୀ ସର୍ବସାଧାରଣଙ୍କ ବ୍ୟବହାର ନିମିତ୍ତ ସଭାଗୃହ, ପାନ୍ଥଶାଳା, କୂପ, ପ୍ରପା, ଉଦ୍ୟାନ, ମନ୍ଦିର, ସେତୁ ଓ ଜଳଯନ୍ତ୍ର

---

୧୫୯ । ମତ୍ସ୍ୟ ପୁରାଣ—୧୫୪, ୫୧୨ ।

୧୬୦ । ଅଶ୍ୱତ୍ଥୋଦୁମ୍ବର-ପ୍ଲକ୍ଷଚୂତ-ନ୍ୟଗ୍ରୋଧ-ପଲ୍ଲବା ।
ପଞ୍ଚଭଙ୍ଗା ଇତି ପ୍ରୋକ୍ତାଃ ସର୍ବକର୍ମସୁ ଶୋଭନାଃ ॥ (ବ୍ରତଖଣ୍ଡ—ପୃ-୪୭)

୧୬୧ । ଆମ୍ରାଶ୍ଚ ସିକ୍ତାଃ ପିତରଶ୍ଚ ପ୍ରୀଣିତାଃ ॥ (ମହାଭାଷ୍ୟ-୧ମ ଭାଗ—ପୃ-୧୪)

୧୬୨ । ଅଶ୍ୱତ୍ଥ ପ୍ରଭୃତୀନୁପପାଦିତ ପୂଜାନ୍ ମହାବନସ୍ପତୀନ୍ କୃତ ପ୍ରଦକ୍ଷିଣା ବବନ୍ଦେ ॥
(କାଦମ୍ବରୀ—ପୃ-୨୦୦-୨୦୧)

୧୬୩ । ଅଶ୍ୱତ୍ଥମେକଂ ପିଚୁମର୍ଦ୍ଦମେକଂ ନ୍ୟଗ୍ରୋଧମେକଂ ଦଶଚିଞ୍ଚିଣୀକମ୍ ।
କପିତ୍ଥବିଲ୍ୱାମଲକତ୍ରୟଂ ଚ ପଞ୍ଚାମ୍ରବାପୀ ନରକଂ ନ ପଶ୍ୟେତ୍ ॥
(ଉତ୍ସର୍ଗ ମୟୂଖ—ପୃ-୧୭)

୧୬୪ । ବଶିଷ୍ଠ ଧର୍ମସୂତ୍ର—୧୯, ୧୧, ୧୨ ଓ ବିଷ୍ଣୁ ଧର୍ମସୂତ୍ର—୫୧, ୬୩ ।

୧୬୫ । History of Dh. Vol-II, Part-II, P-895-896.

୧୬୬ । ଯାଜ୍ଞବଲ୍କ୍ୟ-ମିତାକ୍ଷରା—୨, ୧୧୪ ।

୧୬୭ । History of Dh. Vol-II, Part-II, P—890.

ପ୍ରତିଷ୍ଠା ଅର୍ଥାତ୍ ପାଇପ୍ ଦ୍ୱାରା ପାନୀୟ ଜଳଯୋଗାଣ ପ୍ରଭୃତି କାର୍ଯ୍ୟକୁ ପୂର୍ତ୍ତ କାର୍ଯ୍ୟରୂପେ ବର୍ଣ୍ଣନା କରିଛନ୍ତି ।୧୬୮।

ଗୃହ୍ୟ ଓ ଧର୍ମ ସୂତ୍ରରେ ଦେବପ୍ରତିଷ୍ଠା ବିଷୟରେ କୌଣସି ଉଲ୍ଲେଖ ନଥିଲେ ମଧ୍ୟ ପୁରାଣ ସାହିତ୍ୟରେ ବିଷ୍ଣୁ ପ୍ରତିମା, ଶିବ ପ୍ରତିମା ଓ ଲିଙ୍ଗ ପ୍ରତିଷ୍ଠା ବିଷୟରେ ସ୍ୱତନ୍ତ୍ର ଆଲୋଚନା କରାଯାଇଛି । ଗୃହସ୍ଥର ଗୃହରେ ଓ ମନ୍ଦିରରେ ଦେବ ପ୍ରତିଷ୍ଠା କରାଯାଏ । ଏ ଉଭୟ ମଧ୍ୟରେ ମନ୍ଦିରରେ ଦେବପ୍ରତିଷ୍ଠାକୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି । ମନ୍ଦିରରେ ଚଳାର୍ଚ୍ଚା ଓ ସ୍ଥିରାର୍ଚ୍ଚା ଦୁଇ ପ୍ରକାର ମୂର୍ତ୍ତି ମଧ୍ୟରୁ କୌଣସି ଏକପ୍ରକାର ମୂର୍ତ୍ତି ପ୍ରତିଷ୍ଠା କରାଯାଇଥାଏ । ମନ୍ଦିର ଭଳି ମଠ ମଧ୍ୟ ସର୍ବସାଧାରଣଙ୍କ ମଙ୍ଗଳ ନିମିତ୍ତ ପ୍ରତିଷ୍ଠିତ ହୁଏ । ମନ୍ଦିର ଜନତାର ପ୍ରାର୍ଥନା ଗୃହ, ଧର୍ମସଭା, ପୁରାଣପାଠ, କୀର୍ତ୍ତନ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥାଏ । କିନ୍ତୁ ମଠରେ ଏକ ନିର୍ଦ୍ଦିଷ୍ଟ ଧର୍ମ ବା ଦର୍ଶନମତବାଦର ବିଦ୍ୟାର୍ଥୀଙ୍କୁ ଗ୍ରାସାଚ୍ଛାଦନ ଓ ଶିକ୍ଷା ପ୍ରଦାନ କରାଯାଏ । ତଥାପି ମଠ ଓ ମନ୍ଦିର ପରସ୍ପରର ପରିପୂରକ ଅନୁଷ୍ଠାନଭାବେ ଗୃହୀତ ।୧୬୯। ଏତଦ୍‌ବ୍ୟତୀତ ମନ୍ଦିର, କୂପ, ପୁଷ୍କରିଣୀ ପ୍ରଭୃତିର ଜୀର୍ଣ୍ଣୋଦ୍ଧାର ଧର୍ମଶାଳା ନିର୍ମାଣାଦି ନାନାବିଧ ପୂର୍ତ୍ତିବିଭାଗୀୟ କାର୍ଯ୍ୟ ପ୍ରତିଷ୍ଠାବିଧାନର ଅନ୍ତର୍ଗତ ।

ଓଡ଼ିଶାର ପ୍ରତିଷ୍ଠା ସମ୍ପର୍କିତ ସ୍ମୃତିଗ୍ରନ୍ଥଗୁଡ଼ିକରେ ଉପର୍ଯ୍ୟୁକ୍ତ ବିବିଧ ପ୍ରତିଷ୍ଠା କାର୍ଯ୍ୟ ଓ ତାର ବିଧାନମାନ ପର୍ଯ୍ୟାଲୋଚିତ ହୋଇଅଛି । ଓଡ଼ିଶାରେ ବିଭିନ୍ନ ପ୍ରକାର ପ୍ରତିଷ୍ଠା ମଧ୍ୟରେ ମନ୍ଦିର ପ୍ରତିଷ୍ଠା, ଜଳାଶୟ ଓ କୂପ ପ୍ରତିଷ୍ଠା ସମ୍ପର୍କରେ ବହୁ ଅଭିଲେଖ ଥିବାର ଦେଖାଯାଏ ।୧୭୦। ତତ୍କାଳୀନ ସମାଜରେ ମନ୍ଦିର ନିର୍ମାଣ ଓ ଜଳାଶୟ, କୂପାଦି ଖନନ କରି ପ୍ରତିଷ୍ଠା ନ କଲେ ସେଗୁଡ଼ିକ ଲୋକସମାଜଦ୍ୱାରା ସ୍ୱୀକୃତ କିମ୍ବା ବ୍ୟବହାରଯୋଗ୍ୟ ହେଉ ନଥିଲା ।

ଓଡ଼ିଶାର ସ୍ମୃତିଗ୍ରନ୍ଥ ମଧ୍ୟରେ ମାଗୁଣି ମିଶ୍ରଙ୍କ 'ଜଳାଶ୍ରୟ ପ୍ରତିଷ୍ଠା'ରେ ଜଳାଶୟ, 'ଶୈବ ପଦ୍ଧତି' ଗ୍ରନ୍ଥରେ ହୟଶୀର୍ଷୋକ୍ତ ଓ ପଞ୍ଚରାତ୍ରୋକ୍ତ ଶିବ ପ୍ରସାଦ ପ୍ରତିଷ୍ଠା ଓ 'ପ୍ରତିଷ୍ଠା ପଦ୍ଧତି'ରେ ତନ୍ତ୍ରସାର ସଂହିତୋକ୍ତ ଜଳାଶୟ ଓ ପ୍ରାସାଦ ପ୍ରତିଷ୍ଠାଦି ବିଷୟ ଆଲୋଚିତ ହୋଇଛି । ନରସିଂହ ବାଜପେୟୀଙ୍କ 'ପ୍ରତିଷ୍ଠା ପ୍ରଦୀପ'ରେ ଦେବ, ପ୍ରସାଦ, ଧ୍ୱଜ ପ୍ରତିଷ୍ଠା ଓ ଚନ୍ଦ୍ରଶେଖର ମିଶ୍ରଙ୍କ 'ପ୍ରତିଷ୍ଠା ସାର ସଂଗ୍ରହ'ରେ ଗୌରୀତନ୍ତ୍ରୋକ୍ତ ରାଧା ପ୍ରତିମା ପ୍ରତିଷ୍ଠା,

---

୧୬୮ । ସ୍ମୃତି ଶାସ୍ତ୍ରେଷୈବ ସଭାବସଥ କୂପ ପ୍ରପାରାମସୁରସଦନେଷୁ ଯନ୍ତ୍ର ପ୍ରବର୍ତ୍ତିକେନ ॥
(କାଦମ୍ବରୀ—ପୃ-୧୫୭)

୧୬୯ । History of Dh. Vol-II, Part-II, P.-907.

୧୭୦ । (a) Insoriptions of Orissa-Lingaraja—Megheswara Vol.-III, Part-II, No. 255. A. and 279.

(b) J. A. S B.-1883—P-233-234.

ପିତାମହୋକ୍ତ ଧ୍ୱଜ-ଚକ୍ର-ବୃକ୍ଷ ପ୍ରତିମା ପ୍ରତିଷ୍ଠା, ପିଙ୍ଗଳ ଭୈରବୋକ୍ତ ଶିବ ପ୍ରାସାଦ ପ୍ରତିଷ୍ଠା ବିଧିର ଉଲ୍ଲେଖ ଅଛି ।୧୭୧।

୭ । ପ୍ରାୟଶ୍ଚିତ୍ତ ପ୍ରକରଣ :

ବୈଦିକ ସାହିତ୍ୟରେ ପ୍ରାୟଶ୍ଚିତ୍ତି ଓ ପ୍ରାୟଶ୍ଚିତ୍ତ ଶବ୍ଦ ଏକ ଅର୍ଥରେ ବ୍ୟବହୃତ । "ବିଧ୍ୟପରାଧେ ପ୍ରାୟଶ୍ଚିତ୍ତି ବା ପ୍ରାୟଶ୍ଚିତ୍ତମ୍"—ଅର୍ଥାତ୍ ବିଧି ବ୍ୟତିକ୍ରମରେ ପ୍ରାୟଶ୍ଚିତ୍ତ ଅନିବାର୍ଯ୍ୟ ବୋଲି ଧର୍ମସୂତ୍ର ସାହିତ୍ୟରେ ଉଲ୍ଲିଖିତ ଅଛି ।୧୭୨। ନିବନ୍ଧଗ୍ରନ୍ଥକରେ 'ପ୍ରାୟଃ' ଅର୍ଥାତ୍ ତପ ଓ 'ଚିତ୍ତ' ଅର୍ଥାତ୍ ସଙ୍କଳ୍ପ ବା ଦୃଢ଼ ବିଶ୍ୱାସରୂପେ 'ପ୍ରାୟଶ୍ଚିତ୍ତ' ଶବ୍ଦର ଅର୍ଥ କରାଯାଇଛି ।୧୭୩। ଯାଜ୍ଞବଲ୍‌କ୍ୟ-ସ୍ମୃତିର ବ୍ୟାଖ୍ୟାକାର ବାଲମ୍ଭଟ୍ଟ ପ୍ରାୟଶ୍ଚିତ୍ତର ଅର୍ଥ ପାପଶୋଧନ, ହେମାଦ୍ରି ବିନାଶ, ସନ୍ଧାନ ବା ନଷ୍ଟର ପୂର୍ତ୍ତି, ପରାଶର ମାଧବ ପଶ୍ଚାତ୍ତାପ, ବେଦଭାଷ୍ୟକାର ସାୟଣ "ବିହିତ ଧର୍ମାକରଣ ଜ୍ଞାନଂ" ପ୍ରଭୃତି ଅର୍ଥ କରିଛନ୍ତି । ଭାବୀ ଦୁଃଖୋତ୍ପାଦକ ଅଧର୍ମବିନାଶକାରୀ କାର୍ଯ୍ୟକୁ ମଧ୍ୟ ପ୍ରାୟଶ୍ଚିତ୍ତ କୁହାଯାଏ ।୧୭୪। ଧର୍ମଶାସ୍ତ୍ରକାରମାନେ ନିତ୍ୟ, ନୈମିତ୍ତିକ ଓ କାମ୍ୟ କର୍ମ ସହିତ ପ୍ରାୟଶ୍ଚିତ୍ତର ଘନିଷ୍ଠ ସମ୍ପର୍କକୁ ସ୍ୱୀକାର କରିଛନ୍ତି ।୧୭୫।

ଋଗ୍‌ବେଦରେ ଥିବା ଅନୃତ, ଅଘ, ଏନସ୍, ଅଂହସ୍, ଦୁରିତ, ଦୁଷ୍କୃତ, ବୃଜନ ଆଦି ଶବ୍ଦାବଳୀରୁ ସେ କାଳର ପାପ ଓ ଅପରାଧର ଭାବନା ପ୍ରକାଶ ପାଇଥାଏ । ଉପନିଷଦ୍ ଅନୁସାରେ ତ୍ରିଗୁଣ ମଧ୍ୟରୁ ରଜୋଗୁଣ ହିଁ ଦୁଷ୍କୃତ୍ୟର କାରଣ । ମହାଭାରତରେ କାମ-କ୍ରୋଧାଦି ସପ୍ତଦଶ ବିକୃତି ମାନବର ଶତ୍ରୁଭାବେ ଅଭିହିତ ।୧୭୬। ସୂତ୍ର ସାହିତ୍ୟରେ ପାପର ସଂଖ୍ୟା ଓ ଶ୍ରେଣୀ ବିଭାଗ ବିଷୟରେ ନାନା ମତ ପ୍ରଖ୍ୟାପିତ ହୋଇଛି । ଆପସ୍ତମ୍ବଙ୍କ ଅନୁସାରେ ପତନୀୟ ଓ ଅଶୁଚିକର ଭାବେ ପାପ ଦ୍ୱିବିଧ । ସ୍ତେୟ, ଅଭିଶପ୍ତ, ବୈଦିକ ଜ୍ଞାନଭ୍ରଷ୍ଟ, ଭ୍ରୂଣହତ୍ୟାକାରୀ, ବ୍ୟଭିଚାରୀ, ସୁରାପାୟୀ, ଅସତ୍‌ସଂସର୍ଗୀ, ଗୁରୁପତ୍ନୀ-ହରଣକାରୀ ଆଦି ପତନୀୟ ପାପଭାଗୀ ଓ ନୀଚ ଜାତୀୟା ସ୍ତ୍ରୀସମ୍ଭୋଗକାରୀ, ବର୍ଜିତ ମାଂସଭକ୍ଷକ ଆଦି ଅଶୁଚିକର ପାପଗ୍ରସ୍ତ ହୋଇଥାନ୍ତି । ୧୭୭। ବଶିଷ୍ଠ ପାପୀମାନଙ୍କୁ ଏନସ୍ୱୀ, ମହାପାତକୀ ଓ ଉପପାତକୀ ରୂପେ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ତଦନୁଯାୟୀ ସାଧାରଣ

୧୭୧ । OSM. Mss. Dh. No.—78, 57, 128. 144.

୧୭୨ । ଧର୍ମଶାସ୍ତ୍ର କା ଇତିହାସ-ଓୟ ଭାଗ—ପୃ-୧୦୪୩ ।

୧୭୩ । ପ୍ରାୟୋ ନାମ ତପଃ ପ୍ରୋକ୍ତଂ ଚିତ୍ତଂ ନିଶ୍ଚୟ ଉଚ୍ୟତେ ।
ତପୋ ନିଶ୍ଚୟ ସଂଯୁକ୍ତଂ ପ୍ରାୟଶ୍ଚିତ୍ତମିତି ସ୍ମୃତମ୍ ॥ (ପ୍ରାୟଶ୍ଚିତ୍ତ ମନୋହର—ପୃ-୨୨)

୧୭୪ । ପ୍ରାୟଶ୍ଚିତ୍ତ ମନୋହର-ପ୍ରଥମ ମୁଦ୍ରଣ-୧୯୧୫—ପୃ-୧ ।

୧୭୫ । ଧର୍ମଶାସ୍ତ୍ରକା ଇତିହାସ-ଓୟଭାଗ-ପୃ—୧୦୪୫ ।

୧୭୬ । History of Dh. Vol.-IV, P–15-17.

୧୭୭ । ଆପସ୍ତମ୍ବ ଧର୍ମସୂତ୍ର—୧ ୭ ୨୨-୧୮ ।

ପାପୀ ଏନସ୍ୱୀ, ଗୁରୁତଳ୍ପଗ, ସୁରାପାୟୀ, ଭ୍ରୂଣହା, ସ୍ୱର୍ଣ୍ଣାପହାରୀ ଓ ପତିତସଂସର୍ଗୀ ମହାପାତକୀ ଏବଂ ବେଦନିନ୍ଦକ, ଗୁରୁ ଅପରାଧୀ ଓ ନାସ୍ତିକ ଉପପାତକୀ ରୂପେ ଅଭିହିତ ।୧୭୮।
ବୌଧାୟନଙ୍କ ମତରେ ପତନୀୟ, ଉପପାତକ ଓ ଅଶୁଚିକର ନାମରେ ପାପ ତିନି ପ୍ରକାର । ତନ୍ମଧ୍ୟରେ ସମୁଦ୍ରଯାତ୍ରା, ବ୍ରାହ୍ମଣ-ସମ୍ପତ୍ତିହରଣ, ମିଥ୍ୟା ସାକ୍ଷ୍ୟ, ସର୍ପପଣ୍ୟ ବ୍ୟବସାୟ, ଶୂଦ୍ରସେବା, ଶୂଦ୍ରାଭିଜନନ, ଅଗମ୍ୟାଗମନ, ଭେଷଜ ବୃତ୍ତି, ଗ୍ରାମଯାଜନ, ରଙ୍ଗୋପଜୀବନ, ନାଟ୍ୟାଚାର୍ଯ୍ୟତା, ଗୋ-ମହିଷାଦି ରକ୍ଷଣ ଓ କନ୍ୟାଦୂଷଣକୁ ପତନୀୟ ପାପ ଏବଂ ଦ୍ୟୂତ, ଅଭିଚାର, ଆହିତାଗ୍ନି, ଭିକ୍ଷାବୃତ୍ତି, ଫଳିତ ଜ୍ୟୋତିଷ ବୃତ୍ତିକୁ ଅଶୁଚିକର ପାପରୂପେ ବର୍ଣ୍ଣନା କରିଛନ୍ତି ।୧୭୯।

ମହର୍ଷି କାତ୍ୟାୟନ ପାପରାଶିକୁ ମହାପାପ, ଅତିପାପ, ପାତକ, ପ୍ରାସଙ୍ଗିକ ପାପ ଓ ଉପପାତକ ରୂପେ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି । ବୃଦ୍ଧ ହାରୀତ ମଧ୍ୟ ମହାପାପ ପାତକ, ଅନୁପାତକ, ଉପପାପ ଓ ପ୍ରକୀର୍ଣ୍ଣକ ନାମରେ ପାଞ୍ଚ ପ୍ରକାର, ବିଷ୍ଣୁଧର୍ମସୂତ୍ର ଅତିପାତକ, ମହାପାତକ, ଅନୁପାତକ, ଉପପାତକ, ଜାତିଭ୍ରଂଶକର, ସଙ୍କରୀକରଣ, ଅପାତ୍ରୀକରଣ, ମଳାବହ ଓ ପ୍ରକୀର୍ଣ୍ଣକ ନାମରେ ନଅ ପ୍ରକାର ପାପର ଉଲ୍ଲେଖ କରିଛନ୍ତି । କିନ୍ତୁ ଛାନ୍ଦୋଗ୍ୟ ଉପନିଷଦ୍ କାଳଠାରୁ ବ୍ରହ୍ମହତ୍ୟା, ସୁରାପାନ, ସ୍ତେୟ, ଗୁର୍ବଙ୍ଗନାଗମ ଓ ତାଦୃଶ ପାପୀ ସହିତ ସମ୍ପର୍କକୁ ନେଇ ମୁଖ୍ୟତଃ ପାଞ୍ଚପ୍ରକାର ମହାପାତକ ସ୍ୱୀକୃତ ହୋଇଆସୁଛି ।୧୮୦। ମହାପାତକଗୁଡ଼ିକର ଆନୁଷଙ୍ଗିକ ପାଞ୍ଚଟି କାରଣ ମଧ୍ୟରେ କର୍ତ୍ତା, ପ୍ରଯୋଜକ, ଅନୁମନ୍ତା, ଅନୁଗ୍ରାହକ ଓ ନିମିତ୍ତ ହେଉଛି ପ୍ରଧାନ ।୧୮୧। ଏହାର ପ୍ରାୟଶ୍ଚିତ୍ତ ସ୍ୱରୂପ ଉଚ୍ଚ ବର୍ଣ୍ଣୀୟଙ୍କୁ ଚାନ୍ଦ୍ରାୟଣ ବା ପରାକ ଓ ଶୂଦ୍ରକୁ ପ୍ରାଜାପତ୍ୟ ବ୍ରତ କରିବାକୁ ପଡ଼ୁଥିଲା ।

ଉପପାତକରସଂଖ୍ୟା ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ମୃତିରେ ଭିନ୍ନ ଭିନ୍ନ ଭାବେ ନିରୂପିତ ହୋଇଛି । ଉପପାତକ ସଂଖ୍ୟା ବଶିଷ୍ଠଙ୍କ ମତରେ ଅଗ୍ନିହୋତ୍ର, ତ୍ୟାଗ, ନାସ୍ତିକତା, ନାସ୍ତିକଠାରୁ ଜୀବିକାର୍ଜନ, ଗୁରୁନିନ୍ଦା, ସୋମଲତା ବିକ୍ରୟ ରୂପେ ପାଞ୍ଚପ୍ରକାର, ଶାତାତପ ଆଠ ପ୍ରକାର, ଶଙ୍ଖ ଅଠର, ବିଷ୍ଣୁଧର୍ମସୂତ୍ର ସତଚାଳିଶ, ମନୁ ଅଣତିରିଶ ଓ ଯାଜ୍ଞବଲ୍କ୍ୟ ଏକାବନ ପ୍ରକାର ଉପପାତକର ପର୍ଯ୍ୟାଲୋଚନା କରିଛନ୍ତି ।୧୮୨।

ବୃହସ୍ପତି ଆଦି ସ୍ମୃତିକାର କାମକୃତ ବା ଜ୍ଞାନକୃତ ଓ ଅକାମକୃତ ବା ଅଜ୍ଞାନକୃତ ଭାବେ ପାପକୁ ଦୁଇଭାଗରେ ବିଭକ୍ତ କରିଛନ୍ତି ।୧୮୩। ଅଜ୍ଞାନକୃତ ପାପ ନିମିତ୍ତ ସାଧାରଣ ପ୍ରାୟଶ୍ଚିତ୍ତ

---

୧୭୮ । ବଶିଷ୍ଠ ଧର୍ମସୂତ୍ର—୧-୧୯-୨୩ ।

୧୭୯ । ବୌଧାୟନ ଧର୍ମସୂତ୍ର—୨-୧-୬୦-୬୧ ।

୧୮୦ । History of Dh. Vol IV, P-15-17.

୧୮୧ । ପ୍ରାୟଶ୍ଚିତ୍ତ ମନୋହର—ପୃ-୪ ।

୧୮୨ । (କ) ବଶିଷ୍ଠ ସ୍ମୃତି—୧, ୨, ୩, (ଖ) ଯାଜ୍ଞବଲ୍କ୍ୟ ସ୍ମୃତି—୩, ୨୨୯-୨୪୨ ।
(ଗ) ବିଷ୍ଣୁଧର୍ମସୂତ୍ର---ଅଧ୍ୟାୟ ୩୭, (ଘ) ମନୁସ୍ମୃତି—୧୧-୫୯-୬୭ ।

୧୮୩ । ପ୍ରାୟଶ୍ଚିତ୍ତ ମନୋହର—ପୃ-୧ ।

ଓ ଜ୍ଞାନକୃତ ପାପ ନିମିତ୍ତ କଠୋର ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ଦିଆଯାଇଅଛି । ଜ୍ଞାନକୃତ ପାପ ଦୂର ହୋଇ ନପାରେ ବୋଲି ବୈଦିକ ମତବାଦ ଥିଲେ ମଧ୍ୟ ମହର୍ଷି ମନୁ ପ୍ରାୟଶ୍ଚିତ୍ତକୁ ପାପମୁକ୍ତିର ଉପାୟ ରୂପେ ଉଲ୍ଲେଖ କରିଛନ୍ତି । ଯାଜ୍ଞବଲ୍କ୍ୟଙ୍କ ଅନୁସାରେ ପ୍ରାୟଶ୍ଚିତ୍ତ ଦ୍ୱାରା ଜ୍ଞାନକୃତ ପାପରୁ ମୁକ୍ତି ନ ମିଳିଲେ ମଧ୍ୟ ବ୍ୟକ୍ତିବିଶେଷ ସମାଜରେ ଅନ୍ୟ ଲୋକ ସମ୍ପର୍କରେ ଆସିବାକୁ ସମର୍ଥ ହୁଏ । ତେଣୁ ପ୍ରାୟଶ୍ଚିତ୍ତ ଦ୍ୱାରା ପାପୀର ମନକୁ ସନ୍ତୋଷ ମିଳିଥାଏ । ସମାଜରେ ତା ପ୍ରତି ଲୋକବିରୋଧ ରହେ ନାହିଁ । ସେଥିପାଇଁ ସ୍ମୃତିକାରମାନେ ସମାଜର ସୁପରିଚାଳନା ତଥା ବ୍ୟକ୍ତିବିଶେଷର ପାପମୁକ୍ତି ନିମିତ୍ତ ନାନାପ୍ରକାର ପ୍ରାୟଶ୍ଚିତ୍ତ ବ୍ୟବସ୍ଥାର ଉଲ୍ଲେଖ କରିଛନ୍ତି ।

କିନ୍ତୁ ପ୍ରାୟଶ୍ଚିତ୍ତ ଦ୍ୱାରା ପାପୀ ପାପମୁକ୍ତ ହୁଏ ବୋଲି କିପରି ସ୍ୱୀକାର କରାଯିବ ? ଉତ୍ତର ସ୍ୱରୂପ ଏତିକି କୁହାଯାଇପାରେ ଯେ କେଉଁ ପାପ, ମହାପାତକ ବା ଉପପାତକ ପାପ ନୁହେଁ—ସ୍ମୃତିଶାସ୍ତ୍ରରେ ବର୍ଣ୍ଣିତ ହୋଇଛି । ତେଣୁ ସ୍ମୃତିଶାସ୍ତ୍ରର ଉଲ୍ଲେଖ ଅନୁସାରେ ଯଦି ସ୍ୱକୃତ ପାପ ବା ଅପରାଧକୁ ସ୍ୱୀକାର କରାଯିବ, ତେବେ ପାପମୁକ୍ତି ନିମିତ୍ତ ତଦୀୟ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ମଧ୍ୟ ବିଶ୍ୱାସର ସହିତ ଗ୍ରହଣୀୟ ।୮୪।

ଅତି ପ୍ରାଚୀନ କାଳରୁ ରାଜପରିଷଦ୍ ପାପୀ ବା ଅପରାଧୀର ଦଣ୍ଡବିଧାନ ବ୍ୟବସ୍ଥା ନିର୍ଦ୍ଧାରଣ କରୁଥିଲେ, ରାଜା ଦଣ୍ଡ ଦେଉଥିଲେ, ପାପୀ ପ୍ରାୟଶ୍ଚିତ୍ତ ସମ୍ପାଦନ କରୁଥିଲି ଓ ରାଜକର୍ମଚାରୀ-ମାନେ ଏ ସମସ୍ତ ଦେଖାଶୁଣା କରୁଥିଲେ ।୮୫। ପୈଠୀନସିଙ୍କ ଅନୁସାରେ ପ୍ରାୟଶ୍ଚିତ୍ତ ଓ ଦଣ୍ଡ ଉଭୟ ରାଜାଙ୍କ ଆଦେଶରେ ସମାହିତ ହେଉଥିଲି ।୮୬। ମନୁ ପ୍ରାୟଶ୍ଚିତ୍ତଲବ୍ଧ ଧନକୁ ଜଳରେ ବିସର୍ଜନ ତଥା ବ୍ରାହ୍ମଣମାନଙ୍କ ମଧ୍ୟରେ ବିତରଣ କରିବାର ବ୍ୟବସ୍ଥା ଦେଇଛନ୍ତି । ଯଦି ନିର୍ଦ୍ଧାରିତ ପ୍ରାୟଶ୍ଚିତ୍ତକୁ ଅପରାଧୀ ଆଚରଣ କରୁ ନଥିଲି, ତେବେ ତାକୁ ବିଭିନ୍ନ ଅପରାଧ ପାଇଁ ନିର୍ଦ୍ଦିଷ୍ଟ ଥିବା ତପ୍ତ ଲୌହ-ଛାପ ଦିଆଯାଉଥିଲି । ମନୁସ୍ମୃତି ଅନୁସାରେ ବ୍ୟଭିଚାରୀ, ସୁରାପାୟୀ ଓ ବ୍ରାହ୍ମଣଘାତୀକୁ ଯଥାକ୍ରମେ ଯୋନି, ଶୌଣ୍ଡିକ ପତାକା ଓ ଶ୍ୱାନଚିହ୍ନ ଦ୍ୱାରା ଚିହ୍ନିତ କରାଯାଉଥିଲି । ପାପୀ ପ୍ରାୟଶ୍ଚିତ୍ତ କଲେ ମଧ୍ୟ ତାକୁ ଅନ୍ୟାନ୍ୟ ଦଣ୍ଡ ଭୋଗ କରିବାକୁ ପଡ଼ୁଥିଲି । ମିଥ୍ୟା ସାକ୍ଷୀ ଦେଉଥିବା ବ୍ୟକ୍ତିର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ ହେଉଥିଲି । କିନ୍ତୁ ଚତୁର୍ବର୍ଣ୍ଣ ମଧ୍ୟରୁ ଅନ୍ୟାନ୍ୟ ବର୍ଣ୍ଣଙ୍କ ତୁଳନାରେ ବ୍ରାହ୍ମଣ ଅପରାଧୀ ସବୁ କ୍ଷେତ୍ରରେ କଠୋର ଦଣ୍ଡରୁ ଅବ୍ୟାହତି ପାଉଥିଲେ ।୮୭।

---

୮୪ । ଧର୍ମଶାସ୍ତ୍ର କା ଇତିହାସ-ତୃତୀୟ ଭାଗ—ପୃ-୧୦୪୮ ।

୮୫ । କୃଚ୍ଛ୍ରାଣାଂ ଦାୟକୋ ରାଜା ନିର୍ଦ୍ଦିଷ୍ଟା ଧର୍ମପାଠକାଃ ।
ଅପରାଧୀ ପ୍ରୟୋକ୍ତା ଚ ରକ୍ଷିତା କୃଚ୍ଛ୍ରପାଳକଃ ॥ (ମଦନପାରିଜାତ—ପୃ-୬୭୭)

୮୬ । ଅକାର୍ଯ୍ୟକାରିଣାମେଷାଂ ପ୍ରାୟଶ୍ଚିତ୍ତଂ ତୁ କଲ୍ପୟେତ୍ ।
ଯଥାଶକ୍ତ୍ୟାନୁରୂପଂ ଚ ଦଣ୍ଡଂ ତେଷାଂ ପ୍ରକଲ୍ପୟେତ୍ ॥ (ଦଣ୍ଡବିବେକ —ପୃ-୭୭)

୮୭ । ଧର୍ମଶାସ୍ତ୍ର କା ଇତିହାସ-ତୃତୀୟ ଭାଗ—ପୃ-୧୦୬୬ ।

ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ଦେବା ପୂର୍ବରୁ ବ୍ୟବସ୍ଥାପକମାନେ ମୁଖ୍ୟତଃ (୧) ଦୋଷ କାମତଃ କି ଅକାମତଃ; (୨) ଦୋଷୀର ଦୋଷାଚରଣ ପ୍ରଥମବାର କି ବହୁବାର; (୩) ଦୋଷର ସମୟ, କାଳ ଓ ସ୍ଥାନ; (୪) ଦୋଷୀର ଜାତି, ଅବସ୍ଥା, ବୟସ, ଯୋଗ୍ୟତା, ବିଦ୍ୟା ଓ ଧନର ସ୍ଥିତି ବିଷୟ ବିଚାର କରୁଥିଲେ । ଏ ପ୍ରସଙ୍ଗରେ କୌଟିଲ୍ୟ, ଗୌତମ, ମନୁ, ଯାଜ୍ଞବଲ୍‌କ୍ୟ, ବିଷ୍ଣୁ, ବଶିଷ୍ଠ, ବୌଧାୟନ ଧର୍ମସୂତ୍ର, ଅଙ୍ଗିରା ପ୍ରଭୃତିରେ ସବିଶେଷ ପର୍ଯ୍ୟାଲୋଚନା କରାଯାଇଛି ।୧୮୮ । ନାରଦଙ୍କ ଦଣ୍ଡବିଧାନ ବ୍ୟବସ୍ଥାରେ ପାପକୁ ସାହସ ଆଖ୍ୟା ଦିଆଯାଇଛି । ସାହସ ଅନୁସାରେ ଅପରାଧୀ ପ୍ରଥମ, ମଧ୍ୟମ ଓ ଉତ୍ତମ ରୂପେ ତିନୋଟି ଶ୍ରେଣୀରେ ବିଭକ୍ତ । ପ୍ରଥମ ଅପରାଧୀଦ୍ୱୟ ରାଜାଙ୍କ ଦ୍ୱାରା ଦଣ୍ଡନୀୟ; କିନ୍ତୁ ଉତ୍ତମ ଅପରାଧୀ ରାଜାଙ୍କ ଦ୍ୱାରା ଦଣ୍ଡିତ ହେଲେ ମଧ୍ୟ ସାଧାରଣରେ ସମ୍ଭାଷଣଯୋଗ୍ୟ ହୁଅନ୍ତି ନାହିଁ । ପରିଷଦ ଦ୍ୱାରା ବ୍ୟବସ୍ଥିତ ପ୍ରାୟଶ୍ଚିତ୍ତ ଆଚରଣ କରୁ ନ ଥିବା ବ୍ୟକ୍ତି ରାଜାଙ୍କ ଦ୍ୱାରା ଦଣ୍ଡିତ ହୋଇଥାନ୍ତି; ଅନ୍ୟଥା ଅପରାଧୀକୁ ଗୌତମ, ମନୁ ଓ ଯାଜ୍ଞବଲ୍‌କ୍ୟଙ୍କ ଅନୁସାରେ 'ଘଟସ୍ଫୋଟ' ଦ୍ୱାରା ଜାତିଚ୍ୟୁତ କରାଯାଉଥିଲା । ମହାପାତକୀ ନିମିତ୍ତ ଅଗ୍ନିରେ ଝାସଦେବା, ଗରମ ଜଳ, ଦୁଧ, ଘିଅ ବା ଗୋମୂତ୍ର ପାନକରିବାର ବ୍ୟବସ୍ଥା ଥିଲା ।

ପ୍ରାୟଶ୍ଚିତ୍ତ-ସାହିତ୍ୟ ଅତ୍ୟନ୍ତ ବିଶାଳ । ଗୌତମ ଧର୍ମସୂତ୍ରର ଅଠେଇଶ ଅଧ୍ୟାୟ ମଧ୍ୟରୁ ଦଶଟି, ବଶିଷ୍ଠ ଧର୍ମସୂତ୍ରର ତିରିଶ ଅଧ୍ୟାୟ ମଧ୍ୟରୁ ନଅଟି, ମନୁସ୍ମୃତିର ଏକାଦଶ ଅଧ୍ୟାୟର ଶହେ ବାଇଶଟି ଶ୍ଳୋକ, ଅଙ୍ଗିର ସ୍ମୃତିର ଶହେ ଅଣଷଠିଟି ଶ୍ଳୋକ, ଅତ୍ରି ସ୍ମୃତିର ଆଠଟି ଅଧ୍ୟାୟରେ କେବଳ ପ୍ରାୟଶ୍ଚିତ୍ତ ସମ୍ବନ୍ଧୀୟ ଆଲୋଚନା ଉଲ୍ଲେଖ କରାଯାଇଛି ।୧୮୯। ତଦ୍‌ବ୍ୟତୀତ ଅଗ୍ନିପୁରାଣ, ଗରୁଡ଼ପୁରାଣ, କୂର୍ମ ଉତ୍ତରାର୍ଦ୍ଧ, ବରାହ ପୁରାଣ, ବ୍ରହ୍ମାଣ୍ଡ-ଉପସଂହାର ପାଦ, ବିଷ୍ଣୁଧର୍ମୋତ୍ତର, ମିତାକ୍ଷରା ଓ ଅପରାର୍କଙ୍କ ଟୀକା, ପରାଶର-ମାଧବୀୟ, ଉତ୍କଳୀୟ ସ୍ମୃତିକାରଙ୍କ ପ୍ରାୟଶ୍ଚିତ୍ତ ମନୋହର, ପ୍ରାୟଶ୍ଚିତ୍ତ ବିଲୋଚନ ଆଦି ଗ୍ରନ୍ଥରେ ପ୍ରାୟଶ୍ଚିତ୍ତର ବିସ୍ତୃତ ଉଲ୍ଲେଖ ରହିଛି ।୧୯୦।

---

୧୮୮ । (କ) ଅର୍ଥଶାସ୍ତ୍ର-୪-୧୦, (ଖ) ଗୌତମ ଧର୍ମସୂତ୍ର-୧୨-୪୮, (ଗ) ମନୁସ୍ମୃତି-୭-୧୬ ଓ ୮-୧୬, (ଘ) ଯାଜ୍ଞବଲ୍‌କ୍ୟ ସ୍ମୃତି-୧-୩୬୮, (ଙ) ବିଷ୍ଣୁସ୍ମୃତି-୫-୧୯୪, (ଚ) ବଶିଷ୍ଠ ୧୯-୯, (ଛ) ବୌଧାୟନ ଧର୍ମସୂତ୍ର-୧-୧-୧୬, (ଜ) ଅଙ୍ଗିରା-ସ୍ମୃତି-୧୪୩ ।

୧୮୯ । (କ) ଗୌତମ ଧର୍ମସୂତ୍ର—୨୦-୨-୯, (ଖ) ମନୁସ୍ମୃତି—୧୧-୧୮୨-୧୮୫, (ଗ) ଯାଜ୍ଞବଲ୍‌କ୍ୟ ସ୍ମୃତି—୩-୨୯୪ ।

୧୯୦ । (କ) ଅଗ୍ନିପୁରାଣ—ଅ: ୧୬୮-୧୭୪, (ଖ) ଗରୁଡ଼ ପୁରାଣ—ଅ: ୫୨, (ଗ) କୂର୍ମ ପୁରାଣ—ଅ : ୩୦-୩୪, (ଘ) ବାରାହ ପୁରାଣ—ଅ: ୧୩୧-୧୩୬, (ଙ) ବ୍ରହ୍ମାଣ୍ଡ ପୁରାଣ ଉପସଂହାର ପାଦ—୯ମ ଅଧ୍ୟାୟ, (ଚ) ବିଷ୍ଣୁଧର୍ମୋତ୍ତର ପୁରାଣ—ଅ: ୨-୩ ।

ପ୍ରାୟଶ୍ଚିତ୍ତ ବ୍ୟବସ୍ଥାରେ (୧) ପରିଷଦ ପାଖକୁ ଯିବା, (୨) ପରିଷଦଦ୍ୱାରା ପ୍ରାୟଶ୍ଚିତ୍ତ-ବ୍ୟବସ୍ଥା ପ୍ରଦାନ, (୩) ପ୍ରାୟଶ୍ଚିତ୍ତ ସମ୍ପାଦନ ତଥା (୪) ପାପୀର ପାପମୁକ୍ତ ଘୋଷଣା—ଏହି ଗୁରୋଟି ସ୍ତର ଥାଏ । ପ୍ରାୟଶ୍ଚିତ୍ତ ବିଧାନରେ ଷୋହଳ ବର୍ଷରୁ କମ୍ ବୟସ୍କ, ଅଶୀବର୍ଷୀୟ ବୃଦ୍ଧ, ସ୍ତ୍ରୀ ଓ ରୁଗ୍ଣ ଅପରାଧୀ ଉପଯୁକ୍ତ ପ୍ରାୟଶ୍ଚିତ୍ତ ବିଧାନର ଅର୍ଦ୍ଧେକ ପାଳନ କରିଥାନ୍ତି ।୧୯୧। ଅଜ୍ଞାନକୃତ ପାପ ଅପେକ୍ଷା ଜ୍ଞାନକୃତ ପାପ ନିମିତ୍ତ ଦ୍ୱିଗୁଣ ପ୍ରାୟଶ୍ଚିତ୍ତ କରାଯାଏ । ଜାତି ଦୃଷ୍ଟିରୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏବଂ ଆଶ୍ରମ ଦୃଷ୍ଟିରୁ ଗୃହସ୍ଥ, ବ୍ରହ୍ମଚାରୀ, ବାନପ୍ରସ୍ଥୀ ଓ ସନ୍ନ୍ୟାସୀ ଅନୁପାତିକ ହାରରେ ଯଥାକ୍ରମେ ଏକ, ଦୁଇ, ତିନି ଓ ଚାରିଗୁଣ ପ୍ରାୟଶ୍ଚିତ୍ତ କରିଥାନ୍ତି ।୧୯୨।

ପ୍ରାୟଶ୍ଚିତ୍ତକାରୀ ମନ୍ତ୍ରପାଠ, ତପ, ଉପବାସ, ହୋମ, ଆତ୍ମାପରାଧ ସ୍ୱୀକାର, ଅନୁତାପ, ପ୍ରାଣାୟାମ, ଜପ, ତୀର୍ଥଯାତ୍ରାଦି କାର୍ଯ୍ୟ କରନ୍ତି । ତଦ୍‌ବ୍ୟତୀତ ଅଘମର୍ଷଣ, ଅତିକୃଚ୍ଛ୍ର, ଅତି-ସାନ୍ତପନ, ଅର୍ଦ୍ଧକୃଚ୍ଛ୍ର, ଅଶ୍ୱମେଧାବଭୃଥସ୍ନାନ, ଆଗ୍ନେୟ କୃଚ୍ଛ୍ର, ଋଷିଚାନ୍ଦ୍ରାୟଣ, ଏକଭକ୍ତ, କୃଚ୍ଛ୍ର, କୃଚ୍ଛ୍ର ସମ୍ବତ୍ସର, କୃଚ୍ଛ୍ରାତିକୃଚ୍ଛ୍ର, ତୋୟକୃଚ୍ଛ୍ର, ଦଧିକୃଚ୍ଛ୍ର, ଦେବକୃଚ୍ଛ୍ର, ଧନଦକୃଚ୍ଛ୍ର, ନକ୍ତୋପବାସ କୃଚ୍ଛ୍ର, ପଞ୍ଚଗବ୍ୟ, ପତ୍ରକୃଚ୍ଛ୍ର, ପରାକ, ପର୍ଣ୍ଣକୂର୍ଚ୍ଚ, ପର୍ଣ୍ଣକୃଚ୍ଛ୍ର, ପାଦକୃଚ୍ଛ୍ର, ପାଦୋନ କୃଚ୍ଛ୍ର, ପୁଷ୍ପକୃଚ୍ଛ୍ର, ପ୍ରସୃତ ଯାବକ ବା ପ୍ରସୃତି ଯାବକ, ପ୍ରାଜାପତ୍ୟ, ଫଳ କୃଚ୍ଛ୍ର, ବୃହଦ୍ ଯାବକ, ବ୍ରହ୍ମକୂର୍ଚ୍ଚ, ବ୍ରହ୍ମକୃଚ୍ଛ୍ର, ମହାତପ୍ତ କୃଚ୍ଛ୍ର, ମହାସାନ୍ତପନ, ମହେଶ୍ୱର କୃଚ୍ଛ୍ର, ମୂଳକୃଚ୍ଛ୍ର, ମୈତ୍ର କୃଚ୍ଛ୍ର, ଯଜ୍ଞକୃଚ୍ଛ୍ର, ଯତି ଚାନ୍ଦ୍ରାୟଣ, ଯତିସାନ୍ତପନ, ଯାମ୍ୟ, ଯାବକ, ବଜ୍ର, ବାୟବ୍ୟକୃଚ୍ଛ୍ର, ବୃଦ୍ଧକୃଚ୍ଛ୍ର ବା ବୃଦ୍ଧିକୃଚ୍ଛ୍ର, ବ୍ୟାସକୃଚ୍ଛ୍ର, ଶିଶୁକୃଚ୍ଛ୍ର, ଶିଶୁଚାନ୍ଦ୍ରାୟଣ, ଶୀତକୃଚ୍ଛ୍ର, ଶ୍ରୀକୃଚ୍ଛ୍ର, ସାନ୍ତପନ, ସୁରଚାନ୍ଦ୍ରାୟଣ, ସୁବର୍ଣ୍ଣ କୃଚ୍ଛ୍ର, ସୋମାୟନ ଓ ସୌମ୍ୟକୃଚ୍ଛ୍ର ଆଦି ପ୍ରାୟଶ୍ଚିତ୍ତବିଧାନ ମଧ୍ୟରୁ ଅପରାଧର ମାତ୍ରା ଅନୁଯାୟୀ କୌଣସି ଏକ ବିଧାନ ପାଳନ କରି ପାପୀ ପାପମୁକ୍ତ ହୁଏ ।୧୯୩।

ଓଡ଼ିଶାରେ ପ୍ରାୟଶ୍ଚିତ୍ତର ବିଧିବିଧାନ ଯଥାରୀତି ପାଳିତ ହୁଏ । ବିଶେଷ କରି ମା, ଭଉଣୀ ସ୍ତ୍ରୀ ସହିତ ଭୋଜନରେ ଚାନ୍ଦ୍ରାୟଣ, ନାତି ବା ନାତୁଣୀର ଜନ୍ମ ପୂର୍ବରୁ ଜାମାତା ଗୃହରେ ଭୋଜନ କଲେ ସାନ୍ତପନ ପ୍ରାୟଶ୍ଚିତ୍ତ କରାଯାଏ ।୧୯୪।

ଓଡ଼ିଶାର ପୂର୍ବୋକ୍ତ ଗ୍ରନ୍ଥଦ୍ୱୟ ବ୍ୟତୀତ ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ', ରାମଚନ୍ଦ୍ର ବାଜପେୟୀଙ୍କ 'ପ୍ରାୟଶ୍ଚିତ୍ତ ଦୀପିକା' ଓ ନରସିଂହ ବାଜପେୟୀଙ୍କ 'ନିତ୍ୟାଚାର ପ୍ରଦୀପ' ଗ୍ରନ୍ଥରେ ପ୍ରାୟଶ୍ଚିତ୍ତର ସ୍ୱରୂପ ଓ ବିଧାନ ବିସ୍ତୃତଭାବେ ପର୍ଯ୍ୟାଲୋଚିତ ହୋଇଅଛି ।୧୯୫।

---

୧୯୧ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃ-୧୦୬୩ ।

୧୯୨ । ପ୍ରାୟଶ୍ଚିତ୍ତ ମନୋହର—ପୃ-୧୦-୧୨ ।

୧୯୩ । ଧର୍ମଶାସ୍ତ୍ର କା ଇତିହାସ-୩ୟ ଭାଗ—ପୃଷ୍ଠା-୧୦୮୧-୧୦୯୫ ।

୧୯୪ । ପ୍ରାୟଶ୍ଚିତ୍ତ ମନୋହର—୧୯୧୫—ପୃ-୫୨, ୫୩ ।

୧୯୫ । OSM. Mss. Dh. No. 162, 91.

## ୮। ଭକ୍ତି ପ୍ରକରଣ :

ଋଗ୍‌ବେଦରେ ଥିବା ବରୁଣ ଓ ଇନ୍ଦ୍ର ସୂକ୍ତଗୁଡ଼ିକରୁ ଭକ୍ତିଭାବନାର ସୂଚନା ମିଳେ। ୧୯୬। ଉପନିଷଦ୍‌ଗୁଡ଼ିକ ମଧ୍ୟରେ କଠ, ମୁଣ୍ଡକ ଓ ଶ୍ୱେତାଶ୍ୱତରରେ ଭକ୍ତିସିଦ୍ଧାନ୍ତର ସ୍ପଷ୍ଟ ଉଲ୍ଲେଖ ଅଛି ।୧୯୭। ମହାଭାରତ ଓ ଭଗବଦ୍‌ଗୀତାରେ ଭକ୍ତ ସମ୍ପ୍ରଦାୟର ସର୍ବପ୍ରଥମ ବର୍ଣ୍ଣନା କରାଯାଇଛି । ଶାନ୍ତିପର୍ବର ନାରାୟଣୀୟ ଉପାଖ୍ୟାନରୁ ସାତ୍ୱତ ଓ ପଞ୍ଚରାତ୍ରପଦ୍ଧତି ଭକ୍ତିଧାରାର ପ୍ରମାଣ ମିଳେ ।୧୯୮। ତଦନୁଯାୟୀ 'ଚିତ୍ରଶିଖଣ୍ଡୀ' ନାମକ ସପ୍ତର୍ଷି (ମରୀଚ, ଅତ୍ରି, ଅଙ୍ଗିରା, ପୁଲହ, ପୁଲସ୍ତ୍ୟ, କ୍ରତୁ ଓ ବଶିଷ୍ଠ) ପଞ୍ଚରାତ୍ରଶାସ୍ତ୍ରର ପ୍ରବକ୍ତା ଥିଲେ । ନାରାୟଣ ଭକ୍ତ ଏକାନ୍ତୀ ନାମରେ ପରିଚିତ ଓ ପଞ୍ଚରାତ୍ର ଏକାନ୍ତ ଧର୍ମନାମରେ ଅଭିହିତ ।୧୯୯। ପଞ୍ଚରାତ୍ର ସିଦ୍ଧାନ୍ତରେ ବାସୁଦେବ ପରମ ବ୍ୟକ୍ତି, ପ୍ରତ୍ୟେକ ଆତ୍ମା ସଙ୍କର୍ଷଣ, ପ୍ରଦ୍ୟୁମ୍ନ ମନ ଓ ଅନିରୁଦ୍ଧ ଅହଙ୍କାରର ପ୍ରତୀକ ରୂପେ ଗୃହୀତ ।୨୦୦।

ବେଦାନ୍ତ ସୂତ୍ରରେ ଭାଗବତ ଓ ପଞ୍ଚରାତ୍ର ପଦ୍ଧତି ବିଷୟରେ ଚାରୋଟି ସୂତ୍ର ଅଛି ।୨୦୧। ଶଙ୍କରାଚାର୍ଯ୍ୟଙ୍କ ବେଳକୁ ଶାଣ୍ଡିଲ୍ୟ, ଭାଗବତ ବା ପଞ୍ଚରାତ୍ର ଶାସ୍ତ୍ରର ପ୍ରବର୍ତ୍ତକ ଭାବେ ଲୋକ-ପ୍ରସିଦ୍ଧି ଲାଭ କରିସାରିଥିଲେ ।୨୦୨। ଶ୍ରୀମଦ୍‌ଭଗବଦ୍‌ଗୀତା, ଭାଗବତ ପୁରାଣ ଓ ବିଷ୍ଣୁ-ପୁରାଣ ଭକ୍ତିବାଦର ଅନ୍ୟତମ ପ୍ରଧାନ ଭିତ୍ତି । ବିଶାଳ ଭକ୍ତି-ସାହିତ୍ୟ ମଧ୍ୟରେ ଶାନ୍ତିପର୍ବର ନାରାୟଣୀୟ ଉପାଖ୍ୟାନ, ପୂର୍ବୋକ୍ତ ଗ୍ରନ୍ଥତ୍ରୟ, ଶାଣ୍ଡିଲ୍ୟ ଭକ୍ତିସୂତ୍ର, ଶାଣ୍ଡିଲ୍ୟ ସଂହିତା, ନାରଦ ଭକ୍ତିସୂତ୍ର, ନାରଦ ପଞ୍ଚରାତ୍ର, ଅହିର୍ବୁଧ୍ନ୍ୟ ସଂହିତା, ଜୟାଖ୍ୟ ସଂହିତା, ମିତ୍ର ମିଶ୍ରଙ୍କ ଭକ୍ତିପ୍ରକାଶ, ଅନନ୍ତ ଦେବଙ୍କ 'ଭକ୍ତି ନିର୍ଣ୍ଣୟ', ଜଗନ୍ନାଥ ଦାସଙ୍କ 'ଶ୍ରୀକୃଷ୍ଣଭକ୍ତିକଳ୍ପଲତା ଫଳ' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

---

୧୯୬ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୪୬୬ ।

୧୯୭ । ଯସ୍ୟ ଦେବେ ପରାଭକ୍ତିର୍ଯଥା ଦେବେ ତଥା ଗୁରୌ ।
ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ॥ (ଶ୍ୱେତାଶ୍ୱ-୬-୨୩)

୧୯୮ । କାମ୍ୟ ନୈମିତ୍ତିକା ରାଜନ୍ ଯଜ୍ଞିୟାଃ ପରମକ୍ରିୟାଃ ।
ସର୍ବାଃ ସାତ୍ୱତମାସ୍ଥାୟ ବିଧିଂ ଚକ୍ରେ ସମାହିତଃ ॥
ପଞ୍ଚରାତ୍ରବିଦୋ ମୁଖ୍ୟାସ୍ତସ୍ୟ ଗେହେ ମହାତ୍ମନଃ ।
ପ୍ରାୟଣଂ ଭଗବତ୍ ପ୍ରୋକ୍ତଂ ଭୁଞ୍ଜନ୍ତେ ଚାଗ୍ର ଭୋଜନମ୍ ॥ (ଶାନ୍ତି—୩୩୬-୨୪-୨୫)

୧୯୯ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୪୬୭ ।

୨୦୦ । ମହାଭାରତ— ଶାନ୍ତିପର୍ବ-୩୩୯-୪୦ ୪୧ ।

୨୦୧ । ଉତ୍ପତ୍ତ୍ୟସମ୍ଭବାତ୍, ନ ଚ କର୍ତ୍ତୁଃ କରଣମ୍, ବିଜ୍ଞାନାଦିଭାବେ ବା ତଦପ୍ରତିଷେଧଃ ବିପ୍ରତିଷେଧାଚ୍ଚ । (ବେଦାନ୍ତ ସୂତ୍ର—୨।୨-୪୨-୪୫)

୨୦୨ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୪୬୮ ।

ପରମେଶ୍ୱରଙ୍କଠାରେ ଅନୁରକ୍ତି ପ୍ରକାଶକୁ ଭକ୍ତି କହନ୍ତି ।୧୦୩। ଭଜ୍ ଧାତୁରୁ ନିଷ୍ପନ୍ନ ଭକ୍ତି ଶବ୍ଦର ଅର୍ଥ ହେଲା ଅନୁରକ୍ତି, ପ୍ରୀତି, ପ୍ରେମ, ଅନୁରାଗ ଇତ୍ୟାଦି । ଲୌକିକୀ, ବୈଦିକୀ, ଆଧ୍ୟାତ୍ମିକୀ, ମାନସୀ,ବାଚକୀ ଓ କାୟିକୀ ଭେଦରେ ଭକ୍ତିର ଶ୍ରେଣୀ ବିଭାଗ କରାଯାଇଛି । ଭାଗବତ ଅନୁସାରେ ସାତ୍ତ୍ୱିକୀ, ରାଜସୀ ଓ ତାମସୀ ଭେଦରେ ଭକ୍ତି ତ୍ରିବିଧ । ବ୍ରହ୍ମାଣ୍ଡ ପୁରାଣ ଅନୁସାରେ ଉତ୍ତମା, ମଧ୍ୟମା ଓ କନିଷ୍ଠା ରୂପେ ଭକ୍ତି ତ୍ରିବିଧ । ବୈଷ୍ଣବ ଗ୍ରନ୍ଥରେ ସଂକଳ୍ପ, ତ୍ୟାଗ, ବିଶ୍ୱାସ, ଭଗବଦ୍‌ଭଜନ ଓ ଅସହାୟଭାବ ପ୍ରଦର୍ଶନକୁ ଭକ୍ତି କୁହାଯାଇଛି ।୧୦୪। କିନ୍ତୁ ଭଗବଦ୍-ଗୀତାରେ ସମସ୍ତ କର୍ତ୍ତବ୍ୟ ତ୍ୟାଗ ଓ ଈଶ୍ୱରଶରଣକୁ ଭକ୍ତିର ଶ୍ରେଷ୍ଠ ନିଦର୍ଶନ ଭାବେ ବର୍ଣ୍ଣନା କରାଯାଇଛି ।୧୦୫। ଭକ୍ତିରୁ ଭଗବଦ୍ ପ୍ରସାଦ ଓ ପ୍ରସାଦରୁ ନିର୍ବାଣ ଲାଭ ହୁଏ ।୧୦୬। ଷଡ଼୍‌ଗୁଣର ସମାହାର 'ଭଗ' ଶବ୍ଦରୁ ଭଗବତ୍ ଓ ଭଗବାନ୍ ବା ବାସୁଦେବଙ୍କ ପୂଜକ ଭାଗବତ ରୂପେ ଅଭିହିତ ।୧୦୭। ବର୍ଣ୍ଣାଶ୍ରମାଚାରବାନ୍ ବ୍ୟକ୍ତି ଭଗବାନ୍ ବିଷ୍ଣୁଙ୍କର ଆରାଧନା କରନ୍ତି । ବିଷ୍ଣୁ, ଯଜ୍ଞ, ଯଜ୍ଞପୁରୁଷ ଓ ଯଜ୍ଞେଶ୍ୱର ନାମରେ ଅଭିହିତ ।୧୦୮।

ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ମୋକ୍ଷପ୍ରାପ୍ତି ନିମିତ୍ତ କର୍ମମାର୍ଗ, ଭକ୍ତିମାର୍ଗ ଓ ଜ୍ଞାନମାର୍ଗ—ଏପରି ତିନୋଟି ମାର୍ଗର ଉଲ୍ଲେଖ କରାଯାଇଛି । ଅବ୍ୟକ୍ତ ପରମାତ୍ମା ବା ନିର୍ଗୁଣର ଉପାସନାକୁ ଜ୍ଞାନ-ମାର୍ଗ ଓ ବ୍ୟକ୍ତ ବା ସଗୁଣ ଉପାସନାକୁ ଭକ୍ତିମାର୍ଗ କୁହାଯାଏ ।୧୦୯। ଏହି ଉଭୟ ମାର୍ଗଠାରୁ

---

୧୦୩ । ଅଥାତୋ ଭକ୍ତି ଜିଜ୍ଞାସା । ସା ପରାନୁରକ୍ତିରୀଶ୍ୱରେ ॥ (ଶାଣ୍ଡିଲ୍ୟ-୧-୧-୧-୨)

୧୦୪ । (କ) ଶ୍ରୀକୃଷ୍ଣଭକ୍ତିକଳ୍ପଲତା ଫଳ—ପୃ-୧୯, ୨୯
(ଖ) ମହାଭାରତ—ଶାନ୍ତିପର୍ବ-୨୨୨ ଅଧ୍ୟାୟ

୧୦୫ । ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେ ବୈଷ୍ୟସି ସତ୍ୟଂତେ ପ୍ରତିଜାନେ ପ୍ରିୟୋଽସିମେ ॥
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟ ମୋକ୍ଷୟିଷ୍ୟାମି ମା ଶୁଚଃ ॥ (ଗୀତା—୧୮-୬୫-୬୬)

୧୦୬ । ଯଥା ତେ ନିଶ୍ଚଳଂ ଚେତୋ ମୟି ଭକ୍ତି ସମନ୍ୱିତମ୍ ।
ତଥା ତ୍ୱଂ ମତ୍ପ୍ରସାଦେନ ନିର୍ବାଣଂ ପରମାପ୍ସ୍ୟସି ॥ (ବିଷ୍ଣୁପୁରାଣ—୧-୨୦-୨୮)

୧୦୭ । ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ବୀର୍ଯ୍ୟସ୍ୟ ଯଶସଃ ଶ୍ରିୟଃ ।
ଜ୍ଞାନବୈରାଗ୍ୟୟୋଶ୍ଚୈବ ଷଣ୍ଣାଂ ଭଗ ଇତି ଶ୍ରୁତଃ ॥ (ବିଷ୍ଣୁପୁରାଣ—୬-୫-୭୪)

୧୦୮ । The Bhakti Cult in Ancient India—
Mm. B. k. Goswami-Chawkhamba Edn. 1965-P-197

୧୦୯ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥ ଭାଗ—ପୃ-୪୬୫ ।

ଭକ୍ତିମାର୍ଗ ଉତ୍କର୍ଷତର ।୨୧୦। କାରଣ ଅବ୍ୟକ୍ତ ଲକ୍ଷ୍ୟପ୍ରାପ୍ତି ଦେହଧାରୀ ଜୀବ ପକ୍ଷରେ ଅତି କଷ୍ଟରେ ସମ୍ଭବ; ମାତ୍ର ଯେ ସମସ୍ତ କର୍ମ ଓ ଜ୍ଞାନ ନିଜର ଆରାଧ୍ୟଙ୍କୁ ସମର୍ପଣ କରି ଭଜନ ଓ ଧ୍ୟାନରେ ନିମଗ୍ନ ରହେ, ସେ ସହଜରେ ସିଦ୍ଧିଲାଭ କରିଥାଏ ।୨୧୧। ଦାନ-ବ୍ରତ-ତପ-ଜପ-ହୋମ-ସ୍ୱାଧ୍ୟାୟ-ସଂଯମଠାରୁ ଭକ୍ତି ହେଉଛି ଶ୍ରେଷ୍ଠ ।୨୧୨। ଭାଗବତରେ ନଅ, ନାରଦ ଭକ୍ତି-ସୂତ୍ରରେ ଏଗାର ଓ ଶାଣ୍ଡିଲ୍ୟ ଭକ୍ତିସୂତ୍ରରେ ଚାରିପ୍ରକାର ଭକ୍ତିର ବର୍ଣ୍ଣନା କରାଯାଇଛି ।୨୧୩। ଭଗବଦ୍‌ଗୀତାରେ ଉତ୍ତମ କାର୍ଯ୍ୟ କରୁଥିବା ଅର୍ଥାର୍ଥୀ, ଆର୍ତ୍ତ, ଜିଜ୍ଞାସୁ ଓ ଜ୍ଞାନୀ ନାମରେ ଚାରି-ପ୍ରକାର ଭକ୍ତଙ୍କ ଉଲ୍ଲେଖ ଅଛି ।୨୧୪। ଭକ୍ତିକୁ ଶାସ୍ତ୍ରରେ ପ୍ରାୟଶ୍ଚିତ୍ତ ରୂପେ ଅଭିହିତ କରାଯାଇଛି । ଶ୍ରୀକୃଷ୍ଣ-ସ୍ମରଣ ଦ୍ୱାରା ସମସ୍ତେ ପ୍ରାୟଶ୍ଚିତ୍ତ କରିପାରିବେ ବୋଲି ବର୍ଣ୍ଣିତ ହୋଇଛି ।୨୧୫।

ଭାଗବତ ଅନୁସାରେ ଭକ୍ତ ନିଜ ଶରୀର, ବାଣୀ, ମନ, ଇନ୍ଦ୍ରିୟ, ବୁଦ୍ଧି ଓ ସ୍ୱଭାବ ସବୁକିଛି ନାରାୟଣଙ୍କୁ ସମର୍ପଣ କରିବା ଉଚିତ ।୨୧୬। ଏହା ଗୀତାର ଅନୁରୂପ ଚିନ୍ତାକୁ ପ୍ରକାଶ କରେ ।୨୧୭। ଭକ୍ତର ଯଥାଶକ୍ତି ଓ ସ୍ଥିତି ଅନୁସାରେ ସ୍ୱକର୍ତ୍ତବ୍ୟପାଳନକୁ ଭଗବତ୍‌ପୂଜା ବୋଲି କୁହାଯାଇଛି । ଏହି କର୍ତ୍ତବ୍ୟ ହେଉଛି ନିଷ୍କାମ କର୍ମ ।୨୧୮। ଏହା ବ୍ୟତୀତ ନାମ-ସ୍ମରଣକୁ ପୁରାଣରେ ବିଶେଷ ପ୍ରାଧାନ୍ୟ ଦିଆଯାଇଛି । ଭକ୍ତିର ଏହି ଗତାନୁଗତିକ ଧାରା ଏକାଦଶ ଶତାବ୍ଦୀ ପରେ ପରିବର୍ତ୍ତିତ ହେଲା । ମୁସଲମାନମାନଙ୍କ ଭାରତ ଆକ୍ରମଣ ଫଳରେ ସ୍ମୃତିକାରମାନେ ବୈଦିକ ସଂସ୍କୃତିର ସୁରକ୍ଷା ନିମିତ୍ତ ବହୁ ନିବନ୍ଧ ଗ୍ରନ୍ଥ ଓ ଟୀକାଗ୍ରନ୍ଥମାନ

---

୨୧୦ । ଭଗବଦ୍‌ଗୀତା—୧୨-୨ ।

୨୧୧ । ଭଗବଦ୍‌ଗୀତା—୧୨-୧-୭ ।

୨୧୨ । ଶ୍ରୀକୃଷ୍ଣଭକ୍ତିଲତାଫଳ—ସଂ: ଶ୍ରୀ କୁଳମଣି ମିଶ୍ର—୧୯୭୯-ପୃ-୪୮ ।

୨୧୩ । (କ) ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥ (ଭାଗବତ—୭-୫-୨୩)

(ଖ) ଗୁଣ ମହାତ୍ମ୍ୟ, ରୂପ, ପୂଜା, ସ୍ମରଣ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, କାନ୍ତ, ଆତ୍ମ-ନିବେଦନ, ତନ୍ମୟତା ଓ ଆସକ୍ତି । (ନାରଦ ଭକ୍ତିସୂତ୍ର-୮୨)

(ଗ) ସ୍ମରଣ କୀର୍ତ୍ତନ କଥା ନମସ୍କାରାଦୀନାମାର୍ତ୍ତିଭକ୍ତୌ ନିବେଶଃ ॥

୨୧୪ । ଭଗବଦ୍‌ଗୀତା—୭ ୧୬-୧୭ ।

୨୧୫ । ପ୍ରାୟଶ୍ଚିତ୍ତାନ୍ୟଶେଷାଣି ତପଃ କର୍ମାତ୍ମକାନି ବୈ ।
ଯାନି ତେଷାମଶେଷାଣାଂ କୃଷ୍ଣାନୁସ୍ମରଣଂ ପରମ୍ ॥ (ବିଷ୍ଣୁପୁରାଣ—୨-୬-୩୯)

୨୧୬ । ଭାଗବତ—୧୧-୨-୩୬ ।

୨୧୭ । ଭାଗବତ—୯-୨୭ ।

୨୧୮ । ଭଗବଦ୍‌ଗୀତା—୧୮-୪୬ ।

ରଚନା କରିଥିଲେ । ତ୍ରୟୋଦଶ ଶତାବ୍ଦୀଠାରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ଜ୍ଞାନେଶ୍ୱର, ନାମଦେବ, ରାମାନନ୍ଦ, କବୀର, ଚୈତନ୍ୟ, ନାନକ, ବଲ୍ଲଭାଚାର୍ଯ୍ୟ, ଶ୍ରୀ ଜଗନ୍ନାଥ ଦାସ, ବଳରାମ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ, ଏକନାଥ, ତୁକାରାମ, ରାମଦାସ ଆଦି ସାଧୁ ଓ ରହସ୍ୟବାଦୀମାନେ ଆବିର୍ଭୂତ ହୋଇଥିଲେ । ଏହି ଆଚାର୍ଯ୍ୟମାନଙ୍କର ମୁଖ୍ୟତତ୍ତ୍ୱ ପ୍ରାୟ ଏକ ଥିଲା । ସମସ୍ତେ ପରମାତ୍ମା ଏକ, ଆତ୍ମଶୁଦ୍ଧି, ଜାତିଭେଦର ବିରୋଧ, ପୂଜା ଆଡ଼ମ୍ବରର ନିନ୍ଦା, ମୋକ୍ଷ ପ୍ରାପ୍ତି ନିମିତ୍ତ ଭଗବାନଙ୍କଠାରେ ଆତ୍ମସମର୍ପଣ ପ୍ରଭୃତି ଭାବଧାରାକୁ ଲୋକସମାଜରେ ପ୍ରଚାର କରିଥିଲେ ।

ଓଡ଼ିଶାର ସ୍ମୃତିଗ୍ରନ୍ଥ ମଧ୍ୟରେ 'ଶ୍ରୀକୃଷ୍ଣଭକ୍ତିକଳ୍ପଲତାଫଳ', 'ଶ୍ରୀକୃଷ୍ଣଭକ୍ତି କଳ୍ପଲତା' ଓ ନାରାୟଣ ମଙ୍ଗରାଜଙ୍କ 'ହରିଭକ୍ତିସୁଧାକର' ବ୍ୟତୀତ ନିତ୍ୟାଚାର ପଦ୍ଧତି, ନିତ୍ୟାଚାର ପ୍ରଦୀପ, ବିଭିନ୍ନ ଦେବଦେବୀ ପୂଜା ଓ ମାହାତ୍ମ୍ୟ ଗ୍ରନ୍ଥଗୁଡ଼ିକରେ ଭକ୍ତି-ପ୍ରସଙ୍ଗର ଆଲୋଚନା କରାଯାଇଛି ।୨୧୯।

## ୯ । ଯଜ୍ଞ ପ୍ରକରଣ :

ପ୍ରାଚୀନ କାଳରେ ବୈଦିକ ଯଜ୍ଞ ବହୁଳଭାବେ ଅନୁଷ୍ଠିତ ହେଉଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ବୌଦ୍ଧଧର୍ମର ବିକାଶ ଦ୍ୱାରା ତାହା ଅନେକାଂଶରେ ବାଧା ପାଇଥିଲା । ପରବର୍ତ୍ତୀ କାଳରେ କେବଳ ବିଶିଷ୍ଟ ନରପତିଗଣ ଓ ରାଜକୀୟ ପୃଷ୍ଠପୋଷକତା ଲାଭ କରିଥିବା ବ୍ରାହ୍ମଣମାନେ ଯଜ୍ଞକାର୍ଯ୍ୟ କରୁଥିଲେ । କିନ୍ତୁ ମୁସଲମାନ ରାଜତ୍ୱକାଳରେ ଭାରତରେ ଯଜ୍ଞାନୁଷ୍ଠାନ ଲୁପ୍ତପ୍ରାୟ ଅବସ୍ଥାରେ ଉପନୀତ ହେଲା । ବିଗତ ଶତାବ୍ଦୀରେ ଏହି ଯଜ୍ଞାନୁଷ୍ଠାନ କ୍ୱଚିତ୍ ପାଳିତ ହୋଇଛି । କାଳକ୍ରମାଗତ ବିବିଧ ପ୍ରତିବନ୍ଧକ ଫଳରେ ଧର୍ମ-ଶାସ୍ତ୍ରକାରମାନେ ବୈଦିକ ଯଜ୍ଞବିଧିକୁ ଗାର୍ହସ୍ଥ୍ୟ ଉତ୍ସବ ମଧ୍ୟରେହିଁ ଉଜ୍ଜୀବିତ ରଖିଅଛନ୍ତି । ବିଭିନ୍ନ ଶ୍ରୌତସୂତ୍ରରେ ଯଜ୍ଞର ବିଧିବିଧାନମାନ ପୁଙ୍ଖାନୁପୁଙ୍ଖଭାବେ ବର୍ଣ୍ଣିତ ହୋଇଛି ।୨୨୦।

ଯଜ୍ଞରେ ପ୍ରଧାନତଃ ଦ୍ରବ୍ୟ, ଦେବତା ଓ ତ୍ୟାଗର ପରାକାଷ୍ଠା ପ୍ରକାଶ ପାଇଥାଏ । ନିର୍ଦ୍ଦିଷ୍ଟ ଦେବତା ଉଦ୍ଦେଶ୍ୟରେ ଦ୍ରବ୍ୟତ୍ୟାଗକୁ ଯାଗ ଓ ଅଗ୍ନିରେ ଦ୍ରବ୍ୟ ସମର୍ପଣକୁ ହୋମ କହନ୍ତି । ଯଜ୍ଞରେ ଆବଶ୍ୟକତାନୁଯାୟୀ ଋକ୍, ଯଜୁଃ, ସାମ ଓ ନିଗଦ ନାମରେ ଚତୁର୍ବିଧ ବୈଦିକ ମନ୍ତ୍ର ପାଠ କରାଯାଏ । ଏଥିରେ ମୁଖ୍ୟତଃ ସ୍ଫ୍ୟ, କପାଳ, ଅଗ୍ନିହୋତ୍ରହବଣୀ, ଶୂର୍ପ, କୃଷ୍ଣାଜିନ, ଶମ୍ୟା, ଉଲୂଖଳ, ମୁସଳ, ଦୃଷଦ୍ ଓ ଉପଳାଦି ଦଶବିଧ ଯଜ୍ଞାୟୁଧ ବା ଉପାଦାନ ସହିତ ଜୁହୂ, ଉପଭୃତ୍, ସ୍ରୁକ୍, ସ୍ରୁବା, ପ୍ରାଶିତ୍ରହରଣ, ଇଡ଼ାପାତ୍ର, ମେକ୍ଷଣ, ପିଷ୍ଟୋଦ୍ୱପନୀ, ପ୍ରଣୀତାପ୍ରଣୟନ, ଆଜ୍ୟସ୍ଥାଳୀ, ବେଦ, ଦାରୁପାତ୍ରୀ, ଯୋକ୍ତ୍ର, ବେଦ-ପରିବାସନ, ଧୃଷ୍ଟି, ଇଧ୍ମ-ପ୍ରବ୍ରଶ୍ଚନ, ଅନ୍ୱାହାର୍ଯ୍ୟସ୍ଥାଳୀ, ମଦନ୍ତୀ, ଫଲୀକରଣପାତ୍ର, ଅନ୍ତର୍ଧାନକଟ ଆଦି ଉପକରଣ-

---

୨୧୯ । OSM. Mss. Dh. No. 110, 73. 178, 33. 131.

୨୨୦ । History of Dh. Vol. II, Part-II, P-980.

ଗୁଡ଼ିକ ଆବଶ୍ୟକ ହୁଏ । ୨୨୧। ଯଜ୍ଞ ଆରମ୍ଭରେ ଯଥାକ୍ରମେ ପରିଶମୂହନ, ଉପଲେପନ, ଅଭ୍ୟୁକ୍ଷଣାଦି ପଞ୍ଚବିଧ ଭୂସଂସ୍କାର କରାଯାଇଥାଏ ।

ଗୌତମ ସପ୍ତ ହବିର୍ଯଜ୍ଞ ଓ ସପ୍ତ ସୋମଯଜ୍ଞର ଉଲ୍ଲେଖ କରିଛନ୍ତି ।୨୨୨। ଅଗ୍ନ୍ୟାଧେୟ ହେଉଛି ପ୍ରଥମ ହବିର୍ଯଜ୍ଞ । ଦେଶ, କାଳ, ପୁରୁଷ ଓ ମନ୍ତ୍ରବିଶେଷ ଦ୍ୱାରା ଗାର୍ହପତ୍ୟାଦି ଅଗ୍ନ୍ୟୁତ୍ପତ୍ତି ନିମିତ୍ତ ଜ୍ୱଳନ, ଅଗ୍ନିସଂରକ୍ଷଣକୁ ଅଗ୍ନ୍ୟାଧେୟ କୁହାଯାଏ ।୨୨୩। ସର୍ବବିଧ ଯଜ୍ଞ ନିମିତ୍ତ ପ୍ରାରମ୍ଭିକ କାର୍ଯ୍ୟରୂପେ ଅଗ୍ନ୍ୟାଧେୟ ବିଧି ପାଳିତ ହୁଏ । ଏହି ଯଜ୍ଞ ଦୁଇଦିନବ୍ୟାପୀ କରାଯାଏ । କୃତ୍ତିକା, ରୋହିଣୀ, ମୃଗଶିରା, ପୂର୍ବାଫାଲ୍‌ଗୁନି, ଉତ୍ତରାଫାଲଗୁନି, ବିଶାଖା ଓ ଉତ୍ତର-ଭାଦ୍ରପଦ ନକ୍ଷତ୍ରରେ ବା ବସନ୍ତ, ଗ୍ରୀଷ୍ମ, ବର୍ଷା ଓ ଶୀତଋତୁରେ ଯେକୌଣସି ପର୍ବ ଦିନରେ ଏହି ଯଜ୍ଞ ଆରମ୍ଭ କରାଯାଏ ।୨୨୪। ଏହାଦ୍ୱାରା ଦକ୍ଷିଣାଗ୍ନି, ଗାର୍ହପତ୍ୟାଗ୍ନି, ଆବହନୀୟାଗ୍ନି, ଆବସଥ୍ୟାଗ୍ନି ଓ ସଭ୍ୟାଗ୍ନିର ପ୍ରତିଷ୍ଠା କରାଯାଏ । ହବିର୍ଯଜ୍ଞ ମଧ୍ୟରେ ଅଗ୍ନି-ହୋତ୍ର ଦ୍ୱିତୀୟ ସ୍ଥାନୀୟ ।୨୨୫। ଅଗ୍ନ୍ୟାଧେୟ ଦିବସର ସନ୍ଧ୍ୟାଠାରୁ ଏହି ଯଜ୍ଞ କରାଯାଏ ।୨୨୬। ଅଗ୍ନିହୋତ୍ରୀଗଣ ଦୈନନ୍ଦିନ ଅଗ୍ନିହୋତ୍ର କୃତ୍ୟରେ କ୍ଷୀରଦ୍ୱାରା ହୋମ କରିଥାନ୍ତି ।୨୨୭। କିନ୍ତୁ ଗ୍ରାମ, ଖାଦ୍ୟ, ବଳ ବା ପାଣ୍ଡିତ୍ୟ ଅଭିଳାଷୀ ବ୍ୟକ୍ତି ଯଥାକ୍ରମେ ଯବାଗୁ, ସିଦ୍ଧଅନ୍ନ, ଦହି ବା ଘୃତଦ୍ୱାରା ହୋମ କରିବାର ଉଲ୍ଲେଖ ଅଛି ।୨୨୮।

ଆହବନୀୟ, ଗାର୍ହପତ୍ୟ ଓ ଦକ୍ଷିଣାଗ୍ନି ସ୍ଥାପନ ପରେ ବ୍ୟକ୍ତିବିଶେଷ ଏହି ଯଜ୍ଞ ଯାବଜ୍ଜୀବନ ବା ତିରିଶବର୍ଷ ବା ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ କରିପାରେ ।୨୨୯। ଅଗ୍ନ୍ୟାଧେୟ ପରେ ଦର୍ଶ-ପୂର୍ଣ୍ଣମାସ ଯଜ୍ଞ କରାଯାଏ । ଏହା ଅମାବାସ୍ୟା ଓ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୁଏ । ପ୍ରଥମବାର ଏହି ଯଜ୍ଞ ଆରମ୍ଭ କରିବା ପୂର୍ବରୁ ଅନ୍ୱାରମ୍ଭଣୀୟେଷ୍ଟି ପାଳିତ ହୁଏ । ପୂର୍ଣ୍ଣିମା ଦିନ ଯଜ୍ଞକର୍ତ୍ତା ଅଗ୍ନିହୋତ୍ର ପରେ ସପତ୍ନୀକ ସଂକଳ୍ପ କରିବେ ଏବଂ ଅଧ୍ୱର୍ଯ୍ୟୁ, ବ୍ରହ୍ମା, ହୋତୃ ଓ ଅଗ୍ନୀଧ୍ରଙ୍କୁ

---

୨୨୧ । କାତ୍ୟାୟନ ଶ୍ରୌତସୂତ୍ର—୧-୩-୩୬

୨୨୨ । ଗୌତମ ଧର୍ମସୂତ୍ର—୮-୨୯-୨୧

୨୨୩ । ବିଶିଷ୍ଟକାଳେ, ବିଶିଷ୍ଟ ପ୍ରଦେଶେ, ବିଶିଷ୍ଟ ପୁରୁଷେଣ ବିଶିଷ୍ଟୈର୍ମନ୍ତ୍ରୈର୍ଗାର୍ହ୍ୟପତ୍ୟାଦ୍ୟ-ଗ୍ନ୍ୟୁତ୍ପତ୍ୟର୍ଥଂ ଯଦଙ୍ଗାରଣାଂ ନିଧାନଂ ତଦଗ୍ନ୍ୟାଧେୟମୁଚ୍ୟେତେ ॥

(ଆଶ୍ୱ. ଶ୍ରୌ-୨-୧-୯)

୨୨୪ । History of Dh. Vol. II, Part.II, P. 987.

୨୨୫ । ଗୌତମ ଧର୍ମସୂତ୍ର—୮-୨୦

୨୨୬ । କା. ଶ୍ରୌତସୂତ୍ର—୪-୧୩-୧୨

୨୨୭ । ନିତ୍ୟାଗ୍ନିର ପ୍ରଦୀପ—ପୃ-୪୧୪

୨୨୮ । ଆଶ୍ୱଳାୟନ ଶ୍ରୌତସୂତ୍ର—୨-୩-୧-୨

୨୨୯ । ଆ. ଶ୍ରୌତସୂତ୍ର—୩-୧୪-୧୧-୧୩

ଯଥାକ୍ରମେ ଯଜ୍ଞକାର୍ଯ୍ୟ ନିମିତ୍ତ ବରଣ କରିବେ ।୨୩୦। ଏହି ଯଜ୍ଞରେ ପୁରୋଡ଼ାଶ ଅଗ୍ନି ଓ ଅଗ୍ନିସୋମଙ୍କୁ ଆଜ୍ୟ ଏବଂ ସୋମଯାଜୀଙ୍କ ଦ୍ୱାରା ପ୍ରଜାପତି ଇନ୍ଦ୍ର ଓ ମହେନ୍ଦ୍ରଙ୍କୁ ସାନ୍ନାଯ୍ୟ ଆହୁତି ଦିଆଯାଏ ।୨୩୧। ଏହି ଯଜ୍ଞ ନିମିତ୍ତ ଶାଖା ଆହରଣ, ବର୍ହି ଆହରଣ, ଇଧ୍ମ ଆହରଣ, ସାୟଂଦୋହ, ନିର୍ବାପ, ପତ୍ନୀସନ୍ନହନ, ବର୍ହିଆସ୍ତରଣ, ଆଜ୍ୟଭାଗ, ହୋମ, ପୂର୍ଣ୍ଣାହୁତି ପ୍ରଭୃତି ବିଧିବିଧାନ ଯଥାବିଧି ପାଳିତ ହୁଏ ।୨୩୨।

ଚାତୁର୍ମାସ୍ୟ-ଯଜ୍ଞ ପ୍ରତି ଚାରିମାସରେ ଥରେ ଅନୁଷ୍ଠିତ ହୁଏ ।୨୩୩। ଏହା ବୈଶ୍ୱଦେବ, ବରୁଣ ପ୍ରଘାସ, ଶାକମେଧ ଓ ଶୁନାସୀରୀୟଭାବେ ଚାରି ପର୍ବରେ ବିଭକ୍ତ । ତଦ୍‌ବ୍ୟତୀତ ନୂତନ ଶସ୍ୟ-ଫଳ-ମୂଳାଦି ଅର୍ପଣ ନିମିତ୍ତ ଆଗ୍ରୟଣ ଯଜ୍ଞ ଏବଂ ଅଭିଳାଷ-ସିଦ୍ଧି ନିମିତ୍ତ ଆୟୁଷ୍କାମେଷ୍ଟି, ସ୍ୱସ୍ତ୍ୟୟନୀ, ପୁତ୍ରକାମେଷ୍ଟି, ଲୋକେଷ୍ଟି, ମହାବୈଶ୍ୱାନରୀ ବା ମିତ୍ରବିନ୍ଦା, ଯଜ୍ଞାନ୍ତକାରେଷ୍ଟି, ତୁରାୟଣ ଓ ଦାକ୍ଷାୟଣ ପ୍ରଭୃତି ଯଜ୍ଞ କରାଯାଇଥାଏ । ଫାଲ୍‌ଗୁନ ପୂର୍ଣ୍ଣିମା ଦିନ ବୈଶ୍ୱଦେବ, ବର୍ଷା ଋତୁରେ ବରୁଣ-ପ୍ରଘାସ ଓ କାର୍ତ୍ତିକ ପୂର୍ଣ୍ଣିମା ଦିନ ଶାକମେଧ ପ୍ରତ୍ୟେକ ଚାରିମାସ ଅନ୍ତରରେ ଏବଂ ଶୁନାସୀରୀୟ ଏକ ସ୍ୱତନ୍ତ୍ର ଯଜ୍ଞ ରୂପେ ଅନୁଷ୍ଠିତ ହୁଏ ।୨୩୪।

ପଶୁ-ଯଜ୍ଞକୁ 'ପଶୁବନ୍ଧ' ବା ନିରୂଢ଼ ପଶୁବନ୍ଧ ଯଜ୍ଞ କହନ୍ତି । ଏହି ଯଜ୍ଞ ସବନୀୟ ପଶୁ ଓ ଅନୁବନ୍ଧ୍ୟ ପଶୁଯଜ୍ଞ ବ୍ୟତୀତ ଅନ୍ୟ ସମସ୍ତ ପ୍ରକାର ପଶୁଯଜ୍ଞକୁ ବୁଝାଯାଏ । ଏହା ବର୍ଷରେ ଥରେ ବା ଦୁଇଥର ଅନୁଷ୍ଠିତ ହୁଏ । ବର୍ଷରେ ଥରେ କଲେ ଶ୍ରାବଣ ବା ଭାଦ୍ର ପୂର୍ଣ୍ଣିମାରେ ଓ ଦୁଇଥର କଲେ ଦକ୍ଷିଣାୟନ ଓ ଉତ୍ତରାୟଣ ସନ୍ଧାନ୍ତରେ ଏହି ଯଜ୍ଞ କରାଯାଏ । ଏଥିରେ ଚାତୁର୍ମାସ୍ୟ ଯଜ୍ଞରେ ଥିବା ପାଞ୍ଚଜଣ ପୁରୋହିତଙ୍କ ସହିତ ମୈତ୍ରାବରୁଣ ନାମରେ ଅନ୍ୟତମ ପୁରୋହିତ କାର୍ଯ୍ୟ କରିଥାନ୍ତି । ଏହି ଯଜ୍ଞ ଦୁଇଦିନବ୍ୟାପୀ ପାଳିତ ହୁଏ ।୨୩୫।

ଏଥିରେ ଯଜମାନର ସମଉଚ୍ଚତାବିଶିଷ୍ଟ ଏକ ଯୂପ, ବିଲ୍ୱ, ଖଦିର, ପଳାଶ ବା ରୌହିତକ ବୃକ୍ଷର କାଷ୍ଠରେ ନିର୍ମିତ ଓ ପ୍ରତିଷ୍ଠିତ ହୁଏ । ଏହି ଯଜ୍ଞରେ ଇନ୍ଦ୍ର, ଅଗ୍ନି, ସୂର୍ଯ୍ୟ ବା ପ୍ରଜାପତିଙ୍କ ଉଦ୍ଦେଶ୍ୟରେ ପଶୁଟିକୁ ଯଥାବିଧି ବଳି ଦିଆଯାଏ । ବ୍ୟକ୍ତି-ବିଶେଷ ପାଣ୍ଡିତ୍ୟ, ରାଜ୍ୟପ୍ରାପ୍ତି ଓ ସର୍ବବିଧ ଉନ୍ନତି ନିମିତ୍ତ ଅଗ୍ନି, ସରସ୍ୱତୀ, ସୋମ,

---

୨୩୦ । History of Dh. Vol-II, Part-II, P-1011

୨୩୧ । ଆ.-ଶ୍ରୌତସୂତ୍ର—୧-୩, ୯-୧୨ ।

୨୩୨ । Santi—D. J. Hoens—1951, P-1—21,

୨୩୩ । କା. ଶ୍ରୌତସୂତ୍ର—୫। ୧।୧

୨୩୪ । Santi—P-57-60

୨୩୫ । History of Dh. Vol-II, Part. II, P-1109

ପୂଷନ୍, ବୃହସ୍ପତି, ବିଶ୍ୱଦେବା, ଇନ୍ଦ୍ର, ମରୁତ୍, ସବିତୃ, ବରୁଣାଦିଙ୍କୁ ପଶୁବଳି ପ୍ରଦାନ କରିଥାନ୍ତି ।୧୩୬।

ଇଷ୍ଟି, ପଶୁ ଓ ସୋମ ଭାବରେ ଯଜ୍ଞ ତିନିଭାଗରେ ବିଭକ୍ତ । ତନ୍ମଧ୍ୟରେ ଅଗ୍ନିଷ୍ଟୋମ, ଅତ୍ୟଗ୍ନିଷ୍ଟୋମ, ଉକ୍ଥ୍ୟ, ଷୋଡ଼ାଶିନ୍, ବାଜପେୟ, ଅତିରାତ୍ର ଓ ଅପ୍ତୋର୍ଯାମ ଆଦି ସାତ ପ୍ରକାର ଯଜ୍ଞକୁ ସୋମଯଜ୍ଞ କହନ୍ତି ।୧୩୭। ଅଗ୍ନିଷ୍ଟୋମ, ଜ୍ୟୋତିଷ୍ଟୋମ ପରି ଗୋଟିଏ ଦିନ ଓ ଅନ୍ୟଗୁଡ଼ିକ ମଧ୍ୟରୁ କେତେକ ଦିନେ, ବାରଦିନ ବା ତହିଁରୁ ଅଧିକ ଦିନ ଧରି ଅନୁଷ୍ଠିତ ହୋଇଥାଏ ।୧୩୮।

ଜ୍ୟୋତିଷ୍ଟୋମ ସାଧାରଣତଃ ପାଞ୍ଚଦିନ କରାଯାଏ । ଏଥିରେ ପୁରୋହିତ ନିର୍ବାଚନ, ମଧୁପର୍କ, ଦୀକ୍ଷଣୀୟେଷ୍ଟି, ଦୀକ୍ଷା ପ୍ରାୟଣୀୟେଷ୍ଟି, ସୋମକ୍ରୟ, ଆତିଥେୟେଷ୍ଟି, ପ୍ରବର୍ଗ୍ୟ, ଉପସଦ୍-ଅଗ୍ନି ପ୍ରଣୟନ, ଅଗ୍ନିଷ୍ଟୋମ ପ୍ରଣୟନ, ହବିର୍ଧାନ ପ୍ରଣୟନ, ପଶୂତ୍ସର୍ଗ, ସୋମ-ପ୍ରସୂତ ଅର୍ପଣ ଓ ସେବନ, ଉଦୟନୀୟ, ଅବଭୃଥ ପ୍ରଭୃତି କାର୍ଯ୍ୟ କରାଯାଏ ।୧୩୯।

ଅଗ୍ନିଷ୍ଟୋମ ଯଜ୍ଞ ବସନ୍ତ ଋତୁର ଏକ ପୂର୍ଣ୍ଣିମାରେ କରାଯାଏ ।୧୪୦। ଏଥିରେ ଦେବ-ଯଜନ, ଦୀକ୍ଷଣୀୟେଷ୍ଟି, ଦୀକ୍ଷା, ପ୍ରାୟଣୀୟ। ଇଷ୍ଟି, ସୋମକ୍ରୟ, ସୁବ୍ରହ୍ମଣ୍ୟ, ଅବାନ୍ତର ଦୀକ୍ଷା, ପ୍ରବର୍ଗ୍ୟ, ମହାବେଦୀ, ଉପରବସ, ଧିଷ୍ଣ୍ୟ, ଅଗ୍ନିଷୋମୀୟ ପଶୁ, ସତ୍ୟାଦନ, ପ୍ରାତରନୁବାକ, ମହାଭିଷବ, ବହିଷ୍ପବମାନ, ସାମଗାନ, ସବନୀୟ, ଆଜ୍ୟଶସ୍ତ୍ର, ସ୍ତୋତ୍ର, ପଞ୍ଚଦଶ ଷ୍ଟୋମ,

୧୩୬ । Santi—P. 47-56

୧୩୭ । ଗୌ: ଧର୍ମସୂତ୍ର—୮-୨୧

୧୩୮ । ତନ୍ତ୍ରବାର୍ତ୍ତିକ—ପୃ-୪୭୧ଁ ।

୧୩୯ । (କ) ନଅପ୍ରକାର ମଧୁପର୍କ—

ବ୍ରାହ୍ମ—ଦଧି ଓ ମଧୁମିଶ୍ରିତ ।
ଐନ୍ଦ୍ର—ପାୟସ ।
ସୌମ୍ୟ—ଦଧି ଓ ଘୃତମିଶ୍ରିତ ।
ପୌଷ୍ଣ୍ୟ—ଘୃତ ଓ ବସାଦଦ୍ଧ ମିଶ୍ରିତ ।
ସାରସ୍ୱତ—ଦୁଗ୍ଧ ଓ ଘୃତମିଶ୍ରିତ ।
ମୌସଳ—ଆସବ ଓ ଘୃତମିଶ୍ରିତ ।
ବାରୁଣ—ଘୃତ ଓ ଜଳମିଶ୍ରିତ ।
ଶ୍ରାବଣ—ତିଳତୈଳ ଓ ଘୃତମିଶ୍ରିତ ।
ପାରବ୍ରାଜକ—ତିଳତୈଳ ଓ ପିଣ୍ଡାଆମିଶ୍ରିତ ।

(ଖ) History of Dh. Vol. II, Part-II P. 1138

୧୪୦ । ସତ୍ୟାଷାଢ଼ ଶୌତସୂତ୍ର—୭-୧, ପୃ-୫୭୨

ମାଧ୍ୟନ୍ଦିନ-ସବନ, ଦକ୍ଷିଣାଦାନ, ରଥାନ୍ତର ସାମନ୍, ତୃତୀୟ ସବନ, ଅଗ୍ନିମାରୁ ଶେଷ୍ଠ, ଅବଭୃଥ, ଅନୁବନ୍ଧ୍ୟାଦି କାର୍ଯ୍ୟ ଅନୁଷ୍ଠିତ ହୁଏ ।୮୪୧।

ସପ୍ତ ସୋମଯଜ୍ଞ ମଧ୍ୟରେ ଉକ୍‌ଥ୍ୟ, ଷୋଡ଼ଶିନ୍, ଅତିରାତ୍ର ଓ ଅପ୍‌ତୋର୍ଯ୍ୟାମ ଯଜ୍ଞକର୍ତ୍ତା ଯଥାକ୍ରମେ ଗୋସମ୍ପଦ, ଦୈହିକ ଓ ମାନସିକ ବଳ, ବଳ ଓ ଗୋସମ୍ପଦ ଲାଭ ତଥା ସମସ୍ତ ବିଷୟରେ ପୂର୍ଣ୍ଣତା ଲାଭ କରିଥାଏ । ୮୪୨। ବାଜପେୟ ଯଜ୍ଞ କେବଳ ବ୍ରାହ୍ମଣ ବା କ୍ଷତ୍ରିୟ କରିବାର ଅଧିକାରୀ । ସ୍ୱରାଜ୍ୟ ଅଭିଳାଷୀ ବା ଆଧିପତ୍ୟାଭିଳାଷୀ ଶରତ୍‌କାଳରେ ବାଜପେୟ ଯଜ୍ଞ ଅନୁଷ୍ଠାନ କରିଥାନ୍ତି ।୮୪୩। ଏହି ଯଜ୍ଞର ପୁରୋହିତ, ଯଜ୍ଞକର୍ତ୍ତା ଓ କର୍ତ୍ତାର ସ୍ତ୍ରୀ ସ୍ୱର୍ଣ୍ଣହାର ପରିଧାନ କରନ୍ତି । ଅଗ୍ନିଙ୍କ ନିମିତ୍ତ ମେଣ୍ଢା, ବାୟୁଙ୍କ ନିମିତ୍ତ ବନ୍ଧ୍ୟାଧେନୁ, ସରସ୍ୱତୀଙ୍କ ଉଦ୍ଦେଶ୍ୟରେ ଭେଡ଼ୀ ବା ମେଣ୍ଢୀ ଓ ପ୍ରଜାପତିଙ୍କ ଉଦ୍ଦେଶ୍ୟରେ ସତରଟି କୃଷ୍ଣବର୍ଣ୍ଣ ଶିଙ୍ଗହୀନ ଛାଗ ଅର୍ପିତ ହୁଏ ।୮୪୪। ଶ୍ରୌତସୂତ୍ର ସାହିତ୍ୟରେ ବଳ, ଖାଦ୍ୟ, ଗତି, ପାନୀୟ ପ୍ରଭୃତି ଅର୍ଥରେ 'ବାଜ' ଶବ୍ଦ ବ୍ୟବହୃତ ହୋଇଛି । ବିଶେଷକରି ରାଜା ରାଜସୂୟ ଓ ବ୍ରାହ୍ମଣ ବୃହସ୍ପତିସ୍ତବ ବା ସୌତ୍ରାମଣି ଯଜ୍ଞ କରିବା ବିଧେୟ ।୮୪୫। ଏତଦ୍‌ବ୍ୟତୀତ ଏକଦିନିଆ ସୋମ-ଯଜ୍ଞ ମଧ୍ୟରେ ବୃହସ୍ପତିସବ, ଗୋସବ, ଶ୍ୟେନ ଉଦ୍‌ଭିଦ୍, ବିଶ୍ୱଜିତ୍, ବ୍ରାତ୍ୟସ୍ତୋମ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।୮୪୬।

ଯେଉଁ ଯଜ୍ଞ ଦୁଇଦିନରୁ ବାରଦିନବ୍ୟାପୀ ଅନୁଷ୍ଠିତ ହୁଏ, ତାହାକୁ ଅହୀନ ଯଜ୍ଞ କହନ୍ତି । ୮୪୭। ବିଭିନ୍ନ ପ୍ରକାର ଅହୀନ ଯଜ୍ଞ ମଧ୍ୟରେ ଅଶ୍ୱମେଧ ଓ ଦ୍ୱାଦଶାହ ଯଜ୍ଞ ଉଲ୍ଲେଖଯୋଗ୍ୟ । ଅଶ୍ୱମେଧ ଯଜ୍ଞ ଫାଲ୍‌ଗୁନ, ଚୈତ୍ର, ଜ୍ୟେଷ୍ଠ ବା ଆଷାଢ଼ ମାସର ଶୁକ୍ଳାଷ୍ଟମୀ ଓ ନବମୀ ତିଥିରେ ଆରମ୍ଭ କରାଯାଏ ।୮୪୮। ବିଧିବିଧାନ ଅନୁସାରେ ଶୁକ୍ଳବର୍ଣ୍ଣ କୃଷ୍ଣଚିହ୍ନଯୁକ୍ତ ଘୋଡ଼ାଟିଏ ଯଜ୍ଞରେ ପ୍ରୋକ୍ଷିତ ହୋଇ ବର୍ଷେ ପର୍ଯ୍ୟନ୍ତ ଛାଡ଼ିଦିଆଯାଏ । ଏହି ଘୋଡ଼ାକୁ ସେବକ ଓ ସୈନ୍ୟଗଣ ସୁରକ୍ଷା କରିଥାନ୍ତି । ବର୍ଷେ ପରେ ତାହାକୁ ହତ୍ୟା କରି ତାହାର ରକ୍ତରେ ସୂର୍ଯ୍ୟଙ୍କୁ ଆହୁତି ଦିଆଯାଏ । ଅଶ୍ୱମେଧ ଯଜ୍ଞ କେବଳ ରାଜାମାନେ କରିଥିବାର ଜଣାଯାଏ ।

---

୮୪୧ । History of Dh. Vol. II, Part-II. P-1134-1203

୮୪୨ । ଆପ. ଶ୍ରୌତସୂତ୍ର—୧୪-୧-୨

୮୪୩ । ଶୁଦ୍ଧିସାର —ପୃ-୧୩

୮୪୪ । କାତ୍ୟାୟନ ଶ୍ରୌତସୂତ୍ର—୧୪.୨.୧୧-୧୩

୮୪୫ । History of Dh. Vol. II, Part-II, P. 1211.

୮୪୬ । ଆଶ୍ୱ. ଶ୍ରୌତସୂତ୍ର—୯.୫.୧୧

୮୪୭ । Santi—P-152

୮୪୮ । କାତ୍ୟା. ଶ୍ରୌତସୂତ୍ର—୨୦.୧.୨-୩ ।

ଦ୍ୱାଦଶାହ ଯଜ୍ଞ ମଧ୍ୟରେ ଅହୀନ ଓ ସତ୍ର ଅନ୍ତର୍ଗତ । କିନ୍ତୁ ସତ୍ର ଯଜ୍ଞ କେବଳ ବ୍ରାହ୍ମଣମାନଙ୍କ ଦ୍ୱାରା ଅନୁଷ୍ଠିତ ହେବା ସ୍ଥଳେ, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବର୍ଣ୍ଣତ୍ରୟ ଦ୍ୱାଦଶାହ ସତ୍ର ଯଜ୍ଞ କରିଥାନ୍ତି । ସତ୍ର ଯଜ୍ଞ ଦ୍ୱାଦଶ ଦିନରୁ ଅଧିକ କାଳ କରାଯାଇପାରେ । ସତ୍ରରେ ଯଜମାନ ଓ ପୁରୋହିତର ଆବଶ୍ୟକତା ନଥାଏ । ଏଥିରେ ଦକ୍ଷିଣା ଦାନ ବିଧି ପାଳିତ ହୁଏ ନାହିଁ ।୧୪୯।

ରାଜସୂୟଯଜ୍ଞ କେବଳ କ୍ଷତ୍ରିୟମାନଙ୍କ ଦ୍ୱାରା ଅନୁଷ୍ଠିତ ହୁଏ । ରାଜସୂୟଦ୍ୱାରା ଜଣେ ରାଜା ବା ରାଜତୁଲ୍ୟ ସୁଖଲାଭ କରିଥାଏ । ବାଜପେୟ ଦ୍ୱାରା ଜଣେ ସମ୍ରାଟ ହୋଇଥାଏ ।୧୫୦। ତେଣୁ କେତେକଙ୍କ ମତରେ ବାଜପେୟ ପରେ ରାଜସୂୟ ବା ରାଜସୂୟ ପରେ ବାଜପେୟ ଯଜ୍ଞ କରାଯାଇଥାଏ । ରାଜସୂୟ ଫାଲ୍‌ଗୁନ ଶୁକ୍ଳ-ପ୍ରତିପଦ୍ ତିଥିରେ ଆରମ୍ଭ କରାଯାଇ ପୂର୍ଣ୍ଣିମା ପର୍ଯ୍ୟନ୍ତ ନାନାପ୍ରକାର ବିଧି ପାଳିତ ହୁଏ । ବର୍ଷେ ପର୍ଯ୍ୟନ୍ତ ଏହି ବିଧି ସହିତ ପଞ୍ଚବାତୀୟ, ଅପାମାର୍ଗ ହୋମ, ରତ୍ନି ନାମହବିଂଷି ପାଳନ କରାଯାଏ । ସେନାପତି, ପୁରୋହିତ, ମହିଷୀ, ସୂତ, ଗ୍ରାମଣୀ, କ୍ଷତ୍ତ, ସଂଗ୍ରହିତ୍ରୃ, ଅକ୍ଷାବାପ, ଗୋବିକର୍ତ୍ତି, ଦୂତ, ପରିବୃକ୍ତ ପ୍ରଭୃତି ରାଜସୂୟରୁ ରାଜାଙ୍କ ସହିତ ଯଜ୍ଞରେ ଅଂଶଗ୍ରହଣ କରନ୍ତି ।୧୫୧। ଏଥିରେ ଇନ୍ଦ୍ର, ଅଗ୍ନି-ଅନୀକବତ୍ର, ବୃହସ୍ପତି, ଅଦିତି, ବରୁଣ, ମରୁତ୍, ସବିତୃ, ଅଶ୍ୱିନ୍, ରୁଦ୍ର, ନିର୍ଋତି ଓ ଅଗ୍ନି ପ୍ରଭୃତି ଦେବତାଙ୍କୁ ଆହୁତି ଦିଆଯାଇ 'ଅଭିଷେଚନୀୟ' କର୍ମ କରାଯାଏ । ଏଥିରେ ନିଯୁକ୍ତ ଥିବା ଷୋଳ ଜଣ ବ୍ରାହ୍ମଣଙ୍କୁ ଗୋ, ସୁବର୍ଣ୍ଣ, ବସ୍ତ୍ର, ଆଭୂଷଣାଦି ଦକ୍ଷିଣା ସ୍ୱରୂପ ଦିଆଯାଏ ।୧୫୨।

ସାମ୍ବତ୍ସରିକ ସତ୍ରକୁ 'ଗବାମୟନ' କୁହାଯାଏ । ଏହା ଏକବର୍ଷବ୍ୟାପୀ ଅନୁଷ୍ଠିତ ହୁଏ । ଏଥିରେ ପ୍ରାୟଣୀୟ ଅତିରାତ୍ର (ଅଧିବାସ), ଚତୁର୍ବିଂଶ ଦିବସ (ଉକ୍‌ଥ୍ୟ), ଅଭିପ୍ଲବ-ଷଡ଼ହ-ପୃଷ୍ଠ୍ୟଷଡ଼ହ (ପାଞ୍ଚମାସବ୍ୟାପୀ), ତିନୋଟି ସ୍ୱରସାମନ୍ ଦିବସ, ବିଶୁବତ୍, ଗୋଷ୍ଟୋମ, ଆୟୁଷ୍ଟୋମ, ଦଶରାତ୍ର ମହାବ୍ରତ ଓ ଉଦୟନୀୟ ପ୍ରଭୃତି ବିଭିନ୍ନ ଦିବସାବଧି ଯଜ୍ଞାନୁଷ୍ଠାନ କରାଯାଇଥାଏ । ଏଥିରେ ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ଧେନୁ ଓ ବୃଷଭ ଅର୍ପିତ ହୋଇଥାଏ ।୧୫୩।

ଶ୍ରୌତଯଜ୍ଞ ମଧ୍ୟରେ 'ଅଗ୍ନିଚୟନ' ବିଶେଷ ଉଲ୍ଲେଖଯୋଗ୍ୟ । 'ଶତପଥ ବ୍ରାହ୍ମଣ' ଗ୍ରନ୍ଥର ଏକତୃତୀୟାଂଶରେ ଅଗ୍ନିଚୟନ ବିଷୟ ବର୍ଣ୍ଣିତ ହୋଇଛି । ଅଗ୍ନିଚୟନ ନିମିତ୍ତ

୧୪୯ । କାତ୍ୟା, ଶ୍ରୌତସୂତ୍ର—୨୦-୧-୨-୩ ।

୧୫୦ । History of Dh., Vol. II, Part II, P-1214

୧୫୧ । ଶତପଥ ବ୍ରାହ୍ମଣ—୯.୩.୪.୮ ।

୧୫୨ । Santi—P-143

୧୫୩ । ଆଶ୍ୱ. ଶ୍ରୌତସୂତ୍ର—୯.୪. ୭-୨୦ ।

ପାଞ୍ଚଥାକବିଶିଷ୍ଟ ଏକ ବେଦୀ ନିର୍ମିତ ହୁଏ । ଫାଲ୍‌ଗୁନ ପୂର୍ଣ୍ଣିମା ବା ମାଘ ପୂର୍ଣ୍ଣିମା ଦିନ ଏହାର ଶୁଭାରମ୍ଭ କରାଯାଏ । ପ୍ରଥମେ ମଣିଷ, ଘୋଡ଼ା, ଷଣ୍ଢ, ମେଣ୍ଢା ଓ ବୋଦା ଏହି ପାଞ୍ଚଟି ଜୀବ ଉତ୍ସର୍ଗ କରାଯାଇ ସେମାନଙ୍କ ମସ୍ତକ ଉପରେ ବେଦୀ ନିର୍ମିତ ହୁଏ । ଜୀବହତ୍ୟା ବଦଳରେ ସ୍ୱର୍ଣ୍ଣ ବା କର୍ଦ୍ଦମ ମୂର୍ତ୍ତିର ମସ୍ତକ ମଧ୍ୟ ବ୍ୟବହାର କରାଯାଏ ।୧୫୪। ପରବର୍ତ୍ତୀ କୃଷ୍ଣାଷ୍ଟମୀ ଦିନ ଘୋଡ଼ା, ଗଧ ଓ ବୋଦା ସାହାଯ୍ୟରେ ଉଇହୁଙ୍କାରୁ ମାଟି ଆଣି ଯଜ୍ଞକର୍ତ୍ତାର ସ୍ତ୍ରୀ ପ୍ରଥମ ଇଟା ନିର୍ମାଣ କରିବେ । ଏହି ଇଟାକୁ 'ଆଷାଢ଼ା' କହନ୍ତି । କର୍ତ୍ତା ସେହି ମାଟିରୁ ଛଅଟି ଉଖା ବା ଉନ୍ନେଇ ତିଆରି କରିବେ । ଉକ୍ତ ଗୃହୋଚିତ ଦ୍ରବ୍ୟ ନିଆଁରେ ପୋଡ଼ାଯାଏ ।୧୫୫।

ଏହାପରେ ଫାଲ୍‌ଗୁନ ଅମାବାସ୍ୟା ଦିନ ଦୀକ୍ଷଣୀୟେଷ୍ଟି ବା ଦୀକ୍ଷାବିଧି ଅନୁଷ୍ଠିତ ହୁଏ । ପୂର୍ବୋକ୍ତ ଉଖାରେ ଥିବା ସଞ୍ଚିତ ଅଗ୍ନିରେ ଦିନେ ଛଡ଼ା ଦିନେ କାଷ୍ଠ ନିକ୍ଷେପ କରି ଅଗ୍ନିକୁ ଉଜ୍ଜୀବିତ ରଖାଯାଏ । ତା'ପରେ ଦ୍ରୋଣ, ଚକ୍ର, ଶ୍ୟେନ, କଙ୍କ, ସୁପର୍ଣ୍ଣାଦି ଆକାରରେ ବେଦୀ ନିର୍ମିତ ହୁଏ । ଏଥିରେ ବିଭିନ୍ନ ପ୍ରକାର ଓ ନାମର ଇଟା ବ୍ୟବହୃତ ହୋଇଥାଏ । ପ୍ରତ୍ୟେକ ଇଟା ମନ୍ତ୍ରପାଠପୂର୍ବକ ନ୍ୟସ୍ତ କରାଯାଏ । ବେଦୀ ନିମିତ୍ତ ନିରୂପିତ ଭୂମିର ମାପ ଓ ଉଦୁମ୍ବର ଲଙ୍ଗଳରେ ଛଅ, ବାର ବା ଚବିଶଟି ବଳଦ ସାହାଯ୍ୟରେ କର୍ଷଣ କରାଯାଏ । ସେହି ଭୂମିରେ ଉତ୍ତର ବେଦୀ ନିର୍ମିତ ହୁଏ । ପ୍ରଥମ ଥର ଅଗ୍ନିଚୟନ ନିମିତ୍ତ ବେଦୀରେ ଏକ ହଜାର ଓ ପ୍ରତ୍ୟେକ ଥର ପାଇଁ ଦୁଇଗୁଣ ଇଟା ବ୍ୟବହୃତ ହୁଏ । ଏହି ଯଜ୍ଞରେ ସୋମ-ଯାଗର ବିଧି ସହିତ ଦ୍ରବ୍ୟଙ୍କୁ ଆହୁତି ଦିଆଯାଏ ।୧୫୬। ପୂର୍ବେ ପ୍ରାୟଶ୍ଚିତ୍ତ ସ୍ୱରୂପ ଆର୍ଥିକ ସ୍ୱଚ୍ଛଳତା ଥିବା ପ୍ରାୟଶ୍ଚିତ୍ତକାରୀଙ୍କ ଅପରାଧ ଅନୁସାରେ ଯଜ୍ଞ କରିବା ନିମିତ୍ତ ବ୍ୟବସ୍ଥା ଦିଆଯାଉଥିଲା । ସେ ମଧ୍ୟରେ ବ୍ରହ୍ମହତ୍ୟାକାରୀ ଅଶ୍ୱମେଧ, ଗୋସବ, ଅଭିଜିତ୍, ବିଶ୍ୱଜିତ୍, ଅଗ୍ନିଷ୍ଟୋମଯଜ୍ଞ ବା ତୀର୍ଥଯାତ୍ରା କରୁଥିଲେ ।୧୫୭। ସ୍ତ୍ରୀହତ୍ୟାକାରୀ ସୋମଯାଗ କରୁଥିଲେ ।୧୫୮। ଏହିପରି ଅନ୍ୟାନ୍ୟ ଅପରାଧ ପାଇଁ ଯଜ୍ଞ କରିବା ନିମିତ୍ତ ପରାମର୍ଶ ଦିଆଯାଇଛି ।

ଓଡ଼ିଶାର 'ଶମ୍ଭୂକର ପଦ୍ଧତି', 'ଅଗ୍ନିଷ୍ଟୋମ ପଦ୍ଧତି', 'ଜଟେଶ୍ୱର ପଦ୍ଧତି' ଗ୍ରନ୍ଥରେ ଶ୍ରୌତଯଜ୍ଞଗୁଡ଼ିକର ପର୍ଯ୍ୟାଲୋଚନା କରାଯାଇଛି ।୧୫୯। ଯଜ୍ଞ ସମ୍ପର୍କିତ ମଣ୍ଡପ ଓ କୁଣ୍ଡ

---

୧୫୪ । Santi—P-163-168

୧୫୫ । କାତ୍ୟା. ଶ୍ରୌତସୂତ୍ର—୧୬. ୨-୩୨

୧୫୬ । Santi. P. 115-140

୧୫୭ । History of Dh. Vol. II, Part II, P-1246-1255

୧୫୮ । ମନୁସ୍ମୃତି—୧୧. ୭୪. ୭୫ ।

୧୫୯ । History of Dh. Vol. IV—P-95.

ନିର୍ମାଣ ପ୍ରଣାଳୀ ବିଷୟରେ ବାଜପେୟୀ ରାମଚନ୍ଦ୍ର ଦାଶ ଓ ବାସୁଦେବ ରଥଙ୍କ ପ୍ରଣୀତ ଗ୍ରନ୍ଥଗୁଡ଼ିକ ସର୍ବଭାରତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲା ।୨୬୦।

୧୦ । ରାଜଧର୍ମ ପ୍ରକରଣ :

ପ୍ରାଚୀନ କାଳରୁ ଧର୍ମଶାସ୍ତ୍ର ଅନ୍ତର୍ଗତ ରାଜଧର୍ମ ବିଷୟରେ ଆଲୋଚନା ହୋଇଆସୁଛି । ମହାଭାରତ, ରାମାୟଣ, ମନୁସ୍ମୃତି, ଅର୍ଥଶାସ୍ତ୍ର ପ୍ରଭୃତିରେ ରାଜଧର୍ମର ଆଙ୍ଗିକ ବିଷୟ ମଧ୍ୟରେ ସପ୍ତାଙ୍ଗରାଜ୍ୟ, ଷାଡ୍‌ଗୁଣ୍ୟ, ତ୍ରିଶକ୍ତି, ଚତୁର୍ବିଧ ଉପାୟ, ଅଷ୍ଟବର୍ଗ, ପଞ୍ଚବର୍ଗ ତଥା ଚାର ପ୍ରଭୃତିର ଉଲ୍ଲେଖ ରହିଛି । ମହାଭାରତର ଅନୁଶାସନ ପର୍ବ ଓ ଶାନ୍ତି ପର୍ବରେ ରାଜଧର୍ମ ବ୍ୟାଖ୍ୟାକାରମାନଙ୍କ ମଧ୍ୟରେ ବୃହସ୍ପତି, ଭରଦ୍ୱାଜ, ଗୌରଶିର, କାବ୍ୟ, ମହେନ୍ଦ୍ର, ମନୁ, ପ୍ରାଚେତସ ଓ ବିଶାଳାକ୍ଷଙ୍କ ନାମୋଲ୍ଲେଖ ଅଛି ।୨୬୧। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ମହାଭାରତୋକ୍ତ ଆଚାର୍ଯ୍ୟଙ୍କ ସହିତ ବାହୁଦନ୍ତୀପୁତ୍ର, ଦୀର୍ଘଚାରାୟଣ, ଘୋଟକମୁଖ, କଣିକ,ଭାରଦ୍ୱାଜ, କାତ୍ୟାୟନ, କିଞ୍ଜଲ୍କ ଓ ପିଶୁନପୁତ୍ର ପ୍ରଭୃତି ସାତଜଣ ଆଚାର୍ଯ୍ୟଙ୍କର ସିଦ୍ଧାନ୍ତ ଆଲୋଚିତ ହୋଇଛି । ରାମାୟଣର ଅଯୋଧ୍ୟା ଓ ଯୁଦ୍ଧକାଣ୍ଡ ଓ ମନୁସ୍ମୃତିର ସପ୍ତମ ଅଧ୍ୟାୟରେ ଶାସନ ପଦ୍ଧତିର ସ୍ପଷ୍ଟ ଉଲ୍ଲେଖ କରାଯାଇଛି ।୨୬୨। ରାଜଧର୍ମ ସମ୍ପର୍କିତ ଶାସ୍ତ୍ର, ରାଜଶାସ୍ତ୍ର, ନୃପଶାସ୍ତ୍ର, ଅର୍ଥ ଶାସ୍ତ୍ର ଓ ଦଣ୍ଡନୀତି ନୀତିଶାସ୍ତ୍ର ନାମରେ ଅଭିହିତ । ପୂର୍ବୋକ୍ତ ଗ୍ରନ୍ଥ ବ୍ୟତୀତ ଯାଜ୍ଞବଲ୍କ୍ୟ ସ୍ମୃତି, ବୃଦ୍ଧ ହାରୀତସ୍ମୃତି, ବୃହତ୍‌ପରାଶର, କାମନ୍ଦକୀୟ ନୀତିସାର, ଶୁକ୍ର ନୀତିସାର, ବିଭିନ୍ନ ପୁରାଣ, ସୋମେଶ୍ୱର ପ୍ରଣୀତ ମାନସୋଲ୍ଲାସ, ସୋମଦେବଙ୍କ ନୀତି, ବାକ୍ୟାମୃତ, ବୃହସ୍ପତି ସୂତ୍ର ପ୍ରଭୃତିରେ ଏବଂ ଲକ୍ଷ୍ମୀଧର, ଚଣ୍ଡେଶ୍ୱର, ମିତ୍ର ମିଶ୍ର, ନୀଳକଣ୍ଠ, ଅନନ୍ତଦେବ, ଗୋଦାବର ପ୍ରଭୃତିଙ୍କ ନିବନ୍ଧ ଗ୍ରନ୍ଥରେ ରାଜଧର୍ମର ବିଶଦ ଆଲୋଚନା ହୋଇଥିବାର ଦେଖାଯାଏ । ପ୍ରଶାସନ ଓ ବ୍ୟବହାର ଭେଦରେ ରାଜଧର୍ମକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ପ୍ରଶାସନରେ ଶାସକ ଓ ଶାସନବିଧି ଏବଂ ବ୍ୟବହାରରେ ନ୍ୟାୟ ବିଧାନର ପର୍ଯ୍ୟାଲୋଚନା କରାଯାଇଛି ।

ପ୍ରଶାସନ :

ରାଜ୍ୟର ସାତ ଅଙ୍ଗ ମଧ୍ୟରେ ସ୍ୱାମୀ ବା ଶାସକ, ଅମାତ୍ୟ, ଜନପଦ ବା ରାଷ୍ଟ୍ର, ଦୁର୍ଗ, କୋଷ ବା ରାଜଭଣ୍ଡାର, ବଳ ବା ସେନା ଓ ମିତ୍ର ପ୍ରଭୃତି ଅନ୍ତର୍ଗତ ।୨୬୩। ଅଙ୍ଗକୁ ପ୍ରକୃତି କହନ୍ତି ।୨୬୪। ଶାସକ ବା ରାଜାଙ୍କୁ ଦେବଅଂଶୀ ରୂପେ ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି ।୨୬୫।

୨୬୦ । OSM. Mss. Dh. No-563, 327 (a) & (b)

୨୬୧ । OSM. Mss. Dh. No 19, 795, 25, 831

୨୬୨ । ମହାଭାରତ-ଶାନ୍ତିପର୍ବ—୫୮/୧-୩, ୧୦୨ ୩୧-୩୨

୨୬୩ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ. ୫୭୯

୨୬୪ । ସ୍ୱାମ୍ୟମାତ୍ୟସୁହୃଦ୍ଦୁର୍ଗ କୋଶଦଣ୍ଡଜନାଃ ॥ (ସରସ୍ୱତୀବିଳାସ—ପୃ-୪୫)

୨୬୫ । ହରିହର ଚତୁରଙ୍ଗ—ପୃ-୧୯୫ ।

ରାଜା ବ୍ରାହ୍ମଣ ବ୍ୟତୀତ ସମସ୍ତଙ୍କୁ ଶାସନ କରନ୍ତି । ରାଜାଙ୍କର ଗୁଣ ବିଷୟରେ ମହାଭାରତରେ ଛତିଶି, ମାନସୋଲ୍ଲାସରେ ଚଉରାଳିଶ, ଅଗ୍ନି ପୁରାଣରେ ଏକୋଇଶ, କାମନ୍ଦକୀୟ ନୀତିସାରରେ ଊଣେଇଶ ଓ ପରଶୁରାମ ପ୍ରତାପ ଗ୍ରନ୍ଥରେ ଛୟାନବେ ପ୍ରକାର ଗୁଣାବଳୀର ତାଲିକା ଦିଆ-ଯାଇଛି ।୨୬୬। ସାଧାରଣତଃ ରାଜା କୁଳୀନ, ଧର୍ମପରାୟଣ, ପ୍ରସନ୍ନ, ସଦାଚାରୀ, ସତ୍ୟବାଦୀ, କୃତଜ୍ଞ, ଉତ୍ସାହୀ, ଅପ୍ରମାଦୀ, ସଦ୍ବୁଦ୍ଧି, ବେଦବେଦାଙ୍ଗବିତ୍ ହେବା ବାଞ୍ଛନୀୟ । ପ୍ରଜାପାଳନ, ନ୍ୟାୟୋଚିତ ଦଣ୍ଡଦାନ, ଶାସ୍ତ୍ରବିହିତ ନିୟମାନୁସରଣାଦି ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ।୨୬୭। ସେଥିପାଇଁ ରାଜପରିଷଦ୍ ଓ ମନ୍ତ୍ରୀସଭା ରାଜାଙ୍କ ସାହାଯ୍ୟକାରୀ ସଂସ୍ଥା ରୂପେ ଗଠିତ ହୋଇଥାଏ ।

ରାଜ୍ୟର ସାତ ଅଙ୍ଗ ମଧ୍ୟରେ ଅମାତ୍ୟ ବା ସଚିବ ଅନ୍ୟତମ । ଧର୍ମ, ଅର୍ଥ, କାମ ଓ ଭୟ-କାଳୀନ ଅବସ୍ଥାରେ ଓ ପ୍ରଲୋଭନାଦି ବିଷୟରେ ପରୀକ୍ଷା କରାଯାଇ ମନ୍ତ୍ରୀ ନିଯୁକ୍ତ ହୁଅନ୍ତି । ସତ୍ୟତା ଓ ବିଶ୍ୱାସପାତ୍ରତା ମନ୍ତ୍ରୀର ଅନିବାର୍ଯ୍ୟ ଗୁଣ । ରାଜାଙ୍କ ମନ୍ତ୍ରିପରିଷଦରେ ସାତ, ଆଠ, ବାର, ଷୋହଳ, କୋଡ଼ିଏ ବା ସତରିଶ ଜଣ ମନ୍ତ୍ରୀ ଥାଆନ୍ତି ।୨୬୮। ଏହା ଲଘୁ, ମଧ୍ୟମ ଓ ବୃହତ୍ ଭାବେ ତିନି ଭାଗରେ ବିଭକ୍ତ । ଏଥିରେ ଯଥାକ୍ରମେ ତିନିରୁ ସାତ, ଆଠରୁ ଅଧିକ ଓ କୋଡ଼ିଏରୁ ସତରିଶ ସଂଖ୍ୟକ ମନ୍ତ୍ରୀ ନିଯୁକ୍ତ ହୁଅନ୍ତି । କୌଟିଲ୍ୟଙ୍କ ଅନୁସାରେ ମନ୍ତ୍ରୀ ଦେଶବାସୀ, କୁଳୀନ, ପ୍ରଭାବଶାଳୀ, କଳାନିପୁଣ, ଦୂରଦର୍ଶୀ, ଜାଗ୍ରତ ବକ୍ତା, ନିର୍ଭୀକ, ମେଧାବୀ,ଉତ୍ସାହୀ,ଧୈର୍ଯ୍ୟଶୀଳ, ପବିତ୍ର, ଚରିତ୍ରବାନ୍ ହେବା ବାଞ୍ଛନୀୟ ।୨୬୯।ରାଜା ଶାନ୍ତି, ଯୁଦ୍ଧ, ସେନା, କୋଷ, ରାଷ୍ଟ୍ର, କର ଓ ରକ୍ଷାଦି ବିଷୟରେ ମନ୍ତ୍ରୀଙ୍କ ସହିତ ପରାମର୍ଶ କରନ୍ତି ।୨୭୦। ରାଜ୍ୟର ଅନ୍ୟ ପଦାଧିକାରୀମାନଙ୍କ ମଧ୍ୟରେ ଯୁବରାଜ, ପୁରୋହିତ, ଗୁରୁ, ସେନାପତି ଓ ଦୂତ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ରାଜ୍ୟର ତୃତୀୟ ଅଙ୍ଗ ହେଉଛି ରାଷ୍ଟ୍ର, ଦେଶ, ବିଷୟ ବା ଜନପଦ । ଏ ବିଷୟରେ ମହା-ଭାରତ, ମନୁସ୍ମୃତି, ବିଷ୍ଣୁଧର୍ମସୂତ୍ର, ବିଷ୍ଣୁଧର୍ମୋତ୍ତର, ମାନସୋଲ୍ଲାସ ପ୍ରଭୃତିରେ ସବିଶେଷ ଆଲୋଚନା କରାଯାଇଛି ।୨୭୧। କୌଟିଲ୍ୟଙ୍କ ଅନୁସାରେ କେତେକ ବସ୍ତିକୁ ନେଇ ଏକ ଗ୍ରାମ, ଦଶଗ୍ରାମକୁ 'ସଂଗ୍ରହଣ', ଦୁଇଶହ ଗ୍ରାମକୁ ନେଇ 'ଖାର୍ବଟିକ', ଚାରିଶହ ଗ୍ରାମକୁ 'ଦ୍ରୋଣମୁଖ' ଓ

---

୨୬୬ । ମନୁସ୍ମୃତି—୭-୪-୫ ।

୨୬୭ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ.୬୦୧

୨୬୮ । ହରିହର ଚତୁରଙ୍ଗ—ପୃ. ୧୯୫-୧୯୭

୨୬୯ । ତତ୍ରୈବ—ପୃ.୧୭୮

୨୭୦ । ଧର୍ମଶାସ୍ତ୍ର କା ଇତିହାସ—ଦ୍ୱିତୀୟ ଭାଗ—ପୃ-୬୨୫ ।

୨୭୧ । ମନୁସ୍ମୃତି—୭-୫୮-୫୯

ଆଠଶହ ଗ୍ରାମକୁ ସ୍ଥାନୀୟ ବା ଥାନା ବୋଲି କୁହାଯାଉଥିଲା । ଅନ୍ୟ ପ୍ରକାରରେ ଗୋଟିଏ ଦେଶରେ ଶହେଗ୍ରାମ, ଗୃହଦେଶରେ ଏକ ମଣ୍ଡଳ, ଶହେ ମଣ୍ଡଳରେ ଏକ ଖଣ୍ଡ ଓ ସମଗ୍ର ପୃଥିବୀ ନଅଖଣ୍ଡରେ ବିଭକ୍ତ । ରାଷ୍ଟ୍ର, ବିଷୟ, ଭୋଗ, ନଗର ପ୍ରଭୃତି ଦ୍ୱାରା ରାଜ୍ୟ ବା ଦେଶର ବିଭିନ୍ନ ଅଂଶର ନାମକରଣ କରାଯାଇଥାଏ । ଶାସନର ସୁବିଧା ନିମିତ୍ତ ବିଭିନ୍ନ ପଦାଧିକାରୀ ନିଯୁକ୍ତ ହୁଅନ୍ତି । ଶାସନରେ ତ୍ରିଶକ୍ତି ଅର୍ଥାତ୍ ପ୍ରଭୁଶକ୍ତି, ମନ୍ତ୍ରଶକ୍ତି ଓ ଉତ୍ସାହଶକ୍ତି ସନ୍ଧିବିଗ୍ରହାଦି ଷଟ୍ ଉପାୟ ବା ସାମ, ଦାନ, ଭେଦ, ଦଣ୍ଡାଦି ଚତୁର୍ବିଧ ଉପାୟର ବ୍ୟବହାରଜ୍ଞାନ ଏକାନ୍ତ ଆବଶ୍ୟକ ।

ଦୁର୍ଗ ବା ରାଜଧାନୀ ରାଜ୍ୟର ଚତୁର୍ଥ ଅଙ୍ଗ । ଉତ୍ତମ ଦୁର୍ଗର ମହତ୍ତ୍ୱ ଓ ଦୁର୍ଗନିର୍ମାଣ ବିଷୟରେ ଯାଜ୍ଞବଲ୍କ୍ୟ, ମନୁ, ବୃହସ୍ପତି, କୌଟିଲ୍ୟ ପ୍ରଭୃତି ଧର୍ମଶାସ୍ତ୍ରକାରଗଣ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । କୌଟିଲ୍ୟଙ୍କ ଅନୁସାରେ ଔଦକ (ଜଳମଧ୍ୟସ୍ଥ), ପାର୍ବତ (ପର୍ବତୋପରି-ନିର୍ମିତ), ଧାନ୍ୟନ (ମରୁଭୂମିମଧ୍ୟସ୍ଥ) ଓ ବନଦୁର୍ଗାଦି ଚତୁର୍ବିଧ ଦୁର୍ଗ ନିର୍ମାଣ କରାଯାଉଥିଲା । ୧୭୨। ଶୁକ୍ରାଚାର୍ଯ୍ୟ ଉକ୍ତ ଚତୁର୍ବିଧ ଦୁର୍ଗ ବ୍ୟତୀତ ମହୀଦୁର୍ଗ ଓ ନୃଦୁର୍ଗ ଏପରି ଛ' ପ୍ରକାର ଦୁର୍ଗର ଉଲ୍ଲେଖ କରିଛନ୍ତି । 'ବୀରସର୍ବସ୍ୱ'ରେ ଆଠ ପ୍ରକାର ଦୁର୍ଗର ଉଲ୍ଲେଖ ଅଛି ।୧୭୩। ରାଜଧାନୀରେ ବିଭିନ୍ନ କାର୍ଯ୍ୟାଳୟ, ନ୍ୟାୟାଳୟ, ରାଜକର୍ମଚାରୀଙ୍କ ବାସଗୃହ, ଦେବଦେବୀ ମନ୍ଦିର, କୁଞ୍ଜ, ମଣ୍ଡପ, କୂପ, ବିଭିନ୍ନ ଜାତି ଓ ବୃତ୍ତିର ଲୋକଙ୍କ ବାସଗୃହ ତଥା ଶ୍ମଶାନ ପ୍ରଭୃତି ଥାଏ ।

କୋଷ ହେଉଛି ରାଜ୍ୟର ପଞ୍ଚମ ଅଙ୍ଗ । ରାଜ୍ୟର ସମସ୍ତ ବ୍ୟବସ୍ଥା କୋଷ ଉପରେ ନିର୍ଭର କରେ ।୧୭୪। ପୂର୍ବକାଳରେ ରାଜସ୍ୱ ଓ ସୈନ୍ୟବଳ ଥିଲା ରାଜ୍ୟର ଦୁଇଟି ମୁଖ୍ୟସ୍ତମ୍ଭ । କର-ଗ୍ରହଣ ଦ୍ୱାରା କୋଷର ସମୃଦ୍ଧି ସାଧିତ ହୁଏ । ସ୍ମୃତିଶାସ୍ତ୍ର ଅନୁସାରେ ବସ୍ତୁର ମୂଲ୍ୟ ଓ ସମୟ ଉପରେ ନିର୍ଭର କରି କର ନିର୍ଦ୍ଧାରଣ କରାଯାଉଥିଲା । ମନୁ, ଗୌତମ ପ୍ରଭୃତିଙ୍କ ଅନୁସାରେ ରାଜା ଉତ୍ପାଦନର ଏକଷଷ୍ଠାଂଶ ଏବଂ ବିପଦ ସମୟରେ ଏକଚତୁର୍ଥାଂଶ ବା ତୃତୀୟାଂଶ କର ସ୍ୱରୂପ ଗ୍ରହଣ କରିଥାନ୍ତି । ରାଜ୍ୟରେ ସମସ୍ତେ କର ଦେବାର ବାଧ୍ୟ ଅଛି ।୧୭୫। କାମନ୍ଦକୀୟ ନୀତିସାର ଅନୁସାରେ କୃଷି, ମାର୍ଗ, ରାଜଧାନୀ, ବନ୍ଧ, ହାତୀ, ଖଣି, ନିର୍ଜନ ସ୍ଥାନରେ ଗୃହ-ନିର୍ମାଣ ଓ ଧନୀ ଲୋକଠାରୁ କର ନିଆଯାଉଥିଲା ।୧୭୬। ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର ଓ ଶିଳାଲେଖ ପ୍ରଭୃତିରେ ବିଭିନ୍ନ ପ୍ରକାର କରର ନାମୋଲ୍ଲେଖ ରହିଛି । କର ଅର୍ଥରେ ବଳୀ, ଭାଗ, ଶୁଳ୍କ, ପ୍ରତିଭୋଗ ଆଦି ଶବ୍ଦ ବ୍ୟବହୃତ ହୋଇଥିବାର ଦେଖାଯାଏ ।

---

୧୭୨ । ଧର୍ମଶାସ୍ତ୍ର କା ଇତିହାସ -- ଦ୍ୱିତୀୟ ଭାଗ -- ପୃ-୭୪୩

୧୭୩ । ତତ୍ରୈବ -- ପୃ-୭୬୩-୭୬୫

୧୭୪ । ବୀରସର୍ବସ୍ୱ -- ସ. ଆନନ୍ଦ ମିଶ୍ର-୧୯୨୨ -- ପୃ-୨୭-୨୮

୧୭୫ । ସରସ୍ୱତୀବିଳାସ -- ପୃ-୪୬

୧୭୬ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ -- ପୃ.-୬୭୭ ।

ରାଜ୍ୟର ଷଷ୍ଠ ଅଙ୍ଗ ହେଉଛି ବଳ ବା ସେନା । କୌଟିଲ୍ୟଙ୍କ ଅନୁସାରେ ବଳକୁ ଦଣ୍ଡ କୁହାଯାଏ । ଋଗ୍‌ବେଦରେ ସେନା, ଅସ୍ତ୍ରଶସ୍ତ୍ର, ଯୁଦ୍ଧର ବର୍ଣ୍ଣନା ସହିତ ଧନୁ, ବାଣ, କବଚ, ପ୍ରତ୍ୟଞ୍ଚ, ତୂଣୀର, ସାରଥି, ଅଶ୍ୱ, ରଥ ପ୍ରଭୃତିର ଉଲ୍ଲେଖ ରହିଛି ।୧୭୭। ଶାସ୍ତ୍ରକାରମାନଙ୍କ ମତରେ ମୌଳ (ବଂଶ-ପରମ୍ପରାଗତ), ଭୃତ, ଭୃତକ ବା ଭୃତ୍ୟ, ଶ୍ରେଣୀ (ବ୍ୟବସାୟୀଙ୍କ ସେନା), ମିତ୍ର (ସାମନ୍ତ ସୈନ୍ୟ), ଅମିତ୍ର (ଶତ୍ରୁ ପକ୍ଷରୁ ଆଗତ) ଓ ଅଟବୀ ବା ଆଟବିକ ନାମରେ ସେନା ଛ' ପ୍ରକାର ।୧୭୮। ମହାଭାରତରେ ଉକ୍ତ ସେନାଗୋଷ୍ଠୀ ମଧ୍ୟରୁ ମୌଳ ଓ ମିତ୍ର ଶ୍ରେଣୀୟ ସୈନ୍ୟଙ୍କୁ ଶ୍ରେଷ୍ଠ ବୋଲି ବର୍ଣ୍ଣନା କରାଯାଇଛି ।୧୭୯। ଯଶସ୍ତିଲକ ଗ୍ରନ୍ଥରେ ଉତ୍ତରାପଥ, ଦାକ୍ଷିଣାତ୍ୟ, ଦ୍ରମିଣ (ଦକ୍ଷିଣଭାରତ), ତୈରଭୁକ୍ତ (ତିରହୁତ୍) ଓ ଗୁଜରାଟୀ ସୈନ୍ୟଙ୍କର ଗୁଣାବଳୀ ବର୍ଣ୍ଣିତ ହୋଇଛି । ସୈନ୍ୟବାହିନୀ ହସ୍ତୀ, ଅଶ୍ୱ, ରଥ ଓ ପଦାତି ଭେଦରେ ଚାରିପ୍ରକାର ।୧୮୦। କେହି କେହି ସୈନ୍ୟବାହିନୀକୁ ହସ୍ତୀ, ଅଶ୍ୱ, ରଥ, ପଦାତି, ମନ୍ତ୍ର, (ନୀତି) ଓ କୋଷାଦି ଭେଦରେ ଛ' ପ୍ରକାର ବୋଲି କହିଛନ୍ତି ।୧୮୧। ମହାଭାରତ ଅନୁଯାୟୀ ହସ୍ତୀ, ଅଶ୍ୱ, ରଥ, ପଦାତି, ବିଷ୍ଟି (ଶ୍ରମିକ), ନୌକା, ଚର ଓ ଦେଶିକ (ପଥପ୍ରଦର୍ଶକ) ଭେଦରେ ସେନାବାହିନୀ ଆଠଭାଗରେ ବିଭକ୍ତ । ବିଭାଗ ଅନୁସାରେ ପାଞ୍ଚଶହ ହାତୀ, ପାଞ୍ଚଶହ ରଥ, ପନ୍ଦରଶହ ଅଶ୍ୱ ଓ ପଚିଶହ ପଦାତିଙ୍କୁ ଏକ ସେନା, ଦଶ ସେନାରେ ଏକ ପୃତନା, ଦଶ ପୃତନାରେ ଏକ ବାହିନୀ, ଦଶ ବାହିନୀରେ ଏକ ଧ୍ୱଜିନୀ, ଦଶ ଧ୍ୱଜିନୀରେ ଏକ ଚମୂ ଏବଂ ଦଶ ଚମୂରେ ଏକ ଅକ୍ଷୌହିଣୀ ପରିଗଣିତ ହୁଏ ।୧୮୨। ଏ ବିଷୟରେ ବୈଜୟନ୍ତୀ କୋଷ, ମନୁସ୍ମୃତି, ଶୁକ୍ର ନୀତିସାର, ଅର୍ଥସାର, ହରିହରଚତୁରଙ୍ଗ ପ୍ରଭୃତିରେ ବିଶଦ ଆଲୋଚନା କରାଯାଇଅଛି ।

ଦେଶଦ୍ରୋହ, ଆକ୍ରମଣ, ଅଗ୍ନି-ବନ୍ୟା-ମହାମାରୀ-ଦୁର୍ଭିକ୍ଷାଦି ବିପତ୍କାଳରେ ରାଜା ସୈନ୍ୟବାହିନୀର ଉପଯୋଗ କରନ୍ତି । ସୈନ୍ୟଗଠନ, ସେନାବାସ ନିର୍ମାଣ, ସୈନ୍ୟମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା ପ୍ରଭୃତି ବିଶେଷ ଦୃଷ୍ଟି ଦିଆଯାଏ । ସେନାବାହିନୀ ବାଣ, ତୂଣୀର, ପରଶୁ, କୃପାଣ, ବଜ୍ର, ଅଗ୍ନିଚୂର୍ଣ୍ଣ ପ୍ରଭୃତି ଅସ୍ତ୍ରଶସ୍ତ୍ର ଦ୍ୱାରା ଭୂଷିତ ହୋଇଥାନ୍ତି । ଏହି

---

୧୭୭ । ଧର୍ମଶାସ୍ତ୍ର କା ଇତିହାସ ଦ୍ୱିତୀୟ ଭାଗ—ପୃ. ୬୭୭

୧୭୮ । (କ) ଅର୍ଥଶାସ୍ତ୍ର—୯-୨, (ଖ) କାମନ୍ଦକୀୟ ନୀତିସାର—୧୮-୪, (ଗ) ଅଗ୍ନିପୁରାଣ—୨୪୨ । ୧-୨ ।

୧୭୯ । ମହାଭାରତ—ଆଶ୍ରମିକ ପର୍ବ ୭ । ୭-୮

୧୮୦ । ହରିହର ଚତୁରଙ୍ଗ—Gom1-1950—ପୃ-୨

୧୮୧ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟଭାଗ—ପୃ-୬୭୯

୧୮୨ । ମହାଭାରତ-ଉଦ୍‌ଯୋଗ ପର୍ବ—୧୫୫ । ୨୪-୨୬ ।

ଅସ୍ତ୍ରଶସ୍ତ୍ରଗୁଡ଼ିକ ମୁକ୍ତ, ଅମୁକ୍ତ, ମୁକ୍ତାମୁକ୍ତ ଓ ମନ୍ତ୍ରମୁକ୍ତଭାବେ ଚାରି ଶ୍ରେଣୀରେ ବିଭକ୍ତ ।୬୮୩।

ସୁହୃତ୍ ବା ମିତ୍ର ରାଜ୍ୟର ସପ୍ତମ ଅଙ୍ଗ । ଭୂମି, ସୁବର୍ଣ୍ଣ ଓ ମିତ୍ର ରାଜନୀତିର ତିନୋଟି ମୁଖ୍ୟ ଫଳ ।୬୮୪। ମହାଭାରତ ଅନୁସାରେ କେହି କାହାର ମିତ୍ର ବା ଶତ୍ରୁ ନୁହେଁ । ଧନ-ଦ୍ୱାରା ହିଁ ମିତ୍ର ବା ଶତ୍ରୁଲାଭ ହୋଇଥାଏ ।୬୮୫। ସମାନ ଲକ୍ଷ୍ୟ, ଶରଣାର୍ଥୀ, ସହଜ ଓ କୃତ୍ରିମ ଭେଦରେ ମିତ୍ର ଚାରିପ୍ରକାର । କାମନ୍ଦକୀୟ ନୀତିସାର ଅନୁଯାୟୀ ମାତାପିତାଦି ଜନ୍ମଜାତମିତ୍ର, ବିବାହାଦିଦ୍ୱାରା କୃତସମ୍ବନ୍ଧ ମିତ୍ର, ବଂଶକ୍ରମାଗତ ମିତ୍ର ଓ ଶରଣାର୍ଥୀ ରୂପେ ମିତ୍ର ଚତୁର୍ବିଧ ।୬୮୬। ସହଜ, କୃତ୍ରିମ ଓ ପ୍ରାକୃତ ଭେଦରେ ବା ଅରି, ମିତ୍ର, ଅରିମିତ୍ର, ମିତ୍ର-ମିତ୍ର, ଅରିମିତ୍ର-ମିତ୍ର ଆଦି ଭେଦରେ ଶତ୍ରୁ ବା ମିତ୍ରର ବିଭାଗୀକରଣ କରାଯାଇଛି ।୬୮୭।

ରାଜା ରାଜ୍ୟର ଶକ୍ତି ବୃଦ୍ଧି ନିମିତ୍ତ ସନ୍ଧି-ବିଗ୍ରହ-ଆସନ-ଯାନ-ସଂଶ୍ରୟ-ଦ୍ୱୈଧୀଭାବାଦି ଷଡ଼୍-ଗୁଣର ଉପଯୋଗ କରିବେ । ଅର୍ଥଶାସ୍ତ୍ର, ଅଗ୍ନିପୁରାଣ, କାମନ୍ଦକୀୟ ନୀତିସାର, ରାଜନୀତି ପ୍ରକାଶ, ସରସ୍ୱତୀବିଳାସ, ମନୁସ୍ମୃତି ପ୍ରଭୃତି ଗ୍ରନ୍ଥରେ ଏହି ଛଅ ପ୍ରକାର ଗୁଣ ବା ବିଧି ବିଷୟରେ ବିଭିନ୍ନ ପ୍ରକାର ବ୍ୟାଖ୍ୟା କରାଯାଇଛି । ରାଜା ରାଜ୍ୟର ସୁରକ୍ଷା ନିମିତ୍ତ ରାଜନୀତି ଅଧ୍ୟୟନ, ଧର୍ମକୃତ୍ୟ ଆଚରଣ ଓ ପୁରୁଷାର୍ଥ ସିଦ୍ଧି ପାଇଁ ଅର୍ଥ, ଧର୍ମ ଓ କାମର ସମୟୋପ-ଯୋଗୀ ବ୍ୟବହାର କରିବେ ।୬୮୮।

**ବ୍ୟବହାର :**

ନ୍ୟାୟପଦ୍ଧତିକୁ ବ୍ୟବହାର କୁହାଯାଏ । ନିଷ୍ପକ୍ଷ ବିଚାର କରି ନ୍ୟାୟ ଦେବା, ଦୋଷୀକୁ ଦଣ୍ଡ ତଥା ନିର୍ଦ୍ଦୋଷକୁ ମୁକ୍ତ ଦେବା ରାଜାଙ୍କର ଅନ୍ୟତମ ମୁଖ୍ୟ କାର୍ଯ୍ୟ ।୬୮୯। ନ୍ୟାୟ ଶାସନ ହେଉଛି ଧର୍ମର ପ୍ରତୀକ । ନ୍ୟାୟାଳୟ ଧର୍ମାସନ, ଧର୍ମସ୍ଥାନ ବା ଧର୍ମାଧିକରଣ ନାମରେ ଅଭିହିତ । ସୂତ୍ର ଓ ସ୍ମୃତି ସାହିତ୍ୟର ଉଲ୍ଲେଖ ଅନୁସାରେ ଦେବା-ନେବା, ନ୍ୟାୟ, ନ୍ୟାୟବିଧି, ବିବାଦ ଆଦି ଅର୍ଥରେ 'ବ୍ୟବହାର' ଶବ୍ଦର ବ୍ୟବହାର ଦେଖାଯାଏ । ବି = ବିବିଧ ଅବ୍ = ସନ୍ଦେହ ଓ ହାର ବା ପରିହାର ହିଁ ବ୍ୟବହାରର ଅର୍ଥ ।

---

୬୮୩ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟଭାଗ—ପୃ. ୬୭୬-୬୮୭ ।

୬୮୪ । ମନୁସ୍ମୃତି-୭-୨୦୭ ।

୬୮୫ । ନ କଶ୍ଚିତ୍ କସ୍ୟଚିନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚିଦ୍ ସୁହୃତ୍ ।
ଅର୍ଥତସ୍ତୁ ନିବଧ୍ୟନ୍ତେ ମିତ୍ରାଣି ରିପବସ୍ତଥା ॥ ଶାନ୍ତି—୧୩୮ । ୧୧୦ ॥

୬୮୬ । କାମନ୍ଦକୀୟ ନୀତିସାର—୪-୭୪

୬୮୭ । ସରସ୍ୱତୀବିଳାସ — ପୃ-୩୬

୬୮୮ । ଧର୍ମଶାସ୍ତ୍ର କା ଇତିହାସ-୨ୟ ଭାଗ—ପୃ ୬୧୩-୬୧୪

୬୮୯ । ଯେ ଦଣ୍ଡ୍ୟାନ୍ ଦଣ୍ଡୟେତ୍ ରାଜା ସମ୍ୟକ୍ ଦଣ୍ଡ୍ୟାଂଶ୍ଚ ଘାତୟେତ୍ ।
ଇଷ୍ଟଂ ସ୍ୟାତ୍ କ୍ରତୁଭିସ୍ତେନ ସମାପ୍ତବରଦକ୍ଷିଣୈଃ ॥ (ସରସ୍ୱତୀ ବିଳାସ-ପୃ-୧୫)

ବ୍ୟବହାରର ବିଭାଗ ଅନୁସାରେ କୌଟିଲ୍ୟ ଷୋହଳ, ମନୁ, ନାରଦ ଓ ସରସ୍ୱତୀବିଳାସ ଅଠର, ବୃହସ୍ପତି ଊଣେଇଶ ଓ ଯାଜ୍ଞବଲ୍କ୍ୟ କୋଡ଼ିଏ ପ୍ରକାର ବ୍ୟବହାରର ଉଲ୍ଲେଖ କରିଛନ୍ତି । ମନୁଙ୍କ ଅନୁସାରେ ଋଣାଦାନ, ନିକ୍ଷେପ, ଅସ୍ୱାମୀବିକ୍ରୟ, ସମ୍ଭୂୟସମୁତ୍ଥାନ, ଦତ୍ତସ୍ୟାନପାକର୍ମ, ବେତନାଦାନ, ସମ୍ବିଦ୍‌ବ୍ୟତିକ୍ରମ, କ୍ରୟବିକ୍ରୟାନୁଶୟ, ସ୍ୱାମୀପାଳବିବାଦ, ସୀମାବିବାଦ ବାକ୍‌ପାରୁଷ୍ୟ, ଦଣ୍ଡପାରୁଷ୍ୟ, ସ୍ତେୟ, ସାହସ, ସ୍ତ୍ରୀ ସଂଗ୍ରହଣ, ସ୍ତ୍ରୀପୁଂଧର୍ମ, ବିଭାଗ ଓ ଦ୍ୟୂତସମାହ୍ୱୟାଦି ବ୍ୟବହାର ଅଠର ପ୍ରକାର ।୧୯୦। କୌଟିଲ୍ୟ ସେଥିରୁ ସ୍ୱାମୀପାଳ, ବିବାଦ ଓ ସ୍ତେୟକୁ ବାଦ୍ ଦେଇଛନ୍ତି । ଯାଜ୍ଞବଲ୍କ୍ୟ ଅଭ୍ୟୁପେତ୍ୟା ଶୁଶ୍ରୂଷା ଓ ପ୍ରକୀର୍ଣ୍ଣ ବିଭାଗ ଦୁଇଟି ଅଧିକ ଉଲ୍ଲେଖ କରିଛନ୍ତି । ନାରଦ ଯାଜ୍ଞବଲ୍କ୍ୟଙ୍କ ବିଭାଗ ଦୁଇଟି ସହିତ ମନୁଙ୍କ ବିଭାଗରୁ ସ୍ୱାମୀପାଳବିବାଦ, ସ୍ତେୟ ଓ ସ୍ତ୍ରୀ ସଂଗ୍ରହଣକୁ ଏବଂ ବୃହସ୍ପତି କେବଳ ସ୍ୱାମୀପାଳବିବାଦକୁ ବାଦ୍ ଦେଇଛନ୍ତି ।୧୯୧। ଉକ୍ତ ବ୍ୟବହାର ଗୁଡ଼ିକ ପ୍ରତ୍ୟେକ ଅର୍ଥମୂଳ ଓ ହିଂସାମୂଳ ଭାବେ ଦୁଇ ପ୍ରକାର ।୧୯୨। ବ୍ୟବହାରରେ ନିମ୍ନମତେ ଊଣେଇଶ ପ୍ରକାର ବିଧିବିଧାନ ପାଳିତ ହୁଏ । (୧) ବ୍ୟବହାରର ଚାରିପାଦ ହେଲା—ଧର୍ମ, ବ୍ୟବହାର, ଚରିତ୍ର ଓ ରାଜଶାସନ ବା ଅଭିଯୋଗ ।୧୯୩। ଉତ୍ତର, କ୍ରିୟା ଓ ନିର୍ଣ୍ଣୟ ଅଥବା ଅଭିଯୋଗ ।୧୯୪। ଉତ୍ତର ପ୍ରତ୍ୟାକଳିତ ଓ କ୍ରିୟା ।୧୯୫। (୨) ଚତୁସ୍ଥାନ, ସତ୍ୟ, ସାକ୍ଷୀ, ପୁନ୍ନକରଣ ଓ ରାଜଶାସନ । (୩) ଚତୁଃ ସାଧନ—ସାମ, ଦାନ, ଦଣ୍ଡ ଓ ଭେଦ । (୪) ଚତୁର୍ହିତ—ଚତୁର୍ବର୍ଣ୍ଣ ଓ ଚତୁରାଶ୍ରମ ହିତପ୍ରଦ । (୫) ଚତୁର୍ବ୍ୟାପୀ—ବିବାଦ, ସାକ୍ଷୀ, ସଭ୍ୟ ଓ ରାଜା । (୬) ଚତୁସ୍କାରୀ—ଧର୍ମ (ନ୍ୟାୟ) ଲାଭ ଖ୍ୟାତି ଓ ଜନତା । (୭) ଅଷ୍ଟାଙ୍ଗ—ରାଜା, ନ୍ୟାୟାଧୀଶ, ସଭ୍ୟ, ଶାସ୍ତ୍ର, ଗଣକ, ଲିପିକ, ଅଗ୍ନି ଓ ଜଳ । (୮) ଅଷ୍ଟାଦଶ ପଦ—ପୂର୍ବୋକ୍ତ ଅଷ୍ଟାଦଶ ବ୍ୟବହାର ପଦ । (୯) ଶତଶାଖ—ଅଷ୍ଟାଦଶ ସ୍ୱତ୍ୱରେ ଅର୍ଥାତ୍ ଋଣାଦାନ ୨୫,ଉପନିଧି-୬, ସମ୍ଭୂୟ ସମୁତ୍ଥାନ-୩, ଦତ୍ତାପ୍ରଦାନିକ-୪, ଅଶୁଶ୍ରୂଷା-୯, ବେତନ-୪, ଅସ୍ୱାମୀ-ବିକ୍ରୟ-୨, ବିକ୍ରିୟାଦାନ-୧, କ୍ରୀତାନୁଶୟ-୪ ସମୟସ୍ୟାନପାକର୍ମ-୧, କ୍ଷେତ୍ରବାଦ-୧୨, ସ୍ତ୍ରୀପୁଂସଯୋଗ-୨୦, ଦାୟଭାଗ-୧୯, ସାହସ-୧୨, ବାକପାରୁଷ୍ୟ ଓ ଦଣ୍ଡପାରୁଷ୍ୟ-୩, ଦ୍ୟୂତସମାହ୍ୱୟ-୧ ଏବଂ ପ୍ରକୀର୍ଣ୍ଣକ-୬ ଭେଦରେ ୧୩୨ ଉପଶୀର୍ଷକ ଅଛି । (୧୦) ତ୍ରିଯୋନି—କାମ, କ୍ରୋଧ ଓ ଲୋଭ । (୧୧) ଦ୍ୱ୍ୟଭିଯୋଗ—ଦୁଇଟି ଅଭିଯୋଗଉପରେ ଆଧାରିତ । (୧୨) ଦ୍ୱିଦ୍ୱାର—ଅଭିଯୋଗ ଓ ଅଭିଯୋଗର ଉତ୍ତର

---

୨୯୦ । ମନୁସ୍ମୃତି—ଚୌଖମ୍ବା ସଂସ୍କରଣ ୧୯୬୫—୮. ୪-୭

୨୯୧ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ-୭୦୭ ।

୨୯୨ । ସରସ୍ୱତୀବିଳାସ—ପୃ-୬୧

୨୯୩ । ନାରଦ ସ୍ମୃତି—୧-୧୦

୨୯୪ । ଯାଜ୍ଞବଲ୍କ୍ୟ ସ୍ମୃତି—୨-୮

୨୯୫ । କାତ୍ୟାୟନ ସ୍ମୃତି—୩୧

ଉପରେ ଆଧାରିତ । (୧୩) ଦ୍ୱିଗତି—ନିର୍ଣ୍ଣୟ ସତ୍ୟ ବା ମିଥ୍ୟା ଉପରେ ଆଧାରିତ । (୧୪) ଦ୍ୱିପଦ—ଧନମୂଳ ଓ ହିଂସାମୂଳ । (୧୫) ଦ୍ୱିଉତ୍ଥାନ—ଧନମୂଳ ଓ ହିଂସାମୂଳ । (୧୬) ଦ୍ୱିସ୍କନ୍ଧ—ଧର୍ମଶାସ୍ତ୍ର ଓ ଅର୍ଥଶାସ୍ତ୍ର । (୧୭) ଦ୍ୱିଫଳ—ଜୟ ବା ପରାଜୟ । (୧୮) ଏକମୂଳ—ସମସ୍ତ ପ୍ରକାର ବ୍ୟବହାରର ମୂଳ ଏକ । (୧୯) ସପଣ ଓ ଅପଣ ବା ସୋତ୍ତର ଓ ଅନୁତ୍ତର । ରାଜା ସ୍ୱୟଂ ଯେଉଁ କେତେକ ବିଷୟରେ ନିଜେ ତର୍ଜମା କରନ୍ତି ସେଗୁଡ଼ିକ ମଧ୍ୟରେ ଦଶ ଅପରାଧ, ବାଇଶ ପଦ ଓ ପଚାଶ ଛଳର ନାମ ଉଲ୍ଲେଖଯୋଗ୍ୟ । ନ୍ୟାୟକାର୍ଯ୍ୟ ମୁଖ୍ୟତଃ ରାଜାଧୀନ ।୧୯୬।

ରାଜାଙ୍କ ସହାୟତା ପାଇଁ ପ୍ରତିଷ୍ଠିତ, ଅପ୍ରତିଷ୍ଠିତ, ମୁଦ୍ରିତ ଓ ଶାସିତ ବା ଶାସ୍ତ୍ରିତ ନାମରେ ଚତୁର୍ବିଧ ନ୍ୟାୟାଳୟ ଥିଲା । ସ୍ମୃତି-ଗ୍ରନ୍ଥଗୁଡ଼ିକରେ ଉଚ୍ଚରୁ ନିମ୍ନକ୍ରମେ ରାଜା, ନ୍ୟାୟାଧୀଶ, ଗଣ, ପୂଗ, ଶ୍ରେଣୀ, କୁଳ ନାମରେ ଛ'ପ୍ରକାର ନ୍ୟାୟାଳୟର ବର୍ଣ୍ଣନା ମିଳେ । ନ୍ୟାୟରେ ଭାଷାପାଦ, ଉତ୍ତରପାଦ, କ୍ରିୟାପାଦ ଓ ସାଧ୍ୟସିଦ୍ଧି ବା ନିର୍ଣ୍ଣୟପାଦ ନାମରେ ଚାରୋଟି ପାଦ ବା ସ୍ତର ଥାଏ—ଯାହା କ୍ରମଶଃ ପୂର୍ବପକ୍ଷ, ଉତ୍ତର, ପ୍ରତ୍ୟାକଳିତ ଓ କ୍ରିୟା ନାମରେ ଅଭିହିତ ।୧୯୭।

ବ୍ୟବହାର କ୍ଷେତ୍ରରେ ଶାସକୀୟ ଆଲେଖ୍ୟର ଉପଯୋଗିତା ଥିଲା । ଶାସକୀୟ ଆଲେଖ୍ୟ ରାଜକୀୟ ଓ ଜାନପଦ ଭେଦରେ ଦୁଇ ପ୍ରକାର । ରାଜକୀୟ ଆଲେଖ୍ୟ ଶାସନ, ଜୟପତ୍ର, ଆଜ୍ଞାପତ୍ର, ପ୍ରଜ୍ଞାପନ ପତ୍ର, ପ୍ରସାଦପତ୍ର ଭାବେ ପଞ୍ଚବିଧ ଏବଂ ଜାନପଦ ଆଲେଖ୍ୟ ଦାନପତ୍ର, କ୍ରୟପତ୍ର, ସ୍ଥିତିପତ୍ର, ବିଶୁଦ୍ଧିପତ୍ର, ସନ୍ଧିପତ୍ର, ବିଭାଗପତ୍ର, ସଂବିତ୍ ପତ୍ର, ଅନ୍ୱାଧିପତ୍ର (ବନ୍ଧକ) ନାମରେ ଆଠ ପ୍ରକାର ।୧୯୮। ଏଗୁଡ଼ିକ ସ୍ୱହସ୍ତଲିଖିତ ଓ ଅନ୍ୟହସ୍ତଲିଖିତଭାବେ ଦୁଇ ପ୍ରକାର ।

ବ୍ୟବହାର ବିଷୟରେ ଭୋଗ ବା ଅଧିକାର, ସାକ୍ଷୀ, ସାକ୍ଷ୍ୟପଦ୍ଧତି, ଦିବ୍ୟ ପ୍ରମାଣ, ସିଦ୍ଧି ବା ନିର୍ଣ୍ଣୟ ପୁନର୍ବିଚାର, ଦଣ୍ଡ, ନିକ୍ଷେପ ବା ଉପନିଧି ବ୍ୟବସ୍ଥାର ବିଧିବିଧାନ ସହିତ ଅଷ୍ଟାଦଶ-ବିଧ ବିଭାଗର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା ସ୍ମୃତିସାହିତ୍ୟରେ କରାଯାଇଥିବାର ଦେଖାଯାଏ ।୧୯୯। ଓଡ଼ିଶାର ସରସ୍ୱତୀବିଳାସ ଓ ବୀରସର୍ବସ୍ୱ ଗ୍ରନ୍ଥରେ ରାଜଧର୍ମ ବ୍ୟତୀତ ଗୋଦାବରଙ୍କ 'ହରିହର ଚତୁରଙ୍ଗ' ଓ ବାସୁଦେବ ତ୍ରିପାଠୀଙ୍କ ବୀରପରାକ୍ରମ ଗ୍ରନ୍ଥରେ ଯୁଦ୍ଧର ବିଭିନ୍ନ ପ୍ରସଙ୍ଗ ଆଲୋଚିତ ହୋଇଛି ।

---

୧୯୬ । ଧର୍ମଶାସ୍ତ୍ର କା ଇତିହାସ—ଦ୍ୱିତୀୟ ଭାଗ—ପୃ-୬୧୩-୬୧୬ ।

୧୯୭ । ସରସ୍ୱତୀ ବିଳାସ—ପୃ-୬୨ ।

୧୯୮ । ତତ୍ରୈବ—ପୃ. ୧୧୬ ।

୧୯୯ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୬୨୯-୯୫୧ ।

୧୧ । ବ୍ରତ ପ୍ରକରଣ :

ବରଣ ବା ନିର୍ବାଚନ କରିବା ହିଁ ବ୍ରତ । ବୃଞ୍ ବରଣେ ଧାତୁରୁ ସଙ୍କଳ୍ପ, ଆଦେଶ,ବିଶ୍ୱାସ, ସେବା, ବୃତ୍ତି, ଆଗ୍ରହ, ଗୀତ, ଉପାସନା, ଧର୍ମକୃତ୍ୟାଦି ଅର୍ଥରେ 'ବ୍ରତ' ଶବ୍ଦର ବ୍ୟବହାର ଦେଖାଯାଏ । ପରବର୍ତ୍ତୀ କାଳରେ ବୃତ୍ ବର୍ତ୍ତନେ ବା ପ୍ରବୃତ୍ତି ହେବା ଅର୍ଥରେ 'ବ୍ରତ'ର ଅର୍ଥ କରାଯାଇଛି । ବୈଦିକ ସାହିତ୍ୟରେ ଦୈବୀ ଆଦେଶ ବା ଆଚରଣ ସମ୍ବନ୍ଧୀୟ ନୈତିକ ବିଧି ଅର୍ଥରେ ବ୍ରତର ଉଲ୍ଲେଖ ରହିଛି । ବ୍ରାହ୍ମଣ, ଉପନିଷଦ୍, ଶ୍ରୌତ, ଗୃହ୍ୟ ଓ ଧର୍ମ ସୂତ୍ରରେ ଧାର୍ମିକ କୃତ୍ୟ, ଆଚରଣ, ଖାଦ୍ୟନିଷେଧ ତଥା ଉପବାସ ଅର୍ଥରେ 'ବ୍ରତ' ଶବ୍ଦର ପ୍ରୟୋଗ କରାଯାଇଛି । ଆଶ୍ୱଳାୟନ ଓ ପାରସ୍କର ଗୃହ୍ୟସୂତ୍ରରେ ସ୍ନାତକର ପାଳନୀୟ ବିଧିରେ ରାତ୍ରି-ସ୍ନାନ, ନଗ୍ନସ୍ନାନ, ବର୍ଷାକାଳରେ ବହିର୍ଗମନ, ମାଂସଭକ୍ଷଣ, ମୃତ୍ତିକା ପାତ୍ରରେ ଜଳପାନ, ସ୍ତ୍ରୀ, ଶୂଦ୍ର, ଶବ, କାକ, ସୂର୍ଯ୍ୟ ଅଭିମୁଖ ହୋଇ ମଳ, ମୂତ୍ର, ନିଷ୍ଠୀବନ କର୍ମର ନିଷେଧକୁ ବ୍ରତ ବୋଲି ଅଭିହିତ କରାଯାଇଛି ।୩୦୦। ମନୁ, ଯାଜ୍ଞବଲ୍କ୍ୟ, ଶଙ୍ଖ ପ୍ରଭୃତି ସ୍ମୃତିକାରଗଣ ପ୍ରାୟଶ୍ଚିତ୍ତରେ ଯେଉଁ କଠୋର ନୀତିନିୟମ ପାଳନ ନିମିତ୍ତ ନିର୍ଦ୍ଦେଶ ଦେଇଛନ୍ତି, ସେଗୁଡ଼ିକ 'ବ୍ରତ' ନାମରେ ଅଭିହିତ ।୩୦୧। ମହାଭାରତରେ ବ୍ରତ ମୁଖ୍ୟତଃ ଧାର୍ମିକ ସଙ୍କଳ୍ପ ଭାବରେ ବ୍ୟବହାର କରାଯାଇଛି ।୩୦୨। ଖ୍ରୀଷ୍ଟପୂର୍ବକାଳରେ ସେହି ଅର୍ଥରେ ହିଁ ବ୍ରତବିଧି ପାଳିତ ହେଉଥିଲା । ବ୍ରତ ବା ଧାର୍ମିକ ସଙ୍କଳ୍ପରେ କୌଣସି ତିଥି, ଦିନ, ସପ୍ତାହ ବା ମାସରେ କୌଣସି ନିର୍ଦ୍ଦିଷ୍ଟ ଦେବଦେବୀଙ୍କ ପୂଜା, ଭୋଜନ ତଥା ଆଚରଣ ସମ୍ବନ୍ଧୀୟ ନିୟନ୍ତ୍ରଣାଦି ପାଳିତ ହୋଇଥାଏ । ସବୁଧର୍ମରେ ସଙ୍କଳ୍ପ ଓ ବ୍ରତବ୍ୟବସ୍ଥା ଅଛି । ଜୈନଧର୍ମରେ ପଞ୍ଚମହାବ୍ରତ ଓ ବୌଦ୍ଧଧର୍ମରେ ପଞ୍ଚଶୀଳର ବିଧାନ ରହିଛି ।୩୦୩।

ମଧ୍ୟକାଳୀନ ସ୍ମୃତି ବା ଧର୍ମଶାସ୍ତ୍ରରେ ପ୍ରତିଜ୍ଞା, ତପ, ସଂକଳ୍ପାଦି ଅର୍ଥରେ 'ବ୍ରତ' ଶବ୍ଦର ବ୍ୟବହାର ଦେଖାଯାଏ । ବ୍ରତରେ ସ୍ନାନ, ସନ୍ଧ୍ୟା, ହୋମ, ପୂଜା, ଉପବାସ, ବ୍ରାହ୍ମଣ, କୁମାରୀ ସଧବାନାରୀ, ଦରିଦ୍ରଙ୍କୁ ଭୋଜନ, ଗୋ, ଧନ, ବସ୍ତ୍ର, ମିଷ୍ଟାନ୍ନାଦି ଦାନର ବ୍ୟବସ୍ଥା ସହିତ ବ୍ରତକାଳରେ ଆଚରଣ ସମ୍ବନ୍ଧୀୟ କେତେକ ନୀତି ପାଳିତ ହୁଏ । ବ୍ରହ୍ମଚର୍ଯ୍ୟ କ୍ଷମା, ସତ୍ୟ, ଦୟା, ଦାନ, ଅଶୌଚ, ଇନ୍ଦ୍ରିୟନିଗ୍ରହ, ଦେବପୂଜା, ଅଗ୍ନିହବନ, ସନ୍ତୋଷ ଓ ଅସ୍ତେୟ ଆଦି ଦଶଗୁଣସମ୍ପନ୍ନ ହେବା ବାଞ୍ଛନୀୟ । ସ୍ମୃତିକାର ଦେବଳଙ୍କ ଉଲ୍ଲେଖ ଅନୁସାରେ ବ୍ରହ୍ମଚର୍ଯ୍ୟ

---

୩୦୦ । ତତ୍ରୈବ—ଚତୁର୍ଥ ଭାଗ—ପୃ-୭-୧୦

୩୦୧ । (କ) ମନୁସ୍ମୃତି—୧୧-୧୨୭, ୧୭୦, ୧୭୭ ଓ ୧୮୧

(ଖ) ଯାଜ୍ଞବଲ୍କ୍ୟ ସ୍ମୃତି—୩, ୨୫୧, ୨୫୨, ୨୫୪ ଓ ୨୫୮

(ଗ) ଶଙ୍ଖସ୍ମୃତି—୧୭, ୭, ୨୨, ୭୧ ଓ ୭୨

୩୦୨ । ମହାଭାରତ—ବନପର୍ବ-୨୯୬-୩, ଉଦ୍ୟୋଗପର୍ବ-୩୯-୭୧-୭୨

ଶାନ୍ତିପର୍ବ-୩୫-୩୯, ଅନୁଶାସନ ପର୍ବ-୧୦୩-୩୪

୩୦୩ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ-ପୃ-୧୧ ।

ଶୌଚ, ସତ୍ୟ ଓ ଆମିଷ-ବର୍ଜନାଦି ସ୍ୱୀକୃତି ନିୟମ ବ୍ରତୀର ପାଳନୀୟ । ତଦ୍‌ବ୍ୟତୀତ ଭୋଜନ, ଭୋଜନୀୟ ଦ୍ରବ୍ୟ, ଭୋଜନ ପାତ୍ର ପ୍ରଭୃତି ବିଷୟରେ ମଧ୍ୟ ବିଭିନ୍ନ ପ୍ରକାର ନିୟନ୍ତ୍ରଣ ରହିଛି ।୩୦୪।

ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ବ୍ରତର ସଂଖ୍ୟା ଅଧିକ ନଥିଲା । କିନ୍ତୁ ପରବର୍ତ୍ତୀ କାଳରେ ଏହାର ସଂଖ୍ୟା ଏକସହସ୍ର ହୋଇଥିବାର ଦେଖାଯାଏ । ଭୋଜରାଜଙ୍କ (୧୦୫୦ ଖ୍ରୀଷ୍ଟାବ୍ଦ) 'ରାଜମାର୍ତ୍ତଣ୍ଡ'ରେ ଚବିଶ, ଲକ୍ଷ୍ମୀଧରଙ୍କ (୧୧୫୦ ଖ୍ରୀଷ୍ଟାବ୍ଦ) 'କୃତ୍ୟକଳ୍ପତରୁ' ଗ୍ରନ୍ଥରେ ଏକଶହ ପଚାଶ ଓ ହେମାଦ୍ରିଙ୍କ (୧୨୫୦ ଖ୍ରୀଷ୍ଟାବ୍ଦ) 'ଚତୁର୍ବର୍ଗ ଚିନ୍ତାମଣି'ରେ ସାତଶହ ସଂଖ୍ୟକ ବ୍ରତର ଉଲ୍ଲେଖ ମିଳେ । 'ବ୍ରତକୋଶ' ଗ୍ରନ୍ଥରେ ୧୬୨୨ ବ୍ରତର ନାମସୂଚୀ ଦିଆଯାଇଅଛି ।

ଲିଙ୍ଗ ଓ ଜାତି ନିର୍ବିଶେଷରେ ସମସ୍ତେ ବ୍ରତର ଅଧିକାରୀ । ବ୍ରତଦ୍ୱାରା ହିଁ ଲୋକ ପାପରୁ ମୁକ୍ତି ପାଇଥାଏ ।୩୦୫। ସ୍ତ୍ରୀଲୋକମାନଙ୍କ ନିମିତ୍ତ କେତେକ ନିର୍ଦ୍ଦିଷ୍ଟ ବ୍ରତର ବ୍ୟବସ୍ଥା ଅଛି । ବ୍ରତରେ ପୁତ୍ର, ପତ୍ନୀ, ଭାଇ, ପତି, ଭଉଣୀ, ଶିଷ୍ୟ, ପୁରୋହିତ ଓ ମିତ୍ର ବ୍ରତୀସ୍ୱରୂପ ବା ବ୍ରତୀସ୍ୱରଣୀର, ପ୍ରତିନିଧିତ୍ୱ କରିଥାନ୍ତି । ତେଣୁ ଅସାମର୍ଥ୍ୟ ବା ଅଯୋଗ୍ୟତା ହେତୁ ବ୍ରତଭଗ୍ନ ହେବାର ସମ୍ଭାବନା ଥାଏ ନାହିଁ । ନିତ୍ୟ, ନୈମିତ୍ତିକ ଓ କାମ୍ୟ ଭେଦରେ ସମସ୍ତ ଧାର୍ମିକ କୃତ୍ୟକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି । ତନ୍ମଧ୍ୟରେ ନିତ୍ୟକାର୍ଯ୍ୟ ଅପରିହାର୍ଯ୍ୟ, ନୈମିତ୍ତିକ କାର୍ଯ୍ୟ ବିଶେଷ ଅନୁଷ୍ଠାନ ଉଦ୍ଦେଶ୍ୟରେ ଓ କାମ୍ୟ କାର୍ଯ୍ୟ କୌଣସି ଲକ୍ଷ୍ୟପୂର୍ତ୍ତି ବା ବସ୍ତୁଲାଭ ନିମିତ୍ତ କରାଯାଇଥାଏ । ତେଣୁ ବ୍ରତଗୁଡ଼ିକ ପ୍ରାୟଶଃ କାମ୍ୟ ଶ୍ରେଣୀୟ ।

ବ୍ରତଗୁଡ଼ିକ ମାନସିକ, କାୟିକ, ବାଚିକ ଓ କାଳିକ ଭେଦରେ ଚାରି ଭାଗରେ ବିଭକ୍ତ କରାଯାଇପାରେ । ତନ୍ମଧ୍ୟରେ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅକଳ୍ମଷତା ସମ୍ବନ୍ଧୀୟ ବ୍ରତକୁ ମାନସବ୍ରତ; ଏକଭୁକ୍ତ, ନକ୍ତ, ଉପବାସ, ଅଯାଚିତାଦି କାୟିକ ବ୍ରତ, ବେଦାଧ୍ୟୟନ, ନାମକୀର୍ତ୍ତନ, ସତ୍ୟଭାଷଣ, ଅପୈଶୁନ୍ୟ ପ୍ରଭୃତି ବାଚିକ ବ୍ରତ ତଥା ଦୈନିକ, ପାକ୍ଷିକ, ମାସିକ, ଦ୍ୱିମାସିକ, ଷାଣ୍ମାସିକ, ବାର୍ଷିକ ବା ତିଥି ଅନୁସାରୀ ବ୍ରତକୁ କାଳିକ ବ୍ରତ କୁହାଯାଏ ।୩୦୬।

---

୩୦୪ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୧୬-୧୭ ।

୩୦୫ । ବ୍ରତୋପବାସ ନିୟମୈଃ ଶରୀରୋତ୍ତାପନୈସ୍ତଥା ।
ବର୍ଣ୍ଣାଃ ସର୍ବେଽପି ମୁଚ୍ୟନ୍ତେ ପାତକେଭ୍ୟୋ ନ ସଂଶୟଃ ॥
(ବ୍ରତଖଣ୍ଡ-ହେମାଦ୍ରି-୧—ପୃ-୩୧୫)

୩୦୬ । (କ) ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟମକଲ୍ମଷତା ।
ଏତାନି ମାନସାନ୍ୟାହୁର୍ବ୍ରତାନି ହରିତୁଷ୍ଟୟେ ॥ (ବରାହ-ପୁରାଣ-୩୬-୪)
(ଖ) ଏକଭୁକ୍ତଂ ତଥା ନକ୍ତମୁପବାସମୟାଚିତମ୍ ।
ଇତ୍ୟେବଂ କାୟିକଂ ପୁଂସାଂ ବ୍ରତମୁକ୍ତଂ ନରେଶ୍ୱର ॥ (ବ: ପୁ:—୩୬-୫)

'ସମୟ ପ୍ରଦୀପ' ଅନୁଯାୟୀ ଗଣେଶବ୍ରତ, ସୂର୍ଯ୍ୟବ୍ରତ, ଶିବବ୍ରତ, ବିଷ୍ଣୁବ୍ରତାଦି ନାମରେ ବ୍ରତର ଶ୍ରେଣୀବିଭାଗ କରାଯାଇଛି । ବ୍ରତ-ସାହିତ୍ୟ ଅତ୍ୟନ୍ତ ବିଶାଳ । ପୁରାଣ ଗ୍ରନ୍ଥ-ଗୁଡ଼ିକରେ ବ୍ରତ ଉପରେ ଚବିଶ ହଜାର ଶ୍ଳୋକ ସନ୍ନିବେଶିତ ରହିଛି ।୩୦୭।

ବ୍ରତାରମ୍ଭ ନିମିତ୍ତ ତିଥି, କାଳ, ବାର, ଦିନ ପ୍ରଭୃତିର ଶୁଦ୍ଧାଶୁଦ୍ଧି, ବିବେଚନା କରାଯାଇଥାଏ । ବରାହମିହିରଙ୍କ ଅନୁସାରେ ତିଥିଗୁଡ଼ିକ ନନ୍ଦା, ଭଦ୍ରା, ବିଜୟା ବା ଜୟା, ରିକ୍ତା ଓ ପୂର୍ଣ୍ଣାରୂପେ ପାଞ୍ଚ ଭାଗରେ ବିଭକ୍ତ । ଏଥିରେ ଯଥାକ୍ରମେ ପ୍ରଥମ ବ୍ରହ୍ମା, ଦ୍ୱିତୀୟ ବ୍ରହ୍ମା, ହରି, ଯମ, ଚନ୍ଦ୍ର, କାର୍ତ୍ତିକେୟ, ଇନ୍ଦ୍ର, ଅଷ୍ଟବସୁ, ନାଗ, ଧର୍ମ, ଶିବ, ସବିତା, ମଦନ, କଳି, ବିଶ୍ୱଦେବ ଓ ପିତୃଗଣ ତିଥିପତି ରୂପେ ଅଭିହିତ । ତିଥିପତିଙ୍କ ଅନୁସାରେ ସମସ୍ତ କାର୍ଯ୍ୟ ଯଥାବିଧି କରାଯାଇଥାଏ । ପ୍ରତିପଦା, ଷଷ୍ଠୀ ଓ ଏକାଦଶୀକୁ ନନ୍ଦା; ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀକୁ ଭଦ୍ରା; ତୃତୀୟା, ଅଷ୍ଟମୀ ଓ ତ୍ରୟୋଦଶୀକୁ ବିଜୟା; ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀକୁ ରିକ୍ତା ଏବଂ ପଞ୍ଚମୀ, ଦଶମୀ ଓ ପୂର୍ଣ୍ଣିମାକୁ ପୂର୍ଣ୍ଣାତିଥି କୁହାଯାଏ ।୩୦୮। ତଦ୍‌ବ୍ୟତୀତ ପୂର୍ଣ୍ଣା, ସଖଣ୍ଡା, ଖର୍ବା, ଶୁଦ୍ଧା, ବିଦ୍ଧା, ସଂପୂର୍ଣ୍ଣା, ପୂର୍ବବିଦ୍ଧା ଓ ପରବିଦ୍ଧାଦିରୂପେ ତିଥିଭେଦର ନାମକରଣ କରାଯାଇଅଛି ।୩୦୯।

ଓଡ଼ିଶାର ସ୍ମୃତିଶାସ୍ତ୍ରଗୁଡ଼ିକରେ ଉଲ୍ଲିଖିତ ତଥା ପାଳିତ ହେଉଥିବା ବ୍ରତ ଓ ଓଷାଗୁଡ଼ିକର ନାମ ଅକାରାଦିକ୍ରମେ ଏହି ସନ୍ଦର୍ଭର ତୃତୀୟ ପରିଶିଷ୍ଟରେ ସନ୍ନିବେଶିତ ଅଛି । ସେଥିରେ ପ୍ରତ୍ୟେକ ବ୍ରତ ପାର୍ଶ୍ୱରେ ମାସ ଓ ପକ୍ଷର ଆଦ୍ୟାକ୍ଷର ଏବଂ ତିଥିସଂଖ୍ୟା ଦିଆଯାଇଛି । ସେହି ବ୍ରତ ଓ ଓଷାଗୁଡ଼ିକ ଧର୍ମବିଶ୍ୱାସ ଅନୁସାରେ ବୈଷ୍ଣବ, ଶୈବ, ଶାକ୍ତ, ସୌର, ଗାଣପତ୍ୟ, ନାଗ ସମ୍ପ୍ରଦାୟ ତଥା ଯୋଗଜ ଭେଦରେ ସାତଭାଗରେ ବିଭକ୍ତ କରାଯାଇପାରେ ।

ବୈଷ୍ଣବ-ଧର୍ମଧାରାର ଓଷାବ୍ରତ ମଧ୍ୟରେ ଅକ୍ଷୟତୃତୀୟା, ଅଖଣ୍ଡଦ୍ୱାଦଶୀ, ଅନନ୍ତବ୍ରତ, ଅୟନବ୍ରତ, ଅରଣ୍ୟ ଦ୍ୱାଦଶୀ, ଆଲୋକାମାବାସ୍ୟା, ଉତ୍ଥାପନ ଏକାଦଶୀ, ଆମଳକୀ ଦ୍ୱାଦଶୀ, କାମଦେବ ତ୍ରୟୋଦଶୀ, କାର୍ତ୍ତିକ ପୂର୍ଣ୍ଣିମା, କୃଷ୍ଣ ଜନ୍ମାଷ୍ଟମୀ, କୌମୁଦୀ ମହୋତ୍ସବ, ଗୁଣ୍ଡିଚାଯାତ୍ରା, ଗୋବର୍ଦ୍ଧନ ପୂଜା, ଗୋବିନ୍ଦଶୟନ, ଗୋଷ୍ଠାଷ୍ଟମୀ, ଚମ୍ପକ ଦ୍ୱାଦଶୀ, ଦମନକୋତ୍ସବ, ଦାଣ୍ଡପହରା, ବାଲିଓଷା, ସ୍ନାନ-ପୂର୍ଣ୍ଣିମା, ଦୋଳଯାତ୍ରା, ନରକ

---

(ଗ) ବେଦସ୍ୟାଧ୍ୟୟନଂ ବିଷ୍ଣୋଃ କୀର୍ତ୍ତନଂ ସତ୍ୟଭାଷଣମ୍ ।
ଅପୈଶୁନ୍ୟମିଦଂ ରାଜନ୍ ବାଚିକଂ ବ୍ରତମୁଚ୍ୟତେ ॥ (ବି: ପୁ: ୩୬-୬)

୩୦୭ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୨୩ ।

୩୦୮ । ବୃହତ୍‌ସଂହିତା-ପଞ୍ଚାନନ ତର୍କରତ୍ନ ସମ୍ପାଦିତ—କଲିକତା, ୨ୟ ସଂସ୍କରଣ—୧୮୯୩ ପୃ. ୨୬୫

୩୦୯ । ଧର୍ମଶାସ୍ତ୍ର କା ଇତିହାସ-ଚତୁର୍ଥଭାଗ—ପୃ-୨୮-୩୧ ।

ଚତୁର୍ଦ୍ଦଶୀ, ନିର୍ଜଳୈକାଦଶୀ, ନୃସିଂହ ଚତୁର୍ଦ୍ଦଶୀ, ନେତ୍ରୋତ୍ସବ, ପରଶୁରାମାଷ୍ଟମୀ, ପଞ୍ଚକ ପାପନାଶିନୀ ଏକାଦଶୀ ଓ ଦ୍ୱାଦଶୀ, ପାର୍ଶ୍ୱ ପରିବର୍ତ୍ତନ, ପିପୀଲିକା ଦ୍ୱାଦଶୀ, ପୁଷ୍ୟାଭିଷେକ, ପ୍ରାବରଣ ଷଷ୍ଠୀ, ବକୁଳାମାବାସ୍ୟା, ବହ୍ନ୍ୟୁତ୍ସବ, ବରାହ ଦ୍ୱାଦଶୀ, ଭୀମ ଦ୍ୱାଦଶୀ, ଭୀଷ୍ମ ପଞ୍ଚକ, ଭୀଷ୍ମାଷ୍ଟମୀ, ଯମ ଦ୍ୱିତୀୟା, ରାହୁକନିଆ, ରାଈ ଦାମୋଦର, ରାମନବମୀ, ସିଦ୍ଧ ମାର୍କଣ୍ଡେୟ ପୂଜା ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

ଶୈବ ଓଷା-ବ୍ରତ ମଧ୍ୟରେ ଅଘୋର ଚତୁର୍ଦ୍ଦଶୀ, ଅଶୋକାଷ୍ଟମୀ, ଉମା ମହେଶ୍ୱର ବ୍ରତ, କାର୍ତ୍ତିକେୟ ବ୍ରତ, କୁକ୍‌କୁଟୀ ବ୍ରତ, ଦୂର୍ବାଷ୍ଟମୀ, ବେଣାକିଆ ଚଉଠି, ରକ୍ଷା ପଞ୍ଚମୀ, ଶିବ ଚତୁର୍ଦ୍ଦଶୀ, ଶିବଚତୁର୍ଥୀ, ସ୍କନ୍ଦ ଷଷ୍ଠୀ, ସୋମନାଥ ବ୍ରତ, ସୋମବାର ବ୍ରତ ପ୍ରଭୃତି ଅନ୍ତର୍ଗତ ।

ଶାକ୍ତ ଓଷା-ବ୍ରତ ମଧ୍ୟରେ ଅପରାଜିତା ସପ୍ତମୀ ଓ ଦଶମୀ, ଅରଣ୍ୟ ଷଷ୍ଠୀ, କାଳିକା ବ୍ରତ, କାଞ୍ଜିଅଁଳା ଓଷା, କେଦାର ବ୍ରତ, ବଜ୍ର ମହାକାଳୀ ବ୍ରତ, ଗୌରୀ ତୃତୀୟା, ହରିତାଳିକା ବ୍ରତ, ବାଳତୃତୀୟା, ଗୌରୀ ଚତୁର୍ଥୀ, ଚତୁର୍ମାସ୍ୟା ଗୁରୁବାର ଓଷା, ଚୈତ୍ର ମଙ୍ଗଳବାର, ଜାଗ୍ରତ୍ ଗୌରୀ ପଞ୍ଚମୀ, ଦଶହରା, ପାଷାଣ ଚତୁର୍ଦ୍ଦଶୀ, ଦୀପାବଳୀ, ଧାନ-ମାଣିକିଆ ଓଷା, ନିତ୍ୟାନ୍ନ ଗୁରୁବାର ଓଷା, ନିଶାମଙ୍ଗଳବାର ଓଷା, ଫୁଲେଇ ଓଷା, ଦୁର୍ଗା ନବମୀ, ଦୁର୍ଗା ଶୟନ, ଦୁର୍ଗାଷ୍ଟମୀ, ବରଦା ଚତୁର୍ଥୀ, ଭଦ୍ରାଷ୍ଟମୀ, ଭୋଦେଇ ଓଷା, ଭୈମୀ ଏକାଦଶୀ ଭୌମବ୍ରତ, ମଙ୍ଗଳଚଣ୍ଡୀ ବ୍ରତ, ମଙ୍ଗଳ ସଂକ୍ରାନ୍ତି, ମହାଲକ୍ଷ୍ମୀ ପୂଜା, ରମ୍ଭା ତୃତୀୟା, ରାଧାଷ୍ଟମୀ, ରୁକ୍ମିଣୀ ବ୍ରତ, ରୋହିଣ୍ୟଷ୍ଟମୀ, ଲଳିତା ସପ୍ତମୀ, ବସନ୍ତ ପଞ୍ଚମୀ, ବୁଧବାର ଓଷା, ଶୀତଳ ଷଷ୍ଠୀ, ଶୀତଳା ସପ୍ତମୀ, ଷଷ୍ଠୀଦେବୀ ଷଷ୍ଠୀ, ସପ୍ତପୁରକାମାବାସ୍ୟା, ସାବିତ୍ରୀ ବ୍ରତ, ସୀତାନବମୀ, ସୁଖରାତ୍ରି ଅମାବାସ୍ୟା, ହରମଙ୍ଗଳ ବ୍ରତ ପ୍ରଭୃତିର ନାମ ଉଲ୍ଲେଖ-ଯୋଗ୍ୟ ।

ସୌର ଓଷା-ବ୍ରତ ମଧ୍ୟରେ ଦୃଢବାହନ ଓଷା, ପୁତ୍ର ରବିବାର ଓଷା, ପ୍ରଥମାଷ୍ଟମୀ, ମାଘସପ୍ତମୀ, ମୂଳାଷ୍ଟମୀ, ରବିନାରାୟଣ ବ୍ରତ, ଜାଡ଼ଖନ ଓଷା, ଶାମ୍ବଦଶମୀ ପ୍ରଭୃତି ଅନ୍ତର୍ଗତ ।

ଗାଣପତ୍ୟ ଶାଖାର ଓଷା-ବ୍ରତ ମଧ୍ୟରେ ଗଣେଶ ଚତୁର୍ଥୀ, ସିଦ୍ଧ ବିନାୟକ ବ୍ରତ, ଗୌରୀ-ଗଣେଶ ଚତୁର୍ଥୀ ପ୍ରଭୃତି ପାଳିତ ହୁଏ ।

ନାଗ ସମ୍ପ୍ରଦାୟର ଅନନ୍ତ ତୃତୀୟା, ଅନନ୍ତ ଚତୁର୍ଦ୍ଦଶୀ, ନାଗ ଚତୁର୍ଥୀ, ନାଗ ପଞ୍ଚମୀ, ଫଣୀ ପଞ୍ଚମୀ, ମନସାବ୍ରତ ପ୍ରଭୃତି ଅନୁଷ୍ଠିତ ହୁଏ ।

ଯୋଗଜ ଓଷା-ବ୍ରତ ମଧ୍ୟରେ କାର୍ତ୍ତିକ-ମାଘ-ବୈଶାଖ ବ୍ରତ, ସଂକ୍ରାନ୍ତି ବ୍ରତ, ପୂର୍ଣ୍ଣିମା ବ୍ରତ, ଅମାବାସ୍ୟା ବ୍ରତ, ଗୋବିନ୍ଦ ଦ୍ୱାଦଶୀ, ପାଞ୍ଚମାସୀ ବ୍ରତ, ମୁଗପାଟ ସଂକ୍ରାନ୍ତି, ଗୁରୁପଞ୍ଚମୀ, ସୋମବାର ବ୍ରତ, ଚତୁର୍ଦ୍ଦଶୀ ବ୍ରତ, ରବିନାରାୟଣ ବ୍ରତ, ସୁଦଶା ବ୍ରତ, ସୋମଯୁକ୍ତାଅମାବାସ୍ୟା, ଭୌମବ୍ରତ, ଚତୁର୍ମାସ୍ୟା ଗୁରୁବାର ଓଷା, ନିଶାମଙ୍ଗଳବାର,

ଷୋଳପାଳି ମଙ୍ଗଳବାର, ମହାଦୁଃଖୀ ମଙ୍ଗଳବାର, ଭତ୍ରୁଣୀ ଓଷା, ବୁଧ ମଙ୍ଗଳବାର ଓଷା, ମଙ୍ଗଳ ସଂକ୍ରାନ୍ତି, ଲକ୍ଷ୍ମୀନାରାୟଣ ବ୍ରତ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ନିର୍ଦ୍ଦିଷ୍ଟ ତିଥି, ଦେବତା, ଋଷି, ରାଜା ଓ ଅବସର ଉପଲକ୍ଷେ ମଧ୍ୟ କେତେକ ଓଷାବ୍ରତ ପାଳିତ ହୁଏ । ତନ୍ମଧ୍ୟରେ ଅକ୍ଷୟ୍ୟା ଚତୁର୍ଥୀ, ଅଯାଚିତ ବ୍ରତ, ଅର୍କୋଦୟ ବ୍ରତ, ଚନ୍ଦ୍ରପୂର୍ଣ୍ଣିମା, ଋଷି ପଞ୍ଚମୀ, କୁଷ୍ମାଣ୍ଡ ଦଶମୀ, କୁମାର ପୂର୍ଣ୍ଣିମା, ଘୋଟକ ପଞ୍ଚମୀ, ପୃଥ୍ୱୀରଜସ୍ୱଳା, ସୁନିଆ ବ୍ରତ, ଭୂତ ଚତୁର୍ଦ୍ଦଶୀ, ଭୂପାଳ ତ୍ରୟୋଦଶୀ, ମହୋଦଧିମାବାସ୍ୟା, ରଟନ୍ତୀ ଚତୁର୍ଦ୍ଦଶୀ, ଶଙ୍ଖୋଦ୍ଯାପନ, ସୂର୍ଯ୍ୟ ଚତୁର୍ଦ୍ଦଶୀ ପ୍ରଭୃତିର ନାମ ଉଲ୍ଲେଖନୀୟ ।

ଉପର୍ଯ୍ୟୁକ୍ତ ଓଷା ଓ ବ୍ରତଗୁଡ଼ିକ ମଧ୍ୟରୁ ଲୌକିକ ଓଷା ଓ ବ୍ରତ କେବଳ ସ୍ତ୍ରୀଲୋକମାନେ ଏବଂ ସ୍ମୃତିଶାସ୍ତ୍ରୀୟ ବ୍ରତଗୁଡ଼ିକ ସ୍ତ୍ରୀ ଓ ପୁରୁଷ ଉଭୟ ପାଳନ କରିଥାନ୍ତି । କାଳକ୍ରମେ କେତେକ ଲୌକିକ ଓଷାବ୍ରତ ଶାସ୍ତ୍ରୀୟ ନୀତି-ନିୟମର ଓ ଆଉ କେତେକ ଶାସ୍ତ୍ରୀୟ ବ୍ରତ ଶୃଙ୍ଖଳାମୁକ୍ତ ହୋଇ ଲୌକିକ ଓଷାବ୍ରତର ଅଙ୍ଗୀଭୂତ ହୋଇଛି । ଏହି ଓଷାବ୍ରତ ମଧ୍ୟରୁ ବହୁ ଓଷା ଓ ବ୍ରତ ଅଦ୍ୟାବଧି ଓଡ଼ିଶାର ଲୋକସାଧାରଣରେ ପାଳିତ ହେଉଛି ।

ଓଡ଼ିଶାର ପ୍ରମୁଖ ସ୍ମୃତିକାରମାନଙ୍କ ମଧ୍ୟରେ ଶତାନନ୍ଦ, ବିଦ୍ୟାକର, ବୃହସ୍ପତି ସୂରି, ନରସିଂହ ମିଶ୍ର, ବିଶ୍ୱନାଥ ମିଶ୍ର, ଦିବ୍ୟସିଂହ ମହାପାତ୍ର, ଗଦାଧର ମହାପାତ୍ର, ରଘୁନାଥ ଦାଶ, କୃଷ୍ଣ ମିଶ୍ର ପ୍ରଭୃତି ସ୍ମୃତିକାରଗଣ ସ୍ୱ-ସ୍ୱ ଗ୍ରନ୍ଥରେ ବିବିଧ ବ୍ରତ ପାଳନର ବିଧି ନିର୍ଦ୍ଦେଶ କରିଛନ୍ତି । ତଦ୍‌ବ୍ୟତୀତ ବିଭିନ୍ନ ଦେବଦେବୀ ପୂଜା ଓ ମହାତ୍ମ୍ୟ ପ୍ରଖ୍ୟାପକ ଗ୍ରନ୍ଥରେ ମଧ୍ୟ ବ୍ରତୋପାସନା ପଦ୍ଧତିର ପର୍ଯ୍ୟାଲୋଚନା କରାଯାଇଛି ।

**୧୨ । ଶାନ୍ତି ପ୍ରକରଣ :**

ଶମ୍ ଧାତୁରୁ ବନ୍ଦ କରିବା, ଦୂର କରିବା, ପ୍ରସନ୍ନ କରିବା, କୁପ୍ରଭାବ ଦୂର କରିବା ଅର୍ଥରେ 'ଶାନ୍ତି' ଶବ୍ଦ ବ୍ୟବହାର ହୋଇଛି । ଋଗ୍‌ବେଦରେ ଶବ୍ଦେ ଷାଠିଏବାର ପ୍ରୟୋଗ କରାଯାଇଥିବା ଶମ୍ ଶବ୍ଦ ଉକ୍ତ ଅର୍ଥ ମଧ୍ୟରୁ କୌଣସି ଅର୍ଥ ନ ବୁଝାଇ ସୁଖ, କଲ୍ୟାଣ, ଦୁଃଖ ବିଯୋଗାଦି ଅର୍ଥକୁ ବୁଝାଏ । ଅଥର୍ବ ବେଦରେ 'ଶମ୍' ଶବ୍ଦ ବାବନ ଥର ଓ ଶାନ୍ତି ଶବ୍ଦ ସତର ଥର ପ୍ରୟୋଗ କରାଯାଇଛି । ଏଥିରେ ଦେବତା, ଗ୍ରହ, ପୃଥିବୀ, ଉଲ୍‌କାପାତ ଗୋ-ନକ୍ଷତ୍ର-ଇନ୍ଦ୍ରଜାଲ-ରାହୁ-ଧୂମକେତୁ, ରୁଦ୍ରଗଣ, ବସୁ-ଆଦିତ୍ୟ-ଋଷି ପ୍ରଭୃତିଙ୍କ ସୁଖଶାନ୍ତି ନିମିତ୍ତ ପ୍ରାର୍ଥନା କରାଯାଇଛି ।୩୧୦। ବୈଦିକ ସାହିତ୍ୟ ସହିତ ଶ୍ରୌତସୂତ୍ର, ସାମବିଧାନ ବ୍ରାହ୍ମଣ ଓ ପରବର୍ତ୍ତୀ କାଳର ଗୃହ୍ୟସୂତ୍ର, ପୁରାଣ, ବୃହତ୍‌ସଂହିତା ତଥା ନିବନ୍ଧ ଗ୍ରନ୍ଥ-ଗୁଡ଼ିକରେ ଶାନ୍ତି ବିଷୟରେ ବିଶଦ ଆଲୋଚନା କରାଯାଇଛି । ଅଦ୍‌ଭୁତ, ଉତ୍ପାତ ଓ ନିମିତ୍ତ ଭେଦରେ ଶାନ୍ତି କାର୍ଯ୍ୟ ତିନିଭାଗରେ ବିଭକ୍ତ ।

---

୩୧୦ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥଭାଗ-ପୃ-୩୪୩-୩୪୪ ।

ଗର୍ଗ, ପରାଶର ଓ ମହାଭାରତାଦିର ଉଲ୍ଲେଖ ଅନୁସାରେ ଦିବ୍ୟ, ଭୌମ ଓ ଅନ୍ତରୀକ୍ଷ ଭେଦରେ ଉତ୍ପାତ ତିନି ପ୍ରକାର । ଉତ୍ପାତ ଓ ଅଦ୍‌ଭୁତ ସମପର୍ଯ୍ୟାୟବାଚୀ । ନିମିତ୍ତର ଅର୍ଥ ଅଗ୍ରସୂଚକ । ଅଗ୍ରସୂଚନା ଶୁଭ ବା ଅଶୁଭସୂଚକ ହୋଇପାରେ ।

ଶାନ୍ତି କରଣର ବିଭିନ୍ନ ନାମ ଅଛି । ମତ୍ସ୍ୟପୁରାଣ ଅନୁସାରେ ଅଭୟ, ସୌମ୍ୟ, ବୈଷ୍ଣବୀ, ରୌଦ୍ରୀ, ବ୍ରାହ୍ମୀ, ବାୟବୀ, ବାରୁଣୀ, ପ୍ରାଜାପତ୍ୟ, ତ୍ୱାଷ୍ଟ୍ରୀ, ଆଗ୍ନେୟୀ, ଗାନ୍ଧର୍ବୀ, ଆଙ୍ଗିରସୀ, ନୈଋତ, ଯାମ୍ୟା, କୌବେରୀ, ପାର୍ଥିବୀ ଓ ଐନ୍ଦ୍ରୀ ଶାନ୍ତି ପ୍ରଭୃତି ସପ୍ତଦଶବିଧ ଶାନ୍ତିର ନାମ ଉଲ୍ଲେଖଯୋଗ୍ୟ ।୩୧୧। ଏତଦ୍‌ବ୍ୟତୀତ ବିନାୟକ ଶାନ୍ତି, ନବଗ୍ରହ ଶାନ୍ତି, ଷଷ୍ଟ୍ୟବ୍ଦପୂର୍ତ୍ତି ବା ଉଗ୍ରରଥ ଶାନ୍ତି,ଭୈମରଥୀ ଶାନ୍ତି, ଭୌମରଥୀ ଶାନ୍ତି, ମହାଶାନ୍ତି, ଉଦକ ଶାନ୍ତି, ବାସ୍ତୁଶାନ୍ତି, ପୁଷ୍ୟାଭିଷେକ ଶାନ୍ତି, ଗଜଶାନ୍ତି, ଶକୁନଶାନ୍ତି ଆଦି ମଧ୍ୟ କରାଯାଇଥାଏ ।୩୧୨।

ବିନାୟକ ଶାନ୍ତି ଗର୍ଭାଧାନଠାରୁ ଅନ୍ତ୍ୟେଷ୍ଟିକ୍ରିୟା ବ୍ୟତୀତ ସମସ୍ତ ସଂସ୍କାର, ଯାତ୍ରା, ବାଣିଜ୍ୟ, ଯୁଦ୍ଧକାଳ, ଦେବପୂଜା, ସଙ୍କଟକାଳରେ ତଥା ଇଚ୍ଛାସିଦ୍ଧି ନିମିତ୍ତ ଅନୁଷ୍ଠିତ ହୁଏ ।୩୧୩। ସମସ୍ତ ଧାର୍ମିକ କୃତ୍ୟର ଆରମ୍ଭରେ ନବଗ୍ରହଶାନ୍ତି କରାଯାଏ ।୩୧୪। ନବଗ୍ରହ ଶାନ୍ତି ନିମିତ୍ତ ଅଯୁତ, ଲକ୍ଷ ବା କୋଟି ସଂଖ୍ୟକ ହୋମ କରାଯାଏ । ଷାଠିଏ ବର୍ଷ ପୂର୍ତ୍ତିରେ ଉଗ୍ରରଥ ଶାନ୍ତି ଓ ସତୁରି ବର୍ଷ ପୂର୍ତ୍ତିରେ ବା ସତସ୍ତରି ବର୍ଷ ସାତ ମାସ ସାତ ରାତ୍ରିରେ ଭୌମରଥୀ ଶାନ୍ତି ଅନୁଷ୍ଠାନ କରାଯାଏ । ବୌଧାୟନ ଗୃହ୍ୟସୂତ୍ର ଅନୁସାରେ ଶତେକବର୍ଷ ପୂର୍ତ୍ତିରେ ମଧ୍ୟ ଏକ-ପ୍ରକାର ଶାନ୍ତି କରାଯାଇଥାଏ ।୩୧୫। ଅଦ୍‌ଭୁତ ଓ ଉତ୍ପାତ ନିମିତ୍ତ 'ମହାଶାନ୍ତି'ର ବ୍ୟବସ୍ଥା ଦିଆଯାଇଛି । ଉଲ୍‌କାପାତରେ କରାଯାଉଥିବା ମହାଶାନ୍ତିକୁ 'ଅମୃତାଶାନ୍ତି' କହନ୍ତି । ସ୍ୱାସ୍ଥ୍ୟଲାଭ ନିମିତ୍ତ ଉଦକଶାନ୍ତି ଓ ନୂତନ ଗୃହ ପ୍ରବେଶ ନିମିତ୍ତ ବାସ୍ତୁଶାନ୍ତି କରାଯାଏ । ରାଜାମାନେ ପୁଷ୍ୟାଭିଷେକ ଶାନ୍ତି କର୍ମ କରନ୍ତି । ଗଜର ରୋଗ ନିବାରଣ ପାଇଁ ଗଜଶାନ୍ତି ଏବଂ ଘୋଟକ ନିମିତ୍ତ ଏକପ୍ରକାର ଶାନ୍ତିର ବ୍ୟବସ୍ଥା ଦିଆଯାଇଛି ।୩୧୬। ଅଙ୍ଗ ସ୍ଫୁରଣ ତଥା ବିଭିନ୍ନ ପ୍ରକାର

---

୩୧୧ । ମତ୍ସ୍ୟପୁରାଣ—୨୨୯-୧୨-୧୩ ।

୩୧୨ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୩୫୩-୩୭୨

୩୧୩ । ଜାତକର୍ମାଦି ସଂସ୍କାରେ ଗର୍ଭାଧାନାଦିକେଽପି ଚ ।
ଯାତ୍ରାୟାଂ ଚ ବଣିଜ୍ୟାଦୌ ଯୁଦ୍ଧେ ଦେବାର୍ଚ୍ଚନେ ଶୁଭେ ॥
ସଙ୍କଟେ କାମସିଦ୍ଧ୍ୟର୍ଥଂ ପୂଜୟେଦ୍ ଯୋଗଜାନନମ୍ ।
ତସ୍ୟ ସର୍ବାଣି କାର୍ଯ୍ୟାଣି ସିଧ୍ୟନ୍ତ୍ୟେବ ନ ସଂଶୟଃ ॥ (ବ୍ରହ୍ମାଣ୍ଡପୁରାଣ-୩-୪୨-୪୪)

୩୧୪ । ଗ୍ରହପୂଜାଂ ପୁରସ୍କୃତ୍ୟ ସର୍ବକର୍ମସମାରଭେଦିତି ॥
(ଧର୍ମଶାସ୍ତ୍ର କା ଇତିହାସ—୪-ପୃ. ୩୫୩)

୩୧୫ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୩୫୮

୩୧୬ । ବୌଧାୟନ ଗୃହ୍ୟସୂତ୍ର—୧-୧୯-୨୦

ଶକୁନଜନିତ ଭାବୀ ବିପଦରୁ ମୁକ୍ତିପାଇବା ନିମିତ୍ତ ଶାନ୍ତିମନ୍ତ୍ର ପାଠ, ଜପ, ହୋମ ଓ ଅଭିଷେକ କାର୍ଯ୍ୟାଦି କରାଯାଇଥାଏ ।୩୧୭। ଓଡ଼ିଶାର 'ଅଦ୍‌ଭୁତ ସାଗର', 'ଗ୍ରହଯଜ୍ଞ ପଦ୍ଧତି' ଓ 'ମହାସୌରଶାନ୍ତି' ଗ୍ରନ୍ଥରେ ଶାନ୍ତିର ବିଭିନ୍ନ ପ୍ରସଙ୍ଗ ଉଲ୍ଲେଖ କରାଯାଇଛି ।୩୧୮।

## ୧୩ । ଶୁଦ୍ଧି ପ୍ରକରଣ :

ଭାରତୀୟମାନେ ସର୍ବଦା ଦେହ, ମନ, ଧନ, ସ୍ଥଳ, ପାତ୍ର, ଭୋଜନ ଦ୍ରବ୍ୟ ଓ ପୂଜାଦ୍ରବ୍ୟର ଶୁଦ୍ଧି ବିଷୟରେ ବିଶେଷ ଧ୍ୟାନ ଦେଇଥାନ୍ତି । କୌଣସି ଅପବିତ୍ର ବସ୍ତୁର ସ୍ପର୍ଶ ତଥା କୌଣସି ଘଟଣାବିଶେଷରୁ ଉତ୍ପନ୍ନ ଅପବିତ୍ରତାର ଶୁଦ୍ଧିବିବେଚନାକୁ 'ଶୁଦ୍ଧି' କହନ୍ତି । 'ବେଦବୋଧିତ କର୍ମାର୍ହତା ଶୁଦ୍ଧିଃ' ଅର୍ଥାତ୍ ବେଦବୋଧିତ କାର୍ଯ୍ୟ ସମ୍ପାଦନ ଯୋଗ୍ୟତାକୁ ଶୁଦ୍ଧି କହନ୍ତି । ସ୍ମୃତିକାରମାନେ ଶୁଦ୍ଧି ଶବ୍ଦକୁ ଅଶୌଚର ପରବର୍ତ୍ତୀ ଶୁଦ୍ଧି ଅର୍ଥରେ ହିଁ ଗ୍ରହଣ କରିଛନ୍ତି । ତେଣୁ ପ୍ରେତଶୁଦ୍ଧି ଓ ଦ୍ରବ୍ୟଶୁଦ୍ଧି ଶବ୍ଦର ବ୍ୟବହାର ସ୍ମୃତିଗ୍ରନ୍ଥଗୁଡ଼ିକରେ କରାଯାଇଛି ।୩୧୯। ସମସ୍ତ ଧର୍ମକାର୍ଯ୍ୟ କରିବାର ଯୋଗ୍ୟତା ବା ଅଧିକାର ତଥା 'ଦ୍ରବ୍ୟସ୍ୟ ଦୋଷାପଗଃ ଶୁଦ୍ଧିଃ' ଅର୍ଥାତ୍ ବସ୍ତୁ ବା ଦ୍ରବ୍ୟବିଶେଷର ଦୋଷ ଦୂରୀକରଣକୁ ମଧ୍ୟ ଶୁଦ୍ଧି କୁହାଯାଏ ।

ବୈଦିକ ଯୁଗରେ ଯଜ୍ଞପାତ୍ର ତଥା ଯଜ୍ଞୀୟ ଉପକରଣର ଶୁଦ୍ଧି ନିମିତ୍ତ ବିଶେଷ ଧ୍ୟାନ ଦିଆଯାଉଥିଲା । ଗୌତମ ସ୍ମୃତିର ବ୍ୟାଖ୍ୟାକାର ହରଦତ୍ତ ଧନ, ମନ, ଶରୀର ଓ ବାଣୀଶୁଦ୍ଧି ରୂପେ ଚତୁର୍ବିଧ ଶୁଦ୍ଧିର ଉଲ୍ଲେଖ କରିଛନ୍ତି । କେତେକ ଶରୀର-ଶୁଦ୍ଧି ଓ ବାହ୍ୟଦ୍ରବ୍ୟ ଶୁଦ୍ଧି ରୂପେ ଦ୍ୱିବିଧ ଶୁଦ୍ଧିର ଉଲ୍ଲେଖ କରୁଥିବାବେଳେ ଅନ୍ୟ କେତେକ ବାହ୍ୟ ଓ ଆଭ୍ୟନ୍ତର ଭେଦରେ ଦ୍ୱିବିଧ ଶୁଦ୍ଧି ବ୍ୟବସ୍ଥା ଦେଇଛନ୍ତି । ଅତ୍ରି ଓ ବୃହସ୍ପତିଙ୍କ ଅନୁସାରେ ଅଭକ୍ଷ୍ୟ ପରିହାର, ଅନିନ୍ଦିତ ଲୋକସମ୍ପର୍କ ଓ ସ୍ୱଧର୍ମ-ପରିପାଳନ ଶୌଚର ଅନ୍ତର୍ଗତ । ପଦ୍ମପୁରାଣ, ଲିଙ୍ଗପୁରାଣ, ମହାଭାରତ, ମନୁସ୍ମୃତି ଓ ବିଷ୍ଣୁସ୍ମୃତି ପ୍ରଭୃତିରେ ଶୁଦ୍ଧି ବିଷୟରେ ବିଭିନ୍ନ ପ୍ରକାର ତର୍ଜମା କରାଯାଇଛି ।୩୨୦। ଶାରୀରିକ ଶୁଦ୍ଧି ଓ ବାହ୍ୟଶୁଦ୍ଧି ନିମିତ୍ତ ଶଯ୍ୟାତ୍ୟାଗଠାରୁ ସ୍ନାନାବଧି ବିବିଧ ଶୁଦ୍ଧି ବ୍ୟବସ୍ଥା ଅନୁସୃତ ହୋଇଥାଏ ।

ଉପନୟନ ଅବଧି ଶିଶୁ ରଜସ୍ୱଳା ସ୍ତ୍ରୀ ସ୍ପର୍ଶରେ ଅଶୁଦ୍ଧ ହୁଏ ନାହିଁ । ମନୁ, ବିଷ୍ଣୁ, ମାର୍କଣ୍ଡେୟ ପୁରାଣାଦିର ଉଲ୍ଲେଖ ଅନୁସାରେ ଯେଉଁ ବସ୍ତୁ ଅଶୁଦ୍ଧ ବୋଲି ଜଣାନାହିଁ, ଯାହା ଜଳରେ ଶୁଦ୍ଧ କରାଯାଇପାରେ, ଯାହାକୁ ବ୍ରାହ୍ମଣ ଶୁଦ୍ଧ ବୋଲି କହିବେ, ଯେଉଁ ଜଳ ଅପବିତ୍ର ବସ୍ତୁଦ୍ୱାରା ଦୂଷିତ ହୋଇନାହିଁ, ଶିଳ୍ପୀର ହାତ, ବିପଣୀରେ ବିକ୍ରୟ

---

୩୧୭ । ଧର୍ମଶାସ୍ତ୍ର କା ଇତିହାସ—ଚତୁର୍ଥ ଭାଗ—ପୃ-୩୬୫-୩୭୨

୩୧୮ । OSM. Mss. Dh. No. 145, 502, 795,

୩୧୯ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୧୧୫୭

୩୨୦ । (କ) ପଦ୍ମପୁରାଣ—୨-୬୬-୮୬-୮୭, (ଖ) ଲିଙ୍ଗପୁରାଣ—୮-୩୪-୩୭,
(ଗ) ମହାଭାରତ—ବନପର୍ବ-୨୦୦-୫୧, (ଘ) ମନୁସ୍ମୃତି—୫-୧୦୭,
(ଙ) ବିଷ୍ଣୁସ୍ମୃତି—୨୨-୮୯

କରାଯାଉଥିବା ଦ୍ରବ୍ୟ, ଭିକ୍ଷା, ସମ୍ଭୋଗକାଳୀନ ସ୍ତ୍ରୀର ମୁଖ, କୁକୁର, ଚଣ୍ଡାଳ ଓ ମାଂସଭକ୍ଷୀ ପଶୁଠାରୁ ଆନୀତ ପଶୁମାଂସ, ସୂର୍ଯ୍ୟକିରଣ, ଅଗ୍ନି, ଧୂଳି, ବୃକ୍ଷଗୁଳ୍ମ, ଗାଈ, ଅଶ୍ୱ, ଭୂମି, ବାୟୁ, ତୁଷାରକଣା, ମହୁମାଛି, ଗୋ ଦୋହନକାଳୀନ ବାଛୁରିର ମୁଖ ଓ କେତେକ ପଶୁ ପକ୍ଷୀ ସର୍ବଦା ଶୁଦ୍ଧି ।୩୨୧। ବୃହସ୍ପତି ଓ ଯମଙ୍କ ଅନୁସାରେ ବ୍ରାହ୍ମଣର ପାଦ, ଛେଳି ଓ ଅଶ୍ୱର ମୁଖ, ଗାଈର ପୃଷ୍ଠଭାଗ ଓ ସ୍ତ୍ରୀମାନଙ୍କର ସମସ୍ତ ଅଙ୍ଗ ଶୁଦ୍ଧରୂପେ ଗୃହୀତ ।୩୨୨। ଅତ୍ରିଙ୍କ ଅନୁଯାୟୀ ମହୁମାଛି, ଶିଶୁ, ଅଖଣ୍ଡଧାରା, ଭୂମି, ଜଳ, ଅଗ୍ନି, ବିଡ଼ାଳ, ଦର୍ବୀ, ନକୁଳ ସଦା ପବିତ୍ର ବୋଲି ସ୍ୱୀକୃତ । ମହର୍ଷି ପରାଶରଙ୍କ ଅନୁସାରେ ଆକାଶ, ବାୟୁ, ଅଗ୍ନି, ଜଳ ଓ କୁଶ କେବେହେଲେ ଅପବିତ୍ର ହୁଏ ନାହିଁ ।୩୨୩। ସଦ୍ୟମାଂସ, ଘୃତ, ମଧୁ ଓ ଫଳୋତ୍ପନ୍ନ ତୈଳ ଚଣ୍ଡାଳ ପାତ୍ରରେ ଥିଲେ ମଧ୍ୟ ବାହାରକୁ ଆଣିବାମାତ୍ରେ ତାହା ଶୁଦ୍ଧ ବୋଲି ଗୃହୀତ ହୁଏ ।୩୨୪। ବୃହସ୍ପତିଙ୍କ ମତାନୁଯାୟୀ ଦ୍ରାକ୍ଷା, ଇକ୍ଷୁଯନ୍ତ୍ର, ଖଣି, କାରୁହସ୍ତ, ଗୋଦୋହନୀ, ଯନ୍ତ୍ର-ନିଃସୃତ ତରଳ ପଦାର୍ଥ, ସ୍ତ୍ରୀ ଓ ବାଳକର କାର୍ଯ୍ୟ ଆଖିକୁ ଅଶୁଦ୍ଧ ଦେଖାଗଲେ ମଧ୍ୟ ଶୁଦ୍ଧିରୂପେ ବିବେଚିତ ହୁଏ ।୩୨୫।

ନିଜର ଶଯ୍ୟା, ବସ୍ତ୍ର, ପତ୍ନୀ, ସନ୍ତାନ, ଜଳପାତ୍ର ନିଜଠାରେ ଶୁଦ୍ଧି ହେଲେ ମଧ୍ୟ ଅନ୍ୟଠାରେ ଅଶୁଦ୍ଧ ରୂପେ ଗୃହୀତ ହୋଇଥାନ୍ତି ।୩୨୬। ସ୍ମୃତିକାର ଶଙ୍ଖଙ୍କ ଅନୁସାରେ ଜଳ, ମୃତ୍ତିକା, ଇଙ୍ଗୁଦ, ଅରିଷ୍ଟ (ରିଠା), ବେଲମଞ୍ଜି, ତଣ୍ଡୁଳ, ସର୍ଷପକଳ୍କ କ୍ଷାର, ଗୋମୂତ୍ର, ଗୋମୟାଦି ଅଶୁଦ୍ଧ ବସ୍ତୁକୁ ଶୁଦ୍ଧି କରିଥାନ୍ତି ।୩୨୭। ଘର୍ଷଣ ଦ୍ୱାରା ଧାତବ ପଦାର୍ଥ, ଅଗ୍ନିରେ

---

୩୨୧ । (କ) ମନୁସ୍ମୃତି—୫-୧୨୭-୧୩୩, (ଘ) ମାର୍କଣ୍ଡେୟ ପୁରାଣ—୩୫-୧୯-୨୧
(ଖ) ଯାଜ୍ଞବଲ୍କ୍ୟ ସ୍ମୃତି—୧-୧୭୭, ୧୯୧-୧୯୩
(ଗ) ବଶିଷ୍ଠ ସ୍ମୃତି—୨୮-୪୭-୫୨, (ଙ) ନିତ୍ୟାଚାର ପ୍ରଦୀପ-ପୃ-୧୦୧ ।

୩୨୨ । ପାଦୌ ଶୁଚ ବ୍ରାହ୍ମଣାନାମଜାଶ୍ୱସ୍ୟ ମୁଖଂ ଶୁଚଃ ।
ଗବାଂ ପୃଷ୍ଠାନି ମେଧ୍ୟାନି ସର୍ବଗାତ୍ରାଣି ଯୋଷିତାମ୍ । (ଅପରାର୍କ—ପୃ-୨୭୭)

୩୨୩ । (କ) ଅତ୍ରିସ୍ମୃତି—୫-୧୫, (ଖ) ପରାଶରସ୍ମୃତି—୧୦-୪୧

୩୨୪ । ଆମଂ ମାଂସଂ ଘୃତଂ କ୍ଷୌଦ୍ରଂ ସ୍ନେହାଶ୍ଚ ଫଳସମ୍ଭବାଃ
ଅନ୍ତ୍ୟଭାଣ୍ଡ ସ୍ଥିତା ହ୍ୟେତେ ନିଷ୍କ୍ରାନ୍ତା ଶୁଚୟଃ ସ୍ମୃତାଃ ॥ (ଶୁଦ୍ଧିକୌମୁଦୀ-ପୃ ୩୧୮)

୩୨୫ । ଦ୍ରାକ୍ଷେକ୍ଷୁ ଯନ୍ତ୍ରାକରକାରୁହସ୍ତା ଗୋଦୋହନୀ ଯନ୍ତ୍ରଃ ବିନିସୃତାନି ।
ବାଳୈରଥ ସ୍ତ୍ରୀଭିରନୁଷ୍ଠିତାନି ପ୍ରତ୍ୟକ୍ଷ ଦୃଷ୍ଟାନି ଶୁଚୀନି ତାନି ॥
(ଶୁଦ୍ଧି ପ୍ରକାଶ—ପୃ-୧୦୬)

୩୨୬ । ଆସନଂ ଶୟନଂ ଯାନଂ ଜାୟା ପତ୍ୟଂ କମଣ୍ଡଳୁଃ
ଶୁଚୀନ୍ୟାତ୍ମନ ଏତାନି ପରେଷାମଶୁଚୀନି ଚ ॥ (ନିତ୍ୟାଚାର ପ୍ରଦୀପ—ପୃ-୧୦୩)

୩୨୭ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୧୧୮୪ ।

ମୃତ୍ପାତ୍ର, ଜଳରେ କାଷ୍ଠନିର୍ମିତ ବସ୍ତୁ, ଧାତୁନିର୍ମିତ ବସ୍ତୁରେ ପ୍ରସ୍ତର, ମଣି ମୁକ୍ତାଦି ଏବଂ ମୃତ୍ତିକା ଦ୍ୱାରା ଅସ୍ଥି ଓ ମୃତ୍ତିକାନିର୍ମିତ ବସ୍ତୁକୁ ଶୁଦ୍ଧ କରାଯାଏ ।

ଦ୍ରବ୍ୟ ଶୁଦ୍ଧି ନିମିତ୍ତ କାଳ, ସ୍ଥାନ, ଶରୀର, ଦ୍ରବ୍ୟ ପ୍ରୟୋଜନ ଓ ଉପପତ୍ତି ବା ଅଶୁଦ୍ଧିର କାରଣଗୁଡ଼ିକ ପ୍ରଥମତଃ ବିଗ୍ଭର କରାଯାଏ । ସମ୍ମାର୍ଜନ, ପ୍ରୋକ୍ଷଣ, ଉପଲେପନ ଅବସ୍ତରଣ, କର୍ଷଣ ପ୍ରକ୍ଷାଳନ, ଦାହ, ଖନନ, ମାର୍ଜନ, ଗୋଗମଣ ଆଦି ଉପାୟରେ ଅମେଧ, ଦୁଷ୍ଟ ଓ ମଳିନ ଭୂମିକୁ ଶୁଦ୍ଧ କରାଯାଏ ।୩୨୮। ଧାତୁନିର୍ମିତ ପ୍ରତିମା ଭସ୍ମରେ, ପ୍ରସ୍ତର ପ୍ରତିମା ଓ ଅମେଧ ଦୁଷ୍ଟ ପ୍ରତିମା ବଲ୍ମୀକ ମୃତ୍ତିକା ଦ୍ୱାରା ଶୁଦ୍ଧ କରାଯାଏ । ସର୍ବତ୍ର ପଞ୍ଚଗବ୍ୟ ସେଚନର ବ୍ୟବସ୍ଥା ଦିଆଯାଇଛି । କିନ୍ତୁ ଭଗ୍ନ, ଅଗ୍ନିଦଗ୍ଧ, ଆସନଚ୍ୟୁତ ବା ଅସମ୍ମାନିତ, ଅପୂଜିତ, ଗର୍ଦ୍ଦଭାଦିପଶୁସ୍ପୃଷ୍ଟ, ରଜସ୍ୱଳାନାରୀ, କୁକୁର ତଥା ଶବସ୍ପୃଷ୍ଟ ପ୍ରତିମାର ଦେବତ୍ୱ ନଷ୍ଟ ହୋଇଥାଏ ।୩୨୯।

ବୈଦିକ ଯୁଗରୁ 'ଶୁଚୟଃ ପାବକାଃ' ବୋଲି ଜଳକୁ ସର୍ବଥା ଶୁଦ୍ଧ ରୂପେ ଗ୍ରହଣ କରାଯାଇଛି । ଚଣ୍ଡାଳ, ଅଶୁଦ୍ଧ ବ୍ୟକ୍ତି ଓ ବସ୍ତୁ ସଂସ୍ପର୍ଶରେ ଆସି ନ ଥିବା ନଦୀ, କୂପ, ବାପୀ ଓ ପୁଷ୍କରିଣୀର ଜଳ ଶୁଦ୍ଧ ଥାଏ । ଜଳ ଅଶୁଦ୍ଧ ହେଲେ ସମସ୍ତ ଜଳ ନିଷ୍କାସନ ଓ ପଞ୍ଚଗବ୍ୟସେଚନ ଦ୍ୱାରା ପୁନଃ ଶୁଦ୍ଧ କରାଯାଏ । ଗଭୀର ଜଳାଶୟ କ୍ଷେତ୍ରରେ ଏ ନିୟମ ଆବଶ୍ୟକ ହୁଏ ନାହିଁ । ସୂର୍ଯ୍ୟ ଓ ଚନ୍ଦ୍ରର କିରଣ, ବାୟୁ, ଗୋମୂତ୍ର ଓ ଗୋମୟ ଦ୍ୱାରା ଅଶୁଦ୍ଧ ଜଳ ସ୍ୱତଃ ଶୁଦ୍ଧ ହୋଇଥାଏ ।୩୩୦।

ଧାତବ ପାତ୍ର ସାଧାରଣତଃ ଭସ୍ମ, ମୃତ୍ତିକା ଓ ଜଳ ଦ୍ୱାରା ଶୋଧନ କରାଯାଏ । ସ୍ୱର୍ଣ୍ଣରୌପ୍ୟାଦି ପାତ୍ର ଜଳ ଓ ଅଗ୍ନିରେ; ଶଙ୍ଖାଦି ଓ ପ୍ରସ୍ତରାଦି ପାତ୍ର ଜଳରେ; ତାମ୍ର, ଲୌହ, କାଂସ୍ୟ ପିତ୍ତଳାଦି ପାତ୍ର ଭସ୍ମ, ଅମ୍ଳ ଓ ଜଳରେ ଶୁଦ୍ଧ ହୁଏ । ଗୋ-କୁକୁର-କାକସ୍ପୃଷ୍ଟ ଓ ଶୂଦ୍ରଭୁକ୍ତ ପାତ୍ରକୁ ଭସ୍ମ ଓ ଜଳରେ ଶୁଦ୍ଧ କରାଯାଏ । ଶାରୀର ମଳଦ୍ୱାରା ଅଶୁଦ୍ଧ ହୋଇଥିବା ପାତ୍ରକୁ ସାତଦିନ ଗୋମୂତ୍ରରେ ବା ନଦୀର ଜଳରେ ବୁଡ଼ାଇ ରଖିଲେ ଶୁଦ୍ଧ ହୁଏ ।୩୩୧। ଅତ୍ୟନ୍ତ ଅଶୁଦ୍ଧ କାଷ୍ଠ ଓ ମୃତ୍ପାତ୍ରକୁ ତ୍ୟାଗ କରାଯାଇଥାଏ । ଧାତବ ପାତ୍ରକୁ ଅଗ୍ନିରେ ଉତ୍ତପ୍ତ କରି ଶୁଦ୍ଧ କରାଯାଏ । ଯଜ୍ଞୀୟ ପାତ୍ର ମଧ୍ୟରେ କାଷ୍ଠନିର୍ମିତ ଚମସ, ଚରୁସ୍ଥାଳୀ, ସ୍ରୁବ, ସ୍ରୁଚ, ସ୍ଫ୍ୟ (ଖଣ୍ଡା), ସୂର୍ପ, ଶକଟ, ଉଖଳ, ମୁଷଳ ଆଦି କେବଳ ଜଳରେ ଶୁଦ୍ଧ କରାଯାଏ । ଧାନ, ତଣ୍ଡୁଳ ଓ ଅନ୍ନ ଅଶୁଦ୍ଧ ହେଲେ ଅଶୁଦ୍ଧାଂଶକୁ ବାଦ୍ ଦେଇ ଅନ୍ୟ ଅଂଶକୁ ଜଳରେ ଧୋଇ

---

୩୨୮ । (କ) ନିତ୍ୟାଚାର ପ୍ରଦୀପ—ପୃ-୯୪-୯୫

(ଖ) ଶୁଦ୍ଧିସାର—Cy. No., 887—ପୃ-୧୯-୨୨

୩୨୯ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟଭାଗ—ପୃ-୧୧୮୭

୩୩୦ । ଶୁଦ୍ଧିସାର—ପୃ-୨୦-୩୧

୩୩୧ । ତତ୍ରୈବ—ପୃ. ୪୧-୪୭

ଦିଆଯାଏ ଏବଂ ଧାନ ବ୍ୟତୀତ ଅନ୍ୟ ଦୁଇଟିକୁ ପୁନଃ ଅଗ୍ନିତପ୍ତ କରାଯାଏ ।୩୩୨। ପାକକାଳରେ ଅନ୍ନ କେଶ ଓ କୀଟଯୁକ୍ତ ହେଲେ ବା କାକ ଓ ରଜୋବତୀ ନାରୀସ୍ପୃଷ୍ଟ ହେଲେ ପକ୍ୱାନ୍ନକୁ ଭସ୍ମମିଶ୍ରିତ ଜଳସେଚନ ଦ୍ୱାରା ଶୁଦ୍ଧ କରିବା ନିମିତ୍ତ ବ୍ୟବସ୍ଥା ଦେଇଛନ୍ତି ।୩୩୩। କିନ୍ତୁ ଆପସ୍ତମ୍ବ ତଦ୍‌ବିଧ ଅପବିତ୍ର ଭୋଜନ ପରିତ୍ୟାଜ୍ୟ ବୋଲି ଉଲ୍ଲେଖ କରିଛନ୍ତି ।୩୩୪। ମନୁଙ୍କ ଅନୁସାରେ ଅନ୍ନ, ବସ୍ତ୍ର ତଥା ଅନ୍ୟାନ୍ୟ ଦ୍ରବ୍ୟ ପର୍ଯ୍ୟାପ୍ତ ପରିମାଣ ହୋଇଥିଲେ ଜଳ ପ୍ରୋକ୍ଷଣ ଓ ପରିମାଣ ଅଳ୍ପ ହୋଇଥିଲେ ସମସ୍ତ ଅଂଶ ଜଳରେ ଧୋଇଦେବା ଆବଶ୍ୟକ । ଏ ବିଷୟରେ ବିଷ୍ଣୁ ଓ ପରାଶର ପ୍ରକାରାନ୍ତରେ ଏକମତ ହୋଇଥିବାର ଦେଖାଯାଏ ।୩୩୫। ଦ୍ରବ-ପଦାର୍ଥ ଅଳ୍ପ ପରିମାଣ ହୋଇଥିଲେ କୁଶଦ୍ୱୟକ୍ଷେପଣ ଓ ଅଧିକ ପରିମାଣ ହୋଇଥିଲେ ଜଳମାର୍ଜନ ଦ୍ୱାରା ଶୁଦ୍ଧ କରାଯାଏ ।୩୩୬।

ସ୍ମୃତିକାର ଶଙ୍ଖଙ୍କ ଉଲ୍ଲେଖ ଅନୁଯାୟୀ ସମସ୍ତ ପ୍ରକାର ନିର୍ଯ୍ୟାସ, ଗୁଡ଼, ଲୁଣ, କୁସୁମ୍ଭ, କୁଙ୍କୁମ, ତୁଳା, ସୂତାଦି ବସ୍ତୁ ପ୍ରୋକ୍ଷଣଦ୍ୱାରା ହିଁ ଶୁଦ୍ଧ ହୁଏ ।୩୩୭। ଆଶ୍ୱଳାୟନଙ୍କ ଅନୁସାରେ ଶ୍ୱେତବସ୍ତ୍ର, ଉତ୍ତରୀୟ, ରେଶମ ବସ୍ତ୍ର ସର୍ବଦା ଶୁଦ୍ଧ । ସ୍ମୃତିଶାସ୍ତ୍ରର ଉଲ୍ଲେଖ ଅନୁସାରେ ଚର୍ମ, ଅସ୍ଥି, ଦନ୍ତ, ଶିଙ୍ଗ, ଶଙ୍ଖ ଜାତୀୟ ଦ୍ରବ୍ୟ ବସ୍ତ୍ର ତୁଲ୍ୟ ପରିଶୋଧନୀୟ । ଶାକ, ମୂଳ, ଫଳ ଆଦି ଅନ୍ନ ସଦୃଶ ଶୋଧନ କରାଯାଇଥାଏ । ଦେଶ, କାଳ, ପାତ୍ର ଭେଦରେ ଯାହା ଖାଦ୍ୟ ଓ ପେୟ, ତାହା ସେଠାରେ ଶୁଦ୍ଧ ହେଲେ ମଧ୍ୟ ଅନ୍ୟତ୍ର ଶୁଦ୍ଧ ଭାବେ ଗୃହୀତ ହୁଏ ନାହିଁ । ଓଡ଼ିଶାରେ ପଖାଳ, ପିଠା, ତୈଳମୁକ୍ତ ସିଦ୍ଧ ଶାକ ମାଂସାଦି ପର୍ଯ୍ୟୁଷିତ ହେଲେ ମଧ୍ୟ ଭୋଜନ କରାଯାଏ ।୩୩୮। ସେହିପରି ଅନ୍ନର ମଣ୍ଡ ମଦ୍ୟ ରୂପେ ବର୍ଜନୀୟ ହେଲେ ମଧ୍ୟ ସେଥିରୁ ପ୍ରସ୍ତୁତ ହେଉଥିବା କାଞ୍ଜି ଓଡ଼ିଶାର ଘରେ ଘରେ ବ୍ୟଞ୍ଜନ ଭାବେ ଆଦୃତ ହୁଏ ।୩୩୯। ପତିତ

---

୩୩୨ । (କ) ନିତ୍ୟାଚାର ପ୍ରଦୀପ—ପୃ-୯୭ (ଖ) ଶୁଦ୍ଧିସାର—ପୃ-୭୦ ।

୩୩୩ । (କ) ବିଷ୍ଣୁସ୍ମୃତି—୨୩-୧୧ (ଖ) ପରାଶରସ୍ମୃତି—୭-୨୪-୨୫ ।

୩୩୪ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ-୧୧୯୨

୩୩୫ । (କ) ମନୁସ୍ମୃତି—୫-୧୧୮ (ଖ) ବିଷ୍ଣୁସ୍ମୃତି—୨୩-୩୮
(ଗ) ପରାଶର ସ୍ମୃତି—୭-୨୧-୨୫ ।

୩୩୬ । ନିତ୍ୟାଚାର ପ୍ରଦୀପ—ପୃ-୯୮

୩୩୭ । ଧର୍ମଶାସ୍ତ୍ର କା ଇତିହାସ-ଦ୍ୱିତୀୟ ଭାଗ—ପୃ-୧୧୯୩ ।

୩୩୮ । ଶୁଦ୍ଧିସାର—ପୃ-୫୮-୭୧

୩୩୯ । ସଫଳା କଞ୍ଜିକା ଗ୍ରାହ୍ୟା ଗୃହେଷୁ ସ୍ଥାପିତା ଭବେତ୍ ।
ତସ୍ୟାସ୍ତୁ କଞ୍ଜିକା ଗ୍ରାହ୍ୟା ନେତରସ୍ୟାଃ କଥଞ୍ଚନ ॥ (ଶୁଦ୍ଧିସାର-ପୃ-୪୭)

ସହିତ ଆଳାପ, ମିଥ୍ୟାଭାଷଣ ଓ ଦନ୍ତମଳ କାଢ଼ିବା ପରେ ଶୁଦ୍ଧି ନିମିତ୍ତ ଦକ୍ଷିଣ କର୍ଣ୍ଣ ସ୍ପର୍ଶ କରାଯାଏ । ଦକ୍ଷିଣ କର୍ଣ୍ଣରେ ଗଙ୍ଗା ଓ ନାସିକାରେ ଅଗ୍ନି ଥିବାରୁ ଏ ସବୁ କ୍ଷେତ୍ରରେ ଉଭୟଙ୍କୁ ସ୍ପର୍ଶ କରାଯାଇପାରେ ।୩୪୦। ଓଡ଼ିଶାର ପ୍ରାୟ ସମସ୍ତ ସ୍ମୃତିଗ୍ରନ୍ଥରେ ଶୁଦ୍ଧିର ପ୍ରାସଙ୍ଗିକ ଆଲୋଚନା ଅଛି ।

ଏହି ପ୍ରକରଣରେ ଉଦ୍ଧାର କରାଯାଇଥିବା ଓଡ଼ିଶାର ସ୍ମୃତିଗ୍ରନ୍ଥ ବ୍ୟତୀତ କାଳିଦାସ ଚମ୍ପତିଙ୍କ 'ଶୁଦ୍ଧି ଚନ୍ଦ୍ରିକା', ଗଦାଧର ମହାପାତ୍ରଙ୍କ 'କାଳସାର', ବାସୁଦେବ ତ୍ରିପାଠୀଙ୍କ 'କୃତ୍ୟ ରତ୍ନାବଳୀ' ପ୍ରଭୃତିରେ ଶୁଦ୍ଧି ବିଷୟର ଆଲୋଚନା କରାଯାଇଅଛି ।୩୪୧।

## ୧୪ । ଶ୍ରାଦ୍ଧ ପ୍ରକରଣ :

ପିତୃଗଣଙ୍କ ଉଦ୍ଦେଶ୍ୟରେ ଯାହା ଉଚିତ କାଳ, ପାତ୍ର, ସ୍ଥାନ ଓ ବିଧି ଅନୁସାରେ ବ୍ରାହ୍ମଣ-ସାତ୍ କରାଯାଏ, ତାହାକୁ ଶ୍ରାଦ୍ଧ କହନ୍ତି ।୩୪୨। ଯାଜ୍ଞବଲ୍କ୍ୟ ଓ ଅଗ୍ନିପୁରାଣ ଅନୁଯାୟୀ ପିତୃଲୋକ ବସୁ, ରୁଦ୍ର ଓ ଆଦିତ୍ୟ ରୂପରେ ଶ୍ରାଦ୍ଧଦେବତାଭାବରେ ପୂଜିତ ହୁଅନ୍ତି ।୩୪୩। ଏମାନେ ପିତା, ପିତାମହ ଓ ପ୍ରପିତାମହଙ୍କର ଯଥାକ୍ରମେ ପ୍ରତିନିଧିତ୍ୱ କରନ୍ତି । ହୋମ, ପିଣ୍ଡ-ଦାନ ଓ ବ୍ରାହ୍ମଣତର୍ପଣାଦି ଗୌଣ ଅର୍ଥରେ ମଧ୍ୟ ଶ୍ରାଦ୍ଧ ଶବ୍ଦର ବ୍ୟବହାର ଦେଖାଯାଏ । ପୂର୍ବଜ ମୃତ ପୁରୁଷଙ୍କୁ ପିଣ୍ଡ ଦାନ ଦେବାର ମୁଖ୍ୟ ଉଦ୍ଦେଶ୍ୟ ହେଲା ଯେ ସେମାନଙ୍କର ଆତ୍ମା ପ୍ରାୟ ପଚିଶ ବା ଶହେ ବର୍ଷ ପରେ ମଧ୍ୟ ବାୟୁ ରୂପରେ ଥାଏ । ତେଣୁ ପିଣ୍ଡ ତଣ୍ଡୁଳର ସୁଗନ୍ଧକୁ ସେମାନେ ବାୟବ୍ୟ ରୂପରେ ଗ୍ରହଣ କରିଥାନ୍ତି । ଶ୍ରାଦ୍ଧ ପ୍ରଦତ୍ତ ପିଣ୍ଡରେ ସନ୍ତୋଷ ଲାଭ କରି ସେମାନେ ସ୍ୱବଂଶୀୟଙ୍କର ମଙ୍ଗଳବିଧାନ କରନ୍ତି ।୩୪୪। ଯେପରି ବାଛୁରୀ ଗୋଷ୍ଠ ମଧ୍ୟରେ ଥିବା ଗାଈଗୁଡ଼ିକ ମଧ୍ୟରୁ ନିଜର ମା'କୁ ଚିହ୍ନିପାରେ, ସେପରି ପିତୃପୁରୁଷ ପରବର୍ତ୍ତୀ

---

୩୪୦ । ନିତ୍ୟାଗ୍ନିର ପଦ୍ଧତି—ପୃ-୫୪

୩୪୧ । OSM. Mss. Dh. No. 48, 504

୩୪୨ । (କ) ଦେଶେ କାଳେ ଚ ପାତ୍ରେ ଚ ଶ୍ରଦ୍ଧୟା ବିଧିନା ଚ ଯତ୍ ।
ପିତୃନୁଦ୍ଦିଶ୍ୟ ବିପ୍ରେଭ୍ୟୋ ଦତ୍ତଂ ଶ୍ରାଦ୍ଧମୁଦାହୃତମ୍ ॥ (ବ୍ରହ୍ମପୁରାଣ)
(ଖ) ବିପ୍ର ସ୍ୱୀକାରପର୍ଯ୍ୟନ୍ତସ୍ତ୍ୟାଗୋ ଦ୍ରବ୍ୟସ୍ୟ ଯଃ ପିତୃନ୍ ।
ଉଦ୍ଦିଶ୍ୟ ମୁଖ୍ୟଶ୍ରାଦ୍ଧଂ ତତ୍ତଦଙ୍ଗମିତରଂ ସ୍ମୃତମ୍ ॥ (କାଳସାର-ପୃ-୩୭୬)
(ଗ) ଅଗ୍ନୌ ହୁତେନ ଦେବସ୍ଥାଃ ପିତୃସ୍ଥା ଦ୍ୱିଜତର୍ପଣୈଃ
ନରକସ୍ଥାଶ୍ଚ ତୃପ୍ୟନ୍ତି ପିଣ୍ଡୈର୍ଦିବ୍ୟୈସ୍ତ୍ରିଭିର୍ଭୁବି ॥
(ଶ୍ରାଦ୍ଧଦୀପ-Dh. No. 479)

୩୪୩ । (କ) ଯାଜ୍ଞବଲ୍କ୍ୟ-ସ୍ମୃତି—୧-୨୬୮ (ଖ) ଅଗ୍ନିପୁରାଣ—୧୬୩-୪୦-୪୧

୩୪୪ । (କ) ମାର୍କଣ୍ଡେୟ ପୁରାଣ—୨୯-୩୮ (ଖ) ମତ୍ସ୍ୟପୁରାଣ—୧୯-୧୧-୧୨ ।

ଜନ୍ମରେ ଯେଉଁ ରୂପରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଶ୍ରାଦ୍ଧରେ ଦିଆଯାଉଥିବା ମନ୍ତ୍ରପୂତ ଭୋଜନ ତାଙ୍କ ପାଖରେ ପହଞ୍ଚିଯାଏ ।୩୪୫।

'ପିତୃ' ଶବ୍ଦର ଅର୍ଥ ପିତା; କିନ୍ତୁ 'ପିତରଃ' ଶବ୍ଦର ଅର୍ଥ ପୂର୍ବଜଙ୍କୁ ହିଁ ବୁଝାଉଥାଏ । ବୈଦିକ ଯୁଗରେ ପ୍ରଚଳିତ ଥିବା ତ୍ରିଲୋକ ଧାରଣାରେ ସ୍ୱର୍ଗ ଓ ପୃଥିବୀ ସୂର୍ଯ୍ୟଙ୍କ କୋଳରେ ଓ ମଧ୍ୟମ ଲୋକ ଯମଙ୍କ କୋଳରେ ବା ଯମଲୋକ ରୂପେ ପରିଚିତ ହେଉଥିଲା । ଏହି ଯମଲୋକରେ ମୃତାତ୍ମା ଏକତ୍ରିତ ହୋଇଥାନ୍ତି । 'ବ୍ରାହ୍ମଣ ସାହିତ୍ୟ' ଅନୁସାରେ ଭୂଲୋକ ଓ ଅନ୍ତରୀକ୍ଷ ଲୋକ ପରେ ପିତୃଲୋକର ଅବସ୍ଥିତି ବିଶ୍ୱାସ କରାଯାଏ ।୩୪୬।

ପିତୃଗଣ ବିଭିନ୍ନ ଶ୍ରେଣୀରେ ବିଭକ୍ତ । ବୈଦିକ ସାହିତ୍ୟରେ 'ପିତରଃ ସୋମବନ୍ତଃ' (ସୋମ ଯଜ୍ଞକାରୀ), 'ପିତରଃ ବର୍ହିଷଦଃ' (ପକ୍ୱ ଆହୁତି ଦାନକାରୀ) ଓ 'ପିତରଃ ଅଗ୍ନିଷ୍ୱାତ୍ତାଃ' (ଯେ ପୂର୍ବୋକ୍ତ ଉଭୟ ବିଧି ପାଳନ କରି ନଥାଏ) ଏପରି ତିନି ଭାଗରେ ବିଭକ୍ତ; କିନ୍ତୁ ନନ୍ଦୀପୁରାଣ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ମ୍ଳେଚ୍ଛଙ୍କର ପିତର ଯଥାକ୍ରମେ ଅଗ୍ନିଷ୍ୱାତ୍ତ, ବର୍ହିଷଦ, କାବ୍ୟ, ସୁକାଲୀନ ଓ ବ୍ୟୋମ ନାମରେ ଅଭିହିତ ।୩୪୭। ମନୁସ୍ମୃତିରେ ଗୃହବର୍ଣ୍ଣଙ୍କ ନିମିତ୍ତ ସୋମପା, ହବିର୍ଭୁଜ, ଆଜ୍ୟପା ଓ ସୁକାଲୀନ ନାମରେ ପିତରଙ୍କ ନାମକରଣ କରାଯାଇଛି ।୩୪୮। ସ୍କନ୍ଦ ପୁରାଣ ଅନୁସାରେ ଅଗ୍ନିଷ୍ୱାତ୍ତ, ବର୍ହିଷଦ, ଆଜ୍ୟପା, ସୋମପା, ରଶ୍ମିପା, ଉପହୂତା, ଆୟନ୍ତୁନ, ଶ୍ରାଦ୍ଧଭୁଜ ଓ ନାନ୍ଦୀମୁଖ ରୂପେ 'ପିତର' ନାମିତ ହୋଇଛନ୍ତି ।୩୪୯।

ବୈଦିକ ସାହିତ୍ୟରେ 'ଶ୍ରାଦ୍ଧ' ଶବ୍ଦର ବ୍ୟବହାର ନ ଥିଲେ ମଧ୍ୟ ସୂତ୍ର-ସାହିତ୍ୟରେ ତାହାର ବହୁଳ ପ୍ରୟୋଗ ଦେଖାଯାଏ । ଶ୍ରତ୍‌ରୁ ଶ୍ରଦ୍ଧା ଓ ଶ୍ରଦ୍ଧାରୁ ଶ୍ରାଦ୍ଧ ଶବ୍ଦର ଉତ୍ପତ୍ତି । ସତ୍ୟ, ମନର ପ୍ରସନ୍ନତା ଓ ଧୈର୍ଯ୍ୟ, ବିଶ୍ୱାସ ଆଦି ଅର୍ଥରେ ଶ୍ରଦ୍ଧା ଶବ୍ଦ ବ୍ୟବହୃତ ହୋଇଛି । ପୂର୍ବେ ମୃତ ପୂର୍ବଜମାନଙ୍କ ନିମିତ୍ତ ପିଣ୍ଡପିତୃଯଜ୍ଞ, ମହାପିତୃଯଜ୍ଞ ଓ ଅଷ୍ଟକା ଶ୍ରାଦ୍ଧ ଏପରି ତିନୋଟି କୃତ୍ୟ ପାଳିତ ହେଉଥିଲା । ପରବର୍ତ୍ତୀ କାଳରେ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଭେଦରେ ଶ୍ରାଦ୍ଧ ତିନିପ୍ରକାରରେ ବିଭକ୍ତ ହେଲା । ନିର୍ଦ୍ଦିଷ୍ଟ ତିଥିରେ ନିତ୍ୟ, ପୁତ୍ରୋତ୍ପତ୍ତି ଶୁଭ-କାର୍ଯ୍ୟରେ ନୈମିତ୍ତିକ ଓ କୌଣସି ଫଳଲାଭ ଆଶାରେ କାମ୍ୟ ଶ୍ରାଦ୍ଧ କରାଗଲା । ପୁରାଣର ଉଲ୍ଲେଖ ଅନୁସାରେ ଅମାବାସ୍ୟା, ଅଷ୍ଟକାଦିନ, ଶୁଭଦିନ, ମାସର କୃଷ୍ଣପକ୍ଷ, ପର୍ଯ୍ୟାପ୍ତ ଦ୍ରବ୍ୟଲାଭ,

---

୩୪୫ । ଯଥା ଗୋଷୁ ପ୍ରନଷ୍ଟାସୁ ବତ୍ସୋ ବିନ୍ଦତି ମାତରମ୍ ।
ତଥା ଶ୍ରାଦ୍ଧେଷୁ ଦତ୍ତାନ୍ନଂ ମନ୍ତ୍ରଃ ପ୍ରାପୟତେ ତୁ ତମ୍ ॥ (ଶ୍ରାଦ୍ଧକଳ୍ପଲତା – ପୃ-୩୪)

୩୪୬ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୧୨୦୧

୩୪୭ । ତତ୍ରୈବ—ପୃ-୧୨୦୧.

୧୪୮ । ମନୁସ୍ମୃତି—୩-୧୯୩-୧୯୮

୩୪୯ । ସ୍କନ୍ଦପୁରାଣ—୭-୨୧୭-୯-୧୦

ଚନ୍ଦ୍ର-ସୂର୍ଯ୍ୟ-ଗ୍ରହଣାଦି କାଳରେ ଶ୍ରାଦ୍ଧ କରଣୀୟ; କିନ୍ତୁ ନନ୍ଦାତିଥି, ଶୁକ୍ରବାର, କୃଷ୍ଣପକ୍ଷର ତ୍ରୟୋଦଶୀ, ଜନ୍ମନକ୍ଷତ୍ର ଦିନ ତଥା ତତ୍ପୂର୍ବ ବା ପରଦିନ ଶ୍ରାଦ୍ଧ କଲେ ପୁତ୍ର ଓ ସମ୍ପତ୍ତି ନଷ୍ଟ ହୋଇଥାଏ ।୩୫୦। ବନ, ପୁଣ୍ୟ ପର୍ବତ, ପୁଣ୍ୟତୋୟା ନଦୀତଟ, ତୀର୍ଥସ୍ଥାନ, ମନ୍ଦିର, ପୁଷ୍କରିଣୀ କୂଳରେ ତଥା ସ୍ୱଭୂମିରେ ଶ୍ରାଦ୍ଧ କରିବା ବିଧେୟ ।୩୫୧।

ଶ୍ରାଦ୍ଧର ବର୍ଗୀକରଣ ବିଭିନ୍ନ ଭାବରେ କରାଯାଇଛି । ମନୁ, ବୃହସ୍ପତି, ରୁଦ୍ରଧର ପ୍ରଭୃତିଙ୍କ ଅନୁସାରେ ନିତ୍ୟ-ନୈମିତ୍ତିକ, କାମ୍ୟ, ବୃଦ୍ଧି ଓ ପାର୍ବଣ ନାମରେ ଶ୍ରାଦ୍ଧ ପାଞ୍ଚପ୍ରକାର । କୂର୍ମ-ପୁରାଣରେ ଅହରହ ଶ୍ରାଦ୍ଧ, ପାର୍ବଣ, ବୃଦ୍ଧି, ଏକୋଦ୍ଦିଷ୍ଟ ଓ ସପିଣ୍ଡୀକରଣ ଭେଦରେ ପାଞ୍ଚ ପ୍ରକାର ଶ୍ରାଦ୍ଧର ଉଲ୍ଲେଖ ଅଛି । ବିଶ୍ୱାମିତ୍ର ଓ ଭବିଷ୍ୟ ପୁରାଣ ଅନୁଯାୟୀ ନିତ୍ୟ, ନୈମିତ୍ତିକ, କାମ୍ୟ, ବୃଦ୍ଧି, ସପିଣ୍ଡୀକରଣ, ପାର୍ବଣ, ଗୋଷ୍ଠୀ, ଶୁଦ୍ଧି, କର୍ମାଙ୍ଗ, ଦୈବିକ, ଯାତ୍ରା ଓ ପୁଷ୍ଟିଶ୍ରାଦ୍ଧ ଭାବେ ଶ୍ରାଦ୍ଧ ବାରପ୍ରକାର ।୩୫୨। ରଘୁନାଥ ଭଟ୍ଟଙ୍କ 'ଷଣ୍ଣବତି ଶ୍ରାଦ୍ଧ'' ଗ୍ରନ୍ଥରେ ଦ୍ୱାଦଶ ଅମାବାସ୍ୟା, ଚତୁର୍ଯୁଗ, ଚତୁର୍ଦ୍ଦଶ ମନ୍ୱନ୍ତର, ଦ୍ୱାଦଶ ସଂକ୍ରାନ୍ତି, ତ୍ରୟୋଦଶ ଧୃତିଯୋଗ ଓ ବ୍ୟତିପାତ ଯୋଗ, ଷୋଡ଼ଶ ମହାଳୟା, ଚତୁଃ ଅନ୍ୱଷ୍ଟକା ଓ ଅଷ୍ଟକା, ହେମନ୍ତ ଓ ଶିଶିର ଋତୁର ଚତୁଃ କୃଷ୍ଣ-ସପ୍ତମୀ ପ୍ରଭୃତିରେ କରଣୀୟ ଷଟ୍‌ନବତି ବା ଛୟାନବେ ପ୍ରକାର ଶ୍ରାଦ୍ଧର ଉଲ୍ଲେଖ କରାଯାଇଛି ।୩୫୩।

ଶ୍ରାଦ୍ଧକାଳ ବିଷୟରେ ସ୍ମୃତି ଓ ପୁରାଣ ସାହିତ୍ୟରେ ଭିନ୍ନ ଭିନ୍ନ ବ୍ୟବସ୍ଥା ଦିଆଯାଇ-ଥିବାର ଦେଖାଯାଏ । ମନୁଙ୍କ ଅନୁସାରେ ପୂର୍ବାହ୍ନରେ ଦୈବକାର୍ଯ୍ୟ, ଅପରାହ୍ନରେ ପୈତୃକ କାର୍ଯ୍ୟ ଓ ମଧ୍ୟାହ୍ନରେ ବୃଦ୍ଧି ଶ୍ରାଦ୍ଧ ଓ ଆମଶ୍ରାଦ୍ଧ (ଅନ୍ନପିଣ୍ଡ-ସମର୍ପଣାଦି) କରାଯାଏ ।୩୫୪। 'ଶତପଥ ବ୍ରାହ୍ମଣ' ଅନୁଯାୟୀ ପୂର୍ବାହ୍ନରେ ଦେବକାର୍ଯ୍ୟ, ମଧ୍ୟାହ୍ନରେ ମନୁଷ୍ୟ-କାର୍ଯ୍ୟ ଓ ଅପରାହ୍ନରେ ପିତୃକାର୍ଯ୍ୟ କରଣୀୟ ।୩୫୫। କେହି କେହି ଦିନକୁ ପ୍ରାତଃ, ସଂଗବ, ମଧ୍ୟାହ୍ନ, ଅପରାହ୍ନ ଓ ସାୟାହ୍ନ ଭାବେ ପାଞ୍ଚ ଭାଗରେ ବିଭକ୍ତ କରି ଚତୁର୍ଥ ଭାଗରେ ଶ୍ରାଦ୍ଧ ବିଧେୟ ବୋଲି ବ୍ୟବସ୍ଥା ଦେଇଛନ୍ତି । ଆଉ କେତେକ କୁତପ (ସୂର୍ଯ୍ୟୋଦୟ) ପରେ ଓ ରୌହିଣ ମୁହୂର୍ତ୍ତ ମଧ୍ୟରେ ବା ପ୍ରାୟ ଦିନ ଆଠଟାରୁ ବାରଟା ମଧ୍ୟରେ ଶ୍ରାଦ୍ଧର ଯୋଗ୍ୟତମ

---

୩୫୦ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୧୨୦୭-୧୨୧୭ ।

୩୫୧ । ଶ୍ରାଦ୍ଧଦୀପ—ଶ୍ଳୋକ—୪୮୪-୪୦୯ ।

୩୫୨ । କାଳସାର—ପୃ-୩୭୭ ।

୩୫୩ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ. ୧୨୨୨ ।

୩୫୪ । ପୂର୍ବାହ୍ନେ ଦୈବିକଂ କାର୍ଯ୍ୟମପରାହ୍ନେ ତୁ ପୈତୃକମ୍ ।
ଏକୋଦ୍ଦିଷ୍ଟଂ ତୁ ମଧ୍ୟାହ୍ନେ ପ୍ରାତର୍ବୃଦ୍ଧିନିମିତ୍ତକମ୍ । (ମନୁ—୩-୨୪୩)

୩୫୫ । ଶତପଥ ବ୍ରାହ୍ମଣ—୨-୪, ୨-୮ ।

କାଳ ବୋଲି ଉଲ୍ଲେଖ କରିଛନ୍ତି । ୩୫୬ । ଓଡ଼ିଶାରେ ଆମଶ୍ରାଦ୍ଧ ପୂର୍ବାହ୍ନରେ କରାଯାଏ ।

ଶ୍ରାଦ୍ଧ-କର୍ମର ଅଧିକାଂଶ ବିଷୟରେ କୁହାଯାଇଛି ଯେ ମୃତ ବ୍ୟକ୍ତିର ସମ୍ପତ୍ତିଭୋଗକାରୀ, ପୁତ୍ର, ପୌତ୍ର ଓ ପ୍ରପୌତ୍ର ଶ୍ରାଦ୍ଧକାର୍ଯ୍ୟ କରିପାରିବେ । କିନ୍ତୁ ପୁତ୍ରହୀନା ପତ୍ନୀକୁ ସ୍ୱାମୀ, ପୁତ୍ରକୁ ପିତା, ବଡ଼ଭାଇକୁ ସାନଭାଇ ପିଣ୍ଡଦାନ ଦେଇପାରିବେ ନାହିଁ ।୩୫୭। ଅନୁପନୀତ ବାଳକ, ସ୍ତ୍ରୀ ଓ ଶୂଦ୍ର ପୁରୋହିତ ଦ୍ୱାରା ଶ୍ରାଦ୍ଧକର୍ମ କରିପାରିବେ । ଶ୍ରାଦ୍ଧରେ ପିତା, ପିତାମହ ଓ ପ୍ରପିତାମହଙ୍କୁ ପିଣ୍ଡଦାନ କରାଯାଏ । ଅବିଭକ୍ତ ସପିଣ୍ଡର ପ୍ରପିତାମହ, ପିତାମହ, ପିତା, ସ୍ୱୟଂ ଶ୍ରାଦ୍ଧକର୍ତ୍ତା, ସହୋଦର, ପୁତ୍ର, ପୌତ୍ର ଓ ପ୍ରପୌତ୍ର ଓ ସକୁଲ୍ୟ ବିଭକ୍ତ ଦାୟାଦ ପ୍ରଭୃତି ଶ୍ରାଦ୍ଧକର୍ମରେ ସମ୍ପୃକ୍ତ ହୁଅନ୍ତି ।୩୫୮।

ଶ୍ରାଦ୍ଧରେ ଭୋଜନ ନିମିତ୍ତ ଷଟ୍‌କର୍ମନିରତ ବ୍ରାହ୍ମଣ ହିଁ ନିମନ୍ତ୍ରଣୀୟ । ତଦ୍‌ବ୍ୟତୀତ ଯଥାକ୍ରମେ ଯତି, ଚତୁର୍ବେଦୀ, ତ୍ରିବେଦୀ, ଦ୍ୱିବେଦୀ, ଏକବେଦୀ ଓ ଉପାଧ୍ୟାୟ ବ୍ରାହ୍ମଣଙ୍କୁ ଶ୍ରାଦ୍ଧରେ ଭୋଜନ ପାଇଁ ନିମନ୍ତ୍ରଣ କରାଯାଇପାରେ । ଶ୍ରାଦ୍ଧରେ ଆମନ୍ତ୍ରଣୀୟ ଲୋକର ପରିଚୟ ସହିତ ତେଷ୍ଟାନବେ ଜଣ ଆମନ୍ତ୍ରଣ ଅଯୋଗ୍ୟ ବ୍ୟକ୍ତିର ସୂଚୀ ମଧ୍ୟ ଉଲ୍ଲେଖ କରାଯାଇଛି ।୩୫୯। ଶ୍ରାଦ୍ଧକର୍ତ୍ତା ଓ ଶ୍ରାଦ୍ଧଭୋକ୍ତା ମୈଥୁନ, ପୁନର୍ଭୋଜନ, ଅସତ୍ୟଭାଷଣ, ଛଳନା, ବେଦାଧ୍ୟୟନ, ଓଜନିଆ, କାମ, ଜୁଆ, ଦାନ, ପ୍ରତିଗ୍ରହ, ଚୌର, ଯାତ୍ରା, ଦିବାନିଦ୍ରା, କଳହ, ତାମ୍ବୁଳ, କ୍ଷୌରକର୍ମ, ତୈଳ ଓ ଦନ୍ତକାଷ୍ଠାଦି ବର୍ଜନ କରିବେ ।

ଶ୍ରାଦ୍ଧରେ ମୁଖ୍ୟତଃ କୁଶ, ତିଳ, ମାଷ, ତଣ୍ଡୁଳ, ଯବ, ଜଳ, ମୂଳ ଓ ଫଳ ଆବଶ୍ୟକ ହୁଏ । କିନ୍ତୁ ଘୃତମିଶ୍ରିତ ଭୋଜନଦ୍ୱାରା ପିତୃଲୋକ ବହୁକାଳ ପର୍ଯ୍ୟନ୍ତ ସନ୍ତୋଷ ଲାଭ କରିଥାନ୍ତି । ଏଥିରେ ଅର୍ପଣଯୋଗ୍ୟ ଭୋଜନ ମଧ୍ୟରେ ଯତିଭୋଜ୍ୟ, ଗୋକ୍ଷୀର, ସୋମରସ, ମସଲାହୀନ ସିଦ୍ଧ ମାଂସ, ପଥରଲବଣ-ସିଦ୍ଧାନ୍ନ, ଯବ ଓ ଗୋଧୂମସକ୍ତୁ, ଯବାଗୂ, ଶାକ, ଦଧି, ଘୃତ ଆଦିର ନାମ ଉଲ୍ଲେଖଯୋଗ୍ୟ ।୩୬୦। ଶ୍ରାଦ୍ଧରେ କର୍ତ୍ତା, ଦ୍ରବ୍ୟ, ପତ୍ନୀ, ଶ୍ରାଦ୍ଧସ୍ଥଳ, ମନ, ମନ୍ତ୍ର ଓ ବ୍ରାହ୍ମଣାଦି ସପ୍ତବିଧ ଶୁଚିତା ଆବଶ୍ୟକ ।୩୬୧। ଆମ୍ବ, ବେଲ, ଡାଳିମ, ନାରିକେଳ, ଖଜୁର, ସେଓ ଆଦି ଫଳ ଶ୍ରାଦ୍ଧରେ ଅର୍ପଣ କରାଯାଏ ।୩୬୨। ମାତ୍ର ଲଶୁନ, ପଳଣ୍ଡୁ, ଗାଜର,

---

୩୫୬ । ଧର୍ମଶାସ୍ତ୍ର କା ଇତିହାସ—୩ୟ ଭାଗ—୧୨୧୯

୩୫୭ । ଶ୍ରାଦ୍ଧଦୀପ—ଶ୍ଲୋକ-୨୩, ୩୨ (ASB Edn. 1977)

୩୫୮ । ଧର୍ମଶାସ୍ତ୍ର କା ଇତିହାସ—ତୃତୀୟ ଭାଗ—ପୃ-୧୨୧୪

୩୫୯ । ମନୁସ୍ମୃତି—୩-୧୭୦-୧୮୨

୩୬୦ । ଶ୍ରାଦ୍ଧଦୀପ—ଶ୍ଲୋକ-୪୩୭-୪୪୪

୩୬୧ । ସ୍କନ୍ଦପୁରାଣ—ପ୍ରଭାସଖଣ୍ଡ—୨୦୫-୧୩ ।

୩୬୨ । ବ୍ରହ୍ମପୁରାଣ—୨୨୦-୧୫୭-୧୫୮ ।

ନିଷିଦ୍ଧ ବୃକ୍ଷରସ, ଖାର ଲବଣ ବର୍ଜନୀୟ ।୩୬୩। ଅର୍ଘ୍ୟଦାନ, ଶ୍ରାଦ୍ଧଭୋଜନ ପ୍ରସ୍ତୁତି, ଭୋଜନ ପରିବେଷଣ ନିମିତ୍ତ ବିଭିନ୍ନ ପ୍ରକାର ପାତ୍ରର ବ୍ୟବସ୍ଥା ଦିଆଯାଇଛି । ଅତି ପ୍ରାଚୀନ କାଳରୁ ଶ୍ରାଦ୍ଧରେ ମାଂସଭୋଜନ ଓ ପିତୃଙ୍କୁ ସିଦ୍ଧମାଂସ ସମର୍ପଣ ବିଷୟରେ ବହୁ ବିଧିବିଧାନର ଉଲ୍ଲେଖ ଥିଲେ ମଧ୍ୟ ଖ୍ରୀଷ୍ଟୀୟ ଦ୍ୱାଦଶ ତ୍ରୟୋଦଶ ଶତାବ୍ଦୀ ବେଳକୁ ତାହା ଶ୍ରାଦ୍ଧବର୍ଜ୍ୟ ଓ ପରେ ପରେ କଳିବର୍ଜ୍ୟ ରୂପେ ଗୃହୀତ ହୋଇଛି ।୩୬୪।

ବିଶ୍ୱେଦେବା ଆବାହନ ଶ୍ରାଦ୍ଧର ଅପରିହାର୍ଯ୍ୟ ବିଧିଭାବେ ଗୃହୀତ । ପାଞ୍ଚପ୍ରକାର ଶ୍ରାଦ୍ଧରେ ଦଶ ବିଶ୍ୱେଦେବାଙ୍କୁ ଆବାହନ କରାଯାଏ । ଯଜ୍ଞୀୟ ଶ୍ରାଦ୍ଧରେ କ୍ରତୁ ଓ ଦକ୍ଷ, ନାନ୍ଦୀମୁଖ ଶ୍ରାଦ୍ଧରେ ସତ୍ୟ ଓ ବସୁ, କାମ୍ୟଶ୍ରାଦ୍ଧରେ ଧୂରି ଓ ଲୋଚନ, ନୈମିତ୍ତିକ ଶ୍ରାଦ୍ଧରେ କାଳ ଓ କାମ ତଥା ପାର୍ବଣ ଶ୍ରାଦ୍ଧରେ ପୁରୂରବସ ଓ ଆର୍ଦ୍ରବ ବିଶ୍ୱେଦେବାଙ୍କୁ ପ୍ରଥମେ ପୂଜା କରାଯାଏ ।୩୬୫। ଶ୍ରାଦ୍ଧ ସମ୍ପର୍କିତ ପାର୍ବଣ ହୋମ, ଭୋଜନ ପରିବେଷଣ, ବ୍ରାହ୍ମଣଭୋଜନ, ଭୋଜନ-ପ୍ରସ୍ତୁତକାରୀ, ପିଣ୍ଡଦାନ ସମୟ, ପିଣ୍ଡର ବଦର, ଆମଳକ, ଅଣ୍ଡା, କପିତ୍ଥ ବା ବିଲ୍ୱାକାର ଆକୃତି ବୈଶ୍ୱଦେବ ବିଧି ପ୍ରଭୃତିର ବିଶେଷ ଆଲୋଚନା ନିବନ୍ଧ ଗ୍ରନ୍ଥଗୁଡ଼ିକରେ କରାଯାଇଥିବାର ଦେଖାଯାଏ ।୩୬୬।

ଏହି ପ୍ରକରଣରେ ଆଲୋଚିତ ଗ୍ରନ୍ଥ ବ୍ୟତୀତ ଓଡ଼ିଶାର ଅଧିକାଂଶ ସ୍ମୃତିଗ୍ରନ୍ଥରେ ଶ୍ରାଦ୍ଧ ବିଷୟରେ ଆଲୋଚନା କରାଯାଇଛି । ତନ୍ମଧ୍ୟରେ ଶମ୍ଭୂକର ବାଜପେୟୀଙ୍କ ପାର୍ବଣ-ଶ୍ରାଦ୍ଧପଦ୍ଧତି ଓ ସାମ୍ବତ୍ସରିକ ଶ୍ରାଦ୍ଧପଦ୍ଧତି, ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ',ମୁରାରି ମିଶ୍ରଙ୍କ'ସ୍ମୃତିଚନ୍ଦ୍ରିକା', ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ',ରଘୁନାଥ ଦାସଙ୍କ 'ଶ୍ରାଦ୍ଧନିର୍ଣ୍ଣୟ',ଗୋପୀନାଥ ପଟ୍ଟନାୟକଙ୍କ 'ଶୂଦ୍ରାହ୍ନିକ ପଦ୍ଧତି' ଓ ଖଣ୍ଡ ଗୋବିନ୍ଦ ଦାଶଙ୍କ 'ସର୍ବସ୍ମୃତିସାର ସଂଗ୍ରହ' ଗ୍ରନ୍ଥରେ ଶ୍ରାଦ୍ଧ ଲକ୍ଷଣ, ଭେଦ ଓ ବିଭିନ୍ନ ବିଧାନର ଉଲ୍ଲେଖ ରହିଛି ।୩୬୭।

## ୧୫ । ସଂସ୍କାର ପ୍ରକରଣ :

ସଂସ୍କାର ସମ୍ବନ୍ଧରେ 'ଗୃହ୍ୟସୂତ୍ର' ହେଉଛି ପ୍ରାଚୀନତମ ଲିପିବଦ୍ଧ ଗ୍ରନ୍ଥ । ସଂସ୍କାର ମୁଖ୍ୟତଃ ପ୍ରାଚୀନ ତଥା ଲୋକପ୍ରଚଳିତ ପରମ୍ପରା ଓ ପ୍ରଥା ଉପରେ ଆଧାରିତ ଥିବାରୁ ଅନ୍ୟାନ୍ୟ ସୂତ୍ର-ଗ୍ରନ୍ଥଭଳି ଗୃହ୍ୟସୂତ୍ରରେ ସମ୍ପର୍କୀୟ ପ୍ରାମାଣିକ ନିର୍ଦ୍ଦେଶମାନ ଉଲ୍ଲେଖ କରାଯାଇନାହିଁ ।୩୬୮। ଧର୍ମସୂତ୍ର, ସ୍ମୃତି ଓ ମଧ୍ୟକାଳୀନ ନିବନ୍ଧ ଗ୍ରନ୍ଥଗୁଡ଼ିକରେ ଧାର୍ମିକ ତଥା ଲୌକିକ ବିଧିବିଧାନ

---

୩୬୩ । ଶ୍ରାଦ୍ଧଦୀପ—ଶ୍ଳୋକ-୪୪୬-୪୪୮

୩୬୪ । ଧର୍ମଶାସ୍ତ୍ର କା ଇତିହାସ—୩ୟ ଭାଗ—ପୃ-୧୨୪୬

୩୬୫ । ଧର୍ମଶାସ୍ତ୍ର କା ଇତିହାସ—୩ୟ ଭାଗ—ପୃ-୧୨୫୬

୩୬୬ । କାଳସାର—ପୃ-୩୭୨-୫୫୮

୩୬୭ । OSM, Mss. Dh. No. 386, 350, 162. 198, 287, 430, 86

୩୬୮ । ହିନ୍ଦୁସଂସ୍କାର—ଡଃ ରାଜବଳୀ ପାଣ୍ଡେୟ-୧୯୬୬—ପୃ-୧

ବିଷୟରେ ଯେଉଁ ଉଲ୍ଲେଖ ମିଳେ, ସେଥିରେ ମୁଖ୍ୟତଃ ସଂସ୍କାରର ସାମାଜିକ ଅଙ୍ଗଗୁଡ଼ିକ ଆଲୋଚିତ ହୋଇଛି । ବେଦ ଅଖିଳ ଧର୍ମର ମୂଳ ହୋଇଥିଲେ ମଧ୍ୟ ସେଥିରେ ସଂସ୍କାର ସମ୍ବନ୍ଧୀୟ ଉଲ୍ଲେଖ ନାହିଁ । ତେଣୁ ବେଦ ବ୍ୟତୀତ ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍ ଓ ପୁରାଣ ସାହିତ୍ୟରେ ସଂସ୍କାରର ବିଭିନ୍ନ ଅଂଶ ପ୍ରସଙ୍ଗତଃ ସୂଚିତ ହୋଇଥିବାର ଦେଖାଯାଏ ।୩୬୯।

ଆନ୍ତରିକ ତଥା ଆତ୍ମିକ ସୌନ୍ଦର୍ଯ୍ୟରେ ବାହ୍ୟ ତଥା ଦୃଶ୍ୟ ପ୍ରତୀକାତ୍ମକ ବିଧିବିଧାନକୁ ସଂସ୍କାର କୁହାଯାଇପାରେ । ସମ୍ + କୃ + ଘଞ୍ରୁ 'ସଂସ୍କାର' ଶବ୍ଦର ଉତ୍ପତ୍ତି । ଶିକ୍ଷା, ସୌଜନ୍ୟ, ପୂର୍ଣ୍ଣତା, ଶୁଦ୍ଧି, ପରିଷ୍କରଣ, ଶୋଭା, ଆଭୂଷଣ, ପ୍ରଭାବ, ସ୍ୱରୂପ, ସ୍ୱଭାବ, ଧାର୍ମିକ ବିଧାନ, ଅଭିଷେକ, ବିଚାର, ଭାବନା, ଧାରଣାଦି ଅର୍ଥରେ ସଂସ୍କାରର ଅର୍ଥ ଅତ୍ୟନ୍ତ ବ୍ୟାପକ । ଏଥିରୁ ସଂସ୍କାରର ବିଭିନ୍ନତା ସ୍ୱତଃ ପ୍ରକଟିତ ହୁଏ । ସଂସ୍କାରଦ୍ୱାରା ବ୍ୟକ୍ତି ବା ସମାଜର ନୈତିକ, ସାଂସ୍କୃତିକ, ସାମାଜିକ ତଥା ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଘଟିଥାଏ ।

ବିଭିନ୍ନ ଗୃହ୍ୟସୂତ୍ରରେ ବିବାହଠାରୁ ସମାବର୍ତ୍ତନ ପର୍ଯ୍ୟନ୍ତ ସଂସ୍କାରର ସଂଖ୍ୟା ବିଭିନ୍ନ ଭାବେ ନିର୍ଦ୍ଦେଶ କରାଯାଇଛି । ଆଶ୍ୱଳାୟନ ଗୃହ୍ୟସୂତ୍ରରେ ବିବାହ, ଗର୍ଭାଧାନ, ପୁଂସବନ, ସୀମନ୍ତୋ-ନ୍ନୟନ, ଜାତକର୍ମ, ନାମକରଣ, ଚୂଡ଼ାକର୍ମ, ଅନ୍ନପ୍ରାଶନ, ଉପନୟନ, ସମାବର୍ତ୍ତନ ଓ ଅନ୍ତ୍ୟେଷ୍ଟି ପ୍ରଭୃତି ଏକାଦଶ ସଂସ୍କାରର ଉଲ୍ଲେଖ ଥିବା ସ୍ଥଳେ 'ପାରସ୍କର ଗୃହ୍ୟସୂତ୍ର'ରେ କେଶାନ୍ତ ଓ ନିଷ୍କ୍ରମଣ ଏବଂ ବୌଧାୟନ ଗୃହ୍ୟସୂତ୍ରରେ ଉପନିଷ୍କ୍ରମଣ ଓ କର୍ଣ୍ଣବୋଧ ନାମରେ ଦୁଇ ଦୁଇଟି ଅଧିକ ସଂସ୍କାରର ଉଲ୍ଲେଖ ଅଛି । 'ବାରାହ ଗୃହ୍ୟସୂତ୍ର'ରେ ବୌଧାୟନୋକ୍ତ ଉପନିଷ୍କ୍ରମଣ, କର୍ଣ୍ଣବୋଧ, ପିତୃମେଧ ବଦଳରେ ଦନ୍ତୋଦ୍‌ଗମନ, ଗୋଦାନ ଓ ବେଦବ୍ରତ ନାମ ସହିତ ତ୍ରୟୋଦଶ ସଂସ୍କାରର ପର୍ଯ୍ୟାଲୋଚନା କରାଯାଇଛି । 'ବୈଖାନସ ଗୃହ୍ୟସୂତ୍ର'ରେ ଋତୁସଂଗମନ, ବିଷ୍ଣୁବଳି, ଉତ୍ଥାନ, ପ୍ରବାସାଗମନ, ପିଣ୍ଡବର୍ଦ୍ଧନ,ପାରାୟଣ, ଉତ୍ସର୍ଜନ ଓ ବ୍ରତବନ୍ଧ ବିସର୍ଗାଦି ସହିତ ଆଶ୍ୱଳାୟନୋକ୍ତ ଏକାଦଶ ସଂସ୍କାର ମଧ୍ୟରୁ ପୁଂସବନକୁ ବାଦ୍ ଦେଇ ଅଷ୍ଟାଦଶ ସଂସ୍କାରର ଉଲ୍ଲେଖ କରାଯାଇଛି ।୩୭୦। ଗୌତମ ଗର୍ଭାଧାନଠାରୁ ଉପନୟନାବଧି ଆଠ ସଂସ୍କାର, ଚାରି ବେଦବ୍ରତ, ସ୍ନାନ, ସହଧର୍ମଚାରିଣୀ ସଂଯୋଗ, ପଞ୍ଚମହାଯଜ୍ଞ, ସପ୍ତପାକଯଜ୍ଞ (ଅଷ୍ଟକା, ପାର୍ବଣ, ଶ୍ରାଦ୍ଧ, ଶ୍ରାବଣୀ, ଅଗ୍ରହାୟଣୀ, ଚୈତ୍ରୀ ଓ ଆଶ୍ୱଯୁଜୀ), ସପ୍ତହବିର୍ଯଜ୍ଞ (ଅଗ୍ନ୍ୟାଧେୟ, ଅଗ୍ନିହୋତ୍ର, ଦର୍ଶପୌର୍ଣ୍ଣିମାସ୍ୟ, ଚାତୁର୍ମାସ୍ୟ, ଆଗ୍ରହାୟଣେଷ୍ଟି, ନିରୂଢ଼ ପଶୁବନ୍ଧ ସୌତ୍ରାମଣୀ) ଓ ସପ୍ତସୋମଯଜ୍ଞ (ଅଗ୍ନିଷ୍ଟୋମ, ଅତ୍ୟଗ୍ନିଷ୍ଟୋମ, ଉକଥ, ଷୋଡ଼ାଶୀ, ବାଜପେୟ, ଅତିରାତ୍ର, ଆପ୍ତୋର୍ଯ୍ୟାମ) ନାମରେ ଚତ୍ୱାରିଂଶତ୍ ସଂସ୍କାରର ଉଲ୍ଲେଖ କରିଛନ୍ତି ।୩୭୧। ମହର୍ଷି ମନୁ ଗର୍ଭାଧାନଠାରୁ ଶ୍ମଶାନାନ୍ତ ତ୍ରୟୋଦଶ ସଂସ୍କାରର ଉଲ୍ଲେଖ କରିଛନ୍ତି ।୩୭୨। ତଦ୍‌ବ୍ୟତୀତ

୩୬୯ । History of Dh. Vol,-II, Part I, P-190.

୩୭୦ । History of Dh. Vol-II, Part-I, Page-194

୩୭୧ । ଗୌତମ ଧର୍ମସୂତ୍ର—୮.୧୪-୨୪ ।

୩୭୨ । ମନୁସ୍ମୃତି—୨.୩୯-୩୮, ୬୫.୭୦, ୩.୪, ୪୫-୪୯ ।

ଯାଜ୍ଞବଲ୍‌କ୍ୟ ଦ୍ୱାଦଶ, ଅଙ୍ଗିରା ପଞ୍ଚବିଂଶ ଓ ବ୍ୟାସ ଷୋଡ଼ଶ ପ୍ରକାର ସଂସ୍କାରର ପର୍ଯ୍ୟାଲୋଚନା କରିଥିବାର ଦେଖାଯାଏ ।୩୭୩। କିନ୍ତୁ ପଦ୍ଧତିକାରଗଣ ଦୈବସଂସ୍କାର ବ୍ୟତୀତ ଗର୍ଭାଧାନ-ଠାରୁ ବିବାହ ପର୍ଯ୍ୟନ୍ତ ମୁଖ୍ୟତଃ ଷୋଡ଼ଶ ସଂସ୍କାରର ପର୍ଯ୍ୟାଲୋଚନା କରିଛନ୍ତି ।୩୭୪।

ଉପର୍ଯ୍ୟୁକ୍ତ ଆଲୋଚନା ଅନୁଯାୟୀ ସମସ୍ତ ପ୍ରକାର ଧାର୍ମିକ କୃତ୍ୟ ସଂସ୍କାରର ଅନ୍ତର୍ଗତ । ତେଣୁ ହାରୀତ ସମସ୍ତ ଯଜ୍ଞବିଧିକୁ ଦୈବସଂସ୍କାର ଓ ମାନବଜୀବନର ବିଭିନ୍ନ ସମୟରେ ପାଳିତ ହେଉଥିବା ସଂସ୍କାରକୁ ବ୍ରାହ୍ମସଂସ୍କାର ଭାବେ ଦୁଇ ଭାଗରେ ବିଭକ୍ତ କରିଛନ୍ତି ।୩୭୫। ସାମାଜିକ, ସାଂସ୍କୃତିକ ଓ ନୈତିକ ପ୍ରୟୋଜନ, ଅଶୁଭ ପ୍ରତିକାର, ଅଭୀଷ୍ଟ ସିଦ୍ଧି, ବ୍ୟକ୍ତିତ୍ୱର ବିକାଶ, ଆଧ୍ୟାତ୍ମିକ ମହତ୍ତ୍ୱସାଧନରେ ସଂସ୍କାରର ଆବଶ୍ୟକତାକୁ ସ୍ୱୀକାର କରାଯାଇଛି ।୩୭୬। ମାନବିକ ବିଶ୍ୱାସ, ଭାବନା, ସ୍ୱଭାବ, ଅଲୌକିକତା ଓ ଭାଗ୍ୟବିଶ୍ୱାସକୁ ଆଧାର କରି ସଂସ୍କାରର କ୍ରମବିକାଶ ସମ୍ଭବ ହୋଇଛି । ଏହାର ଆଙ୍ଗିକ ଉପାଦାନ ମଧ୍ୟରେ ଅଗ୍ନି, ସ୍ତୁତି, ପ୍ରାର୍ଥନା, ଆଶୀର୍ବାଦ, ଯଜ୍ଞ, ଅଭିଷିଞ୍ଚନ, ଦିକ୍‌ନିର୍ଦ୍ଦେଶ, ପ୍ରତୀକତ୍ୱ, ନିଷେଧ, ଅଭିଗ୍ରହ, ଫଳିତ ଜ୍ୟୋତିଷ ପ୍ରଭୃତି ଉଲ୍ଲେଖଯୋଗ୍ୟ । ସମାଜରେ ପ୍ରଚଳିତ ଥିବା ଷୋଡ଼ଶ ସଂସ୍କାର ମଧ୍ୟରେ ଗର୍ଭାଧାନ, ପୁଂସବନ, ସୀମନ୍ତ, ଜାତକର୍ମ, ନାମକରଣ, ଅନ୍ନପ୍ରାଶନ, କର୍ଣ୍ଣବେଧ, ନିଷ୍କ୍ରମଣ, ବେଦାରମ୍ଭ, ଚୌଳ, ଉପନୟନ, ଚତୁର୍ବ୍ରତ, ଗୋଦାନ, ସମାବର୍ତ୍ତନ, ବିବାହ ଓ ଅନ୍ତ୍ୟେଷ୍ଟି ଉଲ୍ଲେଖ-ଯୋଗ୍ୟ । ଆଲୋଚ୍ୟ ଷୋଡ଼ଶ ସଂସ୍କାର ମଧ୍ୟରୁ ବ୍ରତ-ପ୍ରକରଣରେ ବୈଦିକ ଚତୁଷ୍ଟୟ,ଦାନରେ ଗୋଦାନ ଓ ଅଶୌଚରେ ଅନ୍ତ୍ୟେଷ୍ଟି ବିଷୟ ଆଲୋଚିତ ହୋଇଛି । ଏଠାରେ ଅବଶିଷ୍ଟ ତ୍ରୟୋଦଶ ସଂସ୍କାରର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ ।

**ଗର୍ଭାଧାନ :**

ଋତୁଗମନ, ନିଷେକ ବା ଚତୁର୍ଥୀ ହୋମ ଗର୍ଭାଧାନକୁ ହିଁ ବୁଝାଏ । ଋତୁରେ ଚତୁର୍ଥ ଦିନ ସ୍ୱାମୀ ଯଥାବିଧି ଅଗ୍ନି, ବାୟୁ, ସୂର୍ଯ୍ୟ, ଅର୍ଯ୍ୟମା, ବରୁଣ, ପୂଷନ୍, ପ୍ରଜାପତି ଓ ସବିତୃଙ୍କୁ ପୂଜାକରି ଅଧଣ୍ଡାବୃକ୍ଷ ମୂଳର ରସ ସ୍ତ୍ରୀଙ୍କ ନାକରେ ପକାଇବେ । ରାତ୍ରିରେ ସହବାସ କାଳରେ ନିର୍ଦ୍ଦିଷ୍ଟ ବୈଦିକମନ୍ତ୍ର ପାଠକରିବେ । ଗର୍ଭାଧାନ ନିମିତ୍ତ ମାସ ତିଥି ନକ୍ଷତ୍ରାଦିର ଶୁଭାଶୁଭ ବିଚାର କରାଯାଏ ।୩୭୭। ସ୍ତ୍ରୀ ମଧ୍ୟ ଋତୁସ୍ନାନ ପରେ ପ୍ରଥମେ ନିଜର ସ୍ୱାମୀଙ୍କୁ ଦେଖିବେ; ସ୍ତ୍ରୀଲୋକ

---

୩୭୩ । History of Dh. Vol, II, Part-I, Page-194

୩୭୪ । Some aspects of the Hindu View of life according to Dharmashastra. P-131 ।

୩୭୫ । ନିର୍ଣ୍ଣୟସାର—ପୃ-୨୩ ।

୩୭୬ । History of Dh. Vol-II, Part-I, Page-191.

୩୭୭ । କାଳସାର—ପୃ-୨୧୨ ।

ଓ ଶୂଦ୍ର ସହ କଥାବାର୍ତ୍ତା କରିବେ ନାହିଁ । କାରଣ ଋତୁସ୍ନାତା ନାରୀ ଯାହା ଦେଖିବେ, ଯାହା କହିବେ ଓ ଯାହା ଭାବିବେ ତାହାହିଁ ଭାବୀ ସନ୍ତାନକୁ ପ୍ରଭାବିତ କରିଥାଏ ।୩୭୮।

**ପୁଂସବନ :**

ଗର୍ଭାଧାନର ଦ୍ୱିତୀୟ ବା ତୃତୀୟ ମାସରେ ଯେଉଁଦିନ ଚନ୍ଦ୍ର ପୁଷ୍ୟାନକ୍ଷତ୍ରଯୁକ୍ତ ହୋଇଥିବେ, ସେହିଦିନ ପୁଂସବନ କର୍ମ କରାଯାଏ ।୩୭୯। ପୁତ୍ର-ଜନ୍ମ ଉଦ୍ଦେଶ୍ୟରେ ଏହି ସଂସ୍କାର ପାଳିତ ହୋଇଥାଏ ।୩୮୦। ଏଥିରେ ହୋମ, ଔଷଧିସେବନ ଓ ଅନ୍ୟାନ୍ୟ ଧାର୍ମିକ ଅନୁଷ୍ଠାନମାନ ଅନୁଷ୍ଠିତ ହୁଏ । ପୁଂସବନ ସହିତ କୌଣସି ପୁରୁଷ ନକ୍ଷତ୍ରରେ ଚନ୍ଦ୍ର ଅବସ୍ଥାନ କାଳରେ ଅନବଲୋଭନ ବା ଗର୍ଭରକ୍ଷଣବିଧି ଏକ ଦିବସରେ ପାଳିତ ହୁଏ ।୩୮୧। ଆଶ୍ୱଲାୟନଙ୍କ ଅନୁସାରେ ଅନବଲୋଭନ ଓ ସୀମନ୍ତୋନ୍ନୟନ ଗର୍ଭର ଚତୁର୍ଥ, ଷଷ୍ଠ ବା ଅଷ୍ଟମ ମାସରେ ପାଳନ କରାଯାଇଥାଏ ।୩୮୨।

**ସୀମନ୍ତୋନ୍ନୟନ :**

ପ୍ରଥମ ଗର୍ଭର ଷଷ୍ଠ ବା ଅଷ୍ଟମ ବା ନବମ ମାସରେ ସୀମନ୍ତୋନ୍ନୟନ ଅନୁଷ୍ଠିତ ହୁଏ ।୩୮୩। ପାରସ୍କର ଏହି ସଂସ୍କାରକୁ କେବଳ ପ୍ରଥମ ଗର୍ଭ ପାଇଁ ନିର୍ଦ୍ଦେଶ କରିଥିବାବେଳେ କର୍କାଚାର୍ଯ୍ୟ ସମସ୍ତ ଗର୍ଭରେ ଉକ୍ତ ବିଧି ପାଳନୀୟ ବୋଲି ଉଲ୍ଲେଖ କରିଛନ୍ତି ।୩୮୪। ଏଥିରେ ସ୍ତ୍ରୀର କେଶ-ରାଶି ଉପର ଆଡ଼କୁ ଆକର୍ଷିତ କରି ରଖାଯାଏ । ବିଭିନ୍ନ ଗୃହ୍ୟସୂତ୍ରରେ ଏହି ବିଧି ପାଳନ ନିମିତ୍ତ ବିଭିନ୍ନ ପ୍ରକାର ନିର୍ଦ୍ଦେଶ ଦିଆଯାଇଛି ।୩୮୫। ଏଥିରେ ହୋମ ତଥା ରାଜା, ବ୍ରାହ୍ମଣ ଓ ସୋମଙ୍କ ପ୍ରାର୍ଥନା କରାଯାଏ । ଏତଦ୍‌ବ୍ୟତୀତ ଜାତକର୍ମ ପୂର୍ବରୁ ସୁଖ-ପ୍ରସବ ନିମିତ୍ତ ବିଷ୍ଣୁ-ବଳି ଏବଂ ଆସନ୍ନ ପ୍ରସବ ଅବସ୍ଥାରେ ଶୋଷନ୍ତୀ କର୍ମ କରାଯାଏ ।୩୮୬।

**ଜାତକର୍ମ :**

ସନ୍ତାନ ଜନ୍ମ ପରେ ପରେ ଜାତକର୍ମ ବିଧି ପାଳିତ ହୁଏ । ବାଳକ-ଜନ୍ମରେ ଜାତକର୍ମ ପରେ ବୈଶ୍ୱାନରୀୟ ଅନୁଷ୍ଠାନ କରାଯାଏ ।୩୮୭। ପିଲାଟି ଜନ୍ମ ହେବା ପରେ ତାକୁ ଘୃତମିଶ୍ରିତ

୩୭୮ । କାଳସାର—ପୃ-୨୦୧-୨୦୬

୩୭୯ । କାଳସାର—ପୃ-୨୧୯

୩୮୦ । History of Dh. Vol.-II, Part-I, Page-218

୩୮୧ । ନିତ୍ୟାଚାର ପଦ୍ଧତି—ପୃ-୨୩୮ ।

୩୮୨ । History of Dh. Vol.-II, Part-I, Page-221

୩୮୩ । ନିତ୍ୟାଚାର ପଦ୍ଧତି—ପୃ-୨୩୮

୩୮୪ । କାଳସାର—ପୃ-୨୦୨

୩୮୫ । ନିତ୍ୟାଚାର ପଦ୍ଧତି—ପୃ-୨୪୦

୩୮୬ । ସ୍ମୃତିସାର ସଂଗ୍ରହ—ପୃ-୧୭୧

୩୮୭ । ନିତ୍ୟାଚାର ପଦ୍ଧତି—ପୃ-୨୪୩

ଦନ୍ତରେ ଲେପନ କରାଯାଏ ଏବଂ ଦନ୍ତ, ମଧୁ ଓ ଲହୁଣି ଏକ ସୁବର୍ଣ୍ଣ-ନିର୍ମିତ ଗ୍ଭମୁଚରେ ଚଟାଇ ଦିଆଯାଏ । ପିଲାର କାନରେ 'ବାକ୍' ବୋଲି ତିନଥର କୁହାଯାଏ । ଏ ସମସ୍ତ ବିଧିରେ ଯଥା-ନିର୍ଦ୍ଦିଷ୍ଟ ବୈଦିକ ମନ୍ତ୍ର ପଠିତ ହୁଏ । 'ଆଶ୍ୱଳାୟନ ଗୃହ୍ୟସୂତ୍ର' ଅନୁସାରେ ପିଲାକୁ ଚଟାଇବା ଉଦ୍ଦେଶ୍ୟରେ ଲହୁଣିରେ ସୁନା ଘଷାଯାଇଥାଏ ।୩୮୮। ପିଲାର ମେଧା-ଜନନ, ଆୟୁଷ୍ୟ, ଅଂସାଭିମର୍ଷଣ, ମାତାଭିମର୍ଷଣ, ପଞ୍ଚବ୍ରାହ୍ମଣ ସ୍ଥାପନ, ସ୍ଥାନ, ପ୍ରଧାନ, ଦେଶାଭିମନ୍ତ୍ରଣ, ଆଦର ନାମଦାନ ଓ ଅଶୁଭଦୂରୀକରଣ ନିମିତ୍ତ ନାନାବିଧ ବିଧିବିଧାନ ଓ ହୋମ ଅନୁଷ୍ଠିତ ହୁଏ ।

**ନାମକରଣ :**

ଜନ୍ମର ଦଶମ ଦିନ ଉତ୍ଥାପନ ବିଧି ଓ ଏକାଦଶ ଦିନରେ ନାମକରଣ କରାଯାଏ ।୩୮୯। କାଳସାର-ଉଦ୍ଧୃତ ମନୂକ୍ତି ଅନୁସାରେ ଦଶମ, ଦ୍ୱାଦଶ ବା ଅଶୌଚାନନ୍ତର ଯେକୌଣସି ପୁଣ୍ୟତିଥି, ମୁହୂର୍ତ୍ତ ବା ନକ୍ଷତ୍ରରେ ଏହା କରାଯାଇପାରେ ।୩୯୦। ତାହାହିଁ ନାମ ଦେବାର ବିଧି । ବୈଦିକ ଯୁଗରେ ବ୍ୟକ୍ତିବିଶେଷର ତିନୋଟି ବା ଚାରୋଟି ନାମ ରହୁଥିଲା । ସେହି ନାମରୁ ତାର ଗୋତ୍ର, ପିତା ଓ ନିଜ ନାମ ବୁଝାଯାଉଥିବ । ଗୃହ୍ୟସୂତ୍ରରେ ନାମକରଣ ଓ ନାମ ନିର୍ବାଚନ ବିଷୟରେ ବିଶେଷ ଆଲୋଚନା କରାଯାଇଛି । ଦୁଇ ଅକ୍ଷର, ଚାରି ଅକ୍ଷର, କୃତ୍ ପ୍ରତ୍ୟୟଯୁକ୍ତ ନାମ ଦିଆଯାଇଥାଏ ।୩୯୧। ତଦ୍‌ବ୍ୟତୀତ ଘୋଷାକ୍ଷର, ଅନ୍ତଃସ୍ଥ, ଦୀର୍ଘ, ଅହ୍ରସ୍ୱ, ଅଭିଷ୍ଠାନାନ୍ତ ଓ ପୂର୍ବପୁରୁଷ ତଥା କୁଳ ଓ ଦେବତା ସମ୍ବନ୍ଧି ନାମ ମଧ୍ୟ ଦିଆଯାଏ । ବ୍ରାହ୍ମଣର ନାମ ଶର୍ମ ବା ମଙ୍ଗଳ ପ୍ରତିପାଦକ, କ୍ଷତ୍ରିୟ ନାମ ବର୍ମ ବା ଶୌର୍ଯ୍ୟ ପ୍ରତିପାଦକ, ବୈଶ୍ୟର ନାମ ଗୁପ୍ତ ବା ଧନବୃଦ୍ଧି ପ୍ରତିପାଦକ ଓ ଶୂଦ୍ରର ନାମ ଦାସ ବା ପ୍ରେଷ୍ୟତ୍ୱ ପ୍ରତିପାଦକ ହେବା ବାଞ୍ଛନୀୟ ।୩୯୨। କୁମାରୀର ନାମ ସୁଖକର, ଅକ୍ରୂର, ସ୍ପଷ୍ଟାର୍ଥ, ସୁନ୍ଦର, ମାଙ୍ଗଳ୍ୟସୂଚକ, ଦୀର୍ଘାନ୍ତ ଓ ଆଶୀର୍ବାଦ ତଥା ଆଭିଧାନିକ ହେବା ବିଧେୟ ।

**କର୍ଣ୍ଣବେଧ :**

ବୌଧାୟନ ଗୃହ୍ୟସୂତ୍ର ଅନୁସାରେ କର୍ଣ୍ଣବେଧ ଜନ୍ମର ସପ୍ତମ ବା ଅଷ୍ଟମ ମାସରେ କରିବାର ବିଧାନ ଥିଲେ ମଧ୍ୟ ବୃହସ୍ପତି ଏହି ସଂସ୍କାରକୁ ଜନ୍ମର ଦଶ, ବାର ବା ଷୋହଳ ଦିନରେ ବା ସପ୍ତମ ବା ଦଶମ ମାସରେ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।୩୯୩। ଏଥିରେ

---

୩୮୮ । ଆଶ୍ୱଳାୟନ ଗୃହ୍ୟସୂତ୍ର—୧.୧୫,୧-୪

୩୮୯ । ନିତ୍ୟାଚାର ପଦ୍ଧତି—ପୃ-୨୭୭ ।

୩୯୦ । କାଳସାର—ପୃ-୨୨୩ ।

୩୯୧ । ଅପସ୍ତମ୍ବ ଗୃହ୍ୟସୂତ୍ର—୧୫, ୮-୯ ।

୩୯୨ । କାଳସାର—ପୃ-୨୨୨ ।

୩୯୩ । History of Dh. Vol.-II, Part-I, P-255.

ପିତା ପୂର୍ବମୁଖ ହୋଇ ବସିବେ । ପୁଅ ହେଲେ ପ୍ରଥମେ ଦକ୍ଷିଣ ଓ ବାମ କର୍ଣ୍ଣ ଏବଂ ଝିଅ ହେଲେ ପ୍ରଥମେ ବାମ ଓ ପରେ ଦକ୍ଷିଣ କର୍ଣ୍ଣରେ ମନ୍ତ୍ରପାଠପୂର୍ବକ କର୍ଣ୍ଣବେଧ କରିବେ । ଏହି କାର୍ଯ୍ୟ ପିତାଙ୍କ ବ୍ୟତୀତ ଶିକ୍ଷକ ମଧ୍ୟ କରିପାରିବେ ।

**ବହିର୍ନିଷ୍କ୍ରମଣ :**

ଶିଶୁର ଚତୁର୍ଥ ମାସରେ ବା ଅନ୍ୟ କୌଣସି ଶୁଭଦିନରେ ବହିର୍ନିଷ୍କ୍ରମଣ ସଂସ୍କାର ପାଳିତ ହୁଏ ।୩୯୪। କାଳସାର-ଉଦ୍ଧୃତ ଭବିଷ୍ୟ ପୁରାଣ ଅନୁସାରେ ଜନ୍ମର ଦ୍ୱାଦଶ ଦିନ ବା ଚତୁର୍ଥ ମାସର ଯେକୌଣସି ଶୁଭ ଦିନରେ ଏହା ପାଳନ କରାଯାଇପାରେ ।୩୯୫। କାଠକ ଗୃହ୍ୟସୂତ୍ର ଅନୁସାରେ ଏହି ସଂସ୍କାର ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ବିଧାନର ଉଲ୍ଲେଖ ନ ଥିବାରୁ ଶିଶୁର ତୃତୀୟ ମାସରେ ଚନ୍ଦ୍ରଦର୍ଶନ ଓ ଚତୁର୍ଥ ମାସରେ ସୂର୍ଯ୍ୟଦର୍ଶନ କରାଯାଇଥାଏ ।

**ଅନ୍ନପ୍ରାଶନ :**

ଜନ୍ମର ଷଷ୍ଠ ମାସରେ ଅନ୍ନପ୍ରାଶନ କରାଯାଏ । କିନ୍ତୁ ମାନବ-ଗୃହ୍ୟସୂତ୍ର ଅନୁସାରେ ପଞ୍ଚମ ବା ଷଷ୍ଠ ମାସ, ଅପରାର୍କଙ୍କ ଅନୁସାରେ ଷଷ୍ଠ ମାସ ବା ବର୍ଷେ ପରେ ଏବଂ କାଠକ ଗୃହ୍ୟସୂତ୍ର ଅନୁସାରେ ଶିଶୁର ଦାନ୍ତ ଉଠିବା ପରେ ଅନ୍ନପ୍ରାଶନ ବିଧେୟ ।୩୯୬। ପ୍ରସ୍ତୁତ ସିଦ୍ଧାନ୍ନ ଇଷ୍ଟଦେବଙ୍କୁ ସମର୍ପଣ ପରେ ପିତା ପୁତ୍ରକୁ ମନ୍ତ୍ରପାଠପୂର୍ବକ ଖୁଆଇବେ; ଅବଶିଷ୍ଟ ଅନ୍ନ ମା' ଖାଇବେ । ବର୍ଷ-ପୂର୍ତ୍ତିରେ ପିଲାର ସ୍ୱଜନକ୍ଷତ୍ର ପୂଜା ହୁଏ । ସେଦିନ ଅଗ୍ନି, ପ୍ରଜାପତି, ପିତୃଗଣ, ନକ୍ଷତ୍ର ଓ ବ୍ରାହ୍ମଣମାନଙ୍କୁ ପୂଜା କରାଯାଏ । ସପ୍ତ ଚିରଜୀବୀଙ୍କ ସହିତ ମାର୍କଣ୍ଡେୟଙ୍କୁ ସ୍ମରଣ କରାଯାଇଥାଏ ।୩୯୭।

**ଚୂଡ଼ାକର୍ମ :**

ମନୁଙ୍କ ଅନୁସାରେ ଶିଶୁର ପ୍ରଥମ ବା ତୃତୀୟ ବର୍ଷରେ ଓ ଶଙ୍ଖଲିଖିତଙ୍କ ଅନୁସାରେ ପଞ୍ଚମ ବର୍ଷରେ ଶିଶୁର ଚୂଡ଼ାକର୍ମ ମକରଠାରୁ ମିଥୁନ ମାସ ମଧ୍ୟରେ କରାଯାଏ ।୩୯୮। ମାତା ଗର୍ଭିଣୀ ଥିବା ଅବସ୍ଥାରେ ଚୂଡ଼ାକର୍ମ ନିଷିଦ୍ଧ ।୩୯୯। ଚୂଡ଼ାକର୍ମ ଚୌଳ, ଚୌଡ଼କର୍ମରୂପେ ଅଭିହିତ । ଏଥିରେ ଚୂଡ଼ା ବା ଶିଖା ରଖି ଶିଶୁ ମସ୍ତକର ଅନ୍ୟ ଅଂଶ କ୍ଷୌର କରାଯାଇଥାଏ । ଚନ୍ଦ୍ର ପୁନର୍ବସୁ ନକ୍ଷତ୍ରରେ ଥିଲେ ଏହି କର୍ମ କରାଯିବ । 'ମାନବ ଗୃହ୍ୟସୂତ୍ର' ଅନୁସାରେ ମାସର ନବମ ଦିନରେ ଏହା କରାଯିବ ନାହିଁ । ଏଥିରେ କ୍ଷୁର, ଉଷ୍ଣଜଳ, କୁଶାଦି

---

୩୯୪ । ସ୍ମୃତିସାର ସଂଗ୍ରହ—ପୃ-୧୭୨

୩୯୫ । କାଳସାର—ପୃ-୨୨୪

୩୯୬ । History of Dh. Vol.-II, Part-I, P-255-257.

୩୯୭ । ନିତ୍ୟାଚାର ପଦ୍ଧତି—ପୃ-୭୨୧-୭୨୪ ।

୩୯୮ । କାଳସାର—ପୃ-୨୨୪-୨୨୫

୩୯୯ । ସ୍ମୃତିସାର ସଂଗ୍ରହ—ପୃ-୧୭୩

ଆବଶ୍ୟକ । ନାପିତଦ୍ୱାରା କ୍ଷୌରକର୍ମ କରାଯାଏ । ଏ ସମସ୍ତ ମଧ୍ୟ ଝିଅ ପକ୍ଷରେ ବିନା ମନ୍ତ୍ରରେ ପାଳିତ ହେବ ।୪୦୦।

**ବେଦାରମ୍ଭ :**

ଶିଶୁର ବିଦ୍ୟାଧ୍ୟୟନ ବିଷୟରେ କେବଳ ଅର୍ଥଶାସ୍ତ୍ର ବ୍ୟତୀତ ଗୃହ୍ୟସୂତ୍ର ଓ ଧର୍ମସୂତ୍ରରେ କୌଣସି ଉଲ୍ଲେଖ ଥିବାର ଦେଖାଯାଏ ନାହିଁ । ତେଣୁ ଖୁବ୍ ସମ୍ଭବତଃ ଏହି ବିଧି କୌଟିଲ୍ୟଙ୍କ ସମୟରୁ ପାଳିତ ହୋଇ ଆସୁଥିବା ବିଶ୍ୱାସ କରାଯାଏ । ଶିଶୁର ପଞ୍ଚମ ବର୍ଷ କାର୍ତ୍ତିକ ଶୁକ୍ଳ-ଦ୍ୱାଦଶୀଠାରୁ ଆଷାଢ଼ ଶୁକ୍ଳ-ଏକାଦଶୀ ମଧ୍ୟରେ କୌଣସି ଏକ ଶୁଭ ଦିନରେ ଦ୍ୱିତୀୟା, ତୃତୀୟା, ପଞ୍ଚମୀ, ସପ୍ତମୀ, ଦଶମୀ, ଏକାଦଶୀ ବା ଦ୍ୱାଦଶୀ ତିଥିରେ ଶନିବାର ଓ ବୁଧବାର ବ୍ୟତୀତ ଅନ୍ୟ ବାରରେ ବିଦ୍ୟାରମ୍ଭ କାର୍ଯ୍ୟ କରାଯାଏ । ସେଦିନ ହରି, ଲକ୍ଷ୍ମୀ, ସରସ୍ୱତୀ ଓ ଗଣପତିଙ୍କୁ ପୂଜା କରାଯାଏ ଓ ଶିଶୁର ଶିକ୍ଷକ ଯଥୋଚିତ ସମ୍ମାନିତ ହୋଇଥାନ୍ତି ।୪୦୧।

**ଉପନୟନ :**

ଗର୍ଭୋତ୍ପତ୍ତିଠାରୁ ଅଷ୍ଟମ ବର୍ଷରେ ବ୍ରାହ୍ମଣ, ଏକାଦଶ ବର୍ଷରେ କ୍ଷତ୍ରିୟ, ଦ୍ୱାଦଶ ବର୍ଷରେ ବୈଶ୍ୟ ଏବଂ ଶୂଦ୍ରମାନଙ୍କର ବିବାହ ଦ୍ୱାରା ଉପନୟନ ସଂସ୍କାର ପାଳିତ ହୁଏ । କାଳସାରଉଦ୍ଧୃତ ଯାଜ୍ଞବଲ୍କ୍ୟଙ୍କ ବଚନ ଅନୁସାରେ ବ୍ରାହ୍ମଣ ଷୋଳବର୍ଷ, କ୍ଷତ୍ରିୟ ବାଇଶ ବର୍ଷ ଓ ବୈଶ୍ୟ ଚବିଶ ବର୍ଷ ମଧ୍ୟରେ ଉପନୀତ ହେବା ବାଞ୍ଛନୀୟ ।୪୦୨। ମନୁଙ୍କ ଅନୁସାରେ ବିବାହକୁ ସ୍ତ୍ରୀମାନଙ୍କର ଉପନୟନ ସଂସ୍କାର ରୂପେ ଗ୍ରହଣ କରାଯାଇଛି ।୪୦୩। ଉପନୟନକାଳ ବିଷୟରେ ସୂତ୍ର-ଗ୍ରନ୍ଥଗୁଡ଼ିକରେ ବିଭିନ୍ନ ପ୍ରକାର ମତ ଥିବାର ଜଣାଯାଏ । ଉପନୟନ ପରେ ବ୍ରହ୍ମଚାରୀ ପଳାଶଦଣ୍ଡ, ମେଖଳା, ଅଧୋବାସ ଓ ଉତ୍ତରୀୟ, ଯଜ୍ଞୋପବୀତ ଧାରଣ କରନ୍ତି ଏବଂ ସାବିତ୍ରୀ ଓ ଗାୟତ୍ରୀ ଦ୍ୱାରା ଦୀକ୍ଷିତ ହୁଅନ୍ତି । ଉପନୀତ ବ୍ରହ୍ମଚାରୀ ଭିକ୍ଷା, ସନ୍ଧ୍ୟା, ପ୍ରାଣାୟାମ, ମାର୍ଜନ, ଅଘମର୍ଷଣ, ଗାୟତ୍ରୀ ଜପ, ବେଦାଧ୍ୟୟନାଦି କାର୍ଯ୍ୟରେ ବ୍ୟାପୃତ ହୁଅନ୍ତି ।

**ସମାବର୍ତ୍ତନ :**

ଅଧ୍ୟୟନ ପରେ ଗୁରୁଙ୍କଠାରୁ ସ୍ୱଗୃହ ପ୍ରତ୍ୟାବର୍ତ୍ତନକୁ ସମାବର୍ତ୍ତନ କହନ୍ତି । କିନ୍ତୁ ଯେଉଁ ବ୍ରହ୍ମଚାରୀ ସ୍ୱଗୃହରେ ପିତାଙ୍କଠାରୁ ଅଧ୍ୟୟନ କରିଥାଏ, ତା'ର ଏହା ଅନାବଶ୍ୟକ । ସମାବର୍ତ୍ତନ

---

୪୦୦ । History of Dh. Vol-II, Part-I, P-263.

୪୦୧ । History of Dh. Vol.II, Patt I, P. 266-267

୪୦୨ । କାଳସାର—ପୃ -୨୨୬ ।

୪୦୩ । ମନୁସ୍ମୃତି—୨-୬୬-୬୭ ।

ଓ ସ୍ନାନ ଏକ ଅର୍ଥରେ ସୂତ୍ର ସାହିତ୍ୟରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ଅଧ୍ୟୟନ ପରେ ବିଦ୍ୟାର୍ଥୀ ଏକ ବୈଦିକ ସ୍ନାନ କରି ଗୃହକୁ ଫେରିଆସୁଥିଲେ । ଏହି ବିଷୟ ବିଭିନ୍ନ ଧର୍ମଶାସ୍ତ୍ରରେ ବିଶଦଭାବେ ବର୍ଣ୍ଣିତ ହୋଇଛି ।୪୦୪।

**ବିବାହ :**

ଏହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସଂସ୍କାର । ଏ ବିଷୟରେ ସ୍ମୃତି, ଜ୍ୟୋତିଷ ଓ ସାହିତ୍ୟରେ ବହୁ ଆଲୋଚନା କରାଯାଇଛି । ବିବାହର ମୁଖ୍ୟ ଉଦ୍ଦେଶ୍ୟ ଦୁଇଟି—ସସ୍ତ୍ରୀକ ପୁରୁଷ ଧର୍ମକାର୍ଯ୍ୟ କରିବାରେ ସମର୍ଥ ହୁଏ ଓ ସ୍ତ୍ରୀ ସନ୍ତାନ ଜନ୍ମଦେଇ ପୁରୁଷକୁ ପାପମୁକ୍ତ କରେ । ବର କନ୍ୟା ନିରୂପଣରେ ଧନ, ରୂପ, ବିଦ୍ୟା ଓ ପରିବାର ଏହି ଗୁଣଗୁଡ଼ିକର ପ୍ରାଧାନ୍ୟ ଦିଆଯାଏ ।୪୦୫। କନ୍ୟାର ବିବାହ ବୟସ ବିଷୟରେ ଶାସ୍ତ୍ରରେ ମତାନ୍ତରମାନ ଦେଖାଯାଏ । ତେବେ ଆଠ-ବର୍ଷରୁ ଏଗାର ବର୍ଷ ମଧ୍ୟରେ କନ୍ୟାର ଓ କୋଡ଼ିଏ ପରଠାରୁ ପୁରୁଷର ବିବାହକୁ ଅନେକେ ସ୍ୱୀକାର କରିଛନ୍ତି ।୪୦୬। କନ୍ୟା ନିର୍ବାଚନରେ ବୁଦ୍ଧି-ରୂପ-ଶୀଲଲକ୍ଷଣୈଃସମ୍ପନ୍ନା, ଅରୋଗା, ସ୍ୱାସ୍ଥ୍ୟବତୀ, ଭ୍ରାତୃମତୀ କନ୍ୟା ନିର୍ବାଚନୀୟ । କନ୍ୟାର ଦୋଷ ମଧ୍ୟରେ ଦୀର୍ଘାଙ୍ଗୀ, କୁତ୍ସିତା, ରୋଗାର୍ତ୍ତା, ସମ୍ପୃକ୍ତ-ମୈଥୁନା, ଦୁଷ୍ଟା, ଅନ୍ୟଗତଭାବା କନ୍ୟା ପରିତ୍ୟାଜ୍ୟ ।୪୦୭। କନ୍ୟା ବରଠାରୁ ଅନ୍ୟୁନ ତିନିବର୍ଷ କନିଷ୍ଠା ହେବା ବାଞ୍ଛନୀୟ ।୪୦୮। ନିବନ୍ଧ ଗ୍ରନ୍ଥରେ କନ୍ୟାର ବୟସଠାରୁ ବରର ବୟସ ତିନିଗୁଣ ହେବା ଉଚିତ ବୋଲି ଉଲ୍ଲେଖ ଅଛି ।୪୦୯। ମନୁଙ୍କ ଅନୁସାରେ ତିରିଶ ବର୍ଷ ବର ପାଇଁ ଦ୍ୱାଦଶ ବର୍ଷୀୟା, ଏକାଦଶ ବା ଅଷ୍ଟବର୍ଷୀୟା କନ୍ୟା ଗ୍ରହଣୀୟ ।୪୧୦। ସପିଣ୍ଡ, ସଗୋତ୍ର ଓ ସପ୍ରବର କନ୍ୟା ସହିତ ବିବାହ ନିଷେଧ କରାଯାଇଛି । ।୪୧୧। ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାପ୍ତରଜସ୍କା ବା ରଜୋବତୀ ହେବାର ଅବ୍ୟବହିତ ପୂର୍ବରୁ କନ୍ୟାର ବିବାହ କରାଯିବାରେ କୌଣସି ବାଧା ନ ଥିଲା; ମାତ୍ର ପରେ ପରେ ଏହି ନିୟମକୁ ଅଧିକ କଠୋର କରାଯାଇଥିବାର ଜଣାଯାଏ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀଠାରୁ ବ୍ରାହ୍ମଣ-କନ୍ୟାର ଆଠରୁ ଦଶବର୍ଷ ମଧ୍ୟରେ ବିବାହ ହେଉଥିଲା । ବ୍ରାହ୍ମଣ ସ୍ୱବର୍ଣ୍ଣ ସହିତ କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରକନ୍ୟା, କ୍ଷତ୍ରିୟ ସ୍ୱବର୍ଣ୍ଣ ସହିତ ଅନ୍ୟ ଦୁଇ ବର୍ଣ୍ଣ, ବୈଶ୍ୟ ସ୍ୱବର୍ଣ୍ଣ ସହିତ ଶୂଦ୍ରକନ୍ୟା ଓ ଶୂଦ୍ର କେବଳ ସ୍ୱବର୍ଣ୍ଣ କନ୍ୟାର ପାଣିଗ୍ରହଣ କରିବା

---

୪୦୪ । History of Dh. Vol.II, Part I, P-275-278, 405-415

୪୦୫ । ଭାରଦ୍ୱାଜ ଗୃହ୍ୟସୂତ୍ର—୧-୧୧

୪୦୬ । କାଳସାର—ପୃ-୨୨୯ ।

୪୦୭ । ନିତ୍ୟାଗ୍ନିର ପଦ୍ଧତି-ପୃ-୨୬୬

୪୦୮ । କାମସୂତ୍ର—ବାତ୍ସ୍ୟାୟନ ଗୌରେନ୍ଦ୍ର—ଆହ୍ଲାବାଦ ସଂସ୍କରଣ ୧୯୬୬—୩.୧.୨

୪୦୯ । ସ୍ମୃତିସାର ସଂଗ୍ରହ—ପୃ-୧୬୬

୪୧୦ । ମନୁସ୍ମୃତି—୯-୯୪ ।

୪୧୧ । କାଳସାର-୨୩୦-୨୩୧ ।

ବିଧି ବା ଅନୁଲୋମ ବିବାହ ପ୍ରାୟ ନବମ-ଦଶମ ଶତାବ୍ଦୀଠାରୁ ପ୍ରଚଳିତ ହୋଇଥିଲା; ।୪୧୨। କିନ୍ତୁ ଏହି ପ୍ରଥା ବିଷୟରେ ମଧ୍ୟକାଳରେ ସାମାଜିକ ଓ ପାରିବାରିକ ପରିସ୍ଥିତିକୁ ବିଗ୍ଭର କରି ନିବନ୍ଧକାରମାନେ ଭିନ୍ନ ଭିନ୍ନ ମତପୋଷଣ କରିଛନ୍ତି ।

ବିବାହରେ ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟ ମଧ୍ୟରେ ବର-କନ୍ୟାଙ୍କ ଗୋତ୍ର, ନକ୍ଷତ୍ର, କନ୍ୟା-ଦାନର ଅଧିକାରୀ, ବିଭିନ୍ନ ପ୍ରକାର ବିବାହ ପ୍ରଥା ବିଗ୍ଭର ସହିତ ବଧୂ-ବରର ଗୁଣ ପରୀକ୍ଷା, ବର ପ୍ରେକ୍ଷଣ, ବାଗ୍‌ଦାନ, ମଣ୍ଡପକରଣ, ନାନ୍ଦୀଶ୍ରାଦ୍ଧ, ପୁଣ୍ୟାହବାଚନ, ବଧୂଗୃହାଗମନ, ମଧୁପର୍କ ସ୍ନାପନ, ପରିଧାପନ, ସମାଞ୍ଜନ, ବଧୂ-ବର ନିଷ୍କ୍ରମଣ, ପରସ୍ପର ସମୀକ୍ଷଣ, କନ୍ୟାଦାନ, ହୋମ, ପାଣିଗ୍ରହଣ, ଅଗ୍ନି ପ୍ରଦକ୍ଷିଣ, ଅଶ୍ମାରୋହଣ, ସପ୍ତପଦୀ, ସୂର୍ଯ୍ୟୋଦୀକ୍ଷଣ, ହୃଦୟସ୍ପର୍ଶ, ପ୍ରେକ୍ଷକାନୁମନ୍ତ୍ରଣ, ଦକ୍ଷିଣାଦାନ, ଗୃହପ୍ରବେଶ, ସ୍ଥାଲୀପାକ, ଚତୁର୍ଥୀକର୍ମ ପ୍ରଭୃତି ବିଧିବିଧାନ ପାଳିତ ହୋଇଥାଏ ।

ଏହି ପ୍ରକରଣରେ ଉଦ୍ଧୃତ ସ୍ମୃତିଗ୍ରନ୍ଥ ବ୍ୟତୀତ ଓଡ଼ିଶାର ସ୍ମୃତିକାର ରାମଚନ୍ଦ୍ର ବାଜପେୟୀଙ୍କ 'କର୍ମାଙ୍ଗ ପଦ୍ଧତି', ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ', ଦିବ୍ୟସିଂହ ମହାପାତ୍ରଙ୍କ 'ଦିବ୍ୟସିଂହ କାରିକା', ବାସୁଦେବ ତ୍ରିପାଠୀଙ୍କ 'କୃତ୍ୟରତ୍ନାବଳୀ' ପ୍ରଭୃତିରେ ସଂସ୍କାର ବିଷୟ ପର୍ଯ୍ୟାଲୋଚିତ ହୋଇଅଛି ।୪୧୩।

ପୂର୍ବୋକ୍ତ ବିଭାଗ ବ୍ୟତୀତ ଓଡ଼ିଶାର ସ୍ମୃତିକାରଗଣ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗକୁ ଏକତ୍ର ଆଲୋଚନା କରିବା ଉଦ୍ଦେଶ୍ୟରେ ନିଜ ନିଜ ନାମରେ ସଂଗ୍ରହ, ପଦ୍ଧତି, ସଂହିତା, ସର୍ବସ୍ୱ-ଶୀର୍ଷକ ଗ୍ରନ୍ଥମାନ ରଚନା କରିଥିବାର ଦେଖାଯାଏ । ତନ୍ମଧ୍ୟରେ ଶତାନନ୍ଦ ସଂଗ୍ରହ, ଶମ୍ଭୂକର ପଦ୍ଧତି, ବିଦ୍ୟାକର ପଦ୍ଧତି ବାସୁଦେବ ପଦ୍ଧତି, ଗଦାଧର ପଦ୍ଧତି, ହଳଧର ସଂହିତା, ସୂରି-ସର୍ବସ୍ୱ, କଳ୍ପାପଦ୍‌ଧର୍ମ ସର୍ବସ୍ୱ ପ୍ରଭୃତି ଗ୍ରନ୍ଥର ନାମ ଉଲ୍ଲେଖଯୋଗ୍ୟ । ଏଥିରେ ଉପଯୁକ୍ତ ପଞ୍ଚଦଶ ପ୍ରକରଣ ଅନ୍ତର୍ଗତ ବିଷୟଗୁଡ଼ିକର ପ୍ରାସଙ୍ଗିକ ପର୍ଯ୍ୟାଲୋଚନା କରାଯାଇଛି ।

□□□

---

୪୧୨ । History of Dh. Vol. II, Part I, P-445-449

୪୧୩ । OSM. Mss. Dh. No. 199, 504

# ପଞ୍ଚମ ଅଧ୍ୟାୟ

## ସ୍ମୃତି-ଶାସ୍ତ୍ରର ଉପାଦେୟତା

### (କ) ସ୍ମୃତିଶାସ୍ତ୍ରର ଐତିହାସିକତା :

ସମାଜ ଓ ସାମାଜିକ ଜୀବନର ପରିବର୍ତ୍ତନ, ନୂତନ ଅବସ୍ଥା ଓ ଆବଶ୍ୟକତାକୁ ଭିତ୍ତିକରି କଳା, ସାହିତ୍ୟ ଓ ଶାସ୍ତ୍ରରେ ନୂଆ ନୂଆ ଆଭିମୁଖ୍ୟ ଓ ବିଚାର ପ୍ରକାଶ ପାଇଥାଏ । ସମାଜ-ଶାସ୍ତ୍ରଭାବେ ଧର୍ମଶାସ୍ତ୍ର ବା ସ୍ମୃତିଶାସ୍ତ୍ରରେ ସାମୂହିକ ଐକ୍ୟ ପ୍ରତିଷ୍ଠା ନିମିତ୍ତ ନୀତିନିୟମ ନିର୍ଦ୍ଧାରଣ କରାଯାଇଛି । ଏହା ଧାର୍ମିକ ନୀତି ଓ ସାମାଜିକ ନୀତି ରୂପେ ଦୁଇଭାଗରେ ବିଭକ୍ତ । ପ୍ରକୃତ ଧାର୍ମିକ ନୀତିରେ ଜୀବନର ମାନସିକ ସ୍ଥିତି, ଈଶ୍ୱରାନୁଭୂତି ଓ ଜୀବନଧାରା— ଏହି ତିନୋଟି ଆଭିମୁଖ୍ୟ ଥାଏ । ହୃଦୟର ଜାଗରଣ, ମନର ପରିବର୍ତ୍ତିତ ଅବସ୍ଥା ଓ ଈଶ୍ୱରାନୁଭୂତି ହେଉଛି ଧର୍ମଶାସ୍ତ୍ରର ପ୍ରତିପାଦ୍ୟ ବିଷୟ । ଧର୍ମଶାସ୍ତ୍ରୀୟ ଜ୍ଞାନ, ଅଧ୍ୟୟନ, ଶୃଙ୍ଖଳିତ ଜୀବନ, ସାଧନା ଓ ହୃଦୟର ପବିତ୍ରତା ଦ୍ୱାରା ସମ୍ଭବ ହୋଇଥାଏ । ଈଶ୍ୱରଙ୍କ ନିକଟବର୍ତ୍ତୀ ହେବା ହିଁ ଧାର୍ମିକ ଜୀବନର ମୂଳ ଲକ୍ଷ୍ୟ । ଏହି ଲକ୍ଷ୍ୟ ହାସଲ ନିମିତ୍ତ ଜ୍ଞାନ ଏକାନ୍ତ ଆବଶ୍ୟକ । ଜୀବନଧାରଣର ମାର୍ଗ ଓ ମାନ ଉପରେ ଜ୍ଞାନ ଆଧାରିତ ।

ସମାଜରେ ଜୀବନର ମାନ ଓ ଜ୍ଞାନକୁ ଭିତ୍ତିକରି ଉଚ୍ଚ, ନୀଚ, ଭେଦଭାବନା ପରିକଳ୍ପିତ ହୋଇଛି । ଏହାହିଁ ବର୍ଣ୍ଣଧର୍ମର ମୂଳଭିତ୍ତି । ଏଥିରେ ବର୍ଣ୍ଣ ବା ରଙ୍ଗକୁ ନୁହେଁ; ବରଂ ବ୍ୟକ୍ତିର ଚରିତ୍ରକୁ ମୂଳରୂପେ ବିଚାର କରାଯାଇଛି । ଆଚରଣ ଦ୍ୱାରା ହିଁ ବ୍ୟକ୍ତି, ଗୋଷ୍ଠୀ ବା ସମାଜ ଉଚ୍ଚ, ନୀଚ, ପତିତ ବା ପବିତ୍ର ବୋଲି ଗୃହୀତ ହୁଏ । କର୍ମମୟ ସଂସାରକ୍ଷେତ୍ରରେ ଅବତୀର୍ଣ୍ଣ ପ୍ରତ୍ୟେକ ବ୍ୟକ୍ତି ଉତ୍ତମ କାର୍ଯ୍ୟରେ ମନୋନିବେଶ କରିବା ବିଧେୟ । ବ୍ରହ୍ମଚାରୀ, ଗୃହସ୍ଥ, ସନ୍ନ୍ୟାସୀ, ପରିବ୍ରାଜକ ବା ସାଧକର ସ୍ୱ-ସ୍ୱ କର୍ତ୍ତବ୍ୟ-ପାଳନରେ କୌଣସି ପ୍ରକାର ଭେଦ କଳ୍ପନା ରହିବା ଉଚିତ ନୁହେଁ । ବ୍ୟକ୍ତି ବା ଜାତି ନିଜର ଉତ୍ତମ ବ୍ୟବହାର ବା ମନ୍ଦ ବ୍ୟବହାରଦ୍ୱାରା ସଂସାରକୁ ସ୍ୱର୍ଗ ବା ନର୍କରେ ପରିଣତ କରେ ।[୧] ଧର୍ମ ହିଁ ମଣିଷକୁ ଏକ

---

୧ । ସଦାଚାରେଣ ଦେବତ୍ୱଂ ଋଷିତ୍ୱଂ ବୈ ତଥୈବଚ ।
ପ୍ରାପ୍ନୁବନ୍ତି କୁଯୋନିତ୍ୱଂ ମନୁଷ୍ୟାଦ୍ରଦ୍‌ବିପର୍ଯ୍ୟୟେ ॥ (ସମ୍ବର୍ତ୍ତ ସ୍ମୃତି)

ସୂତ୍ରରେ ଆବଦ୍ଧ କରିଥାଏ । ଈଶ୍ୱରସୃଷ୍ଟ ପ୍ରତ୍ୟେକ ବସ୍ତୁ ବା ପ୍ରାଣୀ ପ୍ରତି ଆଦର ପ୍ରଦର୍ଶନ-ଦ୍ୱାରା ଉଚ୍ଚ ମାନବିକତା ବା ମାନବିକ ଧର୍ମ ପ୍ରକାଶପାଏ । ଧର୍ମୀୟ ସହିଷ୍ଣୁତା ଓ ଏକତା ଶିକ୍ଷା ଭାରତୀୟ ସମାଜଶାସ୍ତ୍ରର ମୂଳ ଆଧାର ।[୨]

ବେଦ ଏହି ଧର୍ମ ଓ ଧର୍ମୀୟ ଭାବନାର ମୂଳ । ବୈଦିକ ସାହିତ୍ୟର ସଂହିତା, ବ୍ରାହ୍ମଣ ଓ ଉପନିଷଦ ଦ୍ୱାରା ଯଥାକ୍ରମେ ଆଖ୍ୟାନ, ଆଚାର ଓ ଦର୍ଶନ ସ୍ୱରୂପ ଧର୍ମର ତିନୋଟି ମୁଖ୍ୟ ଉପାଦାନ ପ୍ରଖ୍ୟାପିତ ହୋଇଛି । ବୈଦିକ ଭାବଧାରାକୁ ଭିତ୍ତି କରି କାଳକ୍ରମେ ବେଦାଙ୍ଗ-ଗୁଡ଼ିକର କ୍ରମବିକାଶ ହେଲା । ଏହି ଷଡ୍‌ବେଦାଙ୍ଗର ଅନ୍ତର୍ଗତ କଳ୍ପସୂତ୍ର ସାହିତ୍ୟରେ ବୈଦିକ ଧର୍ମୀୟ ଜୀବନଧାରାର ରୂପାୟନ ସର୍ବତୋଭାବେ କରାଯାଇଛି । ଶ୍ରୌତସୂତ୍ରରେ ବୈଦିକ ଆଚାର, ଗୃହ୍ୟସୂତ୍ରରେ ବ୍ୟକ୍ତିଗତ ଓ ପାରିବାରିକ ଜୀବନାଦର୍ଶ ଏବଂ ଧର୍ମସୂତ୍ରରେ ବ୍ୟକ୍ତି ଓ ସମାଜର ସମ୍ପର୍କ ବିଷୟର ଉଲ୍ଲେଖ ରହିଅଛି । ତତ୍କାଳୀନ ଜୈନଧର୍ମ ଓ ବୌଦ୍ଧଧର୍ମର ଅତ୍ୟଧିକ ଆଦର୍ଶବାଦ, ଆଚାରନିଷ୍ଠତା ଓ ଜୀବନର ଅସାରତା ବିରୁଦ୍ଧରେ ଜନସମାଜକୁ ଉଦ୍‌ବୁଦ୍ଧ କରିବା ହିଁ ଏହାର ମୂଳ ଲକ୍ଷ୍ୟ ଥିଲା । ଐତିହାସିକଗଣ କ୍ରମବିକାଶ ଦୃଷ୍ଟିରୁ ଧର୍ମ-ସାହିତ୍ୟର ଆରମ୍ଭ (ଖ୍ରୀ. ପୂ. ୬୦୦-୨୦୦), ସ୍ୱରୂପ, ସମ୍ମିଶ୍ରଣ ଓ ବିଭାଗୀକରଣ (ଖ୍ରୀ. ପୂ. ୨୦୦-୭୦୦ ଖ୍ରୀ. ଅ.), ବିକାଶ (୭୦୦-୧୬୮୦ ଖ୍ରୀ. ଅ.) ଏବଂ ସ୍ଥିରତାକୁ (୧୬୦୦-୧୮୫୦ ଖ୍ରୀ. ଅ.) ଆଧାର କରି ପାଞ୍ଚଟି ସ୍ତରରେ ବିଭକ୍ତ କରିଛନ୍ତି ।

ସମୟକ୍ରମେ ବୈଦିକ ଆର୍ଯ୍ୟ, ଅନାର୍ଯ୍ୟ, ଜୈନ ଓ ବୌଦ୍ଧଧର୍ମର ଚିନ୍ତା-ଚେତନା, ଦେବ-ଦେବୀ, ଆଚାର-ଅନୁଷ୍ଠାନ, କର୍ମ ଦର୍ଶନର ସମ୍ମିଶ୍ରଣରେ ବୈଦିକ ପରମ୍ପରାକୁ ରକ୍ଷା କରି ବ୍ରାହ୍ମଣ୍ୟଧର୍ମ ବା ହିନ୍ଦୁଧର୍ମ କ୍ରମବିକାଶ ଲାଭ କଲା; ଫଳରେ 'ବହୁଜନହିତାୟ ଓ ବହୁଜନ ସୁଖାୟ' ଉଦ୍ଦେଶ୍ୟରେ ହିନ୍ଦୁଧର୍ମ ମଧ୍ୟରେ ବୈଦିକ ଧର୍ମଭାବନାର ପୁନର୍ନବୀକରଣ କରାଗଲା । ବେଦାନ୍ତରେ ବୈଦିକ ଦେବଗଣ ମାନବଜାତିର ବନ୍ଧୁ ଓ ରକ୍ଷାକର୍ତ୍ତା ରୂପେ ରୂପାୟିତ ହେଲେ । ବ୍ରାହ୍ମଣ ସାହିତ୍ୟର ଯଜ୍ଞାଦି କୃତ୍ୟ ପୂଜାରୂପରେ ଓ ଉପନିଷଦ୍‌ର ଦାର୍ଶନିକ ଭାବନା ଭକ୍ତିରୂପରେ ରୂପାନ୍ତରିତ ହେଲା । ହିନ୍ଦୁଧର୍ମରେ କର୍ମଯୋଗର ପ୍ରାଧାନ୍ୟ ସହିତ ସମସ୍ତ ଦେବତା ଓ ଦାର୍ଶନିକ ଶିକ୍ଷାର ସମନ୍ୱୟ ସାଧିତ ହେଲା ।

ମୌର୍ଯ୍ୟ-ସାମ୍ରାଜ୍ୟର ପତନ ପରେ ପୁଷ୍ୟମିତ୍ରଙ୍କ ଦ୍ୱାରା ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ହୋଇଥିଲା । ସେଥିରେ ଧାର୍ମିକ ଦୃଷ୍ଟିକୋଣ ଅପେକ୍ଷା ରାଜନୈତିକ ପ୍ରବୃତ୍ତି ଅଧିକ ପ୍ରକାଶ ପାଇଥିଲା । ବ୍ରାହ୍ମଣ୍ୟ ଧର୍ମର ସ୍ୱରୂପ, ସମ୍ମିଶ୍ରଣ ଓ ପ୍ରଚାର, ଲୋକବେଦ ରୂପେ ଅଭିହିତ ମହାଭାରତ, ରାମାୟଣ, ପୁରାଣାଦି ଗ୍ରନ୍ଥ ମାଧ୍ୟମରେ ପ୍ରସାର ଲାଭ କଲା । ଏହାଦ୍ୱାରା ଲୋକ-ସାଧାରଣଙ୍କ ମନରେ ବିଭିନ୍ନ ଦେବଦେବୀଙ୍କ ପ୍ରତି ଭକ୍ତିଭାବନା ଜାଗ୍ରତ ହେଲା । ଏହି ଭକ୍ତିକୁ ଆଶ୍ରୟ କରି ବିଭିନ୍ନ ଧର୍ମ-ସମ୍ପ୍ରଦାୟର ସୃଷ୍ଟି ହେଲା । ମହାଭାରତରେ ଯେପରି ହିନ୍ଦୁଧର୍ମ ଓ

୨ । ଧର୍ମଶାସ୍ତ୍ର କା ଇତିହାସ-୫ମ ଭାଗ—ପୃ-୩୧୫

ଦର୍ଶନର ଲୋକପ୍ରିୟ ସ୍ୱରୂପ ପ୍ରକାଶ ପାଇଛି, ମନୁସ୍ମୃତିରେ ସେହିପରି ହିନ୍ଦୁ ଜନତାର ସାମାଜିକ ଓ ରାଜନୈତିକ ସଂଗଠନର ଆଦର୍ଶ ପ୍ରତିଫଳିତ ହୋଇଛି ।[୩] ମହାଭାରତର ଅଙ୍ଗୀଭୂତ ଶ୍ରୀମଦ୍‌ଭଗବଦ୍‌ଗୀତାରେ ହିନ୍ଦୁଧର୍ମର ସମସ୍ତ ଆଙ୍ଗିକ ସ୍ୱରୂପ ଓ ଆତ୍ମିକ ଭାବନା ସମନ୍ୱିତ ହୋଇଥିବାର ଦେଖାଯାଏ । ସେଥିରେ ସମାଜର ଏକତା, ଦୃଢ଼ତା ଓ ପ୍ରଗତିର ମୂଲ୍ୟବୋଧ ବିଷୟରେ ବାସ୍ତବ ଶିକ୍ଷା ଦିଆଯାଇଛି । ଧର୍ମଶାସ୍ତ୍ରର ବର୍ଣ୍ଣଧର୍ମ, ସ୍ୱଧର୍ମ, ଚତୁର୍ବର୍ଗ, କର୍ମଯୋଗ, କର୍ମକାଣ୍ଡ, ଭକ୍ତି ଆଦି ବିଷୟର ଦାର୍ଶନିକ ବ୍ୟାଖ୍ୟା କରାଯାଇଥିବାରୁ ଶ୍ରୀମଦ୍‌ଭଗବଦ୍‌ଗୀତାକୁ ହିନ୍ଦୁଧର୍ମର ନୀତିଶାସ୍ତ୍ର ଓ ସ୍ମୃତି-ସାହିତ୍ୟକୁ ବ୍ୟକ୍ତି, ପରିବାର ତଥା ସମାଜର ବ୍ୟାବହାରିକ ଗ୍ରନ୍ଥରୂପେ ଅଭିହିତ କରାଯାଇଛି ।

ପୁଷ୍ୟମିତ୍ରଙ୍କ ପରେ ବୈଦେଶିକମାନଙ୍କ ଆଗମନ ଓ ବୌଦ୍ଧଧର୍ମରେ ମହାଯାନ ଶାଖାର ଅଭ୍ୟୁଦୟ ହେତୁ ଭାରତରେ ହିନ୍ଦୁଧର୍ମଧାରା କେତେକ ପରିମାଣରେ ବାଧାପ୍ରାପ୍ତ ହୋଇଥିଲା । କିନ୍ତୁ ଗୁପ୍ତ ସାମ୍ରାଜ୍ୟର ଆରମ୍ଭରେ ହିଁ ଏହା ଶାଖା-ପ୍ରଶାଖା ବିସ୍ତାରିତ ଏକ ମହାଦ୍ରୁମରେ ପରିଣତ ହେଲା । ଏହି ସମୟରେ ପୁରାଣଗୁଡ଼ିକର ସଂଶୋଧନ ଓ ସଂପାଦନ ସହିତ ବହୁ ନୂତନ ବିଷୟବସ୍ତୁ ବିଶେଷ କରି ଧର୍ମଶାସ୍ତ୍ରୀୟ ବିଷୟର ସଂଯୋଜନ କରାଯାଇଥିଲା । ମୌର୍ଯ୍ୟ-ଯୁଗରେ ଜନ୍ମଲାଭ କରିଥିବା ଧର୍ମ-ସମ୍ପ୍ରଦାୟଗୁଡ଼ିକର ଧର୍ମୀୟ ଚିନ୍ତାଧାରା ଗୁପ୍ତ-ଯୁଗରେ ହିଁ ପୁରାଣ ସାହିତ୍ୟ ମାଧ୍ୟମରେ ପରିପୂର୍ଣ୍ଣତା ଲାଭ କରିଥିଲା ।

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ବେଳକୁ 'କଳି-ଯୁଗରେ ବୈଦିକ ବିଧିବିଧାନ ଦ୍ୱାରା ଆଶୁ ଫଳପ୍ରାପ୍ତି ସମ୍ଭବ ନୁହେଁ'—ଏହି ବିଚାରକୁ ଭିତ୍ତିକରି ହିନ୍ଦୁଧର୍ମରେ ତାନ୍ତ୍ରିକ ମତବାଦର ଅଭ୍ୟୁଦୟ ହେଲା । ବୈଦିକ ଚିନ୍ତାଧାରାରୁ ଯେପରି ବ୍ରାହ୍ମଣ୍ୟ ବା ହିନ୍ଦୁଧର୍ମ ଜନ୍ମଲାଭ କରିଥିଲା, ସେହିପରି ହିନ୍ଦୁଧର୍ମକୁ ଆଧାର କରି ଏକ ପ୍ରାମାଣିକ ଧର୍ମଧାରା ରୂପେ ତନ୍ତ୍ର ବିକାଶ ଲାଭ କଲା । ଧର୍ମାଚରଣ ନିମିତ୍ତ ଏଥିରେ ଲିଙ୍ଗ ଓ ଜାତିର କୌଣସି ପ୍ରତିବନ୍ଧକ ରହିଲା ନାହିଁ । ତଥାପି ତନ୍ତ୍ରରେ ଦୀକ୍ଷା ପ୍ରଣାଳୀ ଓ ଦୀକ୍ଷିତ ସାଧକର ଜୀବନଯାପନ ନିମିତ୍ତ କଠୋର ନିୟମମାନ ସନ୍ନିବେଶିତ କରାଯାଇଥିଲା । ଫଳରେ ବୈଦିକ ଧାରା ଓ ତାନ୍ତ୍ରିକ ଧାରା ମଧ୍ୟରେ କୌଣସି ମୌଳିକ ପାର୍ଥକ୍ୟ ନ ଥିଲେ ମଧ୍ୟ ମନ୍ତ୍ର, ବୀଜ, ଯନ୍ତ୍ର, ନ୍ୟାସ, ମୁଦ୍ରା, ମଣ୍ଡଳ, ଯାଗ, ଯୋଗ, ଉପାସନା ଓ ଭକ୍ତିବାଦର ପାଳନ କ୍ଷେତ୍ରରେ ଉଭୟେ ପରସ୍ପରଠାରୁ ପୃଥକ୍ ପ୍ରତୀତ ହେଲେ । ବୈଦିକ ସାହିତ୍ୟର ସଂହିତା, ବ୍ରାହ୍ମଣ ଓ ଉପନିଷଦ୍ ଆଦର୍ଶରେ ତନ୍ତ୍ର-ସାହିତ୍ୟରେ ଆଗମ, ସଂହିତା ଓ ତନ୍ତ୍ର ରୂପେ ତ୍ରିବିଧ ସାହିତ୍ୟ ସୃଷ୍ଟି ହେଲା । ଏହି ଆଗମ, ସଂହିତା ଓ ତନ୍ତ୍ର ଯଥାକ୍ରମେ ଶୈବ, ବୈଷ୍ଣବ ଓ ଶାକ୍ତ ଧାରାର ସାହିତ୍ୟ ରୂପେ ଅଭିହିତ । ଏହିସବୁ ଦୃଷ୍ଟିରୁ ଗୁପ୍ତ ଯୁଗରେ ହିଁ ହିନ୍ଦୁଧର୍ମର ବିଭିନ୍ନ ବିଷୟର ପରିପୁଷ୍ଟି ସାଧିତ ହୋଇଥିବାର

---

୩ । Some Aspects of History of Hinduism—R. N. Dandekar, P-33. 88, 93.

ଜଣାଯାଏ । ସେ ସମୟରେ ବିଭିନ୍ନ ଧର୍ମ-ମତବାଦ ମଧ୍ୟରେ ପରସ୍ପର ପ୍ରତି ସହିଷ୍ଣୁତା ଥିଲା । ବିଶେଷତଃ ସଂସ୍କୃତ ସାହିତ୍ୟର ପରିପ୍ରସାର ଫଳରେ ହିନ୍ଦୁଧର୍ମ ସହିତ ଜୈନ ଓ ବୌଦ୍ଧ-ଧର୍ମର ଧର୍ମୀୟ ଓ ଦାର୍ଶନିକ ଗ୍ରନ୍ଥମାନ ସଂସ୍କୃତଭାଷାରେ ପ୍ରଣୀତ ହୋଇଥିଲା । ପୁରାଣ ଗ୍ରନ୍ଥର ପ୍ରଚାର ଓ ପ୍ରସାର ଦ୍ୱାରା ସମଗ୍ର ଭାରତ ହିନ୍ଦୁଧର୍ମର ଏକତା ସୂତ୍ରରେ ଆବଦ୍ଧ ଥିଲା ।

ଖ୍ରୀଷ୍ଟୀୟ ୭୦୦-୧୭୦୦ ମଧ୍ୟରେ ବିଭିନ୍ନ ଶାଖା ଓ ଉପଶାଖାକୁ ଭିତ୍ତିକରି ହିନ୍ଦୁଧର୍ମ ବିଶେଷଭାବେ ପ୍ରସାର ଲାଭ କରିଥିଲା । ଏହି ସମୟରେ ଶାସ୍ତ୍ରୀୟ ବିଧିବିଧାନମାନ ସ୍ମାର୍ତ୍ତ ଓ ସାମ୍ପ୍ରଦାୟିକ ଶାଖାରୂପେ ବିଭକ୍ତ ହେଲା । ଏକ ଲୋକପ୍ରିୟ ଧର୍ମର ପ୍ରଚାର ଉଦ୍ଦେଶ୍ୟରେ ବହୁ ପ୍ରଚାରକ ନିଜ ନିଜର ରୁଚି, ବିଶ୍ୱାସ ଓ ବିଚାର ଅନୁସାରେ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗକୁ ଲୋକଭାଷାରେ ଆଲୋଚନା କଲେ । ଏହି ପ୍ରଚାରର ମୂଳ ଓ ମୁଖ୍ୟ ଉପାଦାନ ଥିଲା ଭକ୍ତି । ଏହା ଫଳରେ ଦକ୍ଷିଣ-ଭାରତରେ ଶୈବ ଓ ଅଲୱାର ଏବଂ ଉତ୍ତର ଓ ମଧ୍ୟ-ଭାରତରେ ରାମ ଓ କୃଷ୍ଣ ଭକ୍ତିଧାରା ପ୍ରସାର ଲାଭ କଲା । ଆଲୋଚ୍ୟ କାଳର ଆଚାର୍ଯ୍ୟମାନଙ୍କ ମଧ୍ୟରେ ଶଙ୍କରାଚାର୍ଯ୍ୟ (୮ମ ଶତାବ୍ଦୀ), ରାମାନୁଜ ଓ ନିମ୍ବାର୍କ (୧୧ଶ ଶତାବ୍ଦୀ), ଜୟଦେବ (୧୨ଶ ଶତାବ୍ଦୀ) ମାଧବ (୧୩ ଶ ଶତାବ୍ଦୀ), ରାମାନନ୍ଦ ଓ ବଲ୍ଲଭ (୧୪ ଶ ଶତାବ୍ଦୀ) ପ୍ରଭୃତିଙ୍କ ନାମ ଉଲ୍ଲେଖନୀୟ । ଅନ୍ୟ ପକ୍ଷରେ ଇସ୍‌ଲାମ ଧର୍ମର ଅତ୍ୟଧିକ ପ୍ରଭାବ ହେତୁ ହିନ୍ଦୁଧର୍ମରେ ଅଧିକରୁ ଅଧିକ କୃତ୍ରିମ ଆଚାର-ବିଧି-ବିଧାନ ସନ୍ନିବେଶିତ ହେଲା । ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମର ପ୍ରସାର ଫଳରେ ହିନ୍ଦୁଧର୍ମ ଓ ଧର୍ମୀୟ ସାହିତ୍ୟର ପ୍ରସାର ବହୁଭାବରେ ବ୍ୟାହତ ହୋଇଥିଲା ।

### (ଖ) ସ୍ମୃତି-ଶାସ୍ତ୍ରର ଉପାଦେୟତା :

ଆଧୁନିକ ସମାଜରେ ସ୍ମୃତିଶାସ୍ତ୍ରର ଉପଯୋଗିତା ବିଷୟରେ ଆଲୋଚନା କରିବାକୁ ଗଲେ ମୁଖ୍ୟତଃ ସାମ୍ପ୍ରତିକ ସଂସ୍କୃତିର ହେତୁବାଦ, ବିଜ୍ଞାନ, କଳା, ବ୍ୟକ୍ତିବିଶେଷର ସ୍ୱାଧୀନତା ଓ ମର୍ଯ୍ୟାଦା ବା ପ୍ରତିଷ୍ଠାଦି ବିଷୟ ବିଚାରକୁ ନିଆଯାଇପାରେ । ଆଜିକାଲି ସବୁ କଥାକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଓ ବୈଜ୍ଞାନିକ ପଦ୍ଧତିରେ ହିଁ ଗ୍ରହଣ କରାଯାଉଛି । ତେଣୁ ପାରମ୍ପରିକ ବିଚାରଧାରାକୁ କାରଣ, ଗତି ଓ ପରିମାପ ଦୃଷ୍ଟିରୁ ପରୀକ୍ଷା-ନିରୀକ୍ଷା କରି ବସୁଥିବାରୁ ସେସବୁ ଅନ୍ଧବିଶ୍ୱାସ ବୋଲି ପ୍ରତୀତ ହେଉଛି । କିନ୍ତୁ ଅନ୍ୟ ପକ୍ଷରେ ଯାହାକିଛି ଅଭିଜ୍ଞତାରୁ ବୁଝାଯାଏ, ତାହା ବୈଜ୍ଞାନିକ ପରୀକ୍ଷା ଦ୍ୱାରା ହିଁ ଏତ ସମ୍ଭବ ହୋଇ ନପାରେ । ତେଣୁ ଆଧୁନିକ ବୁଦ୍ଧିଜୀବୀଙ୍କୁ ଭୌଗୋଳିକ ବା ବଂଶ-ପରମ୍ପରାଗତ ଦୃଷ୍ଟିରୁ ବିଚାର ନ କରି ବରଂ ବିଜ୍ଞାନବାଦୀ ଓ ପରମ୍ପରାବାଦୀ ଭାବେ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ବିଜ୍ଞାନବାଦୀ ପରୀକ୍ଷାଦ୍ୱାରା ଓ ପରମ୍ପରାବାଦୀ ଆଲୋଚନା ଦ୍ୱାରା ସିଦ୍ଧାନ୍ତ ଗ୍ରହଣ କରନ୍ତି; କିନ୍ତୁ ବୈଜ୍ଞାନିକମାନଙ୍କ ପରୀକ୍ଷିତ ଏକ ସିଦ୍ଧାନ୍ତ ବା ସିଦ୍ଧାନ୍ତର କାରଣ ପରବର୍ତ୍ତୀ ସମୟରେ ପରିବର୍ତ୍ତିତ ହେଉଥିବାବେଳେ ପରମ୍ପରାବାଦୀଙ୍କ ସିଦ୍ଧାନ୍ତ କାଳ କାଳଧରି ଚାଲିଆସୁଥିବା ଏକ ବିଶ୍ୱାସ୍ୟ ପ୍ରମାଣ ଉପରେ ଆଧାରିତ ଓ ଅପରିବର୍ତ୍ତିତ ରହେ । ଏହା ହିଁ ଉଭୟ ମତରେ ଥିବା ପାର୍ଥକ୍ୟ । ବିଜ୍ଞାନବାଦର

ପ୍ରାଧାନ୍ୟ ଓ ଯାନ୍ତ୍ରିକ ସଭ୍ୟତାର ପ୍ରସାର ହେତୁ ପାରମ୍ପରିକ ସମାଜର ସ୍ୱରୂପ ଓ ଚରିତ୍ର ଏକାବେଳକେ ପରିବର୍ତ୍ତିତ ହୋଇଯାଇଛି । ପରମ୍ପରାକ୍ରମେ ଚାଲିଆସୁଥିବା ବର୍ଣ୍ଣାଶ୍ରମଧର୍ମ ଓ ଜାତିପ୍ରଥା କ୍ରମଶଃ ଲୋପ ହେଉଥିବାରୁ ବୈୟକ୍ତିକ ଓ ସାମାଜିକ ଜୀବନର ମୂଲ୍ୟବୋଧ ନୂତନ ରୂପ ଗ୍ରହଣ କରୁଛି ।

ସାମ୍ପ୍ରତିକ ବ୍ୟକ୍ତି-ସ୍ୱାଧୀନତା ଓ ସାମାଜିକ ସ୍ୱାଧୀନତା ଭାରତର ପାରମ୍ପରିକ ଜୀବନଧାରାକୁ ବହୁଭାବରେ ପ୍ରଭାବିତ କରୁଛି । ଏହା ଫଳରେ ଆଜି ସମସ୍ତେ ଜୀବନର ଆଦର୍ଶଠାରୁ ବହୁ-ଦୂରକୁ ଚାଲିଯାଉଛନ୍ତି । ସାଂସାରିକ ଜୀବନ ଓ ମାନବିକ ଇଚ୍ଛାର ଉତ୍କଣ୍ଠତା ଆତ୍ମିକ ବିଶ୍ୱାସକୁ ପ୍ରତିହତ କରୁଛି; କିନ୍ତୁ ଏସବୁ ସତ୍ତ୍ୱେ ପ୍ରତ୍ୟେକ ଜୀବନର କିଛି ନା କିଛି ମୂଲ୍ୟ ଓ ଲକ୍ଷ୍ୟ ଯେ ରହିଛି, ଏହା ନିଃସନ୍ଦେହ । ଏହି ମୂଲ୍ୟ ତଥା ଲକ୍ଷ୍ୟର ଅବବୋଧ ନିମିତ୍ତ ଭୌତିକ ପ୍ରଲୋଭନ ମଧ୍ୟରେ ଥାଇ ମଧ୍ୟ କର୍ମଦ୍ୱାରା ଆଧ୍ୟାତ୍ମିକ ଚେତନାର ବିକାଶ ଦିଗରେ ତତ୍ପର ହେବା ପ୍ରତ୍ୟେକର କର୍ତ୍ତବ୍ୟ । ସେହି କର୍ତ୍ତବ୍ୟ ହେଉଛି ଧର୍ମ । ବ୍ୟକ୍ତି ଯେଉଁ ସିଦ୍ଧାନ୍ତକୁ ଦୈନନ୍ଦିନ ଓ ସାମାଜିକ ଜୀବନରେ ପାଳନ କରେ ତାହାହିଁ ଧର୍ମ । ଏହାଦ୍ୱାରା ଜୀବନର ସତ୍ୟ ଓ ନୂତନ ପଥ ଉନ୍ମୋଚିତ ହୋଇଥାଏ । ଜୀବ-ଜଗତର ସହଜାତ ପ୍ରବୃତ୍ତି ସମସ୍ତଙ୍କଠାରେ ଦେଖାଯାଏ; କିନ୍ତୁ ଏହି ସହଜ ପ୍ରବୃତ୍ତି ଭିତରେ ଥାଇ ମଧ୍ୟ ନିଜର ଧର୍ମଭାବନା ଦ୍ୱାରା ମାନବ ମାନବେତର ପ୍ରାଣୀଠାରୁ ପୃଥକ୍ ପ୍ରତିଭାତ ହୁଏ ।[୪] ସ୍ମୃତି-ଶକ୍ତି ହିଁ ଏହି ଧାର୍ମିକ ଚେତନାର ମୂଳଭିତ୍ତି । ଧର୍ମ-ଧାରଣା ଦ୍ୱାରା ମାନବିକ ଜୀବନ ସୁଗଠିତ ଓ ସୁପରିକଳ୍ପିତ ହୁଏ । ମାନବର ପରସ୍ପର ବିରୋଧୀ ଇଚ୍ଛା, ଆବଶ୍ୟକତା ଓ ଅବସ୍ଥା ମଧ୍ୟରେ ଧାର୍ମିକ ସିଦ୍ଧାନ୍ତ ହିଁ ଜୀବନର ବାସ୍ତବତା, ଆଧ୍ୟାତ୍ମିକତା ଓ ଲକ୍ଷ୍ୟ ପ୍ରତି ନିର୍ଦ୍ଦେଶ ଦେଇଥାଏ । ଦୈନନ୍ଦିନ ଜୀବନର ସାମାନ୍ୟ କୃତ୍ୟ ମଧ୍ୟ ତପସ୍ୟାଠାରୁ ଅଧିକ ପ୍ରଭାବଶାଳୀ ହୋଇଥାଏ ।

ମାନବିକ-ଆତ୍ମାର ଗୌରବ ପ୍ରତିପାଦନ ହିଁ ଧର୍ମର ମୂଳ ଲକ୍ଷ୍ୟ । ଜୀବିତ ପ୍ରାଣୀର ହୃଦୟରେ ପରମେଶ୍ୱର ବିଦ୍ୟମାନ—ଏହାହିଁ ପ୍ରତ୍ୟେକ ଧର୍ମର ମୂଳ ସିଦ୍ଧାନ୍ତ ।[୫] ଧର୍ମର ସାରକଥା ହେଉଛି, ନିଜେ ଯେପରି ବ୍ୟବହାର ଆଶାକରୁଛ, ଅନ୍ୟକୁ ସେହିପରି ବ୍ୟବହାର ଦେଖାଅ ।[୬] ଯେ କାୟମନୋବାକ୍ୟରେ ଅନ୍ୟର ମଙ୍ଗଳ କାମନା କରେ ଓ ସମାଜର ସର୍ବଦା ମିତ୍ର-

---

୪ । ଆହାର-ନିଦ୍ରା-ଭୟ-ମୈଥୁନଂ ଚ ସାମାନ୍ୟମେତତ୍ପଶୁଭିର୍ନରାଣାମ୍ ।
ଧର୍ମୋହି ତେଷାମଧିକୋ ବିଶେଷୋ ଧର୍ମେଣ ହୀନାଃ ପଶୁଭିଃ ସମାନାଃ ॥
(ହିତୋପଦେଶ—ପୃ-୭)

୫ । ଧର୍ମ ଔର୍ ସମାଜ—ପୃ-୧୨୪ ।

୬ । ଶ୍ରୂୟତାଂ ଧର୍ମସର୍ବସ୍ୱଂ ଶ୍ରୁତ୍ୱା ଚୈବାବଧାର୍ଯ୍ୟତାମ୍ ।
ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସମାଚରେତ୍ ॥

ଭାବରେ ରହେ, ସେ ହିଁ ପ୍ରକୃତରେ ଧର୍ମବିତ୍ । ୭। ତେଣୁ ସାମାଜିକ ଜୀବନ ଏପରିଭାବରେ ପରିଚାଳିତ ହେବା ଉଚିତ, ଯଦ୍ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ଜୀବନଯାତ୍ରାରେ, କାର୍ଯ୍ୟରେ ଓ ଜୀବନର ଉନ୍ନତିରେ ସ୍ୱାଧିକାର ବଜାୟ ରହିବ । ଏହି ଦୃଷ୍ଟିରୁ ଧର୍ମଶାସ୍ତ୍ରରେ ନିୟମିତ ଓ ଅନିୟମିତ ମାର୍ଗ ଦୁଇଟିର ଉଲ୍ଲେଖ କରାଯାଇଛି । ଦେଶ, କାଳ, ପାତ୍ର ଅନୁସାରେ ଏହି ଉଭୟର ପରିବର୍ତ୍ତନ ଘଟିଥାଏ; କିନ୍ତୁ କୌଣସି ପରିସ୍ଥିତିରେ ଯୁକ୍ତିଯୁକ୍ତ ବିଚାର ବିନା କେବଳ ଶାସ୍ତ୍ରବଚନ ଅନୁସାରେ ଧର୍ମୀୟ ସିଦ୍ଧାନ୍ତ ଗ୍ରହଣ କରାଯାଇନପାରେ ।୮।

ଧର୍ମଶାସ୍ତ୍ର ଅନୁସାରେ ଧର୍ମ, ଅର୍ଥ ଓ କାମ ଜୀବନର ତିନୋଟି ମୁଖ୍ୟ ଅଙ୍ଗ । ଧର୍ମଧାରଣା ସହିତ ଆତ୍ମିକ ଓ ଇନ୍ଦ୍ରିୟଗ୍ରାହ୍ୟ ଆନନ୍ଦ ଲାଭ କରାଯାଇପାରେ ।୯। ଆର୍ଥିକ ଉପାଦାନ ମାନବଜୀବନର ଏକ ଅତ୍ୟାବଶ୍ୟକ ଅଙ୍ଗ । ସମ୍ପତ୍ତି ବଢ଼ାଇବା ପାପ ନୁହେଁ କି ଦାରିଦ୍ର୍ୟ ମଧ୍ୟରେ ରହିବା ପୁଣ୍ୟ କାର୍ଯ୍ୟ ନୁହେଁ; କିନ୍ତୁ ଅନ୍ୟର ଆର୍ଥିକ ବା ନୈତିକ କ୍ଷତି ଦ୍ୱାରା ନିଜର ସମ୍ପତ୍ତି ବୃଦ୍ଧି କରିବା ହିଁ ପାପ । ଋଷିଙ୍କ ବିଧାନ ଅନୁସାରେ ସମ୍ପତ୍ତିର ଅଭିବୃଦ୍ଧି ବୈୟକ୍ତିକ ସୁଖ ଉଦ୍ଦେଶ୍ୟରେ ନ ହୋଇ ସମାଜର ମଙ୍ଗଳ ନିମିତ୍ତ କରାଯିବା ବାଞ୍ଛନୀୟ ।୯। ତେଣୁ ଯେପରି ଦର୍ଶନର ଜ୍ଞାନ ନିଶ୍ଚିତ ସତ୍ୟ ବିଷୟରେ ଓ ବିବାହ ଉତ୍ତମ ସନ୍ତାନ ଉଦ୍ଦେଶ୍ୟରେ ଅଭିପ୍ରେତ, ସେହିପରି ସାମାଜିକ, ଆର୍ଥିକ ଓ ଧାର୍ମିକ କର୍ତ୍ତବ୍ୟର ନିର୍ବାହ ନିମିତ୍ତ ସମ୍ପତ୍ତି କାମନା ଆବଶ୍ୟକ ।୧୦। ତେଣୁ ଦାନ ପାଇଁ ସମ୍ପତ୍ତି ସଞ୍ଚୟ, ସତ୍ୟ ପାଇଁ ମିତଭାଷଣ, ଯଶ-ପାଇଁ ରାଜ୍ୟଜୟ ଓ ସନ୍ତାନ ପାଇଁ ବିବାହ କରୁଥିବା ବ୍ୟକ୍ତି ହିଁ ସମାଜରେ ଆଦର୍ଶ ପୁରୁଷ ରୂପେ ପରିଗଣିତ ହୁଏ ।୧୧। ସେହି ଦୃଷ୍ଟିରୁ ଅର୍ଥ ଓ କାମ ଆତ୍ମିକ ଓ ସାମାଜିକ କଲ୍ୟାଣ ଲକ୍ଷ୍ୟରେ ଅଭିପ୍ରେତ ହେବା ବିଧେୟ ।

ସମାଜରେ ଦୁଇ ପ୍ରକାର ଜୀବନଧାରା ଦେଖାଯାଏ । ତନ୍ମଧ୍ୟରେ ଗୋଟିଏ ପାରମ୍ପରିକ ଓ ଅନ୍ୟଟି ପରିବର୍ତ୍ତନଶୀଳ । ପରମ୍ପରାବାଦୀ ପରିବର୍ତ୍ତିତ ଅବସ୍ଥାକୁ ସନ୍ଦେହ ଦୃଷ୍ଟିରେ

---

୭ । ସର୍ବେଷାଂ ଯଃ ସୁହୃନ୍ନିତ୍ୟଂ ସର୍ବେଷାଂ ଚ ହିତେ ରତଃ ।
କର୍ମଣା ମନସା ବାଚା ସ ଧର୍ମଂ ବେଦ ଜାଜଲେ ॥
(ମହାଭାରତ – ଶାନ୍ତିପର୍ବ-୨୬୧-୯)

୮ । କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋ ବିନିର୍ଣ୍ଣୟଃ ।
ଯୁକ୍ତିହୀନେ ବିଚାରେ ତୁ ଧର୍ମହାନି ପ୍ରଜାୟତେ ॥ (ବୃହସ୍ପତି-ସ୍ମୃତି)

୯ । ଧର୍ମ ଔର ସମାଜ—ରାଧାକୃଷ୍ଣନ୍-୧୯୬୭—ପୃ-୧୨୨ ।

୧୦ । ତେ ଶ୍ରୋତ୍ରିୟାତ୍ତତ୍ତ୍ୱ ବିନିଶ୍ଚୟାୟ ଭୂରିଶ୍ରୁତଂ ଶାଶ୍ୱତମ୍ୟାଦ୍ରିୟନ୍ତେ ।
ଇଷ୍ଟାୟ ପୂର୍ତ୍ତାୟ ଚ କର୍ମଣୋଽର୍ଥାନ୍ ଦାରାନପତ୍ୟାୟ ତପୋଽର୍ଥମାୟୁଃ ॥
(ମାଳତୀ-ମାଧବ—୧-୫)

୧୧ । ତ୍ୟାଗାୟ ସମ୍ଭୃତାର୍ଥାନାଂ ସତ୍ୟାୟ ମିତଭାଷିଣାମ୍ ।
ଯଶସେ ବିଜିଗୀଷୂଣାଂ ପ୍ରଜାୟୈ ଗୃହମେଧିନାମ୍ ॥ (ରଘୁବଂଶ-୧-୭)

ଦେଖିଥାଏ; କିନ୍ତୁ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପରିବର୍ତ୍ତନ ବିନା ସମାଜର ଗତିଶୀଳତା ବାଧା ପାଏ । ସେଥିପାଇଁ ସ୍ମୃତିକାରମାନେ ସମସାମୟିକ ସମାଜର ପରିବର୍ତ୍ତିତ ଅବସ୍ଥାକୁ ସ୍ୱୀକାର କରିଛନ୍ତି । ଶାସ୍ତ୍ରୀୟ ବିଧାନରେ ଓ ଧାରାରେ ପରିବର୍ତ୍ତନ ଘଟେ । ତେଣୁ ମନୁ, ପରାଶର ପ୍ରଭୃତି ସ୍ମୃତିକାରମାନେ ବିଭିନ୍ନ ସମୟର ସମାଜ-ବ୍ୟବସ୍ଥା, ଲୋକବିଶ୍ୱାସ, ପରମ୍ପରା ଉପରେ ଆଧାରିତ ଭିନ୍ନ ଭିନ୍ନ ସ୍ଥିତିକୁ ପ୍ରାମାଣିକ ବଚନ ରୂପେ ସ୍ୱ-ସ୍ୱ ଗ୍ରନ୍ଥରେ ସ୍ୱୀକାର କରିଛନ୍ତି; କାରଣ ସମୟର ପରିବର୍ତ୍ତନ ସହିତ ଧର୍ମ, ମତ, ନିୟମର ପରିବର୍ତ୍ତନ ଅନିବାର୍ଯ୍ୟ । ଏପରି କୌଣସି ମାନବୀୟ କାର୍ଯ୍ୟ ନାହିଁ, ଯାହାକୁ ଦେଶ, କାଳ, ପାତ୍ରର ବିଗ୍ଚାର ବିନା ପୂର୍ଣ୍ଣତଃ ଠିକ୍ ବା ଭୁଲ୍ ବୋଲି କୁହାଯାଇପାରେ । ତେଣୁ କି ପ୍ରକାର ବିଧିବ୍ୟବସ୍ଥା ଓ ଆଚରଣ ମାନବିକ ଆନନ୍ଦ ଦେବାରେ କେତେଦୂର ସମର୍ଥ ବା ଅସମର୍ଥ; ତାହାହିଁ ବିଚାର୍ଯ୍ୟ । ଧର୍ମଶାସ୍ତ୍ରକାରଗଣ କଳ୍ପନାବାଦୀ ବା ଯଥାର୍ଥବାଦୀ ନୁହନ୍ତି; ବରଂ ଆଦର୍ଶବାଦୀ ଥିଲେ । ସ୍ମୃତିକାର ବିଜ୍ଞାନେଶ୍ୱରଙ୍କ ଅନୁସାରେ ଅନୁପଯୁକ୍ତ ଶାସ୍ତ୍ରୀୟ ନିୟମକୁ ସମାଜ ଅସ୍ୱୀକାର କରିପାରେ; କିନ୍ତୁ ଏକଦା ଗୋ-ବଳି, ଗୋ-ମାଂସ ଭକ୍ଷଣ, ନିଯୋଗ ବ୍ୟବସ୍ଥା ଶାସ୍ତ୍ରରେ ସ୍ୱୀକୃତି ପାଇଥିଲେ ମଧ୍ୟ ଅଧୁନା ସେ ସମସ୍ତ ଦୂଷଣୀୟ କାର୍ଯ୍ୟଭାବେ ଅନୁମୋଦିତ ।୧୨। କ୍ଷୁଦ୍ର ବୀଜରେ ବିଶାଳ ବଟ ବୃକ୍ଷର ଅସ୍ତିତ୍ୱ ଉପଲବ୍ଧ ହୁଏ ନାହିଁ, କିନ୍ତୁ ତା ମଧ୍ୟରେ ଯେଉଁ ଅଦୃଶ୍ୟ ଓ ସକ୍ରିୟ ଶକ୍ତି ରହିଛି, ତାର ଅଭାବରେ ବୃକ୍ଷର ଜୀବନ ଅସମ୍ଭବ । ସେହିପରି ଧର୍ମ-ବୃକ୍ଷର ସୁରକ୍ଷା ନିମିତ୍ତ ବ୍ୟକ୍ତି ବା ସମାଜ ଜୀବନର ବ୍ୟବସ୍ଥିତ ଶକ୍ତି ଆବଶ୍ୟକ । ତେଣୁ ସାମାଜିକ ଜୀବନକୁ ବ୍ୟବସ୍ଥିତ କରିବା ନିମିତ୍ତ ନିଜର ଆଚାର-ବିଚାର ଉପରେ ବାହ୍ୟ ପ୍ରଭାବକୁ ନିୟନ୍ତ୍ରିତ କରିବା ଆବଶ୍ୟକ । ସାମ୍ପ୍ରତିକ ଭାରତର ପରିବର୍ତ୍ତିତ ଅବସ୍ଥାକୁ ଭିତ୍ତି କରି, ବିଶେଷତଃ, ହିନ୍ଦୁ ସମାଜରେ ଅହିନ୍ଦୁଙ୍କ ପ୍ରବେଶ, ଜନତାର ଜୀବିକା, ଅଧିକାର ଓ ଗୁଣର ପୃଥକୀକରଣ, ବିବାହ ଓ ଧର୍ମ ପରିବର୍ତ୍ତନ ଦ୍ୱାରା ଜାତିମିଶ୍ରଣ, ସ୍ତ୍ରୀ ଅଧିକାର ଆଦି ବହୁ ବିଷୟରେ ଉଦାର ଭାବନା ଧର୍ମଶାସ୍ତ୍ର-ବିଧାନରେ ଲିପିବଦ୍ଧ କରାଯାଇପାରେ । ଏ ପ୍ରକାର ପରିବର୍ତ୍ତନ ଆଜି ନୂଆ ନୁହେଁ, ଏହା ଯୁଗ-ଯୁଗଧରି ପ୍ରଚଳିତ ଥିବାର ଜଣାଯାଏ ।

ବୈଦିକ ଯୁଗରେ ହିନ୍ଦୁମାନେ ଅନାର୍ଯ୍ୟ, ଦ୍ରାବିଡ଼, ଆନ୍ଧ୍ର ଓ ପୁଲିନ୍ଦଙ୍କୁ ସାମାଜିକ ସ୍ୱୀକୃତି ଦେଇଥିଲେ । ପୁରାଣ ବର୍ଣ୍ଣନା ଅନୁସାରେ ବିଶ୍ୱାମିତ୍ର ଏକ ନୂତନ ସୃଷ୍ଟି କରିଥିଲେ । ବ୍ରାତ୍ୟମାନଙ୍କୁ ବ୍ରାତ୍ୟ-ସୋମ ଯଜ୍ଞଦ୍ୱାରା ଆର୍ଯ୍ୟରୂପେ ସ୍ୱୀକାର କରାଯାଉଥିଲା ।୧୩। ବ୍ରାତ୍ୟଙ୍କ ପରିଚୟ ବିଷୟରେ ନାନା ମତ ଅଛି । ତଥାପି ଅନେକ ଯବନ ଓ ମ୍ଲେଚ୍ଛଙ୍କୁ ବ୍ରାତ୍ୟ ବୋଲି କହନ୍ତି ।୧୪। ବହୁ ବୈଦେଶିକ ଆକ୍ରମଣକାରୀ ଭାରତରେ କ୍ଷତ୍ରିୟ ରୂପେ ପରିଚିତ

୧୨ । ଧର୍ମ ଔର୍ ସମାଜ—ପୃ-୧୩୧, ୧୩୨

୧୩ । କାତ୍ୟାୟନ – ଶ୍ରୌତସୂତ୍ର—୨୨-୪, ୧-୨୮

୧୪ । ଧର୍ମ ଔର୍ ସମାଜ—ପୃ-୧୩୪

ହୋଇଛନ୍ତି । ମୁସଲମାନମାନଙ୍କ ପ୍ରଭାବରେ ଯେଉଁ ହିନ୍ଦୁମାନେ ଧର୍ମଚ୍ୟୁତ ହେଉଥିଲେ, ସେମାନଙ୍କୁ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ସ୍ମୃତିକାର ଦେବଲଙ୍କ ବିଧାନ ଅନୁଯାରେ ଶୁଦ୍ଧି କରାଯାଇ ପୁନର୍ବାର ସ୍ୱଧର୍ମରେ ବ୍ରାହ୍ମଣ କରାଯାଉଥିଲା । ଏପରିକି, ଔପଚାରିକ ରୀତି ଅନୁସରଣ ନ କରିଥିବା ବ୍ୟକ୍ତିକୁ ଯଦି ତା'ର ଗୋଷ୍ଠୀର ଲୋକେ ହିନ୍ଦୁ ବୋଲି ସ୍ୱୀକାର କରୁଥିଲେ, ତେବେ ସେ ହିନ୍ଦୁ ହୋଇପାରୁଥିଲା । ସମୟ ଅନୁସାରେ ସ୍ମୃତି-ବିଧାନରେ ବହୁ ପରିବର୍ତ୍ତନ ଘଟିଛି । ତେଣୁ ବର୍ତ୍ତମାନ ବା ଭବିଷ୍ୟତରେ ପ୍ରଣୀତ ବୈଦିକ ଭାବନାର ମୂଳ ସତ୍ୟ ଉପରେ ଆଧାରିତ ଯେକୌଣସି ସ୍ମୃତିଗ୍ରନ୍ଥ ପ୍ରାମାଣିକ ବୋଲି ସ୍ୱୀକୃତ ହେବ । ମହାକବି କାଳିଦାସଙ୍କ ଭାଷାରେ—ସବୁକଥା ପ୍ରାଚୀନ ବୋଲି ଆଦୃତ ଓ ନବୀନ ବୋଲି ଅନାଦୃତ ହେବାର କୌଣସି କାରଣ ନାହିଁ । ଯାହା ଭଲ, ତାହା ପରୀକ୍ଷାପୂର୍ବକ ସାଧୁଲୋକେ ଗ୍ରହଣ କରନ୍ତି ।୧୫। ଏହି ଦୃଷ୍ଟିରୁ କୌଣସି ପ୍ରଥା ସବୁ ସମୟରେ ସମସ୍ତଙ୍କ ଦ୍ୱାରା ଆଦୃତ ହୁଏ ନାହିଁ; ତେଣୁ ସବୁକଥା ବିଚାରପୂର୍ବକ ଗ୍ରହଣ କରାଯାଇଥାଏ ।୧୬। ଜଡ଼ତା ଓ ଆଳସ୍ୟ ହେତୁ ଯଦି କେହି ନିଜର ସଂସ୍କୃତି ଓ ପରମ୍ପରାର ଉନ୍ନତି ଚିନ୍ତା ନ କରେ, ତେବେ ଯେତେ ସମୃଦ୍ଧ ହୋଇଥିଲେ ମଧ୍ୟ ତାହାର ସାମୂହିକ ଅବକ୍ଷୟ ଆରମ୍ଭ ହୁଏ ।

ସମ୍ପ୍ରତି ବୈଦିକ ପରମ୍ପରାର ପ୍ରଚଳନ ଆଦୌ ସହଜ ବା ସମ୍ଭବ ନୁହେଁ; କିନ୍ତୁ ତା' ବୋଲି କେବଳ ଆଧୁନିକ ପଦ୍ଧତି ଉପରେ କରାଯାଇ ନ ପାରେ । ତଦ୍ୱାରା ଭାରତର ବହୁ ବିଶ୍ରୁତ ସଂସ୍କୃତି ଧୂଳିସାତ୍ ହୋଇଯିବ । ତେଣୁ ସବୁକ୍ଷେତ୍ରରେ ବାସ୍ତବତା ପ୍ରତି ଦୃଷ୍ଟି ଦେଇ ଅନୁଭବର ପଦ୍ଧତି ଆଶ୍ରୟ କରିବା ବାଞ୍ଛନୀୟ । ସଂସ୍କୃତି ହେଉଛି ପରମ୍ପରା ଓ ପରମ୍ପରା ଦେଉଛି ସ୍ମୃତି । ସୃଜନଶୀଳ ବ୍ୟକ୍ତିର ରଚନାତ୍ମକ କାର୍ଯ୍ୟ ଉପରେ ଏହି ସ୍ଥାୟିତ୍ୱ ନିର୍ଭର କରେ । ପ୍ରତ୍ୟେକ ସମାଜର ଇତିହାସରେ ଏପରି ଏକ ସମୟ ଆସେ, ଯେତେବେଳେ ନିଜ ଅସ୍ତିତ୍ୱ ସୁରକ୍ଷା ଓ ଉତ୍ତରୋତ୍ତର ପ୍ରଗତି ନିମିତ୍ତ ସାମାଜିକ ବ୍ୟବସ୍ଥାରେ କେତେକ ପରିବର୍ତ୍ତନ ଆବଶ୍ୟକ ହୁଏ । ତେଣୁ ମହାପୁରୁଷଗଣ ସାମାଜିକ ନ୍ୟାୟ, ଆର୍ଥିକ କଲ୍ୟାଣର ବାଧକ ଅନ୍ଧବିଶ୍ୱାସଗୁଡ଼ିକୁ ଦୂର କରିବା ନିମିତ୍ତ ଧାର୍ମିକ ବ୍ୟବସ୍ଥାର ଆବଶ୍ୟକ ସଂଶୋଧନ ଦ୍ୱାରା ସମାଜକୁ ସୁସ୍ଥ ଓ ସବଳ ହେବାରେ ସହାୟକ ହୋଇଥାନ୍ତି ।

---

୧୫ । ପୁରାଣମିତ୍ୟେବ ନ ସାଧୁ ସର୍ବଂ ନ ଚାପି କାବ୍ୟଂ ନବମିତ୍ୟବଦ୍ୟମ୍ ।
ସନ୍ତଃ ପରୀକ୍ଷ୍ୟାନ୍ୟ ତରଦ୍ଭଜନ୍ତେ ମୂଢ଼ଃ ପର ପ୍ରତ୍ୟୟନେୟବୁଦ୍ଧିଃ ॥
(ମାଳବିକାଗ୍ନିମିତ୍ର—୧-୨)

୧୬ । (କ) ନ ହି ସର୍ବହିତ କଶ୍ଚିତ୍ ଆଚାରଃ ସମ୍ପ୍ରବର୍ତ୍ତତେ ॥
(ମହା : ଶାନ୍ତିପର୍ବ—୨୫୯-୧୭)

(ଖ) ତସ୍ମାତ୍ କୌନ୍ତେୟ ବିଦୁଷା ଧର୍ମାଧର୍ମବିନିଶ୍ଚୟେ ।
ବୁଦ୍ଧିମାସ୍ଥାୟ ଲୋକେଽସ୍ମିନ୍ ବର୍ତ୍ତିତବ୍ୟଂ କୃତାତ୍ମନା ॥ (ମହାଭାରତ : ଶାନ୍ତିପର୍ବ)

ଆଧ୍ୟାତ୍ମିକ ଚେତନାର ଉନ୍ନତି ନିମିତ୍ତ ଧ୍ୟାନ ଓ ଉପାସନା ଆବଶ୍ୟକ । ଏହାଦ୍ୱାରା ମନ, ସ୍ୱଭାବ ଓ ଜୀବନଧାରା ନିର୍ମଳ ହୁଏ । ସେଥିପାଇଁ ହିନ୍ଦୁଧର୍ମରେ ପୂଜାବିଧି ପ୍ରଚଳିତ । ପୂଜାପାଇଁ ଓ ମୂର୍ତ୍ତିପାଇଁ ମନ୍ଦିର ନିର୍ମିତ ହୁଏ । ବୈଦିକ ଯୁଗର ବହୁ ପରେ ମନ୍ଦିର ଓ ମୂର୍ତ୍ତିପୂଜା ବିଷୟରେ ଧର୍ମଗ୍ରନ୍ଥମାନ ରଚିତ ହୋଇଥିଲେ ମଧ୍ୟ ସେଥିପାଇଁ ବୈଦିକମନ୍ତ୍ର ପ୍ରୟୋଗ କରା-ଯାଇଥାଏ । କାଳକ୍ରମେ ମନ୍ଦିର ଏକ ଧାର୍ମିକ ସଂସ୍ଥାରୂପେ ପ୍ରଭାବ ବିସ୍ତାର କରିଛି । ମନ୍ଦିରକୁ କେନ୍ଦ୍ର କରି ବାସ୍ତୁକଳା, ସଙ୍ଗୀତ, ନୃତ୍ୟ, କବିତା, ଚିତ୍ରକଳା, ମୂର୍ତ୍ତିକଳା, ପୂଜାବିଧିର ଉନ୍ନତି ସାଧିତ ହୋଇଛି । ଦୀର୍ଘକାଳଧରି ଏହି ମନ୍ଦିର ଧର୍ମ ଓ ସଂସ୍କୃତିର କେନ୍ଦ୍ର ହୋଇ ରହିଛି । ସମାଜରେ ପୂଜା ଓ ଈଶ୍ୱରବିଶ୍ୱାସ, ମନ ଓ ଆଚରଣରେ ପବିତ୍ରତା, ଖାଦ୍ୟପେୟରେ ନିୟମିତତା ଓ ଆତ୍ମସଂଯମ ନିମିତ୍ତ ଏହି ସଂସ୍ଥା ବିଶେଷ ସହାୟତା କରିଥାଏ । ଏହି ସମସ୍ତ ଧର୍ମବିଧିକୁ କର୍ମକାଣ୍ଡ କହନ୍ତି । କର୍ମକାଣ୍ଡ ହିଁ ସ୍ମୃତିଶାସ୍ତ୍ରର ପ୍ରତିପାଦ୍ୟ ବିଷୟ । କର୍ମକାଣ୍ଡୀୟ ନିଷେଧବିଧି ପାଳନଦ୍ୱାରା ଦୟା, ଧୈର୍ଯ୍ୟ, ସନ୍ତୋଷ, ଶୁଚିତା, ସମୁଦ୍ୟମ, ସୁବିଚାର, ନିର୍ଲୋଭତା ଓ ନିରସୂୟତାଦି ଆତ୍ମାର ଅଷ୍ଟବିଧ ଗୁଣ ବିକାଶଲାଭ କରେ । ଏଗୁଡ଼ିକୁ ଅନ୍ୟପ୍ରକାରେ ମାନବିକ ସଦ୍‌ଗୁଣ କୁହାଯାଏ । ସଦ୍‌ଗୁଣ ହେଉଛି ଉତ୍କୃଷ୍ଟ ଆଧ୍ୟାତ୍ମିକତା । ତେଣୁ ସମସ୍ତେ ନୈତିକ ସଦ୍‌ଗୁଣର ଅଭ୍ୟାସ କରିବା ବାଞ୍ଛନୀୟ ।୧୭। ତୀର୍ଥଯାତ୍ରାଦ୍ୱାରା ନୈତିକ ଜୀବନର ଉନ୍ନତି ସାଧିତ ହୁଏ; କାରଣ ତୀର୍ଥ ହେଉଛି ଭଗବଦ୍‌ବିଶ୍ୱାସୀମାନଙ୍କର ବାସଭୂମି ।୧୮। କେବଳ ତୀର୍ଥଯାତ୍ରା ବା ପବିତ୍ର ନଦୀଜଳରେ ସ୍ନାନଦ୍ୱାରା ମାନବଜନ୍ମ ସାର୍ଥକ ହୁଏ ନାହିଁ; ସେଥିପାଇଁ ଶୁଦ୍ଧ ହୃଦୟ ଓ ପବିତ୍ର ମନରେ ନୈତିକ ନିୟମ ପାଳନ ଆବଶ୍ୟକ । ଭାରତରେ ଗୋସେବା ଅନ୍ୟତମ ଧାର୍ମିକ କର୍ତ୍ତବ୍ୟ ରୂପେ ଗୃହୀତ । ଗାଈ ମାନବର ଧାତ୍ରୀ ଓ ସପ୍ତ-ମାତୃଗଣ ମଧ୍ୟରେ ଅନ୍ୟତମା । ସେଥିପାଇଁ ଗୋରକ୍ଷାକୁ ପ୍ରାଚୀନ କାଳରୁ ଧାର୍ମିକ ଅନୁମୋଦନ ଦିଆଯାଇଛି ।୧୯।

ଶ୍ରାଦ୍ଧ ଏକ ଧର୍ମୀୟ ଅନୁଷ୍ଠାନ । ଏହାକୁ ପିତୃଯଜ୍ଞ କହନ୍ତି । ପୂର୍ବେ ଶ୍ରାଦ୍ଧରେ ପ୍ରଥମ ତିନି ପୁରୁଷଙ୍କୁ ପିଣ୍ଡ ଦିଆଯାଉଥିଲା; କିନ୍ତୁ ମନୁ ପ୍ରଥମ ତିନି ପୁରୁଷ ଓ ଦ୍ୱିତୀୟ ତିନି ପୁରୁଷଙ୍କୁ ମିଶାଇ ଛ'ପୁରୁଷ ପର୍ଯ୍ୟନ୍ତ ପିତୃଗଣଙ୍କୁ ଶ୍ରାଦ୍ଧ ଦେବାର ନିର୍ଦ୍ଦେଶ ଦେଇଛନ୍ତି । ପରବର୍ତ୍ତୀ ସ୍ମୃତିକାର ଯାଜ୍ଞବଲ୍‌କ୍ୟ ପିତୃଗଣଙ୍କ ସହିତ ମାତୃକୁଳର ତିନି ପୁରୁଷଙ୍କୁ ଶ୍ରାଦ୍ଧ ଦିଆଯିବ ବୋଲି ଉଲ୍ଲେଖ କରିଛନ୍ତି । ତଦନୁଯାୟୀ ଅଦ୍ୟାବଧି ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ପିତୃ-ମାତୃଗଣଙ୍କ

---

୧୭ । ଧର୍ମ ଔର୍ ସମାଜ—ପୃ-୧୪୮ ।

୧୮ । ଭବଦ୍‌ବିଧାଃ ଭାଗବତାସ୍ତୀର୍ଥଭୂତାଃ ସ୍ୱୟଂ ବିଭୋଃ ।
ତୀର୍ଥୀ କୁର୍ବନ୍ତି ତୀର୍ଥାନି ସ୍ୱାନ୍ତଃସ୍ଥେନ ଗଦାଭୃତା ॥ (ଭାଗବତ—୧-୧୩-୧୦)

୧୯ । ଆଦୌ ମାତା ଗୁରୋଃ ପତ୍ନୀ ବ୍ରାହ୍ମଣୀ ରାଜପତ୍ନିକା ।
ଧେନୁର୍ଧାତ୍ରୀ ତଥା ପୃଥ୍ୱୀ ସପ୍ତୈତାଃ ମାତରଃ ସ୍ମୃତା ॥ (ଚାଣକ୍ୟ-ନୀତି)

ଉଦ୍ଦେଶ୍ୟରେ ଯଥାବିଧି ଶ୍ରାଦ୍ଧ ଅନୁଷ୍ଠାନ ପାଳନ କରୁଛନ୍ତି । ଶ୍ରାଦ୍ଧଦ୍ୱାରା ପୂର୍ବଜମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରକଟିତ ହୋଇଥାଏ । ଏହାକୁ ସାମ୍ପ୍ରତିକ 'ଜୟନ୍ତୀ ସମାରୋହ' ସହିତ ତୁଳନା କରାଯାଇପାରେ ।

ଆଜକାଲି ଜାତି-ବର୍ଣ୍ଣରେ ଯେପରି ଉତ୍କଟତା ପ୍ରକାଶ ପାଉଛି, ତାହା ଆଦୌ ବିଧିସଙ୍ଗତ ନୁହେଁ । ସ୍ମୃତି-ଶାସ୍ତ୍ରରେ ଜାତି ବା ବର୍ଣ୍ଣ ବିଭାଗ ବ୍ୟବସ୍ଥା ବ୍ୟକ୍ତିଗତ ସ୍ୱଭାବ ଉପରେ ଆଧାରିତ ଥିଲା । ସାମାଜିକ ଆବଶ୍ୟକତା, ବୈୟକ୍ତିକ ସ୍ୱଭାବ ଓ କର୍ମ ଅନୁସାରେ ଲୋକମାନଙ୍କୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ରୂପେ ଚାରୋଟି ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ବ୍ରାହ୍ମଣ ଶିକ୍ଷା ଓ ସଂସ୍କୃତି, କ୍ଷତ୍ରିୟ ଶାସନ, ବୈଶ୍ୟ ଶିଳ୍ପକଳା ଓ ବ୍ୟାପାର ଏବଂ ଶୂଦ୍ର ଶ୍ରମବିଭାଗର ଅନ୍ତର୍ଗତ ହୋଇଥିଲେ । ଏମାନେ ଯଥାକ୍ରମେ ସମାଜର ସାଂସ୍କୃତିକ, ରାଜନୈତିକ, ଆର୍ଥିକ ଓ ଔଦ୍ୟୋଗିକ କାର୍ଯ୍ୟର ନେତୃତ୍ୱ ଓ ଦାୟିତ୍ୱ ବହନ କରୁଥିଲେ । କିନ୍ତୁ କାଳକ୍ରମେ କଳା-କୌଶଳର ବିକାଶ, ଅନୁଲୋମ ଓ ପ୍ରତିଲୋମ ବିବାହ, ବିଭିନ୍ନ ଦେବଦେବୀ-ବିଶ୍ୱାସ,ଭୌଗୋଳିକ ଓ ସାମାଜିକ ସ୍ଥିତିର କାରଣଗୁଡ଼ିକ ଉପରେ ଆଧାରକରି ଉକ୍ତ ଚାରୋଟି ଶ୍ରେଣୀରୁ ବିଭିନ୍ନ ଉପଗୋଷ୍ଠୀ ଓ ଜାତି ସୃଷ୍ଟି ହେଲେ । ସେଥିପାଇଁ ଶାସ୍ତ୍ରକାରମାନେ ସ୍ମୃତିଗ୍ରନ୍ଥଗୁଡ଼ିକରେ ଆର୍ଥିକ, ସାମାଜିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଦୃଷ୍ଟିରୁ ସମସ୍ତଙ୍କୁ ଏକତାସୂତ୍ରରେ ଆବଦ୍ଧ କରିବା ନିମିତ୍ତ ପ୍ରତ୍ୟେକ ବର୍ଗର ସୁନିର୍ଦ୍ଦିଷ୍ଟ କୃତ୍ୟ ଓ କର୍ତ୍ତବ୍ୟ ଅଧିକାର ଓ ବିଶେଷାଧିକାର ବ୍ୟବସ୍ଥାମାନ ଉଲ୍ଲେଖ କଲେ । ପ୍ରତ୍ୟେକ ବର୍ଗର ଶିକ୍ଷା, ପରମ୍ପରା ଓ ଭାବନାର ବିକାଶସାଧନ ଥିଲା ଏହି ଶାସ୍ତ୍ରୀୟ ବ୍ୟବସ୍ଥାର ମୂଳଲକ୍ଷ୍ୟ; କିନ୍ତୁ କାର୍ଯ୍ୟତଃ ଏହା ସଫଳ ହେଲାନାହିଁ । ପ୍ରାଚୀନ ବ୍ୟବସ୍ଥାର ପରିବର୍ତ୍ତନ ଓ ନୂତନ ବ୍ୟବସ୍ଥାର ପ୍ରଚଳନ ସତ୍ତ୍ୱେ ବି କେତେକ କ୍ଷେତ୍ରରେ ବ୍ରାହ୍ମଣ ଶାସକ ଓ ସୈନ୍ୟ, ଶୂଦ୍ର ଶାସକ ଓ ସାଧକ ଭାବେ ସାମାଜିକ ସ୍ୱୀକୃତି ପାଇଥିଲେ । ତଥାପି ପ୍ରାଚୀନ ଜାତି ବିଭାଗ ବ୍ୟବସ୍ଥାରେ ପ୍ରକୃତ ଗଣତାନ୍ତ୍ରିକ ଭାବନା, ଆଧ୍ୟାତ୍ମିକ ଏକତା, ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ସମତା ଓ ଏକତା ରୂପାୟିତ ହୋଇଥିଲା । ବୌଦ୍ଧ, ଜୈନ ଓ ମୁସଲମାନ ଧର୍ମର ପ୍ରଭାବ ଫଳରେ ଏହି ବର୍ଣ୍ଣବ୍ୟବସ୍ଥା ଓ ଜାତିବର୍ଣ୍ଣର ବହୁଭାବରେ ବିପର୍ଯ୍ୟସ୍ତ ହୋଇଥିଲା । ଭାରତୀୟ ମନୀଷୀମାନଙ୍କ ମଧ୍ୟରେ ରାମାନନ୍ଦ, କବୀର, ନାନକ, ଜଗନ୍ନାଥ ଦାସ ଓ ବଳରାମ ଦାସ ଜାତିଭେଦର କଠୋରତାକୁ ଦୂର କରିବା ନିମିତ୍ତ ଯେଉଁ ଉଦ୍ୟମ କରିଥିଲେ, ତାହା ଚଳିତ ଶତାବ୍ଦୀରେ ରାଜା ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ ଓ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ସଫଳ ହୋଇଥିବାର ଲକ୍ଷ୍ୟ କରାଯାଏ ।

ସ୍ମୃତି-ଶାସ୍ତ୍ରର ଅନ୍ୟତମ ଉପାଦେୟ ବ୍ୟବସ୍ଥା ହେଉଛି ଶୁଦ୍ଧି । ଏହାଦ୍ୱାରା ଦେହ ଓ ମନ ପ୍ରଫୁଲ୍ଲ ରହେ । ଶୁଦ୍ଧି ହେଉଛି ଦିବ୍ୟତାର ପ୍ରଥମ ସୋପାନ । ଶୁଦ୍ଧିକୁ ଶାରୀରିକ ଓ ଆନ୍ତରିକ ବା ବାହ୍ୟ ଓ ଆଭ୍ୟନ୍ତରଭେଦରେ ବିଭକ୍ତ କରାଯାଇଛି । ତଦ୍‌ବ୍ୟତୀତ ପାତ୍ରା-ପାତ୍ର, ଦ୍ରବ୍ୟ-ଉପକରଣ, ସ୍ଥାନ-କାଳପାତ୍ର, ଖାଦ୍ୟାଖାଦ୍ୟ, ପେୟାପେୟ ପ୍ରଭୃତି ବିଷୟ ଶୁଦ୍ଧିବ୍ୟବସ୍ଥା ମଧ୍ୟରେ ବିଚାର କରାଯାଇଥାଏ । ପ୍ରାଚୀନ କାଳର ଚତୁର୍ବର୍ଣ୍ଣ ମଧ୍ୟରେ ଜଣେ ଅପରର ଅନ୍ନଭୋଜନ

କରିବାରେ କୌଣସି ବାଧା ନଥିଲା । କିନ୍ତୁ ମନୁ ଶୂଦ୍ରର ଅନ୍ନ ବ୍ରାହ୍ମଣ ଭୋଜନ କରିପାରିବେ ନାହିଁ ବୋଲି ବ୍ୟବସ୍ଥା କରିଥିଲେ : (୧) ବୈଦିକ ବ୍ରାହ୍ମଣମାନେ ଛେଳି, ମେଣ୍ଢା, ଗାଈ ବା ବୃଷଭ ଓ ଘୋଡ଼ାର ମାଂସ ଖାଉଥିଲେ; (୨) କିନ୍ତୁ ଜୈନ, ବୌଦ୍ଧ ଓ ବୈଷ୍ଣବ ଧର୍ମର ପ୍ରଭାବ ଫଳରେ ମନୁ ଓ ଯାଜ୍ଞବଲ୍କ୍ୟ ମାଂସାହାର ଉପରେ ଅତି କଠୋର ବ୍ୟବସ୍ଥା ଗ୍ରହଣ କରିଥିଲେ । ଆଜିକାଲି ଭାରତର ଓଡ଼ିଶା, ବଙ୍ଗ, କାଶ୍ମୀର ପ୍ରଭୃତି ଅଞ୍ଚଳର ବ୍ରାହ୍ମଣମାନେ ମାଂସ-ଭୋଜନ କରୁଥିଲେ ମଧ୍ୟ ଅନ୍ୟାନ୍ୟ ରାଜ୍ୟରେ ବ୍ରାହ୍ମଣ ତ ଦୂରର କଥା, ସାଧାରଣ ଅନୁନ୍ନତ ଶ୍ରେଣୀୟ ଲୋକମାନେ ମଧ୍ୟ ମାଂସ ଭକ୍ଷଣ କରନ୍ତି ନାହିଁ । ତେଣୁ ଆମର ଅଭ୍ୟାସରେ ପବିତ୍ରତା ରହିବା ଏକାନ୍ତ ବାଞ୍ଛନୀୟ ।

ଅସ୍ପୃଶ୍ୟତାକୁ ଧର୍ମଶାସ୍ତ୍ରରେ ବିଶେଷଭାବେ ନିନ୍ଦା କରାଯାଇଛି । କେତେକ କାରଣରୁ ଏହି ଅସ୍ପୃଶ୍ୟତା ସୃଷ୍ଟି ହୋଇଥାଏ । ଜାତିର ନିୟମ ଉଲ୍ଲଙ୍ଘନ, ଜଘନ୍ୟ ପାପ, ଦୁଷ୍କର୍ମ ଓ ଦୁର୍ନୀତି ଆଚରଣ, ବହିର୍ଯ୍ୟନ୍ତ୍ରର ଗ୍ରହଣ, ଅନାର୍ଯ୍ୟ ଧର୍ମ ସ୍ୱୀକାର, ଧାର୍ମିକ ବିଦ୍ୱେଷ, ନିଷିଦ୍ଧ ଖାଦ୍ୟ-ପେୟ, ନିଷିଦ୍ଧ ଅଞ୍ଚଳରେ ବସବାସ ପ୍ରଭୃତି ଦୋଷରୁ ଅସ୍ପୃଶ୍ୟତାର ଉଦ୍ଭବ ହୁଏ । ସେଥିପାଇଁ ସ୍ମୃତି-ଶାସ୍ତ୍ରରେ ବିଭିନ୍ନ ପ୍ରକାର ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ରହିଛି । ଏହା ଫଳରେ ଅସ୍ପୃଶ୍ୟ ହୋଇଥିବା ବ୍ୟକ୍ତିବିଶେଷଙ୍କୁ ପୁଣି ନିଜ ଗୋଷ୍ଠୀରେ ଗ୍ରହଣ କରାଯାଇଥାଏ ।

ସଂସ୍କାର ହିନ୍ଦୁମାନଙ୍କର ଅନ୍ୟତମ ବିଶେଷତ୍ୱ । ବିଭିନ୍ନ ସଂସ୍କାର ମଧ୍ୟରେ ଜାତକର୍ମ, ଉପନୟନ, ବିବାହ ଓ ଅନ୍ତ୍ୟେଷ୍ଟି ଏହି ଚାରୋଟି ମୁଖ୍ୟ । ଉପନୟନ ହେଉଛି ଆଧ୍ୟାତ୍ମିକ ପୁନର୍ଜନ୍ମ । ପ୍ରଥମ ତିନି ବର୍ଣ୍ଣଙ୍କ ନିମିତ୍ତ ଉପନୟନର ବ୍ୟବସ୍ଥା ଥିଲେ ମଧ୍ୟ ଶୂଦ୍ର ଓ ସ୍ତ୍ରୀମାନଙ୍କର ଏ ପ୍ରକାର ସଂସ୍କାର ପାଳନ କରାଯାଉନଥିଲା । ଶୂଦ୍ର, ସ୍ତ୍ରୀ ଓ ଜାତିଭ୍ରଷ୍ଟ ବ୍ରାହ୍ମଣଙ୍କୁ ବେଦାଧ୍ୟୟନ ନିମିତ୍ତ ନିଷେଧ କରାଯାଉଥିଲା । କିନ୍ତୁ ପରବର୍ତ୍ତୀ କାଳରେ ବୈଦିକ ମନ୍ତ୍ର ବ୍ୟତୀତ ଶୂଦ୍ରର ସଂସ୍କାର ଲାଗି ଅନୁମତି ଦିଆଯାଇଥିଲା ।

## (ଗ) ଓଡ଼ିଶାର ଲୋକାଚାର :

ସ୍ମୃତି-ଶାସ୍ତ୍ରର ବିଧିବିଧାନ ମଧ୍ୟରେ ଲିପିବଦ୍ଧ ହୋଇ ନଥିବା ଯେଉଁ ଆଚାର-ବ୍ୟବହାର ଲୋକସମାଜରେ ଯୁଗ-ଯୁଗଧରି ଚାଲିଆସୁଛି, ତାହା ଲୋକାଚାର । ସ୍ମୃତି ଓ ପୁରାଣ ସାହିତ୍ୟରେ ଲୋକାଚାରକୁ ସର୍ବତୋଭାବେ ପ୍ରାଧାନ୍ୟ ଦିଆଯାଇଅଛି । ସେଥିପାଇଁ ମହର୍ଷି ମନୁ ଦେଶବିଦେଶରେ ପରମ୍ପରାଗତ ଆଚାରକୁ 'ସଦାଚାର' ବୋଲି ଅଭିହିତ କରିଛନ୍ତି ।୨୦। ଏହି କାରଣରୁ ସ୍ମୃତିଶାସ୍ତ୍ରସମ୍ମତ ନୀତି-ନିୟମରେ ବିଭିନ୍ନତା ଦେଖାଯାଏ । ସାଧାରଣ ଲୋକେ ଧର୍ମଶାସ୍ତ୍ର ପଢ଼ନ୍ତି ନାହିଁ, ଗୂଢ଼ ଧର୍ମତତ୍ତ୍ୱ ବୁଝନ୍ତି ନାହିଁ । ସେମାନଙ୍କର ଯାହାକିଛି ଧର୍ମଜ୍ଞାନ ଅଛି, ତାହା ପୌରାଣିକ ଓ ପାରମ୍ପରିକ ।୨୧।

---

୨୦ । ଯସ୍ମିନ୍ଦେଶେ ଯ ଆଚାରଃ ପାରମ୍ପର୍ଯ୍ୟକ୍ରମାଗତଃ ।
ବର୍ଣ୍ଣାନାଂ ସାନ୍ତରାଳାନାଂ ସ ସଦାଚାର ଉଚ୍ୟତେ ॥ (ମନୁସ୍ମୃତି—୨-୧୮)

୨୧ । ଓଡ଼ିଆ ଲୋକଗୀତ ଓ କାହାଣୀ—ଡକ୍ଟର କୁଞ୍ଜବିହାରୀ ଦାଶ-୧୯୫୮—ପୃ-୩୨୫

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମାନବଜୀବନର ସମସ୍ତ ସଂସ୍କାର ସମ୍ବନ୍ଧରେ ସ୍ମୃତିକାରମାନେ ନୀତିନିୟମମାନ ପ୍ରଣୟନ କରିଛନ୍ତି । ତନ୍ମଧ୍ୟରେ କେତେକ ନୀତି ଅଞ୍ଚଳଭେଦରେ ପୃଥକ ଥିବାର ଜଣାଯାଏ । ତଦ୍‌ବ୍ୟତୀତ ଯାହାଙ୍କ ସ୍ଥାନ-କାଳ-ପାତ୍ର ଭେଦରେ କେତେକ ଲୋକାଚାର ଭିନ୍ନ ରୂପ ଧାରଣ କରିଛି । ସେଗୁଡ଼ିକ ସ୍ମୃତିକାରମାନେ ଲୋକମାନଙ୍କ ଆଚରଣ ଉପରେ ଛାଡ଼ିଦେଇଛନ୍ତି । କେବଳ ହିନ୍ଦୁ ଘରେ କାହିଁକି, ଅନ୍ୟାନ୍ୟ ଧର୍ମାବଲମ୍ବୀଙ୍କ ଘରେ ମଧ୍ୟ ପିଲାଟିଏ ଜନ୍ମହେଲେ ଆନନ୍ଦାଳହରୀ ଖେଳିଯାଏ । ସେହି ଆନନ୍ଦ-ଉତ୍ସବ ମଧ୍ୟରେ ସ୍ଥାନ-ବିଶେଷରେ କେତେ ଯେ ଲୋକାଚାର ରହିଛି, ତା'ର ଇୟତ୍ତା ନାହିଁ ।

ଜନ୍ମବେଳେ ବଟଧରି ବସିବା, ସିଜୁଡ଼ାଳ ଦୁଆରମୁହଁରେ ବାନ୍ଧିବା ବିଧି ରୂପେ ପାଳିତ ହୁଏ । ପାଞ୍ଚଦିନରେ ପଞ୍ଚୁଆତି ପାଳିବା ସଙ୍ଗେ ସଙ୍ଗେ ମାମୁ ଆସି ବାଆପଟିଆ ଦଉଡ଼ି ବଳେ; ବିରିମୁଗ ଗୁଡ଼ଲଭଜା ଭୋଗ ଦେଇ ପିଲାଟିର ଦୀର୍ଘାୟୁ କାମନା କରାଯାଏ । ଷଷ୍ଠଦିନରେ ଷଷ୍ଠୀଜିଉଛନ୍ତ୍କ କାନ୍ଥରେ ଗୋବର ଓ କଉଡ଼ିରେ ଘର କରି, ଲେଖନ ତାଳପତ୍ର ଦେଇ ପୂଜା କରିବା ବିଧି ଓଡ଼ିଶାର ଘରେ ଘରେ ପ୍ରଚଳିତ । ଲୋକସାଧାରଣଙ୍କର ବିଶ୍ୱାସ ଯେ, ରାତିଅଧରେ ଷଠୀଜିଉଛି ଆସେ ଓ ଲେଖନୀ ଧରି ତାଳପତ୍ରରେ ପିଲାର ପରମାୟୁ ଗଣନାକରି ଲେଖିଦେଇଯାଏ ।

ସପ୍ତମ ଦିନରେ ଉଠିଆଣ୍ଟା ହୁଏ । ଏକୋଇଶ ଦିନରେ ପିଲାର ମଙ୍ଗଳକାମନା କରି ସତ୍ୟପୀରଙ୍କୁ ଶିରଣି ଭୋଗ ଦିଆଯାଏ । ସେ ଦିନ ପାଲାଗାନ କରିବା ବିଧି ଓଡ଼ିଶାରେ ପ୍ରଚଳିତ । ଏହି ସମସ୍ତ ଜନ୍ମମଙ୍ଗଳରେ ପାଞ୍ଚ ବା ସାତ ଅହ୍ୟ ସ୍ତ୍ରୀ ମିଶି ବିଭିନ୍ନ ପୂଜା ଅନୁଷ୍ଠାନ କରନ୍ତି । ନବଜାତ ଶିଶୁକୁ ଦୋଳାରେ ପକାଇ ଝୁଲାଇବା ନୀତି କୌଣସି ଧର୍ମଶାସ୍ତ୍ରରେ ଲିପିବଦ୍ଧ ହୋଇ ନଥିଲେ ହେଁ, ଯୁଗ-ଯୁଗଧରି ଏହା ସମାଜରେ ପାଳିତ ହୋଇଆସୁଛି । ଅଦ୍ୟାପି ଗାଁଗହଳରେ ଜନ୍ମମଙ୍ଗଳ ଅହ୍ୟ ସ୍ତ୍ରୀଙ୍କଦ୍ୱାରା ଗାନ କରାଯାଉଛି ।

ନବଜାତ ଶିଶୁର ନାମକରଣରେ ମଧ୍ୟ କେତେକ ଲୋକାଚାର ରହିଛି । କେତେକ ଅଞ୍ଚଳରେ ବର୍ଷକ ପରେ ବର୍ଷପୂରଣି ଉତ୍ସବରେ ନାମକରଣ ହେଉଥିବା ବେଳେ, ଅନ୍ୟ କେତେକ ଅଞ୍ଚଳରେ ଏକୋଇଶା ଦିନ ନାମକରଣ କରାଯାଏ । କୌଣସି କୌଣସି ସ୍ଥାନରେ ଅଢ଼େଇ ବର୍ଷରେ ନାମକରଣ ଉତ୍ସବ ପାଳିତ ହୁଏ । ସେହିପରି 'ନାଉଲ ଉତ୍ସବ' ମଧ୍ୟ କେତେକ ରାଜପରିବାରରେ ପାଳିତ ହେଉଥିବାର ଦେଖାଯାଏ ।୨୨।

ବ୍ରତୋପନୟନ ଉତ୍ସବରେ ବୈଦିକ ବିଧିବିଧାନ ବାହାରେ ବହୁବିଧ ଲୋକାଚାର ରହିଛି । ପ୍ରଥମତଃ ଗର୍ଭାଧାନଠାରୁ ଆରମ୍ଭ କରି ସମାବର୍ତ୍ତନ ପର୍ଯ୍ୟନ୍ତ ଦଶକର୍ମବିଧି କ୍ରମାନୁସାରେ ପାଳିତ ନ ହୋଇ ସପ୍ତମ ନବମ ଏକାଦଶ ବର୍ଷରେ ରବି ଓ ଗୁରୁ ଶୁଦ୍ଧି ଦେଖି ଗୋଟିଏ ଦିନରେ ଅନୁଷ୍ଠିତ ହୁଏ । ସାଧାରଣତଃ ଗର୍ଭାଧାନଠାରୁ ଷଟ୍‌କର୍ମ ଗୋଟିଏ ଦିନରେ କରାଯାଇ ଚୂଡ଼ାକରଣଠାରୁ ସମାବର୍ତ୍ତନ ପର୍ଯ୍ୟନ୍ତ ଶୁଭକର୍ମ ପରଦିନ କରାଯାଇଥାଏ । ପୂର୍ବଦିନ ଛଅଗୋଟି କର୍ମ ନିଷ୍ପନ୍ନ ହେଉଥିଲେ ହେଁ, ସେ ଦିନଟି 'ଶୁଭକର୍ମ' ବା 'ମଙ୍ଗନ' ନାମରେ କଥିତ ହୁଏ ।

୨୨ । ଉତ୍କଳ ଗାଉଁଲି ଗୀତ—ସଂ-ଶ୍ରୀ ଚକ୍ରଧର ମହାପାତ୍ର-୧୯୫୮—ପୃ-୭୯-୯୦ ॥

ବ୍ରତକର୍ମ ପୂର୍ବରୁ ଢେଙ୍କି ମଙ୍ଗୁଳା, ଗୁଆ ମଙ୍ଗୁଳା, ଜାଇ ମଙ୍ଗୁଳା, ଦହିଁ ମଙ୍ଗୁଳା, ମଙ୍ଗଳାହାଣ୍ଡି ବସା, କାଣ୍ଡ କଳସୀରେ ଦେବସ୍ଥାନରୁ ଜଳ ଆଣି ବାଳକକୁ ସ୍ନାନ କରାଇବା ବିଧିଗୁଡ଼ିକ ଲୋକାଚାରର ଅନ୍ତର୍ଗତ । କାରଣ ଉପନୟନ ପାଇଁ କୁଣ୍ଟାକଣ୍ଡା କାର୍ଯ୍ୟ ବହୁ ପୂର୍ବରୁ ଆରମ୍ଭ କରାଯାଇଥିବାରୁ, ଅହ୍ୟ ସ୍ତ୍ରୀମାନଙ୍କଦ୍ୱାରା ଢେଙ୍କିକୁ ହଳଦୀ, ସିନ୍ଦୁର, କଜ୍ଜଳ ଦେଇ ପୂଜା କରାଯାଏ । ଏକ ନିର୍ଦ୍ଦିଷ୍ଟ ଶୁଭଦିନରେ ଉକ୍ତ 'ମଙ୍ଗୁଳା' କାର୍ଯ୍ୟ ହେଉଥିବାରୁ ସେଦିନ 'ଢେଙ୍କି ମଙ୍ଗୁଳା' ନାମରେ କଥିତ ହୁଏ । ସେହିପରି ବନ୍ଧୁ ସୁହୃଦ୍‌ମାନଙ୍କୁ ଗୁଆ ଦେଇ ନିମନ୍ତ୍ରଣ କରାଯିବା ବିଧି ବହୁକାଳରୁ ଚଳିଆସୁଛି । ତେଣୁ ନିର୍ଦ୍ଦିଷ୍ଟ ଦିବସରେ ପାଞ୍ଚ ସାତ ଅହ୍ୟ ସ୍ତ୍ରୀ ମିଶି 'ଗୁଆ ମଙ୍ଗୁଳା' କରିବା ପରେ ବନ୍ଧୁମାନଙ୍କୁ ନିମନ୍ତ୍ରଣ ପଠାଯାଏ । ବ୍ରତୋପନୟନ କାର୍ଯ୍ୟରେ ମୁଗ ଜାଇ ଲାଗେ । ସେଥିପାଇଁ 'ଗୁଆ ମଙ୍ଗୁଳା' ଦିନ ମୁଗଜାଇରେ ହଳଦୀ ଗୋଳେଇ ଅହ୍ୟ ସ୍ତ୍ରୀମାନେ ଘୋରଣାରେ ତାକୁ ଚୂନା କରନ୍ତି । ପୂର୍ବେ ତାହା 'ଜାଇ ଘରଷଣ' ନାମରେ ନାମିତ ହେଉଥିଲା ।

ସଂସ୍କାର ମଧ୍ୟରେ ବିବାହ ଅନ୍ୟତମ । ସାଧାରଣତଃ ବିବାହ-ସଂସ୍କାର ସମାଜରେ ଅନ୍ୟାନ୍ୟ ସଂସ୍କାରଠାରୁ ପ୍ରାଧାନ୍ୟ ଅଧିକାର କରିଥାଏ । ଏ ସମ୍ବନ୍ଧରେ ସ୍ମୃତିଶାସ୍ତ୍ରର ବିଧାନ ବ୍ୟତୀତ ସର୍ବସାଧାରଣୀୟ ସ୍ତରରେ ବହୁ ପ୍ରକାର ଅନୁଷ୍ଠିତ ହୁଏ । ତନ୍ମଧ୍ୟରେ ଓଡ଼ିଶାରେ ବସବାସ କରୁଥିବା ବିଭିନ୍ନ ଜାତି, ଗୋଷ୍ଠୀ ଓ ସ୍ଥାନ ଭେଦରେ ଲୋକାଚାର ଭିନ୍ନ ଭିନ୍ନ ପ୍ରକାରେ ପ୍ରଚଳିତ । ଉପନୟନ ପରି ବିବାହରେ ମଧ୍ୟ ସମସ୍ତ ପ୍ରକାର ମଙ୍ଗଳକୃତ୍ୟ ଅନୁଷ୍ଠିତ ହୁଏ । ବିବାହରେ 'ବରଧରା' ନାମରେ ଏକ ଲୋକାଚାର ରହିଛି । କେତେକ ଅଞ୍ଚଳରେ ଏହି ପ୍ରଥା କୁଆଁରି-ନିମନ୍ତ୍ରଣ ନାମରେ କଥିତ । ଏଥିରେ କନ୍ୟାପିତା ନିମନ୍ତ୍ରଣପତ୍ର ସହିତ ଗୁଆ, ନଡ଼ିଆ, ନୂଆ ଲୁଗା, ସୁନା ମୁଦି, ଗୋଟିଏ ଥାଳ ବା ଡାଲାରେ ରଖି ବରଘରକୁ ପଠାନ୍ତି । ବରଘର ତା' ପାଇଲାମାତ୍ରେ ବିବାହ ପ୍ରସଙ୍ଗ ସ୍ୱୀକୃତ ହେଲା ବୋଲି ବୁଝି ନିଜର ଆତ୍ମୀୟ ଓ ବନ୍ଧୁମାନଙ୍କୁ ନିମନ୍ତ୍ରଣ ପଠାନ୍ତି । ଏହି ପ୍ରଥା ପୁରୀ ଓ ଗଞ୍ଜାମ ଜିଲ୍ଲାର କେତେକ ବ୍ରାହ୍ମଣ ଶାସନରେ ପାଳିତ ହୁଏ । ଅନ୍ୟାନ୍ୟ ସ୍ଥାନରେ ଏହା 'ବରଧରା' ନାମରେ ନାମିତ । ବିବାହର ପୂର୍ବଦିନ କନ୍ୟାର ଭ୍ରାତା ବା କୌଣସି ସମ୍ପର୍କୀୟ ଗୋଟିଏ ହାଣ୍ଡିରେ ଚନ୍ଦନ, ଫୁଲ, ଗୁଆ, ନଡ଼ିଆ, ଲୁଗା ଓ ବରଯାତ୍ରୀ ନିମନ୍ତ୍ରଣପତ୍ର ରଖି ବାଳକ ହାତରେ ବର ଘରକୁ ପଠାନ୍ତି । ସେଠାରେ ଏକ ପୂଜାନୁଷ୍ଠାନ କରାଯାଇ ବେଦୋକ୍ତ ମନ୍ତ୍ରରେ ଭାବୀ ଜାମାତାଙ୍କୁ ବରଣ କରାଯାଏ । ସେହି ବରଧରାଦଳରେ ଯାଇଥିବା ଲୋକ କନ୍ୟାଘରକୁ ଫେରିଆସିବା ପରେ ବିବାହ ସ୍ୱୀକୃତ ହେଲା ବୋଲି ବୁଝାଯାଏ । ବରଧରା ଘରକୁ ଫେରିବା ପରେ କନ୍ୟା ଘରେ କୋଇଲିବୁଡ଼ି ବା କୁମାରୀ-ସ୍ନାନ, ନାନ୍ଦୀମୁଖୀ ଶ୍ରାଦ୍ଧ, ଦହି ମଙ୍ଗୁଳା ଆଦି ବିଧି ପାଳିତ ହୁଏ । କୋଇଲିବୁଡ଼ିର ଅର୍ଥ ସେହିଦିନଠାରୁ କନ୍ୟାର କୁମାରୀତ୍ୱ ଲୋପ ପାଇଲା । ସେହି ସମୟଠାରୁ କନ୍ୟାଟି ପରଘରି ହୋଇ ଚାଲିଯିବାର ଏହା ଏକ ସଙ୍କେତ ।

ବିବାହ ବେଦୀରେ ବୈଦିକ ବିଧି ସହିତ ଅନେକ ପ୍ରକାର ଲୋକାଚାର ପାଳିତ ହୁଏ । ତନ୍ମଧ୍ୟରେ କନକାଞ୍ଜଳି, କନିଷ୍ଠବେଦୀ ବା କୃକର୍ମବେଦୀ କର୍ମ, ଅଳତା ସିନ୍ଦୂର, ଲବଣଭ୍ରମଣ,

ଶଳାବିଧି ଆଦି ଉଲ୍ଲେଖଯୋଗ୍ୟ । ବିବାହ ପରେ ଜୁଆ କଉଡ଼ି ଖେଳ, ଶୀତଳଭୁଣ୍ଡୀ, ଗୁଆଜକା ପ୍ରଭୃତି ଲୋକବିଧିର ପ୍ରଚଳନ ଅଦ୍ୟାପି ରହିଛି । ପୂର୍ବେ ଉକ୍ତ ବିଧାନଗୁଡ଼ିକର ପାଳନକାଳରେ ଲୋକସଙ୍ଗୀତ ଗାନ କରାଯାଉଥିଲା । ଏହି ଗୀତରେ ରାମ ଓ କୃଷ୍ଣଙ୍କୁ ବର, ସୀତା ଓ ରାଧାଙ୍କୁ କନ୍ୟାରୂପେ କଳ୍ପନା କରାଯାଇଥାଏ ।[୧୩] ରାଜ୍ୟ ସଂଗ୍ରହାଳୟରେ ଖୋର୍ଦ୍ଧାର ହଳଦିଆ ଅଞ୍ଚଳରୁ ସଂଗୃହୀତ ଖଣ୍ଡିଏ ମଙ୍ଗଳଗୀତ ପୋଥିରେ କୋଇଲିବୁଡ଼, ବରଗିଣ ଅଞ୍ଜଳି, ବର ପାଣିଆ, ବରବରଣ, ହସ୍ତଗ୍ରନ୍ଥି, ବିରମୁଗ ଚୂରା, ବର ଗନ୍ଧଘରଷଣ, କନ୍ୟା କୋଇଲିବୁଡ଼, ଲବଣଚଉଁରି, ଜୁଆ କଉଡ଼ି, ପଞ୍ଚୁରାସୀ ଆଦି ସମ୍ବନ୍ଧରେ ମଙ୍ଗଳ-ଗୀତ ରହିଛି; କିନ୍ତୁ ବର୍ତ୍ତମାନ ସମାଜରେ ମଙ୍ଗଳଗୀତର ପ୍ରଚଳନ ପ୍ରାୟ ନାହିଁ କହିଲେ ଚଳେ । ବିବାହର ସାତଦିନ ମଧ୍ୟରେ ତୃତୀୟ ଦିନ ବେଦୀପୂଜା, ମାଛବିକା, ବେଦୀରେ କନ୍ୟାମାତାଙ୍କୁ ସର୍ପଦଂଶନ ଓ ନଣନ୍ଦଦ୍ୱାରା ସାପବିଷଝଡ଼ା, ପଞ୍ଚମ ଦିନ କାଦୁଖେଳ, ସପ୍ତମ ଦିନ କାଦୁଖେଳ ଓ ମଙ୍ଗଳହାଣ୍ଡି ଭଜୁଆଁ ପ୍ରଭୃତି ଲୋକବିଧି ପ୍ରାଧାନ୍ୟ ଲାଭ କରିଥାଏ । ବିବାହ ସମ୍ପର୍କରେ ବହୁ କୌତୁକପ୍ରଦ ଲୋକାଚାର କେତେକ ଅଞ୍ଚଳରେ ପ୍ରଚଳିତ ଅଛି । ବିବାହ ପୂର୍ବରୁ ଇଷ୍ଟନିମନ୍ତ୍ରଣ ବିଧି ତନ୍ମଧ୍ୟରେ ଅନ୍ୟତମ । ଯେଉଁ ବ୍ୟକ୍ତିର ଗୃହରେ ବିବାହ ନିଷ୍ପନ୍ନ ହୁଏ, ସେହି ବ୍ୟକ୍ତିର ଗୋତ୍ର ଅନୁସାରେ ଗୋଟିଏ ନିର୍ଦ୍ଦିଷ୍ଟ ବୃକ୍ଷ ପୂଜା କରାଯାଇ ତା' ମୂଳର ମୃତ୍ତିକାକୁ ଇଷ୍ଟଦେବତା ରୂପେ ଅଣାଯାଇ ଈଶାନ କୋଣରେ ଗୋଟିଏ ନୂଆ ଧାତୁ-ପାତ୍ରରେ ବିବାହର ସପ୍ତମଙ୍ଗଳା ପର୍ଯ୍ୟନ୍ତ ରଖାଯାଏ । ତା'ପରେ ଅଷ୍ଟମ ଦିନ ତାହାକୁ ନଦୀ ବା ପୁଷ୍କରିଣୀରେ ବିସର୍ଜନ ଦିଆଯାଏ । ଏ ପ୍ରସଙ୍ଗରେ କୁହାଯାଇପାରେ ଯେ, କନ୍ୟା ବା ବରପିତାର ଗୋତ୍ର 'କାଶ୍ୟପ' ହୋଇଥିଲେ ସେ କୌଳିକ ବିଶ୍ୱାସ ଅନୁସାରେ କଙ୍କିଗଛ, 'ପରାଶର' ହୋଇଥିଲେ ପଲାଶ ଗଛ ପୂଜା କରାଯାଇ ତା' ମୂଳର ମାଟି ସଂଗ୍ରହ କରାଯାଏ । ଏହି ପୂଜାମୂଳରେ ଆଦିବାସୀମାନଙ୍କ ବୃକ୍ଷ-ଉପାସନା ସହିତ ସମ୍ପର୍କ ଥିବାର ଅନୁମାନ କରାଯାଏ ।

ମାନବଜୀବନରେ ଅନ୍ତ୍ୟେଷ୍ଟି ସର୍ବଶେଷ କ୍ରିୟାରୂପେ ଗୃହୀତ । ଘରର କୌଣସି ବ୍ୟକ୍ତି ମୃତ୍ୟୁମୁଖରେ ପଡ଼ିଲେ ବେଦୋକ୍ତ ବିଧିବିଧାନ ଅନୁସାରେ ସମସ୍ତ ସମ୍ପନ୍ନ ହେବା ସଙ୍ଗେ ସଙ୍ଗେ କେତେକ ଲୋକାଚାର ମଧ୍ୟ ପାଳିତ ହୁଏ । ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଶବକୁ ନେବା ପାଇଁ ଛ'ଖଣ୍ଡି କାଠ ବା ବାଉଁଶରେ କୋକେଇ ପ୍ରସ୍ତୁତ କରାଯାଏ । ତତ୍‌ସହିତ ଗୋଟିଏ କଳସୀ, ବୋଝ, କୋଡ଼ି ବା କୋଦାଳ ଓ ଗୋଟିଏ ନିଆଁ ବିଡ଼ି ଶବଦାହ ଉଦ୍ଦେଶ୍ୟରେ ଶବ ସହିତ ଯାଏ । ଚୂଲି ଓ ଭାତହାଣ୍ଡି ଫିଙ୍ଗାଯାଏ । ଏଥିରୁ ମୃତବ୍ୟକ୍ତି ସହିତ ପରିବାରର ସମ୍ପର୍କ ବିଚ୍ଛିନ୍ନ ହେବାର ସୂଚନା ମିଳେ ।

---

୧୩ । (କ) ଓଡ଼ିଆ ଗୀତିକାବ୍ୟ ସଂକଳନ—ଡ. ଜାନକୀବଲ୍ଲଭ ମହାନ୍ତି-୧୯୭୭, ପୃ-୫୭୪-୭୫

(ଖ) ଉତ୍କଳ ଗାଉଁଲି ଗୀତ—ପୃ-୧୬୭-୧୬୦

ଶ୍ମଶାନରେ ଅର୍ଦ୍ଧପଥ ପିଣ୍ଡଦାନ, ପ୍ରେତର ସ୍ନାନ, ଭୋଜନ, ମୁଖାଗ୍ନି ବିଧି ସ୍ମୃତିସମ୍ମତ ବିଧି ଅନୁଯାୟୀ ପାଳିତ ହୁଏ ମାତ୍ର; ଚିତାଗ୍ନିର ଚତୁଃପାର୍ଶ୍ୱ ଶବକୁ ଦିନ, ପାଞ୍ଚ ବା ସାତଥର ବୁଲାଇବା ଓ ଧର୍ମଙ୍କୁ ସାକ୍ଷୀ କରି ଶ୍ମଶାନଭୂମିରେ ଉପସ୍ଥିତ ଥିବା ପ୍ରତ୍ୟେକ ଆତ୍ମୀୟ-ସ୍ୱଜନ ସ୍ୱସମ୍ବନ୍ଧରେ ଡାକିବା ଏକ ଲୌକିକ ପ୍ରଥା । ଜୀବିତ ବ୍ୟକ୍ତିକୁ କାଳେ ଭ୍ରମବଶତଃ ହତ୍ୟା କରିଯାଉଛୁ, ସେହି ଦୋଷରୁ ମୁକ୍ତ ହେବା ନିମିତ୍ତ ଏ ପ୍ରକାର ବିଧି ପ୍ରଚଳିତ ଅଛି ।

ଶ୍ମଶାନରୁ ଫେରିବା ପରେ ଶ୍ମଶାନଯାତ୍ରୀ ବା ମାଲିଭାଇମାନଙ୍କୁ ଥରେ ମାତ୍ର ତେଲ ଦେବା, ଗାଧୋଇ ଆସିବା ପରେ ହଳଦୀ ପାଣିରେ ଗୋଡ଼ ଧୋଇବା, ନିମ୍ବପତ୍ର ଚୋବାଇବା, ଭୂମିରେ ଲୁହା ଖଣ୍ଡିକରେ ତିନିଗାର କାଟିବା ଆଦି ପ୍ରଥା ମୂଳରେ ପରିବାରର ପବିତ୍ରତା ଓ ସ୍ୱାସ୍ଥ୍ୟରକ୍ଷାର ବିଧି-ବିଧାନ ପ୍ରତି ଦୃଷ୍ଟି ଦିଆଯାଇଥିବାର ମନେହୁଏ ।

ଅନ୍ତ୍ୟେଷ୍ଟିକ୍ରିୟା ସମ୍ବନ୍ଧରେ ଶାସ୍ତ୍ରୀୟ ବିଧାନ ବ୍ୟତୀତ କେତେକ ଲୌକିକ ବିଧାନ ମଧ୍ୟ ପାଳିତ ହୁଏ । ତଦନୁଯାୟୀ ଦଶମ, ଏକାଦଶ ବା ତ୍ରୟୋଦଶ ଦିନ ରାତ୍ରିରେ ବିସର୍ଜନ ହାଣ୍ଡି ବା ମାଳହାଣ୍ଡି ଉତ୍ସର୍ଗ କରିଯାଏ । ସ୍ଥାନବିଶେଷରେ ଏହି ବିଧି ଭିନ୍ନ ଭିନ୍ନ ଭାବେ ପାଳିତ ହୁଏ । କେତେକ ଅଞ୍ଚଳରେ ଦଶମ ଦିନ ନିଶାର୍ଦ୍ଧରେ ଦୁଇଟି ହାଣ୍ଡି ଚିତ-ବିଚିତ୍ର କରି ତନ୍ମଧ୍ୟରେ ଅରୁଆ ଚାଉଳ, ଗୁଆ, ମାଛଭଜା ପ୍ରଭୃତି ରଖି ଅଗ୍ନିଦାତା ତାକୁ ଭାରକରି ଗ୍ରାମର ଶେଷସୀମା ପର୍ଯ୍ୟନ୍ତ ଯାଆନ୍ତି । ସେଠାରେ ଭୋଜ୍ୟ ପଦାର୍ଥକୁ ପ୍ରେତ ନାମରେ ସମର୍ପଣ କରି, ଭାରସମେତ ହାଣ୍ଡି ଦୁଇଟିକୁ ପକାଇଦେଇ ଏକମୁହାଁ ହୋଇ ଫେରିଆସନ୍ତି । ବିସର୍ଜନ ହାଣ୍ଡି ନେଇ ବାହାରିଯିବାମାତ୍ରେ ଘରେ ଗୋଟିଏ କୋଣରେ ବାଲି ବିଛାଇ ତା' ଉପରେ ଗୋଟିଏ ଦୀପ ଜାଳି ନୂଆ ହାଣ୍ଡିଟିଏ ଢାଙ୍କି ଦିଅନ୍ତି । ବିସର୍ଜନ ହାଣ୍ଡି ନେଇ ଯାଇଥିବା ଲୋକ-ମାନେ ତାହାକୁ ଫିଙ୍ଗି ଦେଇ ମୌନବ୍ରତ ଧାରଣପୂର୍ବକ ସ୍ନାନ ସାରି ଘରକୁ ଫେରିଆସନ୍ତି । ଘର ଦୁଆର ମୁହଁରେ ପହଞ୍ଚି ଭିତରକୁ ଡିନିପାହାର ପିଟନ୍ତି । ସେତେବେଳେ ଘରମଧ୍ୟରେ ଥିବା ଲୋକ ଓ ବିସର୍ଜନ ହାଣ୍ଡି ଫିଙ୍ଗି ଦେଇ ଆସିଥିବା ଲୋକମାନଙ୍କ ମଧ୍ୟରେ କେତେକ ପ୍ରଶ୍ନୋତ୍ତର ହୁଏ । ତତ୍ପରେ ସେମାନଙ୍କୁ କବାଟ ଖୋଲି ଦିଆଯାଏ । ସେମାନେ ଘରେ ପ୍ରବେଶ କରିବା ମାତ୍ରେ ନିର୍ଦ୍ଦିଷ୍ଟ ସ୍ଥାନରେ ବାଲି ଉପରେ ଦୀପ ଜଳୁଥିବା ସ୍ଥାନକୁ ଘରର ମୁରବି ଲୋକମାନେ ଯାଆନ୍ତି । ଦୀପ ଉପରେ ଢଙ୍କାହୋଇଥିବା ହାଣ୍ଡିକୁ ବାହାର କରି ବାଲିକୁ ନିରୀକ୍ଷଣ କରନ୍ତି । ବାଲି ଉପରେ କୌଣସି ନା କୌଣସି ଏକ ଚିହ୍ନ ପଡ଼ିଥାଏ । ପ୍ରେତ ସେହି ଚିହ୍ନ ଚିହ୍ନିତ ବାହନରେ ବସି ପ୍ରେତଲୋକରେ ପ୍ରବେଶ କରେ ବୋଲି ଲୋକବିଶ୍ୱାସ ରହିଛି । କେତେକ ଅଞ୍ଚଳରେ ଏହି ଚିହ୍ନରୁ ପ୍ରେତର ପରଜନ୍ମର ସଙ୍କେତ ମିଳେ । ଆଉ କେତେକ ଅଞ୍ଚଳରେ ଈଶାଣ ଗୃହରେ ଚାଉଳ ଚୂନାରେ ଏକ ମଣ୍ଡଳ ନିର୍ମିତ ହୁଏ । ମଣ୍ଡଳ ନିକଟରେ ଦୀପଟିଏ ଜଳାଯାଏ । ପରିବାରର ସମସ୍ତେ ଘର ବାହାରକୁ ଯାଇ ସ୍ୱସମ୍ବନ୍ଧ ନାମରେ ପ୍ରେତକୁ ଡାକନ୍ତି । ତତ୍ପରେ ସେହି ଚୂନା ଉପରେ କୌଣସି ଏକ ଚିହ୍ନ ପଡ଼ିଥିବାର ଦେଖାଯାଏ ।

ସେଥିରୁ ବୁଝାଯାଏ ଯେ ସେହିଦିନଠାରୁ ପ୍ରେତ ଇଷ୍ଟଦେବତା ରୂପେ ପରିବାରର ଲୋକଙ୍କ ସହିତ ବାସକରନ୍ତି ।

ପୂର୍ବୋକ୍ତ ଦଶାହ ଓ ଏକାଦଶାହ ରୀତିରେ ବିସର୍ଜନ ହାଣ୍ଡି ଫିଙ୍ଗିବା ଓ ବାଲିମଣ୍ଡଳ ଉପରେ ପ୍ରେତର ବାହନର ଚିହ୍ନ ଲକ୍ଷ୍ୟ କରିବା ପ୍ରଭୃତିରୁ ମୃତବ୍ୟକ୍ତି ମାନବ ଜନ୍ମର ସମସ୍ତ ସମ୍ପର୍କ ତୁଟାଇ ଦେଇ ପ୍ରେତଲୋକକୁ ଚାଲିଯାଏ ବୋଲି ଧାରଣା ଜନ୍ମେ । ପରିବାର-ବର୍ଗଙ୍କ ସହିତ ମୃତବ୍ୟକ୍ତିର କୌଣସି ସମ୍ପର୍କ ନାହିଁ, ଏହା ଜାଣିବା ପରେ ତା' ପ୍ରତି ଅନୁଶୋଚନା ଅନାବଶ୍ୟକ ବୋଲି ବୁଝାଯାଏ । କିନ୍ତୁ ତ୍ରୟୋଦଶାହ ରୀତିରେ ଯେଉଁ ବିଧି-ବିଧାନ ହୁଏ, ସେଥିରୁ ଅନ୍ତର ଉନ୍ନତ ଚିନ୍ତାର ପରିଚୟ ମିଳେ । ପ୍ରେତକୁ ନିଜର ପାରିବାରିକ ସମ୍ପର୍କରୁ ବିଚ୍ଛିନ୍ନ କରାଇ ଇଷ୍ଟଦେବ ରୂପେ ଈଶାଣ କୋଣରେ ରଖିବାର ଏକ ତାତ୍ପର୍ଯ୍ୟ ରହିଛି । ସେହିଦିନଠାରୁ ପ୍ରେତ ପରିବାରକୁ ସମସ୍ତ ସମ୍ପର୍କ ତୁଟାଇ ଦେବତାର ଆସନ ଲାଭ କରେ ।

ବୈଦିକ ବ୍ରତ, ପୂଜା ଓ ଅନ୍ୟାନ୍ୟ ଧର୍ମୀୟ ଅନୁଷ୍ଠାନ ବ୍ୟତୀତ ଲୋକାଚାର ମଧ୍ୟରେ କେତେକ ଓଷା, ବ୍ରତର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ଲୋକଧର୍ମରେ ପ୍ରକୃତି-ଉପାସନା ପ୍ରାଧାନ୍ୟ ଲାଭ କରିଥାଏ । ବହୁକାଳ ଧରି ଏ ଓଷା-ବ୍ରତ ସମାଜର ସାଧାରଣ ଲୋକ ମନରେ ଆସ୍ଥା ଜନ୍ମାଇଆସିଛି । ତନ୍ମଧ୍ୟରେ ଭୂମିପୂଜା, ଗୃହାଧିଦେବତା ପୂଜା, ଶସ୍ୟ ପୂଜା, ବୃଷ୍ଟି-ବନ୍ଦାପନା, ନଦୀ-ବନ୍ଦାପନା, ନାଗପୂଜା, ଗେଣ୍ଡା-କୋଚିଆପୂଜା, ଗୋପୂଜା ମୁଖ୍ୟ ସ୍ଥାନ ଅଧିକାର କରିଛି ।

ଭୂମିପୂଜାରେ ରଜପର୍ବ, ଅକ୍ଷୟ-ତୃତୀୟା ପାଳନ ଦୁଇଟି ମୁଖ୍ୟ । ଗୃହାଧି-ଦେବତା ପୂଜା ମଧ୍ୟରେ ଚୁଲିପୂଜା, ଈଶାନପୂଜା କରାଯାଏ । ଶସ୍ୟପୂଜାରେ ନୂଆଖିଆ, ମାର୍ଗଶିର ମାସ ଗୁରୁବାର, ଗୁରୁମିସ୍ୟା ଗୁରୁବାର, ସୁଦଶାବ୍ରତ, ଧାନମାଣିକା ଓଷା, କ୍ଷେତବଢ଼ା ଏବଂ ବୃଷ୍ଟି-ବନ୍ଦାପନା ବର୍ଷାଦିନରେ ଠିକ୍ ସମୟରେ ବର୍ଷା ନ ହେଲେ ଇନ୍ଦ୍ରଦେବତାଙ୍କ ଉଦ୍ଦେଶ୍ୟରେ ପାଳିତ ହୁଏ । ବନ୍ୟା-ବିପ୍ଳାବିତ ସମୟରେ ସନ୍ତାନ-ସନ୍ତତି ମରି ନଥିବା ସ୍ତ୍ରୀ ଥାଳିରେ ସାତକେରା ଦୂବ, ସାତଟି ବରକୋଳିପତ୍ର, ସାତଟି ଦୀପ ଥୋଇ ନଦୀଦେବତାଙ୍କୁ ବନ୍ଦାପନା କରନ୍ତି । ଏହା ଫଳରେ ବନ୍ୟା-ପ୍ରକୋପ କମିଯାଏ ବୋଲି ଲୋକସମାଜରେ ଧାରଣା । ଶ୍ରାବଣ ମାସରେ ଚିତାଲାଗି ଅମାବାସ୍ୟା ଦିନ ଚିତଉପିଠା କରି ପୋଖରୀ ଓ ପାଣିନାଳ ପ୍ରଭୃତିର' ଗେଣ୍ଡା, କୋଚିଆ ଉଦ୍ଦେଶ୍ୟରେ ଅର୍ପଣ କରାଯାଏ । ତାହା ଫଳରେ ସେମାନେ ଲୋକମାନଙ୍କର ଅନିଷ୍ଟ ସାଧନ କରନ୍ତି ନାହିଁ ବୋଲି ବିଶ୍ବାସ । ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ଆଦିବାସୀ-ଅଧ୍ୟୁଷିତ ଅଞ୍ଚଳରେ ମକର ସଂକ୍ରାନ୍ତି ସମୟରେ ଯେଉଁ 'ମାଘେ' ପର୍ବ ପାଳିତ ହୁଏ, ତନ୍ମଧ୍ୟରେ ଗୋଟିଏ ଦିନ ବାଘେଇ ଦେବତାଙ୍କ ଉଦ୍ଦେଶ୍ୟରେ ପୂଜା ଓ ନୈବେଦ୍ୟ ଅର୍ପଣ କରାଯାଏ । ତାହା ଫଳରେ ବନବାସୀମାନେ ବ୍ୟାଘ୍ରାଦି ହିଂସ୍ରଜନ୍ତୁଙ୍କଠାରୁ ରକ୍ଷା ପାଇପାରନ୍ତି ବୋଲି ସେମାନଙ୍କର ଧାରଣା । ନାଗପୂଜା

ଉଦ୍ଦେଶ୍ୟରେ ଅନୁଷ୍ଠିତ ସ୍ମୃତିଶାସ୍ତ୍ରୋକ୍ତ ଅନନ୍ତ ଚତୁର୍ଦ୍ଦଶୀ, ଫଣୀ ପଞ୍ଚମୀ, ନାଗ ଚତୁର୍ଥୀ ଓ ନାଗ ପଞ୍ଚମୀ ବ୍ୟତୀତ ଶୁକ୍ଳ ଓ କୃଷ୍ଣ ଚତୁର୍ଥୀରେ ନାଗମାନଙ୍କ ଉଦ୍ଦେଶ୍ୟରେ ଉଇହୁଙ୍କା-ଗୁଡ଼ିକରେ ଦୁଧ ଗୁଡ଼ ଦିଆଯାଇ ପୂଜା କରାଯାଏ । ନାଗମାନଙ୍କ କବଳରୁ ପରିବାରକୁ ରକ୍ଷାକରିବା ଏହି ନାଗପୂଜାର ଲକ୍ଷ୍ୟ । ଗୋପୂଜା ହିନ୍ଦୁମାନଙ୍କର ଏକ ପ୍ରଧାନ ପର୍ବ । ଗୋଷ୍ଠାଷ୍ଟମୀ ବ୍ୟତୀତ ଶ୍ରାବଣ-ପୂର୍ଣ୍ଣିମା ବା ଗହ୍ମା-ପୂର୍ଣ୍ଣିମାରେ ଗୋରୁମାନଙ୍କୁ ନାନାପ୍ରକାର ସଜ୍ଜିତ କରାଯାଇ ସେମାନଙ୍କୁ ବିବିଧ ଭୋଜ୍ୟ ପଦାର୍ଥ ଦିଆଯାଏ । ଦଶହରା ପର୍ବରେ ଯେଉଁ ଦଶହରା ବଳଦ ସଜ୍ଜିତ ହୁଏ, ସେଥିରୁ ଓଡ଼ିଆ ହିନ୍ଦୁମାନଙ୍କର ଏକ ଅଭିଜାତର ସୂଚନା ମିଳେ । ଓଡ଼ିଶା ଏକ କୃଷିପ୍ରଧାନ ଦେଶ ହୋଇଥିବାରୁ ଗୋ-ସମ୍ପଦ ଉପରେ ହିନ୍ଦୁମାନେ ବିଶେଷ ନିର୍ଭର କରନ୍ତି । ଗାଈକୁ ଗୋମାତା, ବଳଦକୁ ନିଜର ଅନ୍ତରଙ୍ଗ ସାଥୀରୂପେ କୃଷକ-ସମାଜ ମନେକରେ ।

ଧର୍ମଶାସ୍ତ୍ରସମ୍ମତ ପୂଜା-ପାର୍ବଣ ବ୍ୟତୀତ ଓଡ଼ିଶାରେ ଏପରି ଅନେକ ଲୋକାଚାରସମ୍ମତ ଓଷା ରହିଛି, ଯାହାର ପ୍ରଚଳନ ଅନ୍ୟତ୍ର ଦେଖାଯାଏ ନାହିଁ । ଏହି ଲୋକଧର୍ମୀ ପର୍ବଗୁଡ଼ିକ ମଧ୍ୟରେ ଜନ୍ତି ଓଷା, ଦ୍ୱିତୀୟା ଓଷା, ଗୁଡ଼ିବାମନ ଓଷା, ପୁଅ ଜିଉନ୍ତିଆ, କାର୍ତ୍ତି ଅଁଳା ଓଷା, ଖୁଦୁରୁକୁଣୀ ବା ଭାଲୁକୁଣୀ ଓଷା, ବୁଧେଇ ଓଷା, ସୁକୁରୁନି, ଚୈତ୍ର ମଙ୍ଗଳବାର, ଷୋଳ-ପାଳି ଗୁରୁବାର, ପୁଷ ରବିବାର, ଧାନମାଣିକା, ଖରଖଷ୍ଟି, ରବିନାରାୟଣ ବ୍ରତ ପ୍ରଭୃତି ମୁଖ୍ୟତଃ ସ୍ତ୍ରୀଲୋକମାନେ ପାଳନ କରନ୍ତି । ଏଗୁଡ଼ିକର ବିଷୟବସ୍ତୁ ଗୋଟିଏ ଧରଣର କହିଲେ ଅତ୍ୟୁକ୍ତି ହେବ ନାହିଁ । ଦେବକନ୍ୟା, ଋଷିକନ୍ୟା ଅଥବା ବ୍ରାହ୍ମଣୀମାନଙ୍କଦ୍ୱାରା ନଦୀ, ପୁଷ୍କରିଣୀ, ଚତୁଷ୍ପଥ, ଶୂନ୍ୟସ୍ଥାନରେ ସମ୍ମିଳିତ ଭାବେ କୌଣସି ଏକ ଦେବତାଙ୍କୁ ପୂଜା କରୁଥିବାବେଳେ କୌଣସି ଏକ ସ୍ତ୍ରୀଲୋକ ଉପସ୍ଥିତ ହୋଇ ଓଷାବିଧି ଶିଖନ୍ତି । ବ୍ରତ କମ୍ବା ଗୁଆ ପ୍ରଭୃତି ଓଷାର ସଙ୍କେତ ନେଇ ଆସି ନିଜ ଘରେ ଓଷା ପାଳନ କରନ୍ତି । ସେ ପ୍ରକାର ଏକ ଅଖ୍ୟାତ ଓଷା ପାଳନ କରୁଥିବାରୁ ସମାଜର ଅନ୍ୟାନ୍ୟ ନାରୀମାନେ ତାକୁ ଉପହାସ କରନ୍ତି । ଏହା ଫଳରେ ଓଷାର ଅଧିଷ୍ଠାତ୍ରୀ ଦେବୀ କୁପିତା ହୋଇ ଉପହାସକାରିଣୀକୁ ଦଣ୍ଡ ଦିଅନ୍ତି । ଏହି ଦଣ୍ଡ ମଧ୍ୟରେ ସ୍ୱାମୀ ଓ ପୁତ୍ରର ମରଣ, କୁଷ୍ଠ ଆଦି ମହାରୋଗ, ଧନସମ୍ପତ୍ତିର ଅପହରଣ ଓ ନାନାପ୍ରକାର ପାରିବାରିକ ବ୍ୟାଘାତ ଦେଖାଯାଏ । ଉପହାସକାରିଣୀ ନିଜର ଭୁଲ ସ୍ୱୀକାର କରି ଅଧିଷ୍ଠାତ୍ରୀ ଦେବୀଙ୍କ ଓଷା ପାଳନ କଲେ, ସମସ୍ତ ଦୁର୍ବିପାକରୁ ମୁକ୍ତିଲାଭ କରେ । ତାହାରି ଫଳରେ ଓଷାର ମହାତ୍ମ୍ୟ ଲୋକସମାଜରେ ପ୍ରଚାରିତ ହୁଏ । ଏହିସବୁ ଓଷାରେ ପ୍ରତ୍ୟେକ ଓଷା ପାଇଁ ନିର୍ଦ୍ଦିଷ୍ଟ ଭୋଗ, ସ୍ୱତନ୍ତ୍ର ପୁଷ୍ପ ଓ ବିଧିବିଧାନ ଅନୁସୃତ ହୁଏ । ଏହି ଓଷା-ବ୍ରତାଦିରେ ସ୍ମୃତିଶାସ୍ତ୍ରସମ୍ମତ କୌଣସି ଅର୍ଚ୍ଚା ପ୍ରତିମାର ଆବଶ୍ୟକତା ପଡ଼େ ନାହିଁ । ତା' ବଦଳରେ ପ୍ରତିମାର ସଙ୍କେତଧର୍ମୀ ମାଣ, ସେର, କୁଲା, କାର୍ତ୍ତିହାଣ୍ଡି, ଗୁଆ, ଗୋବର ପେଣ୍ଡୁଲା, ଧାନକଷା, ବାଲି ଓ ମାଟିପିଣ୍ଡୁଲା ପ୍ରଭୃତି କଳ୍ପିତ ରୂପରେ ପୂଜା ପାଆନ୍ତି । ଏତଦ୍‌ବ୍ୟତୀତ ଅନେକ କ୍ଷେତ୍ରରେ ମଙ୍ଗଳା, ଲକ୍ଷ୍ମୀ, ସୂର୍ଯ୍ୟନାରାୟଣ, ଧର୍ମନିରଞ୍ଜନ ପ୍ରଭୃତିଙ୍କୁ ପୂଜା କରାଯାଏ ।

ବୈଦିକ ଓ ସ୍ମୃତିସମ୍ମତ ଦେବଦେବୀଙ୍କ ବ୍ୟତୀତ ଲୋକସମାଜରେ ଅନେକ ଦେବଦେବୀଙ୍କୁ ପୂଜା କରାଯାଏ । ଏମାନଙ୍କ ମଧ୍ୟରେ ଶୀତଳା, ବସନ୍ତେଇ, ବାସୁଲୀ, ବୁଢ଼ୀଠାକୁରାଣୀ, ଜାଗୁଲାଇ, କୁତାମଚଣ୍ଡୀ, ଖେଡ଼େଇ, କନ୍ଧୁଣୀ, ବସନ୍ତକାଳୀ, ସାଆନ୍ତାଣୀ, ଗ୍ରାମକାଇ ଆଦି ଗ୍ରାମଦେବୀଙ୍କ ନାମ ଉଲ୍ଲେଖନୀୟ । ଏହି ଦେବୀମାନଙ୍କର କୌଣସି ମୂର୍ତ୍ତି ନାହିଁ ।୨୪। ସେଥିପାଇଁ ଗଛ, ପଥର, କାଠ, ମାଟି ନିର୍ମିତ ଘୋଡ଼ା ପ୍ରଭୃତି ପୂଜିତ ହୁଅନ୍ତି । କେତେକ ଅଞ୍ଚଳରେ ନିର୍ଦ୍ଦିଷ୍ଟ ସ୍ଥାନରେ କୌଣସି ସଙ୍କେତ ନ ଥାଇ ମଧ୍ୟ 'କ୍ଷେତ୍ରପାଳ'ଙ୍କ ଅସ୍ଥାନ ବୋଲି ମନେ କରାଯାଇ ତାହାଙ୍କୁ ଧୂପ, ଦୀପ, ନୈବେଦ୍ୟ, ବଳି ଦେଇ ପରିବାରବର୍ଗଙ୍କ ବିଭିନ୍ନ ରୋଗ ନିରାକରଣ ନିମିତ୍ତ ଆରାଧନା କରାଯାଏ । ଏହି ସମସ୍ତ ପୂଜା, ଆଚାର ଓ ସଂସ୍କାର ଲୋକବିଶ୍ୱାସ ଉପରେ ପ୍ରତିଷ୍ଠିତ ।୨୫। □□□

---

୨୪ । ଓଡ଼ିଆ ଲୋକଗୀତ ଓ କାହାଣୀ—ପୃ-୩୩୧ ।

୨୫ । Some Aspects of the History of Hinduism. P-90.

# ଷଷ୍ଠ ଅଧ୍ୟାୟ

## ଓଡ଼ିଆ ସାହିତ୍ୟରେ ସ୍ମୃତିଶାସ୍ତ୍ରର ପ୍ରଭାବ

ବିଶାଳ ସଂସ୍କୃତ ସାହିତ୍ୟ ହିଁ ଭାରତୀୟ ଜୀବନଧାରାର ମୂଳ ଉତ୍ସ । ବେଦ, ବେଦାନ୍ତ, ଦର୍ଶନ, ଧର୍ମଶାସ୍ତ୍ର, ସ୍ମୃତି, ପୁରାଣ, କାବ୍ୟ, ନାଟକ ପ୍ରଭୃତିରେ ଏ ଦେଶର ସାମାଜିକ ଓ ସାଂସ୍କୃତିକ ବିଚାର ବିସ୍ତୃତଭାବେ ଲିପିବଦ୍ଧ ହୋଇ ରହିଛି । ସଂସ୍କୃତ ସାହିତ୍ୟ, ଯୁଗ-ଯୁଗ ଧରି, ଭାରତୀୟ ସାହିତ୍ୟ ଓ ସଂସ୍କୃତିକୁ ବହୁଭାବରେ ପ୍ରଭାବିତ ଓ ପରିପୁଷ୍ଟ କରିଆସିଛି । ଭାଷା ହିଁ ସଂସ୍କୃତିର ବାହକ । ସଂସ୍କୃତ ଭାଷା ଓ ସାହିତ୍ୟକୁ ଆଧାର କରି ଭାରତର ଆଞ୍ଚଳିକ ଭାଷାଗୁଡ଼ିକ ମଧ୍ୟକାଳୀନ ପ୍ରାକୃତ ସ୍ତର ଦେଇ ଅପଭ୍ରଂଶ ଅବସ୍ଥାରେ ଉପନୀତ ହେବା ପରେ ଦେଶ-କାଳ-ପାତ୍ରୋଚିତ ବିକୃତିଗୁଡ଼ିକର ସ୍ୱାକ୍ଷର ବହନପୂର୍ବକ ଅଞ୍ଚଳଭେଦରେ ସ୍ୱତନ୍ତ୍ରରୂପେ ବିକାଶ-ଲାଭ କଲେ । କାଳକ୍ରମେ ସଂସ୍କୃତ ସଂସ୍କୃତିଠାରୁ ବହୁଦୂର ଅଗ୍ରଗତି କରି ଆସିଥିଲେ ମଧ୍ୟ ସେହି ଆଞ୍ଚଳିକ ଭାଷାସମୂହ ସଂସ୍କୃତଦ୍ୱାରା ହିଁ ସ୍ୱକୀୟ ସାହିତ୍ୟର ଆର୍ଥିକ ଓ ଆତ୍ମିକ ଉନ୍ନତି-ସାଧନ କରିଆସିଛି । ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଅନୁରୂପ ପ୍ରଭାବର ସୁସ୍ପଷ୍ଟ ପ୍ରମାଣ ମିଳେ । ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟରେ ସ୍ମୃତିସମ୍ମତ ସାମାଜିକ ରୀତିନୀତି ଓ ଆଚାର-ବ୍ୟବହାରର ଉଲ୍ଲେଖରୁ ଓଡ଼ିଆ କାବ୍ୟକାରଗଣ ପ୍ରଚଳିତ ସ୍ମୃତିଶାସ୍ତ୍ରୀୟ ବିଧାନଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ଏଠାରେ ଓଡ଼ିଶାର ସ୍ମୃତିକାର ଓ ସେମାନଙ୍କ ଗ୍ରନ୍ଥ ପ୍ରଣୟନର କାଳକୁ ଭିତ୍ତି କରି ଓଡ଼ିଆ ସାହିତ୍ୟର ଯୁଗ-ପ୍ରବର୍ତ୍ତକ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ପ୍ରମୁଖ ଓଡ଼ିଆ କବିମାନଙ୍କ ରଚନାରେ ସ୍ମୃତିଶାସ୍ତ୍ରର ପ୍ରଭାବ ଓ ଅନୂଦିତ ସ୍ମୃତିଗ୍ରନ୍ଥର ପର୍ଯ୍ୟାଲୋଚନା କରାଯାଇଛି ।

### (କ) ଓଡ଼ିଆ କାବ୍ୟ-ସାହିତ୍ୟ :

ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଉପଲବ୍ଧ କେତୋଟି ଖଣ୍ଡିତ ଶିଳାଲେଖ, ଦାନପତ୍ର ଓ ଦାର୍ଶନିକ ତନ୍ତ୍ରମୂଳକ ସିଦ୍ଧ ସାହିତ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶୋନ୍ମୁଖ ସ୍ୱରୂପ ଦେଖାଯାଏ । ଖ୍ରୀଷ୍ଟୀୟ ତ୍ରୟୋଦଶ ଚତୁର୍ଦ୍ଦଶ ଶତାବ୍ଦୀର କବି ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ ପ୍ରଣୀତ 'ରୁଦ୍ରସୁଧାନିଧି'କୁ ଓଡ଼ିଆ ଭାଷାର ପ୍ରଥମ ସାହିତ୍ୟିକ ରଚନା ଭାବେ ଅନେକେ ସ୍ୱୀକାର କରନ୍ତି ।[୧] ଏହାର ରଚନାକାଳ ବିଷୟରେ ବିଭିନ୍ନ ମତ

---

୧ । History of Oriya Literature—Dr. M. Mansingh, P-36.

ମତାନ୍ତର ରହିଛି । କେତେକ ଆଲୋଚକ ଏହାକୁ ଷୋଡ଼ଶ ବା ସପ୍ତଦଶ ଓ ଆଉ କେତେକ ଅଷ୍ଟାଦଶ ଶତାବ୍ଦୀର ରଚନା ବୋଲି ଗ୍ରହଣ କରିଛନ୍ତି ।୨। ଏକ କଳ୍ପିତ କାହାଣୀ ମଧ୍ୟରେ କବି ନାରାୟଣାନନ୍ଦ ବୈଷ୍ଣବଧର୍ମ, ବିଶେଷକରି ଶୈବଧର୍ମର ମହତ୍ତ୍ୱ ପ୍ରଖ୍ୟାପନ କରିଛନ୍ତି । ଏହି ଗ୍ରନ୍ଥରେ ଧର୍ମ ଓ ଦର୍ଶନ ତତ୍ତ୍ୱ ବ୍ୟାଖ୍ୟାନ ପ୍ରସଙ୍ଗରେ ମନ୍ୱାଦି ଶାସ୍ତ୍ର, ସାଂଖ୍ୟ, ପାତଞ୍ଜଳ, ମୀମାଂସା, ବୈଶେଷିକ,କୌମାରକ, ପାଶୁପତ, ନ୍ୟାୟ, ତର୍କ, ବୌଦ୍ଧ, ଅର୍ହତ, କାପାଳିକ, ଲୌକିକ, ବୃକ୍ଷାନୁପାସକ, ପାଷଣ୍ଡ, ଶାକ୍ତ, ଲିଙ୍ଗ, ଉପନିଷଦ୍, ବେଦାନ୍ତ, ଚିନ୍ତାମଣି ମତ ଆଦି ବିଂଶତି ମତର ସୂଚନା ଦିଆଯାଇଛି ।୩। କବି ଉକ୍ତ ଶାସ୍ତ୍ରଗୁଡ଼ିକ ସମ୍ବନ୍ଧରେ ପରିଚିତ ଥିବାର ମନେହୁଏ ।

କବି ନାରାୟଣାନନ୍ଦ ସନ୍ତାନଲାଭ ନିମିତ୍ତ ଗୃହାରାୟଣ, ଦେବର୍ଷିପିତୃପରିତୋଷଣ, ଯମାଦି ସମାଧି, ତୀର୍ଥାଟନ, ବୃକ୍ଷରୋପଣ, ପ୍ରାସାଦ, ମଠ ଓ ମଣ୍ଡପ ନିର୍ମାଣ, ପୁଷ୍କରିଣୀ, ବାପୀ ଓ କୂପ-ଖନନ, ଗୋଗ୍ରାସଦାନ, ଜଳଛତ୍ରଦାନ, ଭୂମି, ଅନ୍ନ ଓ ବସ୍ତ୍ରଦାନ ଏବଂ ଯଜ୍ଞକାର୍ଯ୍ୟାଦି ନିମିତ୍ତ ଉପଦେଶ ଦେଇଛନ୍ତି । ତଦ୍‌ବ୍ୟତୀତ ଜନ୍ମୋତ୍ସବ, ପୁରୁଷସୂକ୍ତ ପାଠ, ଆସନ ଶୁଦ୍ଧି, ଭୂତଶୁଦ୍ଧି, ମାତୃକାନ୍ୟାସ, ମନ୍ତ୍ରପୁରଶ୍ଚରଣ, ବେଦ, ଉପନିଷଦ, ମନୁ, ଯାଜ୍ଞବଲ୍କ୍ୟ, ଶଙ୍ଖ ଲିଖିତ ଓ ବୃହସ୍ପତି ସ୍ମୃତି, ଧର୍ମଶାସ୍ତ୍ର-ମୀମାଂସା, ପାତଞ୍ଜଳ, ବୈଶେଷିକ, ନ୍ୟାୟ, ଆଗମ, ବେଦାଙ୍ଗ ଅଷ୍ଟାଦଶ ପୁରାଣ ଓ ଉପପୁରାଣ, ଜ୍ୟୋତିଷ ସହିତ ଅଷ୍ଟାଦଶ ବିଦ୍ୟା ଅଧ୍ୟୟନ ପ୍ରଭୃତିର ଉଲ୍ଲେଖ ଥିବାରୁ 'ରୁଦ୍ରସୁଧାନିଧି'ରେ ସ୍ମୃତିଶାସ୍ତ୍ରର ସୁସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୁଏ ।୪।

ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ଶେଷଭାଗ ବେଳକୁ ଓଡ଼ିଶାର ସ୍ମୃତିକାରମାନଙ୍କ ମଧ୍ୟରେ ଶତାନନ୍ଦ ଆଚାର୍ଯ୍ୟଙ୍କ 'ଶତାନନ୍ଦ ସଂଗ୍ରହ', ବାଜପେୟୀ ଶମ୍ଭୂକର ମିଶ୍ରଙ୍କ 'ଶମ୍ଭୂକର ପଦ୍ଧତି', ବାଜପେୟୀ ବିଦ୍ୟାକର ମିଶ୍ରଙ୍କ 'ନିତ୍ୟାଚାର ପଦ୍ଧତି', ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ' ଓ ବାଜପେୟୀ ରାମଚନ୍ଦ୍ର ଦାଶଙ୍କ 'କର୍ମାଙ୍ଗ ପଦ୍ଧତି' ସ୍ମୃତିଗ୍ରନ୍ଥ ଅନୁସାରେ ବିଭିନ୍ନ ପ୍ରକାର ବୈଦିକ ଯଜ୍ଞ, ବ୍ରତ ଓ ସ୍ୱାର୍ତ୍ତିକୃତ୍ୟମାନ ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ଏହା ଫଳରେ ପୌରାଣିକ ଦେବଦେବୀମାନଙ୍କ ଉପାସନା ନିମିତ୍ତ ଓଡ଼ିଆ ସାହିତ୍ୟରେ ଏକ

---

୨ । (କ) ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ—ପଣ୍ଡିତ ନୀଳମଣି ମିଶ୍ର—ପୃ-୩୫

(ଖ) ଓଡ଼ିଆ ସାହିତ୍ୟର କ୍ରମବିକାଶ—ସୁରେନ୍ଦ୍ର ମହାନ୍ତି—ପୃ-୧୧

୩ । ରୁଦ୍ରସୁଧାନିଧି—ପ୍ରଫେସର ପ୍ରହ୍ଲାଦ ପ୍ରଧାନ—ଡଗର, ଜୁଲାଇ ୧୯୬୯, ପୃ-୨

୪ । (କ) ରୁଦ୍ରସୁଧାନିଧି—ଡକ୍ଟର କରୁଣାକର କର—ପୃ. ୪୩-୫୫, ୧୭, ୧୦୦-୧୦୧

(ଖ) ପ୍ରପାରାମତଡ଼ାଗାଦି ସର୍ବକାମ ଫଳଂ ଧ୍ରୁବମ୍ ।
ତଦାକର୍ମ୍ମି କର୍ମିତ୍ୟାହୁର୍ବା ସ୍ମୃତେ ଯଦ୍ ଦିନେ ଦିନେ ॥
ଅପତ୍ୟବିକଲ୍ପୈଶ୍ୱର୍ଯ୍ୟ ସ୍ତ୍ରୀ ବାଲାର୍ଥଂ ଯଦର୍ଚ୍ୟତେ ।
ଇଚ୍ଛାସଙ୍ଗଂ ତୁ ତଦାନଂ କାମ୍ୟମିତ୍ୟଭିଧୀୟତେ ॥ (ହେମାଦ୍ରି-ଦାନ—ପୃ-୮୭)

ସ୍ୱତନ୍ତ୍ର ବିଷୟବସ୍ତୁରୂପେ ବ୍ରତକଥାଗୁଡ଼ିକ ଅନୂଦିତ ଓ ପ୍ରଚ୍ଛନ୍ନ ହେଲା । ଶ୍ରୌତ ଓ ସ୍ମାର୍ତ୍ତ ପଦ୍ଧତି ଅନୁସାରେ ବିଭିନ୍ନ ଦେବଦେବୀଙ୍କ ଉପାସନାକୁ ଓଷା ବିଭାଗରେ ଅନ୍ତର୍ଗତ କରାଗଲା । ଭାଷା ଓ ଶୈଳୀକୁ ବିଚାର କରି ପଣ୍ଡିତ ଓ ଐତିହାସିକମାନେ ଗଦ୍ୟାତ୍ମକ ଓ ପଦ୍ୟାତ୍ମକ ଉଭୟ ପ୍ରକାର ଓଷା ଓ ବ୍ରତକଥାଗୁଡ଼ିକର ପ୍ରାରମ୍ଭ କାଳ ଖ୍ରୀଷ୍ଟୀୟ ଷୋଡ଼ଶ-ଚତୁର୍ଦ୍ଦଶ ଶତାବ୍ଦୀ ବୋଲି ସ୍ୱୀକାର କରିଛନ୍ତି ।୫ ଓଷା ଓ ବ୍ରତରେ ବ୍ୟକ୍ତିବିଶେଷ ନିଜନିଜର ଧର୍ମବିଶ୍ୱାସ ଅନୁସାରେ ସ୍ୱାଧୀନଭାବେ ଇଷ୍ଟଦେବତାଙ୍କର ଆରାଧନା କରିଥାନ୍ତି । ଓଡ଼ିଆ ଓଷା ଓ ବ୍ରତକଥାଗୁଡ଼ିକର ଅନୁଶୀଳନରୁ ଜଣାଯାଏ ଯେ, ଉପାସକ ଓ ଉପାସିକାଙ୍କ ଦ୍ୱାରା ଅନୁସୃତ ବିଧିବିଧାନରେ ଓଡ଼ିଶାର ଖାଦ୍ୟପେୟ, ବେଶଭୂଷା, ସଂସ୍କୃତିସମ୍ମତ ଆଚାର-ବ୍ୟବହାର ସହିତ ଧାର୍ମିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥାର ପ୍ରକୃତ ରୂପାୟନ ଦେଖାଯାଏ ।

ଓଡ଼ିଶାରେ ଗଜପତି ରାଜତ୍ୱକାଳ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସୁବର୍ଣ୍ଣ ଯୁଗ ରୂପେ ଅଭିହିତ । ସୂର୍ଯ୍ୟବଂଶୀୟ ଗଜପତି କପିଳେନ୍ଦ୍ର ଦେବଙ୍କ (୧୪୩୫-୧୪୬୬ ଖ୍ରୀ: ଅ:) ସମୟରେ ମହାକବି ସାରଳା ଦାସ ଓଡ଼ିଆ ଭାଷାରେ ମହାଭାରତ ଗ୍ରନ୍ଥ ରଚନା କରିଥିଲେ । ଏହା 'ସାରଳା ମହାଭାରତ' ନାମରେ ସୁବିଦିତ । ଏହି 'ସାରଳା ମହାଭାରତ' ହିଁ ଓଡ଼ିଆ ଭାଷାର ପ୍ରଥମ, ବୃହତ୍ତମ ଓ ସର୍ବୋତ୍ତମ ସାହିତ୍ୟିକ ସୃଷ୍ଟି । କେବଳ ଓଡ଼ିଆ ଭାଷାରେ ନୁହେଁ, ପୂର୍ବାଞ୍ଚଳୀୟ ଭାଷାଗୁଡ଼ିକ ମଧ୍ୟରେ 'ସାରଳା ମହାଭାରତ' ପ୍ରଥମ ସ୍ଥାନୀୟ ।୬ ସାରଳା ଦାସ ମହାଭାରତ ବ୍ୟତୀତ ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ, ସପ୍ତକାଣ୍ଡ ରାମାୟଣ, ଦେବୀସ୍ତୁତି ପରକ ମାଳଶ୍ରୀ କବିତାମାନ ରଚନା କରିଥିବାର ଜଣାଯାଏ । ତନ୍ମଧ୍ୟରେ 'ମହାଭାରତ' ହେଉଛି ଓଡ଼ିଆ ସାହିତ୍ୟର ସର୍ବଶ୍ରେଷ୍ଠ ଗ୍ରନ୍ଥ । 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ'—ଉକ୍ତିଟି ସାରଳା ମହାଭାରତ ପକ୍ଷରେ ସର୍ବତୋଭାବେ ପ୍ରଯୁଜ୍ୟ । ଓଡ଼ିଶା ଓ ଓଡ଼ିଆ ଜାତିର ଐତିହ୍ୟ, ସଂସ୍କୃତି ଓ ଜୀବନଧାରାର ଏପରି କୌଣସି ବିଭାବ ନାହିଁ; ଯାହା 'ସାରଳା ମହାଭାରତ'ରେ ବର୍ଣ୍ଣିତ ହୋଇନାହିଁ । ତେଣୁ ଓଡ଼ିଆଜାତିର ଯଥାର୍ଥ ପରିଚୟ ପାଇଁ ସାରଳା ସାହିତ୍ୟ, ବିଶେଷ କରି, ସାରଳା ମହାଭାରତର ଅଧ୍ୟୟନ ଏକାନ୍ତ ପ୍ରୟୋଜନ ।୭

ମହାକବି କାଳିଦାସଙ୍କ ଭଳି ସାରଳା ଦାସ ବିନୀତଭାବେ ନିଜକୁ ଶୂଦ୍ର, ମୂର୍ଖ, ଅପଣ୍ଡିତ, ମନ୍ଦଜ୍ଞାନ, ଜପଜ୍ଞାନ, ହିଂସାତ୍ମ ସାଧାରଣ ବ୍ୟକ୍ତିଭାବେ ବର୍ଣ୍ଣନା କରିଥିଲେ ମଧ୍ୟ ସେ ଯେ ଜଣେ ମହାପଣ୍ଡିତ ଥିଲେ, ତାହା ତାଙ୍କ ରଚନାରେ ସ୍ପଷ୍ଟଭାବେ ପ୍ରମାଣିତ ହୋଇଛି ।୮

---

୫ । History of Oriya Literature—P. 37.

୬ । ଓଡ଼ିଆ ସାହିତ୍ୟର ଇତିହାସ-୨ୟ ଭାଗ—ବଂଶୀଧର ମହାନ୍ତି, ପୃ-୧୦୭

୭ । History of Oriya Literature—P-67.

୮ । Ibid—P. 52.

ପୁରାଣ, ଧର୍ମଶାସ୍ତ୍ର, ଜ୍ୟୋତିଷ, ତନ୍ତ୍ର, ଯୋଗ, ଗଣିତ, ଗାନ୍ଧର୍ବବିଦ୍ୟା ଓ ଯୋଗବିଦ୍ୟାରେ ସେ ପାରଦର୍ଶୀ ଥିବାର ଜଣାଯାଏ । ତାଙ୍କ ରଚନାର ଛତେ ଛତେ ଏହି ଶାସ୍ତ୍ରଗୁଡ଼ିକର ତାତ୍ତ୍ୱିକ ବ୍ୟାଖ୍ୟାନ ଲକ୍ଷ୍ୟ କରାଯାଏ । ସାମାଜିକ ଚିତ୍ର ଦେବାକୁ ଯାଇ ସାରଳା ଦାସ ପ୍ରସଙ୍ଗକ୍ରମେ ଅଶୌଚ, ଆଚାର, ଦାନ, ଭକ୍ତି, ଯଜ୍ଞ, ରାଜଧର୍ମ, ବ୍ରତ, ଶୁଦ୍ଧି, ଶ୍ରାଦ୍ଧ, ସଂସ୍କାର ପ୍ରଭୃତି ସ୍ମୃତିଶାସ୍ତ୍ରୀୟ ବିଧାନ ସହିତ ଲୌକିକ ବ୍ୟବହାରକୁ ଯେପରି ସହଜ ଓ ସରଳ ଭାବେ ବର୍ଣ୍ଣନା କରିଛନ୍ତି, ସେଥିରୁ ତାଙ୍କର ଶାସ୍ତ୍ର ଅନୁଶୀଳନାତ୍ମକ ବିଚାରର ସ୍ପଷ୍ଟ ପ୍ରମାଣ ମିଳେ ।

ରଜୋବତୀ ନାରୀ ସହିତ ସହବାସ ଓ ଶୁଦ୍ଧସ୍ନାତା ନାରୀର ସଙ୍ଗମ-ପ୍ରତ୍ୟାଖ୍ୟାନରେ ପୁରୁଷ ବିଭିନ୍ନ ପ୍ରକାରେ ପାପଭାଗୀ ହୁଏ ।୯। ସାରଳା ମହାଭାରତର ବହୁ ସ୍ଥଳରେ ଏହାର ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇଛି । ରଜୋବତୀ ନାରୀ ପଞ୍ଚମ ଦିବସରେ ଦେବପିତୃକାର୍ଯ୍ୟ ପାଇଁ ଯୋଗ୍ୟା ହୁଏ ।୧୦। ଉତ୍ତରାର ରଜୋବତୀ ହେବା ପ୍ରସଙ୍ଗରେ ପ୍ରଥମ ରଜୋଦର୍ଶନକାଳର ଶୁଭାଶୁଭ ସାରଳା ଦାସ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି ।୧୧। ଉତ୍କଳୀୟ ସ୍ମୃତିବିଧାନ ଅନୁଯାୟୀ ପିତୃଗୃହରେ କନ୍ୟା ରଜୋବତୀ ହେଲେ ପିତୃପୁରୁଷ ପାଣି ପାଆନ୍ତି ନାହିଁ । ସେଥିପାଇଁ କନ୍ୟାର ବିବାହ ହୋଇ ନ ପାରିବାରୁ ପିତା ସୂର୍ଯ୍ୟଦେବ ବିଶେଷଭାବେ ମନୋଦୁଃଖ ପ୍ରକାଶ କରିଛନ୍ତି ।୧୨। ତେଣୁ ମନୁସ୍ମୃତି ଅନୁଯାୟୀ ଅରଜସ୍କା କନ୍ୟାଦାନକୁ କବି ଗୁରୁତ୍ୱ ଦେଇ ଶାସ୍ତ୍ରୀୟ ବିଧାନକୁ ସ୍ୱୀକାର କରିଛନ୍ତି । ସୂର୍ଯ୍ୟଙ୍କ କନ୍ୟା ତପତୀ, ଦ୍ରୁପଦରାଜ କନ୍ୟା ଦ୍ରୌପଦୀ, ବିରାଟ ରାଜାର କନ୍ୟା ଉତ୍ତରାଙ୍କୁ ରଜୋବତୀ ହେବା ପୂର୍ବରୁ ବିବାହ ଦିଆଯାଇଛି । ପାଞ୍ଚାଳୀ ହସ୍ତିନାରେ ରଜୋବତୀ ହୋଇଥିବାର ଜଣାଯାଏ ।୧୩। ଓଡ଼ିଶାର ସ୍ମୃତିକାରମାନେ ଏହି ପ୍ରଥାକୁ ସ୍ୱୀକୃତି ଦେଇଛନ୍ତି ।୧୪।

---

୯ । ଭ୍ରୂଣହତ୍ୟାମବାପ୍ନୋତି ଋତୌ ଭାର୍ଯ୍ୟାପରାଙ୍ମୁଖଃ ।
ସା ତ୍ୱବାପ୍ୟାନ୍ୟତୋ ଗର୍ଭଂ ତ୍ୟାଜ୍ୟା ଭବତି ପାପିନୀ ॥ (ବ୍ୟାସ ସଂହିତା—୧-୪୬)

୧୦ । ସାରଳା ମହାଭାରତ (ସାଃ ମଃ)—ଆଦି—ପୃଷ୍ଠା ୨୩

୧୧ । ସା:ମ:—ଉଦ୍ଯୋଗ—ପୃ. ୧୨-୧୩

୧୨ । (କ) ଦୁହିତା ହୋଇ ଯେବେ ପିତା ଘରେଣ ରଜୋବତୀ ।
ପିତୃଲୋକମାନେ ସେ ପାବନ୍ତି ନର୍କଗତି ॥ (ଆଦି—ପୃ-୧୫)

(ଖ) ଦୁହିତା ହୋଇଲେ ପିତା ଘରେ ରଜୋବତୀ ।
ଏକୋଇଶ ପୁରୁଷ ସେ ତାର ନର୍କଗତି ॥ (ଆଦି – ପୃ-୧୮)

(ଗ) ପ୍ରାପ୍ତେ ତୁ ଦ୍ୱାଦଶବର୍ଷେ ଯଃ କନ୍ୟାଂ ନ ପ୍ରୟଚ୍ଛତି ।
ମାସି ମାସି ରଜସ୍ତସ୍ୟାଃ ପିବନ୍ତି ପିତରଃ ସ୍ୱୟମ୍ ॥ (ପରାଶର ସଂହିତା—୭. ୬)

୧୩ । ସା:ମ:—ମଧ୍ୟ—ପୃ-୪ ।

୧୪ । ନିତ୍ୟାଚାର ପଦ୍ଧତି—ବିଦ୍ୟାକର ବାଜପେୟୀ—ପୃଷ୍ଠା-୨୮୧, ୨୮୬ ଓ ୨୯୨ ।

ସାରଳା ମହାଭାରତରେ ବର୍ଣ୍ଣିତ ବିବାହ ପ୍ରସଙ୍ଗ ବିଶେଷ ଉଲ୍ଲେଖଯୋଗ୍ୟ । ସଂସ୍କାର ମଧ୍ୟରେ ଜନ୍ମ, ବିବାହ ଓ ଅନ୍ତ୍ୟେଷ୍ଟି ଏହି ତିନୋଟି ମୁଖ୍ୟ । ତନ୍ମଧ୍ୟରେ ବିବାହ-ସଂସ୍କାରଟି ମହା-ଆଡ଼ମ୍ବରରେ ପାଳିତ ହୁଏ । ବିବାହରେ ବର ଓ କନ୍ୟାଙ୍କ ଜାତି, କୁଳ, ବୟସ, ରୂପ, ଗୁଣ, ଚରିତାଦି ବିଷୟକୁ ପ୍ରାଧାନ୍ୟ ଦିଆଯାଇଥାଏ । ବିବାହ ସମ୍ବନ୍ଧୀୟ ସ୍ମୃତିଶାସ୍ତ୍ରସମ୍ମତ ବିଧାନ ବିଷୟରେ ମହାକବି ସାରଳା ଦାସ ଯଥେଷ୍ଟ ପାଣ୍ଡିତ୍ୟ ଅର୍ଜନ କରିଥିବାର ପ୍ରମାଣ ମିଳେ । ସବର୍ଣ୍ଣ ବିବାହ ଓ ଅରଜସ୍କା କନ୍ୟାର ବିବାହକୁ ସାରଳା ଦାସ ପ୍ରଶଂସା କରିଛନ୍ତି । ଏହାର ଦୃଷ୍ଟାନ୍ତ ସ୍ୱରୂପ ବେଦଶ୍ରବା, ଶମ୍ଭୀକର, କାଶୀପତି, କୌଶିକ ବ୍ରାହ୍ମଣ, ହରି ବୈଶ୍ୟ, ତପତୀ, ଦ୍ରୌପଦୀ ଓ ଉତ୍ତରାଙ୍କ ବିବାହ ଉଲ୍ଲେଖନୀୟ ।୧୫। ତଥାପି ସାରଳା ଦାସଙ୍କ ଅଧିକାଂଶ ନାୟିକା ଯୁବତୀ ବୟସରେ ବିବାହ କରିଛନ୍ତି । ବ୍ରାହ୍ମଣ ବ୍ୟତୀତ ଅନ୍ୟ ବର୍ଣ୍ଣରେ ବିଶେଷ କରି କ୍ଷତ୍ରିୟ ପରିବାରରେ ରଜୋବତୀ ହେବା ପରେ କନ୍ୟାର ବିବାହ ବର୍ଣ୍ଣିତ ହୋଇଛି ।

ବରକନ୍ୟାଙ୍କ ଜାତକ-ବିଚାର, ଲଗ୍ନନିରୂପଣ, ମଙ୍ଗଳକୃତ୍ୟ, ସ୍ତ୍ରୀକୃତ ବିଧି, ବରଣ, ବାଗ୍‌ଦାନ, ଗନ୍ଧାଧିବାସ, ଲବଣଭ୍ରମଣୀ, କନ୍ୟାଦାନ, ହସ୍ତଗ୍ରନ୍ଥି, ଦଶଦୋଷ କ୍ଷମା ପ୍ରାର୍ଥନା, ଯୌତୁକଦାନ ଓ ବିବାହୋତ୍ତର ଲୌକିକ ବିଧାନଗୁଡ଼ିକ ସାରଳା ମହାଭାରତର ବହୁସ୍ଥଳରେ ବର୍ଣ୍ଣନା କରାଯାଇଛି ।୧୬। ଏହି ପ୍ରସଙ୍ଗରେ ସୁଭଦ୍ରା ପରିଣୟ, ଉତ୍ତରା ବିବାହ, ଦ୍ରୌପଦୀ ସ୍ୱୟଂବର, ଚନ୍ଦ୍ରାବତୀ ବିବାହ, ସୁଦାମିନି କନ୍ୟା ବିବାହ ପ୍ରଭୃତି ଉଲ୍ଲେଖଯୋଗ୍ୟ । ବିବାହ କାର୍ଯ୍ୟରେ ବ୍ରାହ୍ମଣବରଣ, ବେଦମନ୍ତ୍ରପାଠ ଓ ପୌରୋହିତ୍ୟ କର୍ମର ବର୍ଣ୍ଣନା କରାଯାଇଛି ।୧୭। ସାରଳା ଦାସ ଶ୍ରୀକୃଷ୍ଣଙ୍କ ବିବାହ ପୂର୍ବରୁ ବ୍ରହ୍ମାବରଣ, ବିଷ୍ଣୁମନ୍ତ୍ର ଜପ, ଶିବପୂଜା, ଦେବୀ-ପୂଜା, ଗ୍ରହଶାନ୍ତି ପ୍ରଭୃତି ସ୍ମୃତିଶାସ୍ତ୍ରୀୟ ରୀତିଗୁଡ଼ିକର ବର୍ଣ୍ଣନା କରିଛନ୍ତି ।୧୮। ସୁରେଖା ବିବାହରେ ମଧ୍ୟ ଅନୁରୂପ ବିଧି-ବିଧାନମାନ ଅନୁଷ୍ଠିତ ହୋଇଥିବାର ଦେଖାଯାଏ ।୧୯।

ବିବାହିତା ସ୍ତ୍ରୀ ଭାବେ ଅମ୍ବିକା, ଅମ୍ବାଲିକା, କୁନ୍ତୀ, ମାଦ୍ରୀ ପ୍ରଭୃତି ମହାଭାରତୀୟ ନାରୀଗଣ ପରପୁରୁଷ ସହିତ ସହବାସ କରି ସନ୍ତାନୋତ୍ପାଦନ କରିଥିଲେ । ତତ୍କାଳୀନ ଭାରତରେ ଏହାକୁ ନିୟୋଗ ପ୍ରଥା କୁହାଯାଉଥିଲା । କିନ୍ତୁ ପରବର୍ତ୍ତୀ କାଳରେ ସ୍ମୃତିକାରମାନେ ଏହି

---

୧୫ । ସା:ମ: —ଆଦି—ପୃଷ୍ଠା-୧୬୭-୨୩୦, ବନ—ପୃଷ୍ଠା-୩୧ ଓ ସ୍ୱର୍ଗ—ପୃଷ୍ଠା-୫

୧୬ । 'ସାରଳା ମହାଭାରତରେ ସାମାଜିକ ଜୀବନ'—ଡ: ଦୀନବନ୍ଧୁ ରଥ, ପୃଷ୍ଠା-୩୨-୭୫

୧୭ । ସା:ମ:—ମଧ୍ୟ—ପୃଷ୍ଠା-୧୫୦, ୨୮୬, ବିରାଟ—ପୃଷ୍ଠା-୧୮୨, ସ୍ୱର୍ଗ—ପୃଷ୍ଠା-୭ ଓ ଆଦି—ପୃଷ୍ଠା-୩୫୦

୧୮ । ସା:ମ: —ଆଦି—ପୃଷ୍ଠା-୫୦

୧୯ । ସା:ମ:—ମଧ୍ୟ—ପୃଷ୍ଠା-୩୦୬-୩୦୭

ପ୍ରଥାକୁ କଳିବର୍ଜ୍ୟ ମଧ୍ୟରେ ଗ୍ରହଣ କରିଥିଲେ । ତଦନୁଯାୟୀ ସାରଳା ଦାସ ମଧ୍ୟ ପରପୁରୁଷ-ଗ୍ରହଣକୁ ଗର୍ହିତ କାର୍ଯ୍ୟ ବୋଲି କୁନ୍ତୀଙ୍କ ମୁଖରେ ବର୍ଣ୍ଣନା କରିଛନ୍ତି ।୨୦। ସେହିପରି ଖଣ୍ଡକାର ବୃତ୍ତାନ୍ତରେ ପରଦାରାହରଣକୁ ମଧ୍ୟ ନିନ୍ଦା କରାଯାଇଛି ।୨୧। ଅଜ୍ଞାନକୃତ ଓ ଜ୍ଞାନକୃତ ଅପରାଧ ମଧ୍ୟରେ ଦ୍ୱିତୀୟ ଅପରାଧ ପାଇଁ ସ୍ମୃତି ଓ ସ୍ମୃତିକାରମାନେ କଠୋର ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ପ୍ରଦାନ କରିଛନ୍ତି । ଏହାର ଦୃଷ୍ଟାନ୍ତ ସାରଳାଙ୍କ ଲେଖାରେ ସ୍ପଷ୍ଟଭାବେ ପ୍ରତିଫଳିତ ହୋଇଛି ।୨୨। ପରାଶର ଓ ସତ୍ୟବତୀ ଏବଂ ବ୍ୟାସ ଓ ଅମ୍ବିକାଙ୍କ ମିଳନପ୍ରସଙ୍ଗରେ କବି ପଞ୍ଚମହାପାତକର ସୂଚନା ଦେଇଛନ୍ତି ।୨୩। ପଞ୍ଚମହାପାତକ ମଧ୍ୟରେ ଗୋହତ୍ୟା ଓ ବ୍ରହ୍ମ-ହତ୍ୟା ଅଧିକ ଦୋଷାବହ । ଏ ପ୍ରକାର ମହାପାତକୀର ମୁକ୍ତି ନାହିଁ ।୨୪।

ଭାରତୀୟ ସମାଜରେ ପୁରୁଷର ପ୍ରାଧାନ୍ୟ ରହିଆସିଛି । ତେଣୁ ଭାରତରେ ନାରୀମାନେ ସ୍ୱାମୀର ମଙ୍ଗଳ ପାଇଁ ଯେପରି ସର୍ବସ୍ୱ ଦାନ କରିଥାନ୍ତି, ସେହିପରି ପୁତ୍ରବତୀ ହେବା ଅଭିଳାଷରେ ଯେକୌଣସି ପ୍ରକାର ସୁକାର୍ଯ୍ୟ ବା କୁକାର୍ଯ୍ୟ କରିବାକୁ ପଛାନ୍ତି ନାହିଁ । ପୁତ୍ରଲାଭ ନିମିତ୍ତ ଯଜ୍ଞଠାରୁ ଆରମ୍ଭ କରି ପୁରାଣପାଠ, ବୈଦିକ ବ୍ରାହ୍ମଣବରଣ, ମନ୍ତ୍ର-ପୁରଶ୍ଚରଣ ପ୍ରଭୃତି ବିଭିନ୍ନ ପ୍ରକାର ଅନୁଷ୍ଠାନ କରାଯାଏ । ଗାନ୍ଧାରୀଙ୍କ ସନ୍ତାନ ଲାଭ ନିମିତ୍ତ ଏ ସମସ୍ତ ଅନୁଷ୍ଠାନ କରାଯାଇଥିଲା ।୨୫। ପୁତ୍ରପ୍ରାପ୍ତି ପାଇଁ ସ୍ମୃତିଶାସ୍ତ୍ରସମ୍ମତ ବିଧାନ ମଧ୍ୟରେ ପୁତ୍ରେଷ୍ଟି, ତୀର୍ଥରେ ଦାନ, ରାମାୟଣ ପାଠ, ପୋଷ୍ୟପୁତ୍ରଗ୍ରହଣ, ନିୟୋଗ ଭଣଜାକୁ କନ୍ୟାଦାନ, ବୃକ୍ଷରୋପଣାଦି କାର୍ଯ୍ୟ କରିବା ନିମିତ୍ତ ସାରଳା ଦାସ ଉପଦେଶ ଦେଇଛନ୍ତି ।୨୬। ପୁତ୍ର ଜନ୍ମ ପରେ ପରେ

---

୨୦ । କେ ଧର୍ମପୁରୁଷ ଯେହେତୁଁକ ମୋର କର୍ମ ।
କେବଣ ପାପ କ୍ଷଣେ ହୋଇଅଛି ମୁହିଁ ଜନ୍ମ ॥
ଜନ୍ମରେ ସ୍ତ୍ରୀର ମୁଁ ହୋଇଲି ଅସତୀ ।
କେତେ ଭ୍ରୂଆରେ ହିନ ଯିବ କର୍ମରେ ଅଗତି ॥ (ଆଦି—ପୃ-୨୦୦)

୨୧ । ସା:ମ:—ଆଦି—ପୃଷ୍ଠା-୫୨୬—୫୨୭

୨୨ । ଅଜ୍ଞାନୀ ପ୍ରାଣୀଙ୍କର ପାପପୁଣ୍ୟ ନାହିଁ ।
ଦଣ୍ଡିତ ହୋଇ ପାପ କଲେ ମୋକ୍ଷ ଅଛି କାହିଁ ॥ (ଆଦି—ପୃ-୭୯)

୨୩ । ପରସ୍ତ୍ରୀରି ବ୍ରହ୍ମସ୍ତ୍ରୀର ଆବର ଗୁରୁଙ୍କ ପତ୍ନୀ ।
ଏଥିରେ ପାପପୁଣ୍ୟ ଅଛି ଭୁମ୍ଭେ ଜ୍ଞାନୀ ॥ (ଆଦିପର୍ବ)

୨୪ । (କ) ଗୋହତ୍ୟା ଯେ ବ୍ରହ୍ମହତ୍ୟା ନ କରନ୍ତି କେହି ।
ଏହାକୁ ମାରନ୍ତେ ମୋର ମୋକ୍ଷ-ଗତି ନାହିଁ ॥ (ଆଦି—ପୃ-୧୮୭)
(ଖ) ଗୋହତ୍ୟା ବ୍ରହ୍ମହତ୍ୟା ମାତୃହରଣ ଯାହାର ଅଛଇ ।
ସେ ଲୋକଙ୍କ ପିଣ୍ଡ ଯେ ଅନଳ ନ ଭକ୍ଷଇ ॥ (ମୂଷଳୀ—ପୃ-୫୬)

୨୫ । ସା:ମ:—ଆଦି—ପୃଷ୍ଠା-୬୧

୨୬ । ସା:ମ:—ଆଦି—ପୃଷ୍ଠା-୯୨

ଜାତକର୍ମ-ସଂସ୍କାରକୁ ସାରଳା ମହାଭାରତରେ 'ଅର୍ଘ୍ୟ ବନ୍ଧାପନା' ରୂପେ ବର୍ଣ୍ଣନା କରାଯାଇଛି । ତଦ୍‌ବ୍ୟତୀତ ସୂତକାଶୌଚକାଳୀନ ବ୍ୟବସ୍ଥା, ଜନ୍ମକାଳୀନ ଶୁଭାଶୁଭ ବିଚାର, ଏକୋଇଶ ଓ ତିରିଶ ଦିନରେ ଦେବଦର୍ଶନ, ଅନ୍ନଦାନ, ଦେବଦେବୀପୂଜା, ବ୍ରାହ୍ମଣବରଣାଦି କୃତ୍ୟ ବିଷୟରେ ସାରଳା ଦାସ ସୂଚନା ଦେଇଛନ୍ତି ।୨୭। ପ୍ରସଙ୍ଗକ୍ରମେ ବହୁକୁଟୁମ୍ବୀ-ବ୍ୟବସ୍ଥାକୁ ସାରଳା ଦାସ ନିନ୍ଦା କରିଛନ୍ତି ।୨୮।

ଓଡ଼ିଶାରେ ମରଣାଶୌଚ ଦଶଦିନ ପାଳିତ ହୁଏ । ଏହି ବିଧି ବର୍ଣ୍ଣନିର୍ବିଶେଷରେ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ବୋଲି ଓଡ଼ିଶାର ସ୍ମୃତିକାରମାନେ ଉଲ୍ଲେଖ କରିଛନ୍ତି ।୨୯। ତଦନୁଯାୟୀ ଜତୁଗୃହଦାହ ପରେ କୌରବମାନେ ପାଣ୍ଡବମାନଙ୍କ ପ୍ରେତକୃତ୍ୟ ପାଳନ କରିଥିଲେ ।୩୦। ଉଦ୍ଦାଳକ ପୁରୋହିତଙ୍କ ଦ୍ୱାରା ପଣ୍ଡୁରାଜାଙ୍କ ଅନ୍ତ୍ୟେଷ୍ଟିକୃତ୍ୟ ମଧ୍ୟ ସେହିପରି ପାଳିତ ହୋଇଥିଲା ।୩୧। ଏଥିରୁ ମୃତାହାଶୌଚରେ ଦଶଦିନରେ ଶୁଦ୍ଧି ଓ ଏକାଦଶ ଦିନରେ ଘୃତ-ମଧୁ (ଘିଅ ମହୁ) ବିଧି ଅନୁଷ୍ଠିତ ହୋଇଆସୁଥିବାର ଜଣାଯାଏ । ଅମ୍ବିକାଙ୍କ ଅନ୍ତ୍ୟେଷ୍ଟି ମଧ୍ୟ ଶାସ୍ତ୍ରୀୟ ରୀତିରେ ପାଳିତ ହୋଇଥିଲା ।୩୨। ତଦ୍‌ବ୍ୟତୀତ ସାରଳା ଦାସ ଆହ୍ନିକ କୃତ୍ୟ, ତିଳ-

---

୨୭ । ନିତ୍ୟାଗ୍ନିର ପଦ୍ଧତି—ବିଦ୍ୟାକର ବାଜପେୟୀ—ପୃଷ୍ଠା-୨୪୧-୨୪୪

୨୮ । (କ) ଶୁଣିଣ ବିରସ ହୋଇଲେ ଧୃତରାଷ୍ଟ୍ର ।
ଅପାର କୁଟୁମ୍ବେ ବହୁତ ଅଛି କଷ୍ଟ ॥ (ଆଦି—ପୃ-୨୪୫)

(ଖ) ଅପାର କୁଟୁମ୍ବରୁ ଅରଜିଲୁ ଧୃତରାଷ୍ଟ୍ର ।
ମୋହୋର ବିଚାରେ ତୋତେ ହୋଇବ ଅନେକ କଷ୍ଟ ॥ (ଆଦି—ପୃ-୫୭୮)

୨୯ । ସର୍ବେଷାମେବ ବର୍ଣ୍ଣାନାଂ ସୂତକେ ମୃତକେ ତଥା
ଦଶାହାଚ୍ଛୁଦ୍ଧିରଥବା ଇତି ଶାତାତପୋଽବ୍ରବୀତ୍ ॥ (କାଳସାର—ପୃ-୦୮୯)

୩୦ । (କ) କରନ୍ତି ଯେ କୁରୁବୀରେ ପ୍ରେତର ବିଧାନ ।
ରହିଲେ ଯଦୁନନ୍ଦନ ରାଜାର ଆସ୍ଥାନ ॥
ନବଦିନେ ନବଗୋଟି ପିଣ୍ଡଦାନ କଲେ ।
ଦଶଦିନ ପୁଣି ସେହି ଦଶପିଣ୍ଡ ଦେଲେ ॥ (ଆଦି—ପୃ-୮୭)

(ଖ) ସାːମଃ—ଆଦି—ପୃ-୫୭୮ ।

୩୧ । ଆପଣେ ପ୍ରୋହିତ ଯେ ମୁନି ଉଦ୍ଦାଳକେ ।
ପ୍ରେତକାର୍ଯ୍ୟେ ବିଧି କରନ୍ତି ବିଧିବାକ୍ୟେ ॥
ଶ୍ରାଦ୍ଧକର୍ମ ଯେ ଯେ କଲେ ଶମଶାନେ ।
ଘୃତ ପାରଣା କଲେ ଏକାଦଶ ଦିନେ ॥ (ଆଦି—ପୃ-୨୭୧)

୩୨ । ଚିତା ଆରୋପଣ କଲେ ନେଇ ଶମଶାନେ ।
ପ୍ରେତକାର୍ଯ୍ୟ କରାଇଲେ ଶାସ୍ତ୍ରର ବିଧାନେ ॥ (ଆଦି—ପୃ-୩୩୦)

ତର୍ପଣ, କର୍ଣ୍ଣ ଓ ହରିଶ୍ଚନ୍ଦ୍ର ଉପାଖ୍ୟାନରେ ଶ୍ରାଦ୍ଧ, ଦାନାଦି ଶାସ୍ତ୍ରୋକ୍ତ ବିଧାନଗୁଡ଼ିକର ଉଲ୍ଲେଖ କରିଥିବାର ଦେଖାଯାଏ ।୩୩। ବନ-ପର୍ବରେ ବର୍ଣ୍ଣିତ ଯୁଧିଷ୍ଠିର ଓ ଧର୍ମବକଙ୍କ ପ୍ରଶ୍ନୋତ୍ତର ମଧ୍ୟରେ ଧର୍ମସମ୍ବନ୍ଧୀୟ ଗୂଢ଼ତତ୍ତ୍ୱମାନ ଆଲୋଚିତ ହୋଇଛି ।୩୪। ସେହିପରି ମଧ୍ୟପର୍ବରେ ଧର୍ମସ୍ଥାନ ବିଷୟରେ ସାରଳାଦାସ ସ୍ମୃତି-ପ୍ରସିଦ୍ଧିମାନ ଉଲ୍ଲେଖ କରିଛନ୍ତି ।୩୫।

ସାରଳା ଦାସ ଯଜ୍ଞ ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା କରିଥିବାର ଦେଖାଯାଏ । ତନ୍ମଧ୍ୟରେ ପୁତ୍ରଲାଭ ନିମିତ୍ତ ଯଜ୍ଞ, ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଓ ଅଶ୍ୱମେଧ ଯଜ୍ଞ, ରାମକୃଷ୍ଣଙ୍କ ଅଶ୍ୱମେଧ ଯଜ୍ଞର ନାମ ଉଲ୍ଲେଖଯୋଗ୍ୟ । ଏଥିରେ ଯଜ୍ଞୀୟ ଉପାଦାନ ଓ ବିଧିବିଧାନମାନ ବର୍ଣ୍ଣିତ ହୋଇଛି ।୩୬। ଉତ୍ତରା ଓ ଅଭିମନ୍ୟୁଙ୍କ ବିବାହରେ ଲାଜାହୋମ ପ୍ରସଙ୍ଗରେ ଧୌମ୍ୟ ପୁରୋହିତ ଯଜ୍ଞକୁଣ୍ଡ ନିର୍ମାଣ-ବିଧି, ଅଗ୍ନିଦେବତାଙ୍କ ସ୍ୱରୂପ ଆୟୁଧ ଓ ଆହୁତି ଦାନର ବିଧି ବିସ୍ତୃତଭାବେ ଉଲ୍ଲେଖ କରାଯାଇଛି ।୩୭। ଯଜ୍ଞକାର୍ଯ୍ୟରେ ଚାରିବେଦର ବ୍ରାହ୍ମଣବରଣ ଓ ଦକ୍ଷିଣାଦାନ ଅନିବାର୍ଯ୍ୟ ବୋଲି ମହାକବି ବିଚାର କରିଛନ୍ତି ।

ସାରଳା ଦାସ ଯୁଧିଷ୍ଠିରଙ୍କ ମୁଖରେ ରାଜଧର୍ମ ବିଷୟରେ କହିବାକୁ ଯାଇ ରାଜ୍ୟ, ରାଜା, ରାଜାଙ୍କ ଗୁଣାଗୁଣ, କର୍ତ୍ତବ୍ୟାକର୍ତ୍ତବ୍ୟ ଓ କ୍ଷତ୍ରିୟକୁଳଧର୍ମମାନ ବୁଝାଇଛନ୍ତି ।୩୮। ଦୁର୍ଯ୍ୟୋଧନଙ୍କ ପ୍ରତି ଗାନ୍ଧାରୀଙ୍କ ଉଦ୍‌ବୋଧନ ଓ ପରୀକ୍ଷିତଙ୍କୁ ଯୁଧିଷ୍ଠିରଙ୍କ ଉପଦେଶରେ ରାଜଧର୍ମ ବ୍ୟାଖ୍ୟା କରାଯାଇଥିବାର ଲକ୍ଷ୍ୟ କରାଯାଏ ।୩୯।

ସାରଳା ମହାଭାରତରେ ଚାତୁର୍ମାସ୍ୟ ବ୍ରତ, ସିଂହ-ବୃହସ୍ପତି ଯୋଗ, ତୀର୍ଥଯାତ୍ରାଦି ଧାର୍ମିକ କୃତ୍ୟର ଉଲ୍ଲେଖ ଅଛି ।୪୦। ତଦ୍‌ବ୍ୟତୀତ ଏକାଦଶୀବ୍ରତ, କାର୍ତ୍ତିକ ପୂର୍ଣ୍ଣିମା, ସ୍ନାନ, ବନଦୁର୍ଗା-ପୂଜା, ମଙ୍ଗଳବାର ଓଷା, ମଙ୍ଗଳାପୂଜା, ଅକ୍ଷୟ-ତୃତୀୟା, ଚନ୍ଦନଯାତ୍ରା, ବିନାୟକ ବ୍ରତ, ରଥଯାତ୍ରା, କୁମାରପୂର୍ଣ୍ଣିମା, ପୁଷ୍ୟାଭିଷେକ, ଭୀଷ୍ମ ପଞ୍ଚକ, ମାଘସ୍ନାନ, ଶିବରାତ୍ରି ବ୍ରତର ଫଳା-ଫଳ ଓ ପାଳନ ବିଧି ବିଷୟରେ ସାରଳା ଦାସ ଉପଦେଶ ଦେଇଥିବାର ଦେଖାଯାଏ ।୪୧।

୩୩ । ସା:ମ:—ବନ—ପୃ-୧୬.୧୮, ୨୫-୯୧, ୧୪୦ ଓ ୨୮୦ ।

୩୪ । ସା:ମ:—ବନ—ପୃ-୧୦୧-୧୦୮ ।

୩୫ । ସା:ମ:—ମଧ୍ୟ—ପୃ-୧୨୩ ।

୩୬ । ସା:ମ:—ବିରାଟ—ପୃ-୧୮୩ ।

୩୭ । କୃତ୍ୟାଗ୍ନିର ପଦ୍ଧତି—ବିଦ୍ୟାକର ବାଜପେୟୀ—ପୃ-୩୧୯-୩୨୩ ।

୩୮ । ସା:ମ:—ସଭା—ପୃ-୨୩୫ ।

୩୯ । ସା:ମ:—ଆଦି—ପୃ-୮୮. ୮୯ ଓ ୧୩୧, ସ୍ୱର୍ଗ—ପୃ-୩. ୧୨ ।

୪୦ । ସା:ମ:—ଆଦି—ପୃ-୪୨ ଓ ୨୨୧ ।

୪୧ । ସା:ମ:—ଆଦି—ପୃ-୧୦ ଓ ୪୩, ମଧ୍ୟ—ପୃ-୨, ୧୫୫ ଓ ୩୩୩, ବିରାଟ—ପୃ-୫୪, ବନ—ପୃ-୩୧, ଉଦ୍‌ଯୋଗ—ପୃ. ୧୫, ମୁଷଳୀ—ପୃ-୨, ଭୀଷ୍ମ—ପୃ-୧୪୧, ଶାନ୍ତି—ପୃ-୧୧ ଏବଂ ଦ୍ରୋଣ—ପୃ-୫୭ ।

ବହୁ ପୌରାଣିକ ଦେବଦେବୀଙ୍କ ସହିତ ଗଣେଶ, ଭାସ୍କର, କୃଷ୍ଣ-ଜଗନ୍ନାଥ, ଶିବ, ଦୁର୍ଗାଦି ପଞ୍ଚଦେବତାଙ୍କ ସ୍ତୁତି ଓ ଉପାସନା ବିଧିସ୍ଥ ସାରଳା ମହାଭାରତରେ ମୁଖ୍ୟସ୍ଥାନ ଲାଭ କରିଛି ।୪୨। ସ୍ୱର୍ଗାରୋହଣ-ଖଣ୍ଡରେ ବ୍ରାହ୍ମଣ ଶଶିକର, ବାମଦେବ ଓ ମଧୁଶ୍ରବଣଙ୍କ ବିଧବା ପତ୍ନୀମାନେ ଏପରିକି ବିଧବା ଜୟନ୍ତୀ ଶବରୁଣୀ ମଧ୍ୟ ନିଷ୍ଠାର ସହିତ ବୈଧବ୍ୟ ବ୍ରତ ପାଳନ କରୁଥିବାର ଉଲ୍ଲେଖ ରହିଛି ।୪୩। ଏଥିରୁ ବୃହସ୍ପତି ସୂରିଙ୍କ 'କୃତ୍ୟ କୌମୁଦୀ' ସ୍ମୃତିଗ୍ରନ୍ଥ ଦ୍ୱାରା ସାରଳା ଦାସ ବିଶେଷଭାବରେ ପ୍ରଭାବିତ ହୋଇଥିବାର ଲକ୍ଷ୍ୟ କରାଯାଏ ।

ସାରଳା ଦାସ ଶିକ୍ଷା ପ୍ରସଙ୍ଗରେ ବିଭିନ୍ନ ପ୍ରକାର ଭାଷାଶିକ୍ଷା ସହିତ ଜ୍ୟୋତିଷ, ତନ୍ତ୍ର, ବେଦ, କର୍ମକାଣ୍ଡ, ଚିକିତ୍ସାବିଦ୍ୟା, ପୁରାଣପାଠ, ଚିତ୍ରକଳା, ସଙ୍ଗୀତ, ନୃତ୍ୟ ଓ ଯୁଦ୍ଧବିଦ୍ୟାର ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରେ କେତେକ ଜାତିଗତ ବିଦ୍ୟା ରୂପରେ ପ୍ରଚଳିତ ଥିଲା ।୪୪। ଶିକ୍ଷାକ୍ଷେତ୍ରରେ ବ୍ରାହ୍ମଣମାନେ ପରମ୍ପରାକ୍ରମେ ଶିକ୍ଷକର କାର୍ଯ୍ୟ କରୁଥିଲେ ।୪୫।

ଚଣ୍ଡୀ ପୁରାଣ ସାରଳା ଦାସଙ୍କ ଅନ୍ୟତମ ସୃଷ୍ଟି । ଓଡ଼ିଶାର ଶାକ୍ତ ସଂସ୍କୃତି ଅଧ୍ୟୟନରେ ଏହାର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି । ଏଥିରେ ବଶିଷ୍ଠ ଓ ଅରୁନ୍ଧତୀଙ୍କ ବିବାହ ଶାସ୍ତ୍ରୀୟ ଭାବରେ ବର୍ଣ୍ଣିତ ହୋଇଛି ।୪୬। ସାରଳା ଦାସ ପୁରାଣ ପାଠ, କନ୍ୟାଦାନ ଓ ଅନ୍ନଦାନକୁ ମହାନ୍ ଧର୍ମକାର୍ଯ୍ୟ ରୂପେ ବର୍ଣ୍ଣନା କରିଛନ୍ତି । ଏହି କାର୍ଯ୍ୟଦ୍ୱାରା ବ୍ୟକ୍ତିବିଶେଷ ବୈକୁଣ୍ଠବାସ ଫଳ ଲାଭ କରିଥାନ୍ତି ।୪୭। ମନୁସ୍ମୃତିର 'ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି' ବାକ୍ୟଟି କବି ଦୁର୍ଗାଙ୍କ ଉଦ୍ଦେଶ୍ୟରେ ଚଣ୍ଡମୁଣ୍ଡଙ୍କ ଉକ୍ତିରେ ବୁଝାଇଛନ୍ତି ।୪୮। ମାହେଶ୍ୱରୀ କଥାପ୍ରସଙ୍ଗରେ ଚଣ୍ଡମୁଣ୍ଡଙ୍କୁ

---

୪୨ । ସା:ମ:—ଆଦି-ପୃ-୪, ୨୨୯, ୩୨୮, ୫୪୩, ୬୩୫, ୧୦୫୬, ୧୦୭୪-୭୫, ସଭା—ପୃ-୮୮, ୧୦୯, ୧୨୩, ୧୬୭ ଓ ୩୨୯ ।

୪୩ । ସା:ମ:—ଆଦି—ପୃ-୧୭୬, ବନ—ପୃ-୧୪୦ ଓ ୩୨୦

୪୪ । 'ସାରଳା ମହାଭାରତରେ ସାମାଜିକ ଜୀବନ'—ପୃ-୧୫୪

୪୫ । ସା:ମ: ମଧ୍ୟ—ପୃ-୪୦୯

୪୬ । ଚଣ୍ଡୀ ପୁରାଣ—Orissa State Museum (OSM) Cy. No. 1136. P-238-241.

୪୭ । ପୁରାଣ ଶୁଣିଲେ କନ୍ୟାଦାନ ଦେଲେ ।
ପ୍ରାଣୀମାନେ ବୈକୁଣ୍ଠେ ବସନ୍ତ ଯାଇ ଭଲେ ॥
ଆବର ଅନ୍ନଦାନ ଦେଲେ ଧର୍ମ ହୋଇ ।
ପୁରାଣ ବାଣୀ ଶୁଣି ଦୃଢ଼ କଲା ସେହି ॥ (ଚଣ୍ଡୀପୁରାଣ—ପୃ-୨୪୨)

୪୮ । ମାଗୋ ଧର୍ମଶାସ୍ତ୍ରେ କହିଛନ୍ତି ସ୍ତ୍ରୀରଙ୍କର ତିନିଦଶା ।
ବାଲକାଳେ ପିତାଘରେ ପୂରଇ ମନାଶା ॥
ଯୁବାକାଳେ ଭର୍ତ୍ତାକୋଳେ ସୁଖେ ଦିନ ହରେ ।
ବୃଦ୍ଧକାଳେ ପୁତ୍ରନାତି ଯେଉଁ ସଙ୍ଗତରେ ॥ (ଚଣ୍ଡୀପୁରାଣ—ପୃ-୨୫୬)

ରାଜଧର୍ମ ଓ ସ୍ତ୍ରୀହରଣ ମହାପାତକ ବୋଲି ଉଦ୍‌ବୋଧନ ଦେଇଛନ୍ତି ।୪୯। ଉପର୍ଯ୍ୟୁକ୍ତ ଆଲୋଚନାରୁ ଜଣାଯାଏ ଯେ ସମାଜର ଆଚାର, ବିଚାର, ସଂସ୍କାର ସମ୍ବନ୍ଧୀୟ ବିଧିନିଷେଧର ପର୍ଯ୍ୟାଲୋଚନା କ୍ଷେତ୍ରରେ ସାରଳାଦାସ ସ୍ମୃତିଶାସ୍ତ୍ର ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲେ; ତେଣୁ ସାରଳା ସାହିତ୍ୟ, ବିଶେଷ କରି ମହାଭାରତକୁ ଓଡ଼ିଶାର ଜନଜୀବନର ଏକ ମହାନ୍ ଆଲେଖ୍ୟ ବୋଲି କୁହାଯାଇଛି ।୫୦।

ପରବର୍ତ୍ତୀ କାଳର ଓଡ଼ିଆ ମହାଭାରତ ମଧ୍ୟରେ କୃଷ୍ଣ ସିଂହଙ୍କ 'ମହାଭାରତ', ବିଶ୍ୱମ୍ଭର ଦାସଙ୍କ 'ବିଚିତ୍ର ଭାରତ', ଗୋପୀନାଥ ଦାସଙ୍କ 'ମହାଭାରତ ଟୀକା ସାର', ଜଗନ୍ନାଥ ଦାସଙ୍କ 'ମହାଭାରତ' ଏବଂ ପୁରୁଷୋତ୍ତମ ମହାପାତ୍ରଙ୍କ 'ଭାରତରସାର୍ଣ୍ଣବ ଗ୍ରନ୍ଥ' ପ୍ରଭୃତିର ନାମ ଉଲ୍ଲେଖନୀୟ । ଏହି ଗ୍ରନ୍ଥଗୁଡ଼ିକରେ ପ୍ରସଙ୍ଗକ୍ରମେ ଉତ୍କଳୀୟ ସ୍ମୃତିଶାସ୍ତ୍ରୋକ୍ତ ବିଧାନ-ସମୂହର ସୂଚନା ଦିଆଯାଇଛି । ଏମାନେ ସମସ୍ତେ ସାରଳା ଦାସଙ୍କ ପଦାଙ୍କ ଅନୁସରଣ କରିଥିବାରୁ ସେମାନଙ୍କ ଗ୍ରନ୍ଥ ସମ୍ବନ୍ଧରେ ସ୍ୱତନ୍ତ୍ର ଆଲୋଚନା କରାଯାଇ ନାହିଁ ।

ମହାକବି ସାରଳା ଦାସ ଓଡ଼ିଆ ସାହିତ୍ୟର ଯେଉଁ ସୁଦୃଢ଼ ଭିତ୍ତି ସ୍ଥାପନ କରିଥିଲେ, ତାହା ପରବର୍ତ୍ତୀ କାଳରେ ପଞ୍ଚସଖାଙ୍କ ଦ୍ୱାରା ମହାନ୍ ବିଚିତ୍ର ସୌଧରେ ପରିଣତ ହୋଇଥିଲା । ଦାସ ଉପାଧିଧାରୀ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ ନିଜ ନିଜର ବିପୁଳ ଅବଦାନ ଦ୍ୱାରା ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉନ୍ମୋଚନ କରିଥିଲେ । ସେମାନେ ଥିଲେ ସେହି ଯୁଗର ପ୍ରମୁଖ ପ୍ରତିନିଧି । ପୁରାଣ, ଧର୍ମ ଓ ଦର୍ଶନର ତାତ୍ତ୍ୱିକ ବିଶ୍ଳେଷଣରେ ପଞ୍ଚସଖା ଯୁଗୀୟ ସାହିତ୍ୟର ସୁବିପୁଳ କଳେବର ଅଲୌକିକ ରସ ଓ ଅଶେଷ ସୌନ୍ଦର୍ଯ୍ୟ-ସମ୍ପଦରେ ପରିପୂର୍ଣ୍ଣ ହୋଇଥିଲା ।

ପଞ୍ଚସଖାଙ୍କ ମଧ୍ୟରେ ମହାକବି ଭକ୍ତ ବଳରାମ ଦାସ (୧୪୭୨ ଖ୍ରୀ. ଅ.) ଥିଲେ ବୟୋଜ୍ୟେଷ୍ଠ । ସେ ଗଜପତି ପ୍ରତାପରୁଦ୍ର ଦେବଙ୍କ (୧୪୯୭ – ୧୫୩୩ ଖ୍ରୀ. ଅ.) ମନ୍ତ୍ରୀ ସୋମନାଥ ମହାପାତ୍ରଙ୍କ ଯଶସ୍ୱୀ ପୁତ୍ର ଥିଲେ ।୫୧। ତାଙ୍କର ପାଣ୍ଡିତ୍ୟ ଓ ପ୍ରତିଭା ଅନନ୍ୟ-

---

୪୯ । (କ) ଚଣ୍ଡୀ ପୁରାଣ—ପୃ-୬୭୦

(ଖ) ଗଉରବ ସ୍ତ୍ରୀର ରାଜପତ୍ନୀ ବ୍ରାହ୍ମଣ ଯୁବତୀ ।
ସୁରପତ୍ନୀ ଗୁରୁପତ୍ନୀ ପତିବ୍ରତା ମହାସତୀ ॥
ଏତେକନାରୀ ହରି ନେଉଁଲେ ଆୟୁଷ ହୋଏ କ୍ଷୟେ ।
ଅନ୍ତେ ତାକୁ ଶାସ୍ତି ବିହନ୍ତି ଜନ୍ମରାଏ ॥ (ଚଣ୍ଡୀପୁରାଣ—ପୃ-୬୮୨)

୫୦ । 'ଓଡ଼ିଆ ସାହିତ୍ୟର କ୍ରମବିକାଶ'—ପୃ-୬୭

୫୧ । 'The Suryavamsi Gajapatis of Orissa'—R. Subrahmaniyam, P-159.

ସାଧାରଣ । ବହୁ ଅମୂଲ୍ୟ ଗ୍ରନ୍ଥ ସେ ରଚନା କରିଥିଲେ । ତାଙ୍କ ପ୍ରଣୀତ ଗ୍ରନ୍ଥର ନାମ ଓ ସଂଖ୍ୟା ବିଷୟରେ ବହୁ ମତ ରହିଛି । କିନ୍ତୁ ତାଙ୍କ ରଚନା ମଧ୍ୟରେ 'ଜଗମୋହନ ରାମାୟଣ' ହେଉଛି ସର୍ବଶ୍ରେଷ୍ଠ ଗ୍ରନ୍ଥ । ଏହାର ଦୁଇଟି ପାଠ ଥିବାର ଦେଖାଯାଏ—ଗୋଟିଏ 'ଦାଣ୍ଡୀ ରାମାୟଣ' ଓ ଅନ୍ୟଟି 'ଦକ୍ଷିଣୀ ରାମାୟଣ' ନାମରେ ସୁବିଦିତ । ସାରଳା ଦାସଙ୍କ ପଦାଙ୍କ ଅନୁସରଣ କରି ବଳରାମ ଦାସ ଏହି ମହାନ୍ ରାମାୟଣ ଗ୍ରନ୍ଥ ରଚନା କରିଛନ୍ତି । ସାରଳା ମହାଭାରତ ଭଳି ଜଗମୋହନ ରାମାୟଣ ଓଡ଼ିଶାର ଘରେ ଘରେ ଆଦୃତ ହୋଇ ଆସୁଅଛି । ଓଡ଼ିଶାର ଜୀବନଯାତ୍ରା ଓ ତତ୍କାଳୀନ ସାମାଜିକ ପ୍ରଥାକୁ ଅବିକଳ ଭାବେ ରୂପାୟିତ କରିବାରେ ଏହି ରାମାୟଣ ହେଉଛି ଦ୍ୱିତୀୟ ଗ୍ରନ୍ଥ ।

ସ୍ମୃତିଶାସ୍ତ୍ର ଅନୁଯାୟୀ ଯେ କୌଣସି ଶୁଭକାର୍ଯ୍ୟ ପ୍ରାରମ୍ଭରେ ମଙ୍ଗଳସୂଚକ ବେଦମନ୍ତ୍ର ଓ ସ୍ତୁତିପାଠର ବ୍ୟବସ୍ଥା ରହିଛି । ତଦନୁଯାୟୀ ମହାକବି ବଳରାମ ଦାସ ତାଙ୍କ ରାମାୟଣରେ ପ୍ରସଙ୍ଗକ୍ରମେ ଶ୍ରୀଜଗନ୍ନାଥ ଓ ଶ୍ରୀରାମଚନ୍ଦ୍ରଙ୍କ ସହିତ ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି କରିଛନ୍ତି । ଯାତ୍ରା-ଅନୁକୂଳବେଳେ ମଙ୍ଗଳାଷ୍ଟକ ପାଠ ଏକ ବିଧି । ଶ୍ରେଷ୍ଠ ଋଷ୍ୟଶୃଙ୍ଗଙ୍କ ଉଦ୍ଦେଶ୍ୟରେ ଜରତାର ଶୁଭଯାତ୍ରାବେଳେ କବି ବଳରାମ ଦାସ ବିପ୍ର ଓ ଗ୍ରହ-ବିପ୍ରଙ୍କ ମୁଖରେ ସ୍ତୁତିପାଠ କରାଇଛନ୍ତି ।୫୨। ରାଜା ଦଶରଥଙ୍କ ଶୁଭ ଅନୁକୂଳ ସମୟରେ ମଧ୍ୟ ଅନୁରୂପ ଉଲ୍ଲେଖ ରହିଛି ।୫୩। ଋଷି ବିଶ୍ୱାମିତ୍ରଙ୍କ ଆଶ୍ରମବର୍ଣ୍ଣନାରେ ସନ୍ନ୍ୟାସଧର୍ମ ଓ ସନ୍ନ୍ୟାସୋଚିତ ବିବିଧ ଉପାଦାନ ଓ ବ୍ୟବହାରର ବର୍ଣ୍ଣନା କରାଯାଇଛି ।୫୪। ସେହିପରି ପ୍ରସଙ୍ଗକ୍ରମେ ସ୍ନାନ, ଆହ୍ନିକ

---

୫୨ । (କ) ମାଙ୍ଗଲ୍ୟାନି ଚ ବାଦ୍ୟାନି ବ୍ରହ୍ମଘୋଷଂ ଚ ଗୀତକମ୍ ।
ଋଦ୍ଧ୍ୟର୍ଥଂ କାରୟେଦ୍ ବିଦ୍ୱାନ୍ ନ ମାଙ୍ଗଲ୍ୟ ବିନାଶନମ୍ ॥ (ମତ୍ସ୍ୟ-ପୁରାଣ)

(ଖ) ଜଗମୋହନ ରାମାୟଣ ( ଜ.ରା: ) OSM. Cy. No. 921—
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଜଉତିଷ ।
ବ୍ରାହ୍ମଣେ ବେଦଧ୍ୱନି କରନ୍ତି ଘୋଷ ॥ (ଆଦି—ପୃ-୨୯)

୫୩ । ଜ:ରା:—ଆଦି—ପୃ-୫୬ ।

୫୪ । (କ) ଜ:ରା:—ଆଦି—ପୃ-୩୪ ।

(ଖ) ଭିକ୍ଷାଟନଂ ଜପୋଧ୍ୟାନଂ ସ୍ନାନଂ ଶୌଚଂ ସୁରାର୍ଚ୍ଚନମ୍ ।
କର୍ତ୍ତବ୍ୟାନି ଷଡେତାନି ଯତୀନାଂ ନୃପଦଣ୍ଡବତ୍ ॥ (ଯତିଧର୍ମ ସଂଗ୍ରହ—ପୃ-୭୨)

(ଗ) କଷାୟ ଧାରଣଂ ମୌଣ୍ଡ୍ୟଂ ତ୍ରିବିଷ୍ଟବ୍ଧଂ କମଣ୍ଡଳୁମ୍
ଲିଙ୍ଗାନ୍ୟନ୍ନାର୍ଥମେତାନି ନ ମୋକ୍ଷାୟେତି ମେ ମତିଃ ।
(ମହାଭାରତ—୧ମ ଭାଗ—ପୃ-୩୬୫)

ଦୀକ୍ଷା, ମନ୍ତ୍ରଜପ, ହୋମ, ଯଜ୍ଞ ପ୍ରଭୃତିର ଉଲ୍ଲେଖ ରହିଛି ।୫୫।

ବିବାହ ପ୍ରସଙ୍ଗରେ ଜାତକ-ବିଗ୍ରହ ଓ ଅଷ୍ଟବର୍ଷା କନ୍ୟାର ପାଣିଗ୍ରହଣକୁ ବଳରାମ ଦାସ ସ୍ୱୀକାର କରିଛନ୍ତି ।୫୬। ବିବାହରେ ବରୁଣ, ଦିଗ୍‌ପାଳ, ନବଗ୍ରହଶାନ୍ତି, ନାନ୍ଦୀଶ୍ରାଦ୍ଧ, ଲାଜାହୋମ ପ୍ରଭୃତି ସ୍ମୃତିଶାସ୍ତ୍ରୀୟ ବିଧାନର ବର୍ଣ୍ଣନା କରାଯାଇଛି ।୫୭। ବିବାହ ପରେ ଯଥାସମୟରେ ଗର୍ଭାଧାନ କୃତ୍ୟ ଓ ଜାତକର୍ମାଦିର ଉଲ୍ଲେଖ ରହିଛି । ସୂତକାଶୌଚରେ ପାଞ୍ଚଦିନେ ପଞ୍ଚୁଆତି, ଛ'ଦିନେ ଷଷ୍ଠୀପୂଜା, ସାତଦିନେ ଉଠିଆରି, ପୁତ୍ରଜନ୍ମର ଏକୋଇଶ ଦିନରେ ଏକୋଇଶିଆ ଓ ନାମକରଣ ପ୍ରଭୃତି ଲୌକିକ ବିଧାନ ସହିତ ଦେବଦେବୀପୂଜା ଓ ପ୍ରାର୍ଥନାର ବର୍ଣ୍ଣନା କରାଯାଇଛି ।୫୮। କିନ୍ତୁ ସ୍ମୃତିକାର ବିଦ୍ୟାକର ବାଜପେୟୀ ଜନ୍ମ ହେବାର ଏକାଦଶ ଦିନରେ ନବଜାତକର ନାମକରଣ ବିଧେୟ ବୋଲି ଉପଦେଶ ଦେଇଥିବା ବେଳେ ରାଜଗୁରୁ ଗଦାଧର ଜଗମୋହନ ରାମାୟଣର ଉଲ୍ଲେଖକୁ ସ୍ୱୀକୃତି ଦେଇଛନ୍ତି ।୫୯।

ସ୍ମୃତିଶାସ୍ତ୍ରୋକ୍ତ ବିଧାନ ଅନୁଯାୟୀ ରାଜା ଦଶରଥ ଯଥାସମୟରେ ଶ୍ରୀରାମଚନ୍ଦ୍ରାଦି ପୁତ୍ରମାନଙ୍କର ଉପନୟନ କରାଇଥିଲେ ।୬୦। ସେମାନେ ବେଦ, ଧର୍ମଶାସ୍ତ୍ର, ଆଗମଶାସ୍ତ୍ର ପ୍ରଭୃତି

---

୫୫ । ଜ:ରା:—ଆଦି—ପୃ-୪୦, ୪୩, ୭୪, ୭୮, ୭୯-୮୦ ।

୫୬ । ଜ:ରା:—ଆଦି—ପୃ-୬୩, ୯୮୯ ।

୫୭ । (କ) ଦାଣ୍ଡୀ ରାମାୟଣ—ଧର୍ମଗ୍ରନ୍ଥ ଷ୍ଟୋର, କଟକ, ପୃଷ୍ଠା-୩୪, ୩୫, ୫୩, ୯୬ ।
(ଖ) ଜ:ରା:—ଆଦି—ପୃ-୯୩, ୯୫, ୧୯୪, ୧୯୯, ୨୧୩-୨୨୧ ।

୫୮ । (କ) ଜ:ରା:—ଆଦି—ପୃ-୧୦୦-୧୦୧ । (ଖ) ଦାଣ୍ଡୀ ରାମାୟଣ—ପୃ-୭୪, ୯୮ ।

୫୯ । (କ) କୃତ୍ୟସାର ପଦ୍ଧତି—ବିଦ୍ୟାକର ବାଜପେୟୀ—ପୃଷ୍ଠା-୨୬୬ ।

(ଖ) ସର୍ବେ ବର୍ଣ୍ଣା ଅହୋଭିର୍ଦଶ ଭିରଭିଗତୈଃ ସଙ୍କରାଷ୍ଟାନୁଲୋମ୍ୟା
ପୂର୍ଣ୍ଣା ଶୁଦ୍ଧ୍ୟନ୍ତ୍ୟଥୋ ତୈଃଭିଷବିତାଶୁଚସ୍ତୁ ପ୍ରାତିଲୋମ୍ୟାଦ୍‌ଭବାଶ୍ଚେତ୍ ।
ବିଂଶତ୍ୟା ସ୍ତ୍ରୀ ଶୁଚିଃ ସ୍ୟାତ୍ ସୁତଜନୁଷିଦିନୈସ୍ତ୍ରିଂଶତା ସ୍ତ୍ରୀ ପ୍ରସୂତୌ
ଯୋଷିତ୍ ପୁଂସୋର୍ଯମତ୍ୱାଜ୍ଜନୁଷି ଗୁରୁ ସଦୃଗ୍‌ଗରାଗତସ୍ତ୍ରିଂଶତୈବ ॥
(କାଳସାର—ପୃ-୨୮)

୬୦ । ଗଣିକ ବୁହାଇ ଯେ ଦେଖିଲେ ଅନୁକୂଳ ।
ଗର୍ଭାଷ୍ଟମ ବୋଲିଣ ଯେ କହିଲ ଗ୍ରହପାଳ ॥
ଜ୍ୟେଷ୍ଠ କୃଷ୍ଣ ଷଷ୍ଠୀ ଯେ ଶ୍ରବଣା ନକ୍ଷତ୍ର ।
ବୃହସ୍ପତି ଜାଳ ବାରହିଁ ପବିତ୍ର ॥ (ଆଦି—ପୃ-୧୦୪)

ଅଧ୍ୟୟନ କରିଥିଲେ ।୭୧। ତେଣୁ ଚକ୍ରବାକ ପକ୍ଷୀ ମୁଖରେ ଧର୍ମଶାସ୍ତ୍ର, ପୁରାଣାଦିର ପ୍ରଶଂସା କରାଯାଇଛି ।୭୨। ଆଲୋଚ୍ୟ ଗ୍ରନ୍ଥରେ ସ୍ମୃତିଶାସ୍ତ୍ର ଅନୁଯାୟୀ କଳିଯୁଗ ପ୍ରସଙ୍ଗ, ଭକ୍ତିଧର୍ମ, ପୂଜା ଓ ଉପାସନା, ଗଙ୍ଗାବତରଣ ପ୍ରସଙ୍ଗରେ ଗଙ୍ଗାତୀରସ୍ଥ ବିଭିନ୍ନ ତୀର୍ଥ ସହିତ ଉତ୍କଳର କୋଣାର୍କ, ଏକାମ୍ର, ଶ୍ରୀକ୍ଷେତ୍ରାଦି ତୀର୍ଥ ନାମରେ ଉଲ୍ଲେଖ ରହିଛି ।୭୩। ବିଷ୍ଣୁବ୍ରତ ରୂପେ ଏକାଦଶୀ ବ୍ରତ, କାର୍ତ୍ତିକ ଶୁକ୍ଳ ଏକାଦଶୀ, ବକ ପଞ୍ଚମୀ ବା ପଞ୍ଚକ ବ୍ରତର ପ୍ରଶଂସା କରାଯାଇଛି ।୭୪। ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞ ଆଷାଢ଼ ଶୁକ୍ଳ ଏକାଦଶୀ ଗୁରୁବାର ଜ୍ୟେଷ୍ଠା ନକ୍ଷତ୍ରରେ ଅନୁଷ୍ଠିତ ହୋଇଥିବାର ବଳରାମ ଦାସ ଉଲ୍ଲେଖ କରିଛନ୍ତି ।୭୫।

ମରଣାଶୌଚ ବିଷୟରେ ବଳରାମ ଦାସ ଉତ୍କଳୀୟ ସ୍ମୃତିଶାସ୍ତ୍ରର ବିଧାନ ଅନୁସରଣ କରିଥିବାର ଜଣାଯାଏ । ପରଶୁରାମ ପିତା ଜମଦଗ୍ନିଙ୍କ ଅନ୍ତ୍ୟେଷ୍ଟି କୃତ୍ୟ ଦଶଦିନ ପାଳନ କରିଥିଲେ । ସେହିପରି ଦଶରଥଙ୍କ ପ୍ରେତକୃତ୍ୟରେ ନବଦିନ ଶ୍ରାଦ୍ଧପରେ ଦଶାହଦିନ ନଦୀକୂଳରେ କ୍ଷୌର, ଏକାଦଶ ଦିନ ଏକାଦଶାହ ଶ୍ରାଦ୍ଧ ଓ ଦାନ, ଘୃତପାନାଦି ବିଧି ପାଳିତ ହୋଇଥିଲା ।୭୬। ଶ୍ରୀ ରାମଚନ୍ଦ୍ରଙ୍କ ବନବାସ ଯିବାପରେ ରାଜା ଦଶରଥଙ୍କ ଦେହାନ୍ତ ଘଟିଥିଲା ।

---

୭୧ । କର୍ଣ୍ଣବେଧ ମନ୍ତ୍ରବ୍ରତବିଧାନ ପାଠ ପଢ଼ି ।
ଧର୍ମଶାସ୍ତ୍ର ବେଦ ଆଗମେ ନିବାଡ଼ି ॥ (ଆଦି—ପୃ-୧୩୪)

୭୨ । ଶାହାସ୍ତ୍ର ପୁରାଣ ନାହିଁ କି ହୋ ଶୁଣି ।
ଏ ଯିସ କଥା ଦେଖିଲେ ଧର୍ମ ହୁଏ ହାନି ॥
ଶାହାସ୍ତ୍ର ବଖାଣନ୍ତେ ଭାଙ୍ଗଇ ଯେବଣ ଜନ
ଶତ ଜନ୍ମଯାଏ ତାକୁ ନାହିଁ ପୁତ୍ରଦାନ ॥ (ଆରଣ୍ୟ—ପୃ-୧୪୨)

୭୩ । (କ) ବଳରାମ ଦାସ ଓ ଓଡ଼ିଆ ରାମାୟଣ—ନରେନ୍ଦ୍ର ନାଥ ମିଶ୍ର—ପୃ.୧୭
(ଖ) ଜ:ରା:—ଆଦି—ପୃ-୩, ୧୬୭-୧୭୦, ଆରଣ୍ୟ—ପୃ-୧୭-୩୩, ସୁନ୍ଦରା—ପୃ-୧୧, ଲଙ୍କା—ପୃ-୨୧୭, ୨୨୧, ୩୪୧ ଓ ୩୭୭

୭୪ । କାର୍ତ୍ତିକ ଶୁକ୍ଳ ଦଶମୀ ଏକାଦଶୀ ।
ଏ ପାଞ୍ଚଦିନ ଯେ ଭୁଞ୍ଜିବ ଆମିଷି ॥
ଦଶମୀରୁ ପୌର୍ଣ୍ଣମୀ ଯାଏ ପାଞ୍ଚଦିନ ।
ବକ ପଞ୍ଚମୀ ଯେ ହୋଇବ ବିଦ୍ୟମାନ ॥ (କିଷ୍କିନ୍ଧା—ପୃ-୧୦୩)

୭୫ । ଜ:ରା:—ଆଦି—ପୃ-୭୪ ।

୭୬ । (କ) ଦଶନିତ୍ୟା ସାରଣ ଯେ ତପ କରି ଗଲେ ।
ଆବର ଯେ ଦିନ ଭାଇ ସଙ୍ଗେ ନେଲେ ॥ (ଅଯୋଧ୍ୟା—ପୃ-୨୩)
(ଖ) ନବ ଦିବସ ଗଲକ ପୁଣ ଯହୁଁ ।
ନଦୀକୂଳେ କ୍ଷିଅର ହୋଇଲେ ତହୁଁ ॥
ଏକାଦଶ ଦିନ ବହୁତ ଦାନ ଦେଲେ ।
ଗୋଷ୍ଠ ଲୋକେ ଯେ ଘୃତ ପାନ କଲେ ॥ (ଅଯୋଧ୍ୟା—ପୃ-୧୩୬)

ଭରତ ଅଯୋଧ୍ୟା ପ୍ରତ୍ୟାବର୍ତ୍ତିନ ପରେ ସମସ୍ତ ଘଟଣା ଶୁଣି ମର୍ମାହତ ହୋଇପଡ଼ିଥିଲେ । ସେ ଜନନୀ କୌଶଲ୍ୟାଙ୍କ ପାଦତଳେ ପଡ଼ି ନିଜର ଅଜ୍ଞାନକୃତ ଅପରାଧ ପାଇଁ କ୍ଷମା ପ୍ରାର୍ଥନା କରିଥିଲେ । ତାଙ୍କର ଉକ୍ତି ମାଧ୍ୟମରେ ସ୍ମୃତିଶାସ୍ତ୍ରସମ୍ମତ ବିଧି-ନିଷେଧଗୁଡ଼ିକ ବଳରାମ ଦାସ ଉଲ୍ଲେଖ କରିଛନ୍ତି । ବିନା ଦୋଷରେ ପ୍ରାଣୀବଧ, ଦିବସରେ ଦ୍ୱିବାର ଭୋଜନ, ଗୁରୁପତ୍ନୀ-ହରଣ, ଅମାବାସ୍ୟା, ସଙ୍କ୍ରାନ୍ତି ଓ ଏକାଦଶୀରେ ତୈଳଗ୍ରହଣ, ମତ୍ସ୍ୟ, କଚ୍ଛପ ଓ ବରାହ ମାଂସ ଭକ୍ଷଣ, ଅତିଥିବିମୁଖତା, ପରହିଂସା, ବର୍ଣ୍ଣାଶ୍ରମଧର୍ମଲଙ୍ଘନ, ଭୋଜନ ପରେ ଶ୍ରାଦ୍ଧଦାନ, ପିତୃଶ୍ରାଦ୍ଧ ବର୍ଜନ, ପୁରାଣନିନ୍ଦା, ମଦ୍ୟପାନ ପ୍ରଭୃତି କାର୍ଯ୍ୟଗୁଡ଼ିକ ଅପରାଧଜନକ । ଏହି ଅପରାଧରେ ଅପରାଧୀ ବ୍ୟକ୍ତି ସହିତ ସମ୍ପର୍କ ରଖିବା ଦୋଷାବହ ବୋଲି ସ୍ମୃତି-ସିଦ୍ଧାନ୍ତକୁ ବଳରାମ ଦାସ ଉଲ୍ଲେଖ କରିଛନ୍ତି ।୬୭। ରାଜା ଦଶରଥ ରାମାଭିଷେକ ପୂର୍ବରୁ ଯେଉଁ ଉପଦେଶ

---

୬୭ । (କ) ଅକାରଣେ ପ୍ରାଣୀଙ୍କି ମାରନ୍ତି ଯେବଣ ଜନ ।
ଏକ ସୂର୍ଯ୍ୟେ ଦୁଇବେଳ ଯେ କରନ୍ତି ଭୋଜନ ॥
ଗୁରୁରବ ସ୍ତ୍ରୀରଙ୍କି ଯେ ବଳେଣ ହରନ୍ତି ।
ରବିବାର ଦିନ ଲମ୍ବ ଯେ ଆହାର କରନ୍ତି ॥
ରାତ୍ରେଣ ବେଲ କଇଥ ଯେହୁ ଖାଇ ।
ବାଟର ବୃକ୍ଷ କାଟଇ ଯେବଣ ଜନହିଁ ॥
ଉଆଁସ ସଙ୍କ୍ରାନ୍ତି ଏକାଦଶୀ ଦିନ ।
ତଇଲ ଘେନିଣ ଯେ କରନ୍ତି ସ୍ନାହାନ ॥
ମୀନ କୂର୍ମ ବରେହା ଯେ ଭକ୍ଷନ୍ତି ଅବସରି ।
ମିଛ କହିଣ ଯେ ପରକୁ ଗୃଣ୍ଟୁଆନ୍ତି ॥
ଦେବତାଙ୍କୁ ନ ଦେଇ ଭୁଞ୍ଜନ୍ତି ଯେବଣ ପ୍ରାଣୀ ।
ଅତିଥିକୁ ଚରଣ୍ଡ ନ କରନ୍ତି ଯେବଣ ଜାଣି ॥
ପାଦ ନ ପଖାଳି ଯେ କରନ୍ତି ଆହାର ।
ପରକୁ ହିଂସା ଯେହୁ କରଇ ହୃଦୟର ॥
ଅନ୍ୟ ଜାତି ସ୍ତ୍ରୀର ସଙ୍ଗେ ଯେହୁ ରମଣି କରନ୍ତି ।
ପରର ଫଳ ଯେହୁ ଲୁଚ୍ଚଇ ଖାଆନ୍ତି ॥
ଯେ ଯାହାର ବର୍ଣ୍ଣ ଧର୍ମ ଯେହୁ ଗ୍ରଛଡ଼ି ।
ବ୍ରାହ୍ମଣ ହୋଇ ଯେବେ କରେ ଘେନଇ ବାଡ଼ି ॥
ଶ୍ରାଦ୍ଧ ଘରକଇ ଭୁଞ୍ଜି ଯେହୁ ଯାଇ ।
କନ୍ୟା ମାସରେ ଯେ ବିଚ୍ଛନ୍ତି ବସ୍ତ୍ରଇ (?) ॥
ସାଧୁ ଲୋକଙ୍କୁ ଯେ ଅଦୋଷେ ଗଞ୍ଜଇ ।
ପୁରାଣର କଥାକୁ ଯେ ନିନ୍ଦା କରଇ ॥

ପ୍ରଦାନ କରିଛନ୍ତି, ସେଥିରେ ରାଜଧର୍ମର ପର୍ଯ୍ୟାଲୋଚନା କରାଯାଇଛି । ସେହି ପ୍ରସଙ୍ଗରେ ଅନ୍ୟାନ୍ୟ ବିଷୟ ସହିତ ଶାସନର ମୁଖ୍ୟ ସପ୍ତାଙ୍ଗ ବିଷୟର ସୂଚନା ଦିଆଯାଇଛି ।୬୮। ତଦ୍‌ବ୍ୟତୀତ ଓଡ଼ିଶାର ସମରବିଭବ, ରାଜା, ରାଜ୍ୟ, ଓଡ଼ିଆମାନଙ୍କ ବେଶଭୂଷା, ଖାଦ୍ୟପେୟ, ପର୍ବପର୍ବାଣୀ ଓ ଷୋଡ଼ଶ-ଶତାବ୍ଦୀକାଳୀନ ଓଡ଼ିଶାର ସାମାଜିକ ଇତିହାସ ବଳରାମ ଦାସଙ୍କ ଜଗମୋହନ ରାମାୟଣରେ ଲକ୍ଷ୍ୟ କରାଯାଇପାରେ ।୬୯।

ବଳରାମ ଦାସ ଯୋଗତତ୍ତ୍ୱମୂଳକ ବିଭିନ୍ନ ଗୀତାଗ୍ରନ୍ଥ ବ୍ୟତୀତ 'ଲକ୍ଷ୍ମୀ ପୁରାଣ' ନାମରେ ଏକ କ୍ଷୁଦ୍ର ଓଡ଼ିଆ ପୁରାଣ ରଚନା କରିଛନ୍ତି । ଗୁରୁବାର ଓଷା ଦିନ ଏହା ଓଡ଼ିଶାର ଘରେ ଘରେ ପାଠ କରାଯାଏ । ଏଥିରେ ଓଡ଼ିଆ ନାରୀର ଶୁଚିଚଳଣି, ରୁଚି, ବ୍ରତନୀତି, ସାମାଜିକ ସ୍ଥିତି ବିଷୟ ବର୍ଣ୍ଣିତ ହୋଇଛି । ଲକ୍ଷ୍ମୀଙ୍କ ସନ୍ତୋଷ ଲାଗି ଏଥିରେ ଯେଉଁ ଉପଦେଶମାନ ଦିଆଯାଇଛି, ତାହା ସ୍ମୃତି-ସମ୍ମତ ହୋଇଥିବାର ଦେଖାଯାଏ । ତନ୍ମଧ୍ୟରେ ଅଳବୁ ସହିତ ଆମିଷ ଭକ୍ଷଣ, ରାତ୍ରିରେ ଦଧିଅନ୍ନ ଭୋଜନ, ଉଚ୍ଛିଷ୍ଟ ଭୋଜନକୁ 'ଲକ୍ଷ୍ମୀ ପୁରାଣ'ରେ ନିଷେଧ

---

ମଇଁଷିକୁ ପ୍ରୀତି ନ କରନ୍ତି ଯେବଣ ନର ।
ଶୂଦ୍ର ଜାତିରେ ଯେ ମଦିରା କରଇ ଆହାର ॥
ଦେବତା ବ୍ରାହ୍ମଣ ନିର୍ବାଣ ଶୁଦ୍ଧିସୁନା ।
ଯେ ଅବା ହରଇ ପଞ୍ଚବିଂଶ ସୁନା (?) ॥
ବ୍ରାହ୍ମଣକୁ ବନ୍ଧନ କରଇ ଯେବଣ ପ୍ରାଣୀ ।
ନିଜ ଜନନୀ ସଙ୍ଗରେ ଯାହାର ରମଣି ॥
ଏସନ ଲୋକଙ୍କର ସଙ୍ଗତେ ଥାଇ ଯେହୁ ।
ଏ ସର୍ବଦୋଷ ପାଇବଇ ଆଉ ॥

(ଅଯୋଧ୍ୟା—ପୃ-୧୩୯-୧୪୦)

(ଖ) ସଂସ୍କୃତ ରାମାୟଣ—ଅଯୋଧ୍ୟା—ପୃ-୬୯, ୧୩-୩୩ ।

(ଗ) ଅବତାରଷଡ୍‌କଂ ବିଷ୍ଣୋଃ ଭକ୍ଷ୍ୟନ୍ତ୍ୟୈକାଳରାକ୍ଷସାଃ ।
ଶେଷାବତାରରକ୍ଷାର୍ଥଂ ଜଗଦୀଶୋ ବନଂ ଗତଃ ॥

(ରସକଲ୍ପଦ୍ରୁମ—ପୃଷ୍ଠା-୫୦୨)

୬୮ । (କ) ଜ:ରା:—ଆଦି—ପୃ-୪୨-୪୫ ।

(ଖ) ଦେଶ ପରଜା ଅମାତ୍ୟ ବନ୍ଧୁ ଯେ ଭଣ୍ଡାର ।
ସୈନ୍ୟ ଭୃତ୍ୟ ସମୂହ ଏ ସାତ ପ୍ରକାର ॥
ଏହାଙ୍କୁ ଯେବେ ଏକାଙ୍ଗ କରିଣ ସମ୍ଭାଳି ।
ତେବେ ପ୍ରାପତ ହୁଅଇ ମହୀସ୍ଥଳୀ ॥ (ଅଯୋଧ୍ୟା—ପୃ-୭୨)

୬୯ । କୋଣାର୍କ—ପଞ୍ଚସଖା-ବିଶେଷାଙ୍କ--ପୃ-୨୪୦ ଓ ୩୩୭ ।

କରାଯାଇଛି ।୭୦। ଶ୍ରୀଜଗନ୍ନାଥ ମହାପ୍ରସାଦର ଗୌରବ ପ୍ରତିଷ୍ଠା ଏହି ପୁରାଣର ପ୍ରଧାନ ଲକ୍ଷ୍ୟ ।

ପୂର୍ବ-ସୂରିଙ୍କୁ ଆଦର୍ଶଭାବେ ଗ୍ରହଣ କରି ଖ୍ରୀଷ୍ଟୀୟ ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଯେଉଁମାନେ ପୁରାଣଶୈଳୀରେ ରାମାୟଣ ରଚନା ବା ଅନୁବାଦ କରିଥିଲେ ସେମାନଙ୍କ ମଧ୍ୟରେ 'ଟୀକା ରାମାୟଣ'ର କବି ମହେଶ୍ୱର ଦାସ, 'ଅଧ୍ୟାତ୍ମ ରାମାୟଣ'ର ଅନୁବାଦକ ହଳଧର ଦାସ, ଗୋପାଳ ତେଲଙ୍ଗା, ନରହରି କବିଚନ୍ଦ୍ର, କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, ଦାମୋଦର ଦାସ, ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକ ପ୍ରଭୃତି ଓ 'ଅର୍ଦ୍ଧ ରାମାୟଣ'ର କବି ଦାମୋଦର, 'ରାମାୟଣ' ଲେଖକ ରାଜା କୃଷ୍ଣ ସିଂହ, 'ସିନ୍ଧୁ ରାମାୟଣ'ର କବି କୃପାସିନ୍ଧୁ ଦାସ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।୭୧। ଏମାନଙ୍କ ରଚନାରେ ମଧ୍ୟ ସ୍ମୃତିଶାସ୍ତ୍ରର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ମହାକବି ବଳରାମ ଦାସଙ୍କ ପରେ ଅତିବଡ଼ୀ ଜଗନ୍ନାଥ ଦାସ (୧୪୯୭ ଖ୍ରୀ. ଅ.) ଥିଲେ ପଞ୍ଚସଖାଙ୍କ ମଧ୍ୟରେ ବୟସରେ ଦ୍ୱିତୀୟ ସ୍ଥାନୀୟ । ସେ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ବହୁଗ୍ରନ୍ଥ ରଚନା କରିଥିଲେ । ସେ ନିଜେ ଥିଲେ ଓଡ଼ିଶାର ଅନ୍ୟତମ ସ୍ମୃତିକାର । ତାଙ୍କ ସ୍ମୃତିଗ୍ରନ୍ଥ ସମ୍ବନ୍ଧରେ ଏହି ନିବନ୍ଧର ତୃତୀୟ ଅଧ୍ୟାୟରେ ସୂଚନା ଦିଆଯାଇଛି । ଜଗନ୍ନାଥଙ୍କ ପ୍ରଣୀତ ଗ୍ରନ୍ଥଗୁଡ଼ିକ ମଧ୍ୟରେ 'ଓଡ଼ିଆ ଭାଗବତ' ହେଉଛି ସର୍ବଶ୍ରେଷ୍ଠ ଗ୍ରନ୍ଥ । ପ୍ରତ୍ୟେକ ଓଡ଼ିଆ ଘରେ ଜଗନ୍ନାଥ ଦାସଙ୍କ ଭାଗବତ ପୂଜା ପାଇ ଆସୁଛି । କେହି କେହି ଏ ଗ୍ରନ୍ଥକୁ ଓଡ଼ିଆ ବାଇବେଲ୍ ବୋଲି ଅଭିହିତ କରିଥାନ୍ତି ।୭୨।

ଓଡ଼ିଆ ଭାଗବତରେ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ଧାର୍ମିକ ଓ ଦାର୍ଶନିକ ବିଚାରଧାରା ପ୍ରସଙ୍ଗାନୁଯାୟୀ ଲିପିବଦ୍ଧ ହୋଇଛି । ଓଡ଼ିଆ ଗଣଜୀବନର ଏହାହିଁ ଜ୍ଞାନକଳ୍ପତରୁ । 'ଭାଗବତ' ରଚନା କ୍ଷେତ୍ରରେ ପୂର୍ବ-ସୂରି ମହାକବି ସାରଳା ଦାସ ଓ ବଳରାମ ଦାସଙ୍କ ଦ୍ୱାରା ଜଗନ୍ନାଥ ଦାସ ପ୍ରଭାବିତ ହୋଇଥିବାର ମନେହୁଏ । ତେଣୁ ତାଙ୍କ ପ୍ରଣୀତ 'ଭାଗବତ' ସଂସ୍କୃତ ଭାଗବତର ଅନୁବାଦରୂପେ ନୁହେଁ; ଏକ ନୂତନ ସୃଷ୍ଟି ଭାବେ ସମ୍ମାନିତ ହୋଇପାରିଛି । ଭାଗବତ ହେଉଛି ସ୍ମୃତିବିଧାନସମୂହର ଅନ୍ୟତମ ପ୍ରାମାଣିକ ଗ୍ରନ୍ଥ । ଏହାର ପ୍ରଥମ ସ୍କନ୍ଧ ସପ୍ତଦଶ ଅଧ୍ୟାୟରେ କଳିଯୁଗଧର୍ମର ବର୍ଣ୍ଣନା କରାଯାଇଛି । ଦ୍ୱିତୀୟ ସ୍କନ୍ଧ ଦ୍ୱିତୀୟ ଅଧ୍ୟାୟରେ ରାଜା ପରୀକ୍ଷିତଙ୍କୁ ମହର୍ଷି ଶୁକଦେବଙ୍କ ଉପଦେଶରେ ଯୋଗ ଓ ସ୍ମୃତି ଏବଂ ଅଷ୍ଟମ ଅଧ୍ୟାୟରେ ଧର୍ମ, କର୍ମ ଓ ଯଜ୍ଞଫଳର ଉଲ୍ଲେଖ ରହିଛି ।୭୩। ତୃତୀୟ ସ୍କନ୍ଧର ପଚିଶରୁ ତିରିଶ ଅଧ୍ୟାୟ

---

୭୦ । ଲକ୍ଷ୍ମୀପୁରାଣ—OSM. OL. No. 1419. Folio—8, 9, 57-58.

୭୧ । ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ—ପୃ-୧୦୮-୧୦୯ ।

୭୨ । History of Oriya Literature—P. 99.

୭୩ । ଶ୍ରୀମଦ୍‌ଭାଗବତ—ରାଧାରମଣ ପ୍ରେସ୍-କଟକ, ୧୯୪୯, ପୃ-୬-୧୩ ଓ ୩୮-୪୧ ।

ମଧ୍ୟରେ କପିଳ-ଦେବହୂତି-ସମ୍ବାଦରେ ଭକ୍ତିଯୋଗ ବିସ୍ତୃତଭାବେ ବର୍ଣ୍ଣିତ ହୋଇଛି ।୭୫। ଷଷ୍ଠ ସ୍କନ୍ଧର ଅଷ୍ଟମ, ଏକାଦଶ, ଅଷ୍ଟାଦଶ ଓ ଊନବିଂଶ ଅଧ୍ୟାୟଗୁଡ଼ିକରେ ସାଧାରଣ ଧର୍ମ ଓ ଭକ୍ତିଧର୍ମର ଉପଦେଶ ଦିଆଯାଇଛି ।୭୬। ସପ୍ତମ ସ୍କନ୍ଧର ଏକାଦଶରୁ ପଞ୍ଚଦଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣଧର୍ମ, ସ୍ତ୍ରୀଧର୍ମ, ବ୍ରହ୍ମଚର୍ଯ୍ୟ, ସନ୍ନ୍ୟାସ, ଗାର୍ହସ୍ଥ୍ୟଧର୍ମ ଓ ବର୍ଣ୍ଣାଶ୍ରମଧର୍ମ ବିସ୍ତୃତ ଭାବେ ପର୍ଯ୍ୟାଲୋଚିତ ହୋଇଛି ।୭୭। ତଦ୍ବ୍ୟତୀତ ସମଗ୍ର ଏକାଦଶ ସ୍କନ୍ଧରେ ଧର୍ମଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି ।୭୮। ତେଣୁ ଓଡ଼ିଶାର ଜନସାଧାରଣ ଜଗନ୍ନାଥ ଦାସଙ୍କ 'ଭାଗବତ'କୁ ଏକ ସ୍ମୃତିଶାସ୍ତ୍ରଭାବେ ସମ୍ମାନ ଦେଇଛନ୍ତି ।

ଅତିବଡ଼ୀ ଜଗନ୍ନାଥ ଦାସ ଶାସ୍ତ୍ରସମ୍ମତ, ମାୟାବର୍ଜିତ, ସାଧୁଜନଚରିତକୁ ଧର୍ମ ନାମରେ ଅଭିହିତ କରିଛନ୍ତି ।୭୯। ରାଜଧର୍ମ ବିଷୟରେ ସୂଚନା ଦେଇ ସେ କହିଛନ୍ତି ଯେଉଁ ରାଜ୍ୟରେ ପ୍ରଜାଗଣ ଶାସନକୁ ଭୟ ନ କରି ପରସ୍ପର ମଧ୍ୟରେ ହିଂସା ଆଚରଣ କରନ୍ତି, ସେ ରାଜ୍ୟ ନଷ୍ଟ ହୋଇଯାଏ । ଦୁଷ୍ଟଙ୍କୁ ଶାସନ କରି ପ୍ରଜାମାନଙ୍କ ଧନ-ଜୀବନ ପ୍ରତି ଅଭୟଦାନ ହେଉଛି ରାଜାଙ୍କର ପରମ କର୍ତ୍ତବ୍ୟ ।୮୦। ଭାଗବତର ବିଭିନ୍ନ ପ୍ରସଙ୍ଗରେ ଜଗନ୍ନାଥ ଦାସ ଗୃହସ୍ଥଧର୍ମ-ସ୍ତ୍ରୀଧର୍ମ, ଶୂଦ୍ରଧର୍ମ, ବୈଷ୍ଣବଧର୍ମ, କର୍ମଫଳ ପ୍ରଭୃତିର ବିଶ୍ଳେଷଣକୁ ଯେପରି ସହଜ ସରଳ, ସାଧାରଣବୋଧ ଭାଷାରେ ଉଲ୍ଲେଖ କରିଛନ୍ତି, ଓଡ଼ିଆ ସାହିତ୍ୟରେ ତାର ପଟାନ୍ତର ନାହିଁ ।

କବି ଜଗନ୍ନାଥଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପରବର୍ତ୍ତୀ କାଳରେ ମହାଦେବ ଦାସ ଭାଗବତର ଦ୍ୱାଦଶ ସ୍କନ୍ଧ, ଦ୍ୱାରିକା ଦାସ ତ୍ରୟୋଦଶ ସ୍କନ୍ଧ, ଜାନକୀବଲ୍ଲଭ 'ସମ୍ପୂର୍ଣ୍ଣ ଭାଗବତ' ରଚନା କରିଛନ୍ତି ।

---

୭୫ । ତତ୍ରୈବ—ପୃ. ୧୧୨-୧୪୨

୭୬ । ତତ୍ରୈବ—ପୃ. ୯୨-୯୮

୭୭ । ତତ୍ରୈବ—ପୃ. ୮୩-୧୦୮

୭୮ । ତତ୍ରୈବ—୧୯୫୪-ପୃ. ୧. ୨୧୮ ।

୭୯ । କପଟ ଧର୍ମ ଯାର ନାହିଁ । ସ୍ୱଭାବେ ଶାସ୍ତ୍ର ସେ ବୋଲାଇ ॥
ସେ ସାଧୁଜନଙ୍କର ଧର୍ମ । ମାୟାବର୍ଜିତ ଶୁଦ୍ଧକର୍ମ ॥ (୧-୧)

୮୦ । ଯାହାର ରାଜ୍ୟେ ପ୍ରଜାବଳେ । ହିଂସା କରନ୍ତି ଦୁଷ୍ଟ ଖଳେ ॥
ତା ଯେବେ ରାଜା ନ ମଣଇ । ତାର ରାଜତ୍ୱେ ଯଶ ନାହିଁ ॥
ରାଜାଙ୍କ କୁଳଧର୍ମ ଏହି । ନିତ୍ୟେ ପ୍ରଜାଙ୍କୁ ପାଳଇ ॥ (୧-୧୭)

× × ×

ଦୁଷ୍ଟମାରଣ ରାଜା ଧର୍ମ । ଏ ତ ସ୍ୱଭାବେ ରାଜକର୍ମ ॥ (୪-୧୯)

(ଶ୍ରୀମଦ୍ଭାଗବତ—୪-୨୬, ୧୦-୩୦, ୧୧-୧୮, ୧୧-୩, ୧୦-୧୫, ୬-୧୫, ୬-୧, ୪-୨୨, ୧୧-୨୧ ।)

ପଞ୍ଚସଖାଙ୍କ ମଧ୍ୟରେ ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରସିଦ୍ଧ ମହାକବି ଅଚ୍ୟୁତାନନ୍ଦ ଦାସ (୧୪୮୯ ଖ୍ରୀଷ୍ଟାବ୍ଦ) ବହୁଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ରଚନାରେ ଯନ୍ତ୍ର, ମନ୍ତ୍ର ଓ ଯୋଗର ତାତ୍ତ୍ୱିକ ବିଶ୍ଳେଷଣ ସହିତ ସୃଷ୍ଟିତତ୍ତ୍ୱ, ମୀମାଂସା ବେଦାନ୍ତ, ସାଂଖ୍ୟତତ୍ତ୍ୱ ଓ ପିଣ୍ଡବ୍ରହ୍ମାଣ୍ଡ-ତତ୍ତ୍ୱର ପର୍ଯ୍ୟାଲୋଚନା କରାଯାଇଛି । ନିର୍ଗୁଣ ଓ ସଗୁଣ, ନାମ ଓ ବ୍ରହ୍ମର ତାତ୍ତ୍ୱିକ ବ୍ୟାଖ୍ୟାନରେ ଅଚ୍ୟୁତାନନ୍ଦ ଥିଲେ ପ୍ରବୀଣ ପଣ୍ଡିତ ।୮୧। ତାଙ୍କ ରଚନା ମଧ୍ୟରେ 'ହରିବଂଶ' ଓ 'ଶୂନ୍ୟ ସଂହିତା' ଗ୍ରନ୍ଥଦ୍ୱୟ ଶୀର୍ଷ ସ୍ଥାନୀୟ । ବଳରାମ ଓ ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣ କରି ସେ 'ହରିବଂଶ' ଗ୍ରନ୍ଥ ରଚନା କରିଛନ୍ତି ।

ଓଡ଼ିଆ 'ହରିବଂଶ' ଗ୍ରନ୍ଥଟି ସାତଖଣ୍ଡରେ ବିଭକ୍ତ । କବି ଅଚ୍ୟୁତାନନ୍ଦ ଏଥିରେ ପ୍ରଚଳିତ ସ୍ମୃତିବିଧାନ ଅନୁଯାୟୀ ରଜୋବତୀ ହେବା ପୂର୍ବରୁ ସତ୍ୟଭାମା ଓ ରୁକ୍ମିଣୀଙ୍କ ବିବାହକୁ ସ୍ୱୀକୃତି ଦେଇଛନ୍ତି ।୮୨। ଦ୍ୱାରକାରେ ରୁକ୍ମିଣୀ ରଜୋବତୀ ହେବା ଦିନର ଫଳାଫଳ ବିଚାର ପାଇଁ ବହୁ ଶାସ୍ତ୍ରଜ୍ଞ ପଣ୍ଡିତ ସମବେତ ହୋଇଥିଲେ ।୮୩। ସେମାନେ ମାସ, ତିଥି, ବାର, ଗ୍ରହ, ନକ୍ଷତ୍ରାଦିର ତାତ୍ତ୍ୱିକ ବିଶ୍ଳେଷଣ କରିଥିଲେ ।୮୪। ରାଜା ଉଗ୍ରସେନଙ୍କ ପତ୍ନୀ ଇନ୍ଦୁମତୀ ଶାସ୍ତ୍ର-ବିଧାନ ଅନୁସାରେ ଶୁଦ୍ଧସ୍ନାନ ବିଧି ପାଳନ କରିଥିଲେ । କପଟ ଉଗ୍ରସେନବେଶରେ ଆସିଥିବା ଦ୍ରୁମିଳ ରାକ୍ଷସ ସଦ୍ୟସ୍ନାତା ଇନ୍ଦୁମତୀଙ୍କ ସହିତ ପ୍ରଭାତରେ ରତି ଇଚ୍ଛା କରିବାରୁ ଇନ୍ଦୁମତୀ ନିଷେଧ କରିଥିଲେ ।୮୫। ପରେ ସେ ଦ୍ରୁମିଳକୁ ଚିହ୍ନିପାରି ନିଜେ ଯେଉଁ ପ୍ରକାର ଅନୁଶୋଚନା କରିଛନ୍ତି, ସେଥିରେ ସ୍ମୃତିଶାସ୍ତ୍ର-ନିର୍ଦ୍ଦିଷ୍ଟ କୁଳସ୍ତ୍ରୀ-ଜନୋଚିତ ଭାବନା ପ୍ରକଟିତ ହୋଇଛି ।୮୬। କବି ଅଚ୍ୟୁତାନନ୍ଦ ଦେବକୀ ବସୁଦେବଙ୍କ ବିବାହ, ରାମକୃଷ୍ଣଙ୍କ ଜନ୍ମ, ଉପନୟନ, ଶିକ୍ଷା ଓ ବିବାହ ଶାସ୍ତ୍ରୀୟ ରୀତିରେ ପାଳିତ ହୋଇଥିବାର ବର୍ଣ୍ଣନା କରିଛନ୍ତି ।୮୭। ରାଜା ଉଗ୍ରସେନ

---

୮୧। ଅଚ୍ୟୁତାନନ୍ଦ ଓ ପଞ୍ଚସଖାଧର୍ମ—ଶ୍ରୀ ଚିତ୍ତରଞ୍ଜନ ଦାସ—ପୃ-୨୨, ୮୭, ୯୦-୧୧୨ ।

୮୨। ହରିବଂଶ—ଧର୍ମଗ୍ରନ୍ଥ ଷ୍ଟୋର-କଟକ, ନୂତନ ମୁଦ୍ରଣ—ଷଷ୍ଠ ଖଣ୍ଡ—ପୃ-୫୯, ୧୧୪ ।

୮୩। ଏ ବିଧି ପ୍ରକାରେ ପୁଣି କେତେ ତପୋବନ୍ତ ।
ପୁରାଣାଦି ଶ୍ରୁତି ସ୍ମୃତି ବେଦାନ୍ତ ପଣ୍ଡିତ ॥ (୬-୭୨)

୮୪। ହରିବଂଶ—ଷଷ୍ଠ ଖଣ୍ଡ—ପୃ-୮୭-୮୮ ।

୮୫। ଶାସ୍ତ୍ରର ନିଷେଧ କଥା କରିବି କେମନ୍ତେ ।
ବଳ ଆୟୁଷ ତୁଟଇ ରମିଲେ ପ୍ରଭାତେ ॥

୮୬। (କ) ମନଜ୍ଞାନେ ପରପୁରୁଷେ ମୋ ନାହିଁ ଆଶ ।
ଏ ହୀନ ପାମର ମୋତେ କଲା ଏ ଭବିଷ୍ୟ ॥ (୧-୨୮)

(ଖ) ନିତ୍ୟାଗ୍ନିର ପଦ୍ଧତି—ବିଦ୍ୟାକର ବାଜପେୟୀ—ପୃଷ୍ଠା-୨୧୨ ।

୮୭। ହରିବଂଶ—ପ୍ରଥମ ଖଣ୍ଡ—ପୃ-୩୭, ୧୧୨
ଦ୍ୱିତୀୟ ଖଣ୍ଡ—ପୃ-୬୯, ୧୩୨-୧୩୫
ଚତୁର୍ଥ ଖଣ୍ଡ—ପୃ-୧୦୬-୧୦୯
ଷଷ୍ଠ ଖଣ୍ଡ—ପୃ-୧୫୬-୧୫୮-୨୦୮-୨୧୦ ।

କଂସଙ୍କୁ ଉପଦେଶ ଦେବା ଛଳରେ ସାଧାରଣ ଧର୍ମ ଓ ରାଜଧର୍ମର ବିଶ୍ଳେଷଣ କରିଥିବାର ଦେଖାଯାଏ ।୮୮। ରାମକୃଷ୍ଣଙ୍କ ଶିକ୍ଷାପ୍ରସଙ୍ଗରେ ବହୁ ପ୍ରକାର ଶାସ୍ତ୍ରର ଉଲ୍ଲେଖ କରାଯାଇ-ଥିବାରୁ କବି ଅଚ୍ୟୁତାନନ୍ଦ ଯେ ପ୍ରାଚୀନ ଭାରତୀୟ ଶିକ୍ଷା ବିଷୟରେ ଅବହିତ ଥିଲେ ଏବଂ ବେଦ, ସ୍ମୃତି, ଦର୍ଶନଶାସ୍ତ୍ରରେ ପଣ୍ଡିତ ଥିଲେ, ତାହାର ପ୍ରମାଣ ମିଳେ ।୮୯। କଂସ ରାଜ-ପଦରେ ଅଭିଷିକ୍ତ ହେବାବେଳେ ଅଷ୍ଟଦେବୀ, ନବଗ୍ରହ, ଦୁର୍ଗା, ଅଷ୍ଟକୁଳନାଗପୂଜା, ଦ୍ୱାଦଶ ତୀର୍ଥଜଳରେ ଅଭିଷେକ ଓ ଅନ୍ୟାନ୍ୟ ବୈଦିକ ବିଧାନମାନ ଅନୁଷ୍ଠିତ ହୋଇଥିଲା ।୯୦। ତଦ୍‌ବ୍ୟତୀତ କବି ଦଶାବତାରବର୍ଣ୍ଣନା, ଦୁର୍ଗାସ୍ତୁତି, ରନ୍ତିବଳାପବର୍ଣ୍ଣନାରେ ଖାଦ୍ୟାଖାଦ୍ୟ, ଧର୍ମାଧର୍ମ ଓ କର୍ତ୍ତବ୍ୟାକର୍ତ୍ତବ୍ୟ ଏବଂ ଶ୍ରୀକୃଷ୍ଣଙ୍କ କୁଶ-ପୁତ୍ତଳିକା ଦାହପରେ ଯଥାବିଧି ପ୍ରେତକୃତ୍ୟ ଅନୁଷ୍ଠିତ ହୋଇଥିବାର ଉଲ୍ଲେଖ କରିଛନ୍ତି ।୯୧।

ପଞ୍ଚସଖାଙ୍କ ମଧ୍ୟରେ ଯଶୋବନ୍ତ ଦାସ (୧୪୯୮ ଖ୍ରୀ.ଅ.) ଓ ଅନନ୍ତ ଦାସ (୧୫୦୦ ଖ୍ରୀ.ଅ.) ଥିଲେ ବୟସରେ କନିଷ୍ଠ । ଯଶୋବନ୍ତ ସଂସ୍କୃତ ସାହିତ୍ୟ ଓ ଦର୍ଶନରେ ପଣ୍ଡିତ ଥିଲେ । ସେ 'ସ୍ୱରୋଦୟ' ଗ୍ରନ୍ଥର ଅନୁବାଦ, ପ୍ରେମଭକ୍ତି ବ୍ରହ୍ମଗୀତା, ଗୋବିନ୍ଦଚନ୍ଦ୍ର ପ୍ରଭୃତି ଗ୍ରନ୍ଥମାନ ରଚନା କରିଥିଲେ । ତାଙ୍କ ରଚନା ମଧ୍ୟରେ 'ଗୋବିନ୍ଦଚନ୍ଦ୍ର' ହେଉଛି ଶ୍ରେଷ୍ଠ ଗ୍ରନ୍ଥ । ଏଥିରେ ଗୋଦାନ, ତର୍ପଣ, ସୂତକାଶୌଚ, ଧାର୍ମିକ କୃତ୍ୟ, ତପସ୍ୟା, ଧର୍ମୋପଦେଶ, ଖାଦ୍ୟାଖାଦ୍ୟ, ଦଶାବତାରସ୍ତୁତି ଏବଂ ସାଂସାରିକ ଜୀବନର ତୁଚ୍ଛତା ଓ ତ୍ୟାଗଧର୍ମର ମହତ୍ତ୍ୱ ପ୍ରକଟିତ ହୋଇଛି ।୯୨। ଓଡ଼ିଶାର ସର୍ବତ୍ର ପ୍ରଚଳିତ ଏହି ପୁସ୍ତକ ବୈରାଗ୍ୟ-ନୀତିମୂଳକ ଗ୍ରନ୍ଥ ମଧ୍ୟରେ

---

୮୮ । ହରିବଂଶ—ପ୍ରଥମ ଖଣ୍ଡ—ପୃ.-୩୬ ।

୮୯ । ଆରମ୍ଭନ ପଢ଼ାଇଲେ ନାଟକର ବିଧି ।
ରୁଗ୍‌ବେଦ ଷଡ଼ଶାସ୍ତ୍ର ହିବସେକ ସିଦ୍ଧି ॥
ଶସ୍ତ୍ରବିଦ୍ୟା ଧନୁର୍ବିଦ୍ୟାମାନ ଆରମ୍ଭିଲେ ।
ଧର୍ମନୀତି ଦଣ୍ଡନୀତି ବିଦ୍ୟା ସାଧ୍ୟ କଲେ ॥
ନ୍ୟାୟ ମୀମାଂସା ଆବର ଯୋଗସିଦ୍ଧି ଆଦି ।
ଯନ୍ତ୍ର ତନ୍ତ୍ର ମନ୍ତ୍ରବିଦ୍ୟା ଆଦି ବିଦ୍ୟା ସାଧି ॥ (୪-୫୪)

୯୦ । ହରିବଂଶ—ପ୍ରଥମ ଖଣ୍ଡ—ପୃ-୮୧ ।

୯୧ । ହରିବଂଶ – ପ୍ରଥମ ଖଣ୍ଡ—ପୃ. ୧୫୦, ୧୫୬-୧୫୭
ଦ୍ୱିତୀୟ ଖଣ୍ଡ—ପୃ. ୩୧
ଷଷ୍ଠ ଖଣ୍ଡ—ପୃ-୮୭-୮୮, ୧୧୯
(ଖ) କୃତ୍ୟାଗ୍ନିର ପ୍ରଦୀପ—ନରସିଂହ ବାଜପେୟୀ—ପୃ-୧୨୪ ଓ ୨୦୯ ।
(ଗ) କୃଷ୍ଣାଜିନଂ ସମାସ୍ତୀର୍ଯ୍ୟ କୁଶୈସ୍ତୁ ପୁରୁଷାକୃତିମ୍ ।
ପଳାଶାନାଂ ସବୃନ୍ତାନାଂ ବିଭାଗଂ ବ୍ରୂହି ଯାଜ୍ଞିକଃ ॥ (କାଳସାର—ପୃ-୨୩୧)

୯୨ । ଟୀକା ଗୋବିନ୍ଦଚନ୍ଦ୍ର—ଜୟଶ୍ରୀ କନକା ପ୍ରେସ୍—ପୃ-୩. ୯, ୧୨; ୧୭, ୨୭, ୫୮-୬୨

ଶୀର୍ଷସ୍ଥାନ ଅଧିକାର କରେ । ଏହି ନାମରେ ବିଭିନ୍ନ ଲେଖକଙ୍କ ପ୍ରଣୀତ ଦୁଇ-ତିନି ଖଣ୍ଡ ଗ୍ରନ୍ଥ ଥିବାର ଦେଖାଯାଏ ।

ଅନନ୍ତ ଦାସ ଶୈଶବରୁ ଯୋଗସାଧକ ଥିଲେ । ସେ 'ହେତୁଦୟ ଭାଗବତ', 'ଉଦେବାଖର' ଆଦି ଉପାଦେୟ ଗ୍ରନ୍ଥମାନ ରଚନା କରିଛନ୍ତି । ଅଚ୍ୟୁତାନନ୍ଦ ଓ ଯଶୋବନ୍ତଙ୍କ ପଦାଙ୍କ ଅନୁସରଣ କରି ଅନନ୍ତ ଦାସ ମଧ୍ୟ ଏକ ମାଳିକା ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ତାଙ୍କ ରଚନା ମଧ୍ୟରେ 'ହେତୁଦୟ ଭାଗବତ' ବ୍ରହ୍ମଜ୍ଞାନମୂଳକ ଏକ ପ୍ରସିଦ୍ଧ ଗ୍ରନ୍ଥ । 'ଭକ୍ତି-ମୁକ୍ତି-ଦାୟକ' ଗୀତାରେ କବି ଅନନ୍ତ, ଶୌଚ ଓ ସ୍ମାର୍ତ୍ତ କୃତ୍ୟର ଅଭାବରେ ସମାଜରେ ଯେଉଁ ବିଶୃଙ୍ଖଳା ଦେଖାଦେବ ତାହା ନିରାକରଣ ନିମିତ୍ତ ନାନାବିଧ ଉପଦେଶ ପ୍ରଦାନ କରିଛନ୍ତି । ମାଳିକା ଆକାରରେ କଳିଯୁଗଧର୍ମ ବିଷୟ ଏଥିରେ ବର୍ଣ୍ଣିତ ହୋଇଛି ।୧୩

ଖ୍ରୀଷ୍ଟୀୟ ଷୋଡ଼ଶରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ବହୁ ପୁରାଣକାର ସେମାନଙ୍କ ଅନୂଦିତ, ସଙ୍କଳିତ ବା ରଚିତ ପୁରାଣରେ ସ୍ମାର୍ତ୍ତ ଓ ଲୌକିକ ବିଧାନଗୁଡ଼ିକ ସହଜ, ସରଳ ଭାଷାରେ ଲୋକସାଧାରଣଙ୍କ ନିମିତ୍ତ ଉଲ୍ଲେଖ କରିଥିବାର ଦେଖାଯାଏ । ଓଡ଼ିଆ ପୁରାଣକାରମାନଙ୍କ ମଧ୍ୟରେ ବଳରାମ ଦାସ ଗରୁଡ଼, ମତ୍ସ୍ୟ, ବାମନ, କୂର୍ମ, ମହାବିଷ୍ଣୁ ପୁରାଣ ଓ କୁରାଳ ପୁରାଣ ରଚନା କରିଛନ୍ତି । କବି ନୀଳାମ୍ବର ଦାସ ଜୈମିନି ଭାରତ, ପଦ୍ମପୁରାଣ ଓ ଦେଉଳତୋଳା ଗ୍ରନ୍ଥ, ମହାଦେବ ଦାସ ପଦ୍ମ ପୁରାଣ ଓ ମାର୍କଣ୍ଡେୟ ପୁରାଣ, କାର୍ତ୍ତିକ, ବୈଶାଖ ଓ ମାଘ ମାହାତ୍ମ୍ୟ, ବିଷ୍ଣୁକେଶରୀ ପୁରାଣ, ଚଣ୍ଡୀ ମହାତ୍ମ୍ୟ ଏବଂ ପୁରୁଷୋତ୍ତମ ମାହାତ୍ମ୍ୟ, ଦ୍ୱାରକା ଦାସ ଶିବ ପୁରାଣ ଓ ଚୈତନ୍ୟ ଦାସ ବିଷ୍ଣୁଗର୍ଭ ପୁରାଣ ରଚନା କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ହରିବଂଶ ଭଳି ପୀତାମ୍ବର ଦାସଙ୍କ ପ୍ରଣୀତ ନୃସିଂହ ପୁରାଣ ଓଡ଼ିଶାରେ ସର୍ବତ୍ର ପାଠ କରାଯାଏ । ତଦ୍‌ବ୍ୟତୀତ ଭାଗୀରଥି, ଗଙ୍ଗାଧର ପାଣି, ଆର୍ତ୍ତତ୍ରାଣ ଦାସ, ବାଳୁକା ଦାସ, କୃଷ୍ଣ ଦାସ, ଦିବାକର ଦାସ, ରାମ ଦାସ, ଗୌରାଙ୍ଗ ଦାସ, କୃପାସିନ୍ଧୁ ଦାସ, ପରମାନନ୍ଦ ଦାସ ଆଦି ବହୁ ପୁରାଣକାର ମହାପୁରାଣ, ଉପପୁରାଣ, କାର୍ତ୍ତିକ, ମାର୍ଗଶିର, ମାଘ ଓ ବୈଶାଖ ମାହାତ୍ମ୍ୟ, ଏକାଦଶୀ ମାହାତ୍ମ୍ୟ, ଜନ୍ମାଷ୍ଟମୀ ମାହାତ୍ମ୍ୟ, ଭାଗବତ ମାହାତ୍ମ୍ୟ ପ୍ରଭୃତି ଗ୍ରନ୍ଥମାନ ରଚନା କରିଛନ୍ତି । ସୁସ୍ଥ ଓ ସୁଶୃଙ୍ଖଳିତ ସମାଜଗଠନ ପାଇଁ ଉତ୍କଳୀୟ ସ୍ମୃତିବିଧାନସମ୍ମତ ଯେଉଁ ଉପଦେଶାବଳୀ ଏଥିରେ ଲିପିବଦ୍ଧ ରହିଛି, ସେଗୁଡ଼ିକର ପୁନରୁଦ୍ଧାର ଅନାବଶ୍ୟକ ମନେହୁଏ ।

ପଞ୍ଚସଖା-ଯୁଗର ଉତ୍ତରକାଳରେ ପୁରାଣ ଓ ମାହାତ୍ମ୍ୟ ସାହିତ୍ୟ ପରି ଭକ୍ତି ଓ ଉପାସନା ସମ୍ବନ୍ଧୀୟ ଗ୍ରନ୍ଥମାନ ପରିପ୍ରସାର ଲାଭ କରିଥିଲା । ଏ କ୍ଷେତ୍ରରେ ମୁଖ୍ୟତଃ ନୀଳାମ୍ବର ଦାସଙ୍କ ହରିଭକ୍ତି ରତ୍ନମାଳା, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଭକ୍ତିରସାମୃତଲହରୀ, ବୃନ୍ଦାବନ ଦାସଙ୍କ ଭକ୍ତି ସିଦ୍ଧାନ୍ତ ଓ ପୁରୁଷୋତ୍ତମ ଦେବାଳୟ କାର୍ଯ୍ୟବିଧି, ସାଧୁଚରଣ ଦାସଙ୍କ ଭକ୍ତିରସଲହରୀ ଓ ଭକ୍ତିଭେଦ ଭାଗବତ, କୃପାସିନ୍ଧୁ ଦାସଙ୍କ ଉପାସନା ଦୀପିକା ଓ ଉପାସନା ଚନ୍ଦ୍ରୋଦୟ,

୧୩ । ଭକ୍ତିମୁକ୍ତିଦାୟକ ଗୀତା—OSM. Mss. Cy. No. 34. ପୃ-୪, ୭, ୧୧-୧୪, ୨୩-୨୭ ।

ଲୋକନାଥ ବିଦ୍ୟାଧରଙ୍କ ନୀଳାଦ୍ରି ମହୋତ୍ସବ, ରସମୟ ଦାସଙ୍କ ଭକ୍ତିରସାମୃତ, ଈଶ୍ୱର ଦାସଙ୍କ ହରିଭକ୍ତିକଳ୍ପଲତା ପ୍ରଭୃତି ଗ୍ରନ୍ଥର ନାମ ଉଲ୍ଲେଖନୀୟ । ଏହା ପ୍ରତ୍ୟେକ ଏକ ଏକ ସ୍ମୃତିଗ୍ରନ୍ଥ ରୂପେ ଓଡ଼ିଶାରେ ଗୃହୀତ । ଏତଦ୍‌ବ୍ୟତୀତ ଭକ୍ତି ଓ ଉପାସନା ସମ୍ବନ୍ଧରେ ବହୁଗ୍ରନ୍ଥ ଓଡ଼ିଆ ଭାଷାରେ ଲେଖାଯାଇଛି ।

ଓଡ଼ିଆ ରୀତି-ସାହିତ୍ୟର ସମୃଦ୍ଧିସାଧନରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଅବଦାନ ଅବିସ୍ମରଣୀୟ । ସେ ଥିଲେ ଯୁଗସ୍ରଷ୍ଟା । ତାଙ୍କ ସାହିତ୍ୟ ଭଞ୍ଜଯୁଗ ବା ରୀତିଯୁଗ ନାମରେ ଅଭିହିତ । ସେହି ରୀତିଯୁଗର ପ୍ରାକ୍‌କାଳରେ ଯେଉଁ କବିମାନେ ପୌରାଣିକ ଓ କାଳ୍ପନିକ ବିଷୟକୁ ନେଇ ଆଲଙ୍କାରିକ କାବ୍ୟରଚନାର ଭିତ୍ତି ସ୍ଥାପନ କରିଥିଲେ, ସେମାନଙ୍କ ମଧ୍ୟରେ କବି ଅର୍ଜୁନ ଦାସ (୧୫୩୦ ଖ୍ରୀ. ଅ.) ପ୍ରଥମ ସ୍ଥାନୀୟ ।୯୪। ନାୟିକା କଳ୍ପଲତା ସହିତ ନାୟକ ଅମରଶିଖରଙ୍କ ବିବାହ ଉପରେ ସେ ତାଙ୍କ 'କଳ୍ପଲତା' ନାମକ କାବ୍ୟ ରଚନା କରିଛନ୍ତି । କବି ବିବାହ ପ୍ରସଙ୍ଗରେ ବୈଦିକ କର୍ମକାଣ୍ଡ ବିଧିମାନ ଉଲ୍ଲେଖ କରିଥିବାର ଜଣାଯାଏ ।୯୫। ତାଙ୍କର ଅନ୍ୟତମ ପୌରାଣିକ କାବ୍ୟ 'ରାମବିଭା'ରେ ମଧ୍ୟ ଅନୁରୂପ ସ୍ମୃତି-ବିଧାନର ବର୍ଣ୍ଣନା ରହିଛି ।୯୬। ତେଣୁ କବି ଅର୍ଜୁନ ଦାସ ଉତ୍କଳୀୟ ସ୍ମୃତିବିଧାନଗୁଡ଼ିକୁ ଭୁଲିପାରି ନଥିବାର ଦେଖାଯାଏ ।

କବି ନରସିଂହ ସେଣଙ୍କ (୧୫୪୦ ଖ୍ରୀ. ଅ.) କାଳ୍ପନିକ କାବ୍ୟ 'ପରିମଳା'ରେ ଧର୍ମଶାସ୍ତ୍ର ନିର୍ଦ୍ଦିଷ୍ଟ ପୁଷ୍ପବତୀ ବନ୍ଦାପନା, ମଙ୍ଗଳନ, ବାଟବରଣ, କନ୍ୟାଦାନ, ଲାଜାହୋମ, ଚତୁର୍ଥୀ କୃତ୍ୟ ଆଦି ତତ୍କାଳୀନ ସମାଜବ୍ୟବସ୍ଥା ବର୍ଣ୍ଣିତ ହୋଇଛି ।୯୭। କବି ନାୟିକାର ରୂପ-ବର୍ଣ୍ଣନାରେ ପରୋକ୍ଷଭାବେ ହୋମ, ସମିଧ, ଶ୍ରୁବ, ଦଣ୍ଡ, ପ୍ରଣୀତାଦି ଯଜ୍ଞୀୟ ଉପକରଣ-ଗୁଡ଼ିକର ସୂଚନା ଦେଇଛନ୍ତି ।୯୮। ଅଭୀଷ୍ଟ ସିଦ୍ଧି ପାଇଁ ଋଷିଙ୍କ ଦ୍ୱାରା ଉପଦିଷ୍ଟ ହୋଇ ନାୟକ ମକରକେତୁ ଦ୍ୱାଦଶାକ୍ଷର ଗୋପାଳମନ୍ତ୍ର ପୁରଶ୍ଚରଣ କରିଥିବାର ଉଲ୍ଲେଖ ରହିଛି ।୯୯। ଏଥିରୁ କବି ନରସିଂହ ସ୍ମୃତିଶାସ୍ତ୍ର ଦ୍ୱାରା ପ୍ରଭାବିତ ହୋଇଥିବାର ସ୍ପଷ୍ଟ ପ୍ରମାଣ ମିଳେ ।

ପରବର୍ତ୍ତୀ କବି ବିଷ୍ଣୁ ଦାସ (୧୫୫୦ ଖ୍ରୀ. ଅ.) ଥିଲେ ପ୍ରାକ୍-ରୀତିଯୁଗର ଅନ୍ୟତମ ବରେଣ୍ୟ ସ୍ରଷ୍ଟା । ପ୍ରେମଲୋଚନା, କଳାବତୀ, ଲୀଳାବତୀ, ପ୍ରଭାବତୀ ପ୍ରଭୃତି କାବ୍ୟମାନ ସେ ରଚନା କରିଛନ୍ତି । ପ୍ରେମଲୋଚନା କାବ୍ୟରେ ସ୍ମୃତିଶାସ୍ତ୍ରର ବିଧିବିଧାନକୁ ଯଥାଯଥଭାବେ ଉଲ୍ଲେଖ କରିବା ଦ୍ୱାରା କବି ଓଡ଼ିଆ ସାହିତ୍ୟରେ ପ୍ରଚଳିତ ଥିବା ପରମ୍ପରାକୁ ସମ୍ମାନ

୯୪ । ଓଡ଼ିଆ ସାହିତ୍ୟର କ୍ରମବିକାଶ—ପୃ-୩୬

୯୫ । କଳ୍ପଲତା—ସମ୍ପାଦକ, କେଦାରନାଥ ମହାପାତ୍ର, ଛାନ୍ଦ—୧୦-୧୩

୯୬ । ରାମବିଭା—ସମ୍ପାଦକ, ଆର୍ତ୍ତବଲ୍ଲଭ ମହାନ୍ତି, ପୃ—୬୦-୬୫

୯୭ । ପରିମଳା—ସମ୍ପାଦକ, କେଦାରନାଥ ମହାପାତ୍ର—ପୃ-୩୯

୯୮ । ପରିମଳା—ପୃ.-୧୩୯, ଛାନ୍ଦ-୧୭, ୨୯-୩୦

୯୯ । ପରିମଳା—ପୃ. ୨୦୫, ଛାନ୍ଦ-୨୨, ୨୫-୨୬

ଦେଇଛନ୍ତି । ବସନ୍ତ ଋତୁବର୍ଣ୍ଣନା ପ୍ରସଙ୍ଗରେ ଯଜ୍ଞ, ଚଣ୍ଡୀ ଉପାସନା, ରୁଦ୍ରାଭିଷେକ, ଚୈତ୍ର ତୃତୀୟାରେ ଶିବପୂଜା, ଶାନ୍ତି, ସ୍ୱସ୍ତ୍ୟୟନ, ବିବାହ ପ୍ରସଙ୍ଗରେ ଲଜାହୋମ, ସପ୍ତପଦୀ ପାଠ, ମଙ୍ଗଳାରୋପଣ, ଅର୍ଘ୍ୟବନ୍ଦାପନା ଏବଂ ବ୍ରାହ୍ମଣମାନଙ୍କ ଦ୍ୱାରା ସନ୍ଧ୍ୟା ଓ ମନ୍ତ୍ରୋପାସନାଦି ବିଷୟରେ ସ୍ପଷ୍ଟ ସୂଚନା ଦେଇଥିବାରୁ କାବ୍ୟକାର ବିଷ୍ଣୁ ଉତ୍କଳୀୟ ସ୍ମୃତିଶାସ୍ତ୍ର ଦ୍ୱାରା ନିଶ୍ଚିତ ଭାବେ ପ୍ରଭାବିତ ହୋଇଥିଲେ ।୧୦୦।

କବି ଲୋକନାଥ ବିଦ୍ୟାଧର (୧୫୬୦ ଖ୍ରୀ. ଅ) ପଦ୍ମାବତୀ ପରିଣୟ, ସର୍ବାଙ୍ଗସୁନ୍ଦରୀ, ରସକଳା, ଚିତ୍ରକଳା ଆଦି କାବ୍ୟମାନ ରଚନା କରିଛନ୍ତି । କାବ୍ୟଶୈଳୀରେ ରଚିତ 'ନୀଳାଦ୍ରି ମହୋତ୍ସବ' ଗ୍ରନ୍ଥରେ ଶ୍ରୀକ୍ଷେତ୍ର ମହିମା, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦ୍ୱାଦଶ ଯାତ୍ରା ସହିତ ବିଭିନ୍ନ ମାସ ଓ ତିଥିରେ ଅନୁଷ୍ଠିତ ହେଉଥିବା ଯାତ୍ରା-ମହୋତ୍ସବ ଓ ଅନ୍ୟାନ୍ୟ ବିଧିବିଧାନମାନ ବର୍ଣ୍ଣନା କରିଛନ୍ତି ।୧୦୧। କବି 'ଚିତ୍ରକଳା' କାବ୍ୟରେ ପୂର୍ବୋକ୍ତ କବିମାନଙ୍କ ପରି ଚିତ୍ରକଳାବିବାହରେ ସ୍ମୃତିବିଧାନର ଉଲ୍ଲେଖ କରିଛନ୍ତି ।୧୦୨।

କବି ଧନଞ୍ଜୟ ଭଞ୍ଜଙ୍କ (୧୬୩୭ ଖ୍ରୀ. ଅ.) ଇଚ୍ଛାବତୀ ଓ ଅନଙ୍ଗରେଖା ଶୀର୍ଷକ କାବ୍ୟ ଦୁଇଟି ସଂସ୍କୃତ କାବ୍ୟଶୈଳୀରେ ରଚିତ । ତାଙ୍କ ପ୍ରଣୀତ ରଘୁନାଥ ବିଳାସ' ବା 'ଶ୍ରୀରାମବିଳାସ'ରେ ପ୍ରସିଦ୍ଧ ରାମାୟଣ କଥାବସ୍ତୁକୁ କାବ୍ୟରୂପ ଦିଆଯାଇଛି । ଏଥିରେ ଜନ୍ମ, ବିବାହ, ରାଜ୍ୟାଭିଷେକ ପ୍ରଭୃତି ପ୍ରସଙ୍ଗରେ ବୈଦିକ ବିଧାନର ବର୍ଣ୍ଣନା ମିଳେ ।୧୦୩। ତାଙ୍କ 'ଅନଙ୍ଗରେଖା' କାବ୍ୟଟି ନାୟିକା ଅନଙ୍ଗରେଖା ଓ ନାୟକ ପୁଷ୍ପଦନ୍ତର ମିଳନକୁ ଆଧାର କରି ପଚିଶ ଛାନ୍ଦରେ ରଚିତ । କବି ଧନଞ୍ଜୟ ସନ୍ତାନ-ଜନ୍ମରେ ଗୃହରେ ସାଜସଜ୍ଜା, ଆନନ୍ଦ ଉତ୍ସବ, ଗ୍ରହଗଣନା, ନାମକରଣ ପ୍ରଭୃତି ସାମାଜିକ କୃତ୍ୟ ଉତ୍କଳୀୟ ସ୍ମୃତିଶାସ୍ତ୍ରୋଚିତ ଭାବରେ ବର୍ଣ୍ଣନା କରିଛନ୍ତି । କର୍ଣ୍ଣାଟ ରାଜାଙ୍କ ଦୁହିତାର ନାମକରଣ ହୋଇଥିଲା ଜନ୍ମର ତିରିଶ ଦିନରେ ।୧୦୪। ସେଥିରେ ରଜଚିତ୍ର ବିଗ୍ରହ, ବିବାହ ପ୍ରସଙ୍ଗରେ ଲବଣଭ୍ରମଣି, ହସ୍ତଗ୍ରନ୍ଥି ପ୍ରଭୃତିର ବର୍ଣ୍ଣନା

---

୧୦୦ । ପ୍ରେମଲୋଚନା—ସମ୍ପାଦକ, କେଦାରନାଥ ମହାପାତ୍ର,
(କ) ଖେଦଆହୁତିକ ପ୍ରିୟା ଚରିତ ହୁତ ॥ ୮-୧୦, (ଖ) ମହିମ୍ନ ଚଣ୍ଡୀବିରଣ ଶ୍ରୀଫଳ ଦେଇ ॥ ୮-୨୨, (ଗ) କରିବ ଜଳସେଚକ ଦେବ ସରୋଜ ଚମ୍ପକ ଶଙ୍କର ପାଶେ ॥ ୮-୨୩, (ଘ) ଚୈତ୍ର-ତୃତୀୟା ତିଥିରେ କେବା ପୂଜିବ ॥୮-୨୪, (ଙ) ଲଜାହୋମ—୧୪,୪, ସପ୍ତପଦୀ ପାଠ—୧୪-୫, ମଙ୍ଗଳାରୋପଣ—୨୦-୨୬, ଅର୍ଘ୍ୟବନ୍ଦାପନା—୨୦-୨୮ ଓ ସନ୍ଧ୍ୟୋପାସନା—୧୪-୩୪

୧୦୧ । ନୀଳାଦ୍ରି ମହୋତ୍ସବ—OSM—OL. No. 99, 1493.

୧୦୨ । ଚିତ୍ରକଳା—ସମ୍ପାଦକ, ଭଗବାନ ପଣ୍ଡା, ଭୁବନେଶ୍ୱର—୧୯୭୩, ପୃ-୧୪, ୧୦୨

୧୦୩ । ରଘୁନାଥବିଳାସ—OSM. Ms. Cy. No. 8 ପୃଷ୍ଠା—୭, ୭୭, ୭୪, ୨୩୧

୧୦୪ । ଅନଙ୍ଗରେଖା—ସମ୍ପାଦକ, ଗୌରୀକୁମାର ବ୍ରହ୍ମା—ପୃ-୯

ମିଳେ ।୧୦୫। ଏଥିରୁ କବି ଧନଞ୍ଜୟ ଯେ ସ୍ମୃତିଶାସ୍ତ୍ର ଦ୍ୱାରା ପ୍ରଭାବିତ ହୋଇଥିଲେ ସେଥିରେ ସନ୍ଦେହ ରହେ ନାହିଁ ।

କବି ପ୍ରତାପ ରାୟଙ୍କ (୧୬୫୦ ଖ୍ରୀ. ଅ.) 'ଶଶିସେଣା' ନାମକ କାବ୍ୟରେ ପୁରାଣ-ଯୁଗର ଅଦ୍ଭୁତ କଳ୍ପନା, ପ୍ରଚଳିତ କିଂବଦନ୍ତୀ ଓ କାବ୍ୟଯୁଗର ମାର୍ଜିତ ରୁଚିର ଏକ ମଧୁର ସମନ୍ୱୟ ସମ୍ପାଦିତ ହୋଇଛି । କାବ୍ୟନାୟିକା ଶଶିସେଣା ଓ ନାୟକ ଅହିମାଣିକର ବିବାହ-ବର୍ଣ୍ଣନାରେ ଶାସ୍ତ୍ରୀୟ ବିଧାନମାନ ଉଲ୍ଲେଖ କରାଯାଇଛି ।୧୦୬। ଏହି କାବ୍ୟରେ ଶ୍ରୀଜଗନ୍ନାଥଙ୍କ ବଡ଼ସିଂଘାର ବେଶ, ରଥଯାତ୍ରା, ମହାମାୟାସ୍ତୁତି, ଉମା-ମହେଶ୍ୱର ବ୍ରତ, ଦେବତା ପ୍ରତିଷ୍ଠା ଓ ପୂଜା-ବ୍ୟବସ୍ଥାର ବର୍ଣ୍ଣନାରୁ କବି ଉତ୍କଳର ପ୍ରଚଳିତ ପରମ୍ପରା ଓ ସ୍ମୃତିଶାସ୍ତ୍ରଦ୍ୱାରା ପ୍ରଭାବିତ ହୋଇଥିବାର ପ୍ରମାଣ ମିଳେ ।୧୦୭।

କବି ବନମାଳୀ ଦାସ (୧୭୧୫ ଖ୍ରୀ.ଅ.) 'ବୃହତ ଇଚ୍ଛାବତୀ' କାବ୍ୟରେ ନାୟିକା ଇଚ୍ଛାବତୀର ବିଦ୍ୟାଶିକ୍ଷା ପ୍ରସଙ୍ଗରେ ସ୍ମୃତିଶାସ୍ତ୍ରର ଉଲ୍ଲେଖ କରିଛନ୍ତି ।୧୦୮। ଏଥିରେ ବିନାୟକ ଚତୁର୍ଥୀ ବ୍ରତର ବିସ୍ତୃତ ବର୍ଣ୍ଣନା କରାଯାଇଛି ।୧୦୯। ଏହା କବି ଧନଞ୍ଜୟ ଭଞ୍ଜଙ୍କ ପ୍ରଣୀତ 'ଇଚ୍ଛାବତୀ' କାବ୍ୟର ପୂର୍ଣ୍ଣାଙ୍ଗ ରୂପ ବୋଲି ମନେହୁଏ ।

କବି ଶ୍ୟାମସୁନ୍ଦର ଦେବଙ୍କ (୧୭୫୦ ଖ୍ରୀ.ଅ.) ପ୍ରଣୀତ 'ଅନୁରାଗ କଳ୍ପଲତା' ନାମକ କୃଷ୍ଣକାବ୍ୟରେ ବିଷ୍ଣୁ ଉପାସନା, ବ୍ରତାଚରଣ, ବ୍ରହ୍ମସ୍ତୁତି, ହରିହରସ୍ତୁତି, ଯମୁନାସ୍ତୁତି, ଭାର୍ଗବୀସ୍ତୁତି, ଗଙ୍ଗାସ୍ତୁତି, ବିଷ୍ଣୁସ୍ତୁତି, ଶାରଦାସ୍ତୁତି ପ୍ରଭୃତିର ଉଲ୍ଲେଖ ରହିଛି ।୧୧୦। କବି ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବ ବର୍ଣ୍ଣନାରେ ପଞ୍ଚୁଆତି, ଷଷ୍ଠୀପୂଜା, ଉଠିଆରି, ଏକୋଇଶା, ନାମକରଣ, ଅନ୍ନପ୍ରାଶନ, ସ୍ତନକ୍ଷୀରପୂଜାଦି ଲୌକିକ ଓ ଶାସ୍ତ୍ରୀୟ ବିଧାନଗୁଡ଼ିକର ସୂଚନା ଦେଇଛନ୍ତି ।୧୧୧।

କବି କାର୍ତ୍ତିକ ଦାସଙ୍କ 'ରୁକ୍ମଣୀବିଭା' କାବ୍ୟରେ କୁଳଧର୍ମ, ବ୍ରତ, ଗ୍ରାମଦେବତୀପୂଜା, ଭଗବତୀ ସ୍ତୁତି, ବିବାହ-ସଂକଳ୍ପବାକ୍ୟ, ବରଣ, ଲବଣଭ୍ରମଣୀ, ଅଳତାସିନ୍ଦୂର, ହସ୍ତଗ୍ରନ୍ଥି

---

୧୦୫ । ଅନଙ୍ଗରେଖା—ପୃ-୧୪, ୬୮-୭୬

୧୦୬ । ଶଶିସେଣା—ସମ୍ପାଦକ, ଆର୍ତ୍ତବଲ୍ଲଭ ମହାନ୍ତି, ପୃ-୧୩, ୨୭

୧୦୭ । ଶଶିସେଣା—ପୃଷ୍ଠା-୪୧-୪୮, ୫୦

୧୦୮ । ବୃହତ ଇଚ୍ଛାବତୀ—ସମ୍ପାଦକ ଶ୍ରୀ କେଦାରନାଥ ମହାପାତ୍ର

ଅଷ୍ଟାଦଶ ପୁରାଣ ସ୍ମୃତି କରି ଆଦି ହେ ।

ଯେ ଯାହା ଲୋଡ଼ଇ ସେ ଯେ ବିଦ୍ୟାରେ ସମ୍ପାଦି ହେ (୧-୪୩)

୧୦୯ । ବୃହତ ଇଚ୍ଛାବତୀ – ୨-୫୨ ।

୧୧୦ । ଅନୁରାଗ କଳ୍ପଲତା—ସମ୍ପାଦିକା ପ୍ରମିଳା ମିଶ୍ର, ପୃଷ୍ଠା-୫୮-୬୧, ୧୨୫, ୧୭୬; ୨୩୩-୨୪୪, ୩୩୧-୩୩୨ ।

୧୧୧ । ତତ୍ରୈବ—ପୃଷ୍ଠା-୬୭-୬୮ ଓ ୭୧

ଲାଜାହୋମ ଆଦି ଲୌକିକ ଓ ଶାସ୍ତ୍ରୋକ୍ତ ବିଧାନ ବର୍ଣ୍ଣିତ ହୋଇଛି ।୧୧୨। କବି ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ'ରେ ମଧ୍ୟ ଅନୁରୂପ ବର୍ଣ୍ଣନା ଥିବାର ଦେଖାଯାଏ ।୧୧୩।

ଓଡ଼ିଆ କାବ୍ୟ-ସାହିତ୍ୟାକାଶରେ କବି ବ୍ରଜନାଥ ବଡ଼ଜେନା (୧୭୫୦ ଖ୍ରୀ. ଅ.) ଥିଲେ ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ । ସେ କାବ୍ୟ, କବିତା, ଭଜନ, ଜଣାଣ ଓ ଗଦ୍ୟ-କାବ୍ୟ ରଚନା କରିଛନ୍ତି । କବି ବ୍ରଜନାଥ ସ୍ମୃତିଶାସ୍ତ୍ରଦ୍ୱାରା କେତେଦୂର ପ୍ରଭାବିତ ହୋଇଥିଲେ ତାହା ତାଙ୍କ ରଚନାରେ ଛନ୍ଦେ ଛନ୍ଦେ ପ୍ରତିଫଳିତ ହୋଇଥିବାର ଦେଖାଯାଏ । ତାଙ୍କ ପ୍ରଣୀତ 'ଅମ୍ବିକାବିଳାସ' କାବ୍ୟରେ ବର୍ଣ୍ଣିତ ଦକ୍ଷ-ପ୍ରଜାପତିଙ୍କ ଅଗ୍ନିଷ୍ଟୋମ ଯଜ୍ଞରେ ବିଭିନ୍ନ ଯଜ୍ଞୀୟ ଉପକରଣର ନାମ ଓ କାର୍ଯ୍ୟ ସହିତ ସେଥିରେ ଯୋଗ ଦେଇଥିବା ଯୋଗୀ, ଋଷି, ମୁନି ଓ ବୈଦିକ ପଣ୍ଡିତମାନଙ୍କର ବିସ୍ତୃତ ବିବରଣୀ ଥିବାର ଦେଖାଯାଏ ।୧୧୪। ଅମ୍ବିକାଙ୍କ ଜନ୍ମୋତ୍ସବ, ନାମକରଣ ଓ ଅନ୍ନପ୍ରାଶନ ଯଥାବିଧି ଅନୁଷ୍ଠିତ ହୋଇଥିବାର କବି ଉଲ୍ଲେଖ କରିଛନ୍ତି ।୧୧୫। ତଦ୍‌ବ୍ୟତୀତ ପୁଷ୍ପବତୀ, ବନ୍ଦାପନା, ବିବାହମଣ୍ଡପ, ବିବାହରେ ଅନୁସୃତ ହେଉଥିବା ଆଚାର-ବ୍ୟବହାର, ବାଟବରଣ, ପାଦଧୁଆ, ବରୁଣପୂଜା, ସତ୍ୟବାକ୍ୟ, ଲବଣଚଉଁରି, ହସ୍ତଗଣ୍ଠି, ଲାଜାହୋମ, ଶିଳାରୋହଣ ଆଦି ବିଧାନ, କୁମାର-ଜନ୍ମୋତ୍ସବ ଉପଲକ୍ଷେ ଦେବ, ଋଷି ଓ ଗନ୍ଧର୍ବମାନଙ୍କର ସଂସ୍କୃତରେ ସ୍ତୁତିଗାନ ପ୍ରଭୃତି ବର୍ଣ୍ଣିତ ହୋଇଛି ।୧୧୬।

'କେଳିକଳାନିଧି' କାବ୍ୟରେ କବି ବ୍ରଜନାଥ ପ୍ରସଙ୍ଗକ୍ରମେ ବିବାହ, ତୀର୍ଥ, ଚଣ୍ଡିକା ସହସ୍ରନାମ ପାଠ, ଋତୁସ୍ନାନ, ଦଶାବତାରସ୍ତୁତି, ଶିବପଞ୍ଚାକ୍ଷରମନ୍ତ୍ର ଜପ, ନୃସିଂହସ୍ତୁତି, ଯାତ୍ରାନୁକୂଳସୂଚକ ମଙ୍ଗଳାନୁଷ୍ଠାନମାନ ବର୍ଣ୍ଣନା କରିଛନ୍ତି ।୧୧୭। ସେହିପରି 'ଚତୁରବିନୋଦ' ଗ୍ରନ୍ଥର ନୀତି-ବିନୋଦ କଥାରେ ମନୁସ୍ମୃତି ବାକ୍ୟାବଳୀ ଓ ବିଭିନ୍ନ ଶାସ୍ତ୍ରର ନାମ ଉଦ୍ଧୃତ ହୋଇଥିବାର ଦେଖାଯାଏ ।୧୧୮। 'ଅମ୍ବିକାବିଳାସ'ର ତ୍ରୟୋଦଶ ଛାନ୍ଦ ଓ 'ସମରତରଙ୍ଗ'ର ପଞ୍ଚମ ଛାନ୍ଦରେ

---

୧୧୨ । ରୁକ୍ମିଣୀବିଭା—ପ୍ରକାଶକ ଗୋବିନ୍ଦ ରଥ, କଟକ
ପୃଷ୍ଠା—୧୩, ୧୯, ୨୧, ୩୪, ୪୭-୪୯

୧୧୩ । ଉଷାଭିଳାଷ—OSM. Cy. No. 9-5, Page-44.

୧୧୪ । ବ୍ରଜନାଥ ଗ୍ରନ୍ଥାବଳୀ—ସମ୍ପାଦକ ସୁଧାକର ପଟ୍ଟନାୟକ, ପୃଷ୍ଠା-୨୮୫-୨୮୯

୧୧୫ । ତତ୍ରୈବ—ପୃଷ୍ଠା-୩୦୧-୩୦୩

୧୧୬ । (କ) ପୃଷ୍ଠା—୩୦୭, ୪୪୮-୪୫୧
(ଖ) ତତ୍ରୈବ—ମୁଖବନ୍ଧ-ପୃଷ୍ଠା-୩୨

୧୧୭ । ତତ୍ରୈବ—ପୃଷ୍ଠା-୩, ୧୪, ୧୯, ୩୭, ୩୮, ୪୦ ଓ ୫୯

୧୧୮ । ତତ୍ରୈବ—ପୃଷ୍ଠା-୬୨୭, ୬୨୯ ଓ ୬୩୭

କବି ବ୍ରଜନାଥ ରାଜଧର୍ମ ସମ୍ବନ୍ଧୀୟ ବିଭିନ୍ନ ତତ୍ତ୍ୱର ଆଲୋଚନା କରିଛନ୍ତି ।୧୧୯। ତେଣୁ ବ୍ରଜନାଥଙ୍କ ରଚନାରେ ଉତ୍କଳୀୟ ସ୍ମୃତିଶାସ୍ତ୍ରର ପ୍ରଭାବ ସ୍ପଷ୍ଟଭାବେ ଲକ୍ଷ୍ୟ କରାଯାଏ ।

ଓଡ଼ିଆ ଆଲଙ୍କାରିକ କାବ୍ୟକାରମାନଙ୍କ ମଧ୍ୟରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ(୧୭୬୦ ଖ୍ରୀ.ଅ.) ଥିଲେ ଅଦ୍ୱିତୀୟ । ସେ ଥିଲେ ଅସାଧାରଣ ପ୍ରତିଭାଶାଳୀ । ସେ କାବ୍ୟ କବିତା, ସଙ୍ଗୀତ, ବ୍ୟାକରଣ, ଅଳଙ୍କାର, କୋଷ, ଜ୍ୟୋତିଷ, ଧର୍ମଶାସ୍ତ୍ର, ସ୍ମୃତି, ପୁରାଣାଦି ଶାସ୍ତ୍ରରେ ପାରଦର୍ଶୀ ଥିଲେ ।୧୨୦। ତାଙ୍କ ସୃଷ୍ଟି ଯେପରି ବିପୁଳ ସେହିପରି ବୈଚିତ୍ର୍ୟପୂର୍ଣ୍ଣ । ସେ ରୀତିଯୁଗର ସର୍ବଶ୍ରେଷ୍ଠ ପ୍ରବକ୍ତା ଭାବେ ସ୍ୱୀକୃତ । ସେ ପ୍ରାୟ ସତୁରି-ଅଶୀ ଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ରଚନା ମଧ୍ୟରୁ ମୁଖ୍ୟ କେତୋଟିକୁ ଭିତ୍ତିକରି ଓଡ଼ିଶାର ସାମାଜିକ ଜୀବନଧାରାର ସୂଚନା ଦିଆଯାଇ-ପାରେ ।

ବୈଦେହୀଶବିଳାସ ହେଉଛି କବି ଉପେନ୍ଦ୍ରଙ୍କ ସର୍ବୋତ୍ତମ ଗ୍ରନ୍ଥ । ପିତାମହ ଧନଞ୍ଜୟ ଭଞ୍ଜଙ୍କ ପ୍ରଣୀତ 'ରଘୁନାଥବିଳାସ' ବା 'ଶ୍ରୀରାମବିଳାସ' ଅନୁକରଣରେ ଏହା ରଚିତ ବୋଲି ଜଣାଯାଏ । ବୈଦେହୀଶବିଳାସରେ କବି ରାମାୟଣ-କଥାବସ୍ତୁର ବର୍ଣ୍ଣନା ମଧ୍ୟରେ ପ୍ରସଙ୍ଗ-କ୍ରମେ ସାମାଜିକ ଆଚାର-ବ୍ୟବହାର ବିଷୟ ଉଲ୍ଲେଖ କରିଛନ୍ତି । ବିବାହ ପୂର୍ବରୁ ଶୁଭଲଗ୍ନ ନିର୍ଣ୍ଣୟ ଏକ ଚିରାଚରିତ ବିଧି । ତେଣୁ ଶାନ୍ତା ଓ ସୀତାଙ୍କ ବିବାହ ପୂର୍ବରୁ ଲଗ୍ନ ବିଚାର କରାଯାଇ ବୈଦିକ ରୀତିରେ ବିବାହ ସମ୍ପନ୍ନ ହୋଇଥିଲା ।୧୨୧।

ପୁତ୍ରକାମନାରେ ଦଶରଥଙ୍କ ମହିଷୀବର୍ଗ ବ୍ରତ ଆଚରଣ କରିଥିଲେ । ଶ୍ରୀରାମାଦି ପୁତ୍ରଗଣଙ୍କ ଜନ୍ମୋତ୍ସବ, ପଞ୍ଚୁଆତି, ଉଠିଆରି ଓ ଏକୋଇଶ ଦିନରେ ଏକୋଇଶିଆ ବିଧାନ ଓ ନାମକରଣ ଅନୁଷ୍ଠିତ ହୋଇଥିଲା । ଜନ୍ମୋତ୍ସବ ଓ ବିବାହ ବ୍ୟତୀତ ଅନ୍ତ୍ୟେଷ୍ଟି କୃତ୍ୟ ବର୍ଣ୍ଣନାରେ କବି ଉତ୍କଳୀୟ ସ୍ମୃତିବିଧାନର ଅନୁସରଣ କରିଛନ୍ତି । ରାଜା ଦଶରଥଙ୍କ ମୃତ୍ୟୁବର୍ଣ୍ଣନାରେ ଚାନ୍ଦ୍ର ମାସ, ତିଥି, ବାର, ନକ୍ଷତ୍ର, ଯୋଗ, କରଣ ପ୍ରଭୃତିର ସୂଚନା ଦିଆଯାଇଛି । ଦଶରଥଙ୍କ ପ୍ରେତକୃତ୍ୟ ମଧ୍ୟ ସ୍ମୃତିବିଧାନ ଅନୁଯାୟୀ ପାଳିତ ହୋଇଛି । ତଦ୍‌ବ୍ୟତୀତ ସୂର୍ପଣ୍ଣଖାର ଉକ୍ତିରେ ପିତୃଗଣଙ୍କ ସନ୍ତୋଷ ନିମିତ୍ତ ଶ୍ରାଦ୍ଧରେ ମୃଗମାଂସ ଗଣ୍ଡାମାଂସ ସମର୍ପଣ ବିଷୟ ସୂଚିତ

---

୧୧୯ । ତତୈବ—ପୃଷ୍ଠା-୪୬୯-୪୭୮, ୫୧୮-୫୨୬

୧୨୦ । (କ) ବୃଷଧ୍ୱଜୁଯୁକ୍ତ ରାମଚନ୍ଦ୍ର ସହିତେ / ବନ୍ଧାରୁସେ ଶ୍ରୁତିରୂପ ବିଦ୍ୟାଧର ଯେ ॥
ବିନୟୀ ଦାସ ପ୍ରକାରେ ଶାରଦା ଯାର / ବିଣା କେଉଁ ବିଦ୍ୟା ଆଦି ସ୍ମୃତି ସାର ॥
(ବୈଦେହୀଶବିଳାସ-ଗ୍ରନ୍ଥ—୫, ୮୪-୮୫)

(ଖ) ଓଡ଼ିଆ ସାହିତ୍ୟର ଇତିହାସ—ସୂର୍ଯ୍ୟନାରାୟଣ ଦାଶ—୩ୟଭାଗ, ପୃ-୨୨୬

୧୨୧ । ବୈଦେହୀଶବିଳାସ—ଗ୍ରନ୍ଥ-୫, ୧-୨, ଗ୍ରନ୍ଥ-୧୪, ୧-୨, ୪୦-୬୧

ହୋଇଛି । କବି ଉପେନ୍ଦ୍ର ଭଞ୍ଜ ଶ୍ରୀରାମ ଓ ପରଶୁରାମଙ୍କ ଉକ୍ତି-ପ୍ରତ୍ୟୁକ୍ତି ମଧ୍ୟରେ ଯଜ୍ଞ ଓ ସମିଧ, ବିଷ୍ଟର, କରପାଣି ପ୍ରଭୃତି ଯଜ୍ଞୀୟ ଉପାଦାନଗୁଡ଼ିକ ଉଲ୍ଲେଖ କରିଛନ୍ତି । ଶାସ୍ତ୍ରୀୟ ପଞ୍ଚ ମହାପାତକ ମଧ୍ୟରେ ବ୍ରାହ୍ମଣୀଗମନ ଅନ୍ତର୍ଗତ । ଅହଲ୍ୟା ଉପାଖ୍ୟାନରେ କବି ତାହାର ସୂଚନା ଦେଇଛନ୍ତି । ତଦ୍‌ବ୍ୟତୀତ ବାଲୁକାଶଙ୍କରପୂଜା, ବିଷ୍ଣୁଙ୍କ ଦ୍ୱାବିଂଶ ଅବତାର, ଦଶାବତାର, ଗ୍ରହଶାନ୍ତି, ଶ୍ରୀରାମକବଚ ପାଠ, ବର୍ଣ୍ଣାଶ୍ରମଧର୍ମର ବର୍ଣ୍ଣନା ପ୍ରସଙ୍ଗକ୍ରମେ କରାଯାଇ-ଥିବାର ଦେଖାଯାଏ ।୧୨୨।

"ଲବଣ୍ୟବତୀ" କାବ୍ୟରେ କବି ରତିଦେବୀଙ୍କ ପୂଜା ପ୍ରସଙ୍ଗରେ ବୈଦିକ ବିଧାନସମ୍ମତ ସପ୍ତଦୀପ, ସପ୍ତକୁମ୍ଭ, ଶ୍ରୁବ, ଶ୍ରୁଚ, ହୋମବେଦୀ, କଦଳୀକାଣ୍ଡ, ମନ୍ତ୍ରପାଠ, ଆହୁତି, ଦାନାଦି ଧର୍ମଶାସ୍ତ୍ର ବିଷୟକୁ ସାହିତ୍ୟର ଅଙ୍ଗୀଭୂତ କରିଛନ୍ତି । ନାୟିକା ଲବଣ୍ୟବତୀଙ୍କୁ ପାଇବା ପାଇଁ ସମବେତ ରାଜନ୍ୟବର୍ଗଙ୍କ ଅନୁଚିନ୍ତାରେ ଚଣ୍ଡୀ-ବରଣ, ଶିବମସ୍ତକରେ ଗୋଦୋହନ, ଗଣେଶପୂଜା, ମନ୍ତ୍ରସିଦ୍ଧି ପ୍ରଭୃତିର ସୂଚନା ଦିଆଯାଇଛି । ତଦ୍‌ବ୍ୟତୀତ ନାୟକ ଚନ୍ଦ୍ରଭାନୁ ସହିତ ଲବଣ୍ୟବତୀର ବିବାହ ଶାସ୍ତ୍ରୀୟ ରୀତିରେ ଅନୁଷ୍ଠିତ ହୋଇଥିବାର ବର୍ଣ୍ଣନା କରାଯାଇଛି ।୧୨୩।

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କବି ଉପେନ୍ଦ୍ରଙ୍କ ଅନ୍ୟତମ ମହତ୍ତ୍ୱପୂର୍ଣ୍ଣ କାବ୍ୟ । ଏଥିରେ ରଜୋବତୀ ବନ୍ଦନା, ନବଚଣ୍ଡୀ ପୂଜା ଓ ବିବାହ ପ୍ରଭୃତି ସାମାଜିକ ଅନୁଷ୍ଠାନ ପ୍ରଚଳିତ ପଦ୍ଧତିରେ ଅନୁଷ୍ଠିତ ହୋଇଥିବାର ଉଲ୍ଲେଖ ମିଳେ ।୧୨୪। ପ୍ରେମସୁଧାନିଧି କାବ୍ୟରେ କୋଶଳ-ରାଜପୁତ୍ର ସହିତ ପ୍ରେମସୁଧାନିଧିର ବିବାହ ଶାସ୍ତ୍ରମତେ ଅନୁଷ୍ଠିତ ହୋଇଥିଲା ।୧୨୫। ରଜୋବତୀ ହେବା ପୂର୍ବରୁ ପ୍ରେମସୁଧାନିଧିର ବିବାହକୁ ଭଞ୍ଜ-କବି ସ୍ୱୀକୃତି ଦେଇଛନ୍ତି ।୧୨୬। ସୁଭଦ୍ରା ପରିଣୟ କାବ୍ୟରେ କମାଣିଆ ବ୍ରାହ୍ମଣ, ରୈବତକ ପର୍ବତରେ ରାମକୃଷ୍ଣଙ୍କ ଯଜ୍ଞ, ଯଜ୍ଞୀୟ ଉପକରଣ, ଅର୍ଜୁନ ଓ ସତ୍ୟଭାମାଙ୍କ ଉକ୍ତି-ପ୍ରତ୍ୟୁକ୍ତିରେ ଷଡ଼୍‌ଦର୍ଶନ ଏବଂ ଅର୍ଜୁନ ଓ ସୁଭଦ୍ରାଙ୍କ ବିବାହରେ

---

୧୨୨ । ବୈଦେହୀଶବିଳାସ—ଛାନ୍ଦ-୫, ୨୪-୨୫, ୭୧-୭୬, ଛାନ୍ଦ-୧୮-୧୧, ୨୨, ଛାନ୍ଦ-୨୩-୨୯, ଛାନ୍ଦ ୧୬, ୪୫-୪୬, ଛାନ୍ଦ-୭-୪୬, ଛାନ୍ଦ-୨୧-୨୫, ଛାନ୍ଦ-୪୩, ୩୮-୩୯, ଛାନ୍ଦ-୬, ୪୬-୪୮, ଛାନ୍ଦ-୧୬-୨୮, ଛାନ୍ଦ-୪୯, ୨୬-୩୬ ଓ ଛାନ୍ଦ ୭-୧୬ ।

୧୨୩ । ଲବଣ୍ୟବତୀ—ରାଧାନାଥ କୋଅପରେଟିଭ୍ ପ୍ରେସ,
ପୃଷ୍ଠା-୧୦, ୧୯, ୫୦, ୧୭୭-୧୭୯

୧୨୪ । କୋଟିବ୍ରହ୍ମାଣ୍ଡସୁନ୍ଦରୀ—ଚନ୍ଦ୍ରୋଦୟ ପ୍ରେସ, ପୃଷ୍ଠା-୨୫, ୨୫୮-୨୬୨

୧୨୫ । ପ୍ରେମସୁଧାନିଧି—ଦାଶରଥି ପୁସ୍ତକାଳୟ, ଛାନ୍ଦ-୧, ୩୨-୪୦ ।

୧୨୬ । ଅଦୃଷ୍ଟ ଅଦୃଷ୍ଟରଜାକାଳୁ ବିବାହ ।
ହେଲେ ହେଲେ ଉତ୍ସବ ଆମ୍ଭର ନ କହି ॥ (ପ୍ରେମ ସୁ: ଛା—୧୬)

ଶାସ୍ତ୍ରୋଚିତ ବିଧାନଗୁଡ଼ିକର ଉଲ୍ଲେଖ ରହିଛି ।୧୨୭। ସେହିପରି 'ରସଲେଖା' କାବ୍ୟରେ ନାୟିକାର ରୂପବର୍ଣ୍ଣନାରେ ଗଙ୍ଗାସ୍ନାନ, ଶିବପୂଜା, ବିଷ୍ଣୁଙ୍କୁ ତୁଳସୀଦାନ, ଗଣେଶ, ଲକ୍ଷ୍ମୀ ଓ ଦୁର୍ଗାପୂଜା, ନାଗ ଚତୁର୍ଥୀ ବ୍ରତ ଆଦିର ଉଲ୍ଲେଖ ଅଛି । ରାଜା ଭ୍ରମିତ ଅଜ୍ଞାତବାସରେ ଥିବା ପୁତ୍ର ବିଶ୍ୱଭୂତିଙ୍କୁ ଫେରିପାଇବା ନିମିତ୍ତ ବ୍ରାହ୍ମଣମାନଙ୍କ ଦ୍ୱାରା ଚଣ୍ଡୀ-କବଚ, ନୃସିଂହ-କବଚ, ଗଣେଶପୂଜାଦି ଅନୁଷ୍ଠାନ କରାଇଥିଲେ । ରସଲେଖାର ବିବାହରେ ମଧ୍ୟ ପୂର୍ବପରି ବିଧିବିଧାନମାନ ବର୍ଣ୍ଣନା କରାଯାଇଛି ।୧୨୮। ଏଥିରୁ କବି ଉପେନ୍ଦ୍ର ଭଞ୍ଜ ଉତ୍କଳୀୟ ସ୍ମୃତିଶାସ୍ତ୍ରଦ୍ୱାରା କିପରି ପ୍ରଭାବିତ ହୋଇଥିଲେ ତାହା ସହଜରେ ଅନୁମେୟ ।

ଖ୍ରୀଷ୍ଟୀୟ ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବହୁ କବି ମହାଭାରତ, ରାମାୟଣ ଓ ଭାଗବତବର୍ଣ୍ଣିତ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ଚରିତ ଅବଲମ୍ବନରେ ବହୁ କାବ୍ୟ-କବିତା ରଚନା କରିଛନ୍ତି । ଆଲୋଚ୍ୟକାଳର ଓଡ଼ିଆ ସାହିତ୍ୟକୁ ମୁଖ୍ୟତଃ ରାମସାହିତ୍ୟ ଓ କୃଷ୍ଣସାହିତ୍ୟଭାବେ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଓଡ଼ିଆ ରାମକାବ୍ୟ ମଧ୍ୟରେ ବିପ୍ର ଜନାର୍ଦ୍ଦନଙ୍କ 'ରାଘବ ଚରିତାମୃତ',ବିପ୍ର ରାମଦାସଙ୍କ'ରାମ-ରସାମୃତ କାବ୍ୟ',କବିଭୂଷଣ ଗୋପୀନାଥ ପାଢ଼ି ଓ ମାଗୁଣି ପଟ୍ଟନାୟକଙ୍କ 'ରାମଚନ୍ଦ୍ର ବିହାର', ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ', ବନମାଳୀ ଦାସଙ୍କ 'ସୁଚିତ୍ର ରାମାୟଣ' ପ୍ରଭୃତିରେ ଓଡ଼ିଶାର ସାମାଜିକ ଜୀବନର ଆଲେଖ୍ୟ ପ୍ରତିଫଳିତ ହୋଇଛି । ଏଥିରେ ବର୍ଣ୍ଣିତ ସାମାଜିକ ଅନୁଷ୍ଠାନରେ ଉତ୍କଳୀୟ ସ୍ମୃତିଶାସ୍ତ୍ରର ପ୍ରତ୍ୟକ୍ଷ ପ୍ରଭାବ ପରିଲକ୍ଷିତ ହୁଏ ।

ଓଡ଼ିଆ ରାମ-ସାହିତ୍ୟର ରଚନା ଓ ଆଦର ଯେପରି ବୃଦ୍ଧି ପାଇଥିଲା, ସେହିପରି କୃଷ୍ଣକାବ୍ୟ-କବିତାର ବିଶେଷ ପ୍ରସାର ଘଟିଥିଲା । ଓଡ଼ିଆ ସାହିତ୍ୟରେ କୃଷ୍ଣ ସମ୍ବନ୍ଧୀୟ ରଚନା ସର୍ବାଧିକ ବୋଲି ମନେହୁଏ । ଓଡ଼ିଆ କୃଷ୍ଣକାବ୍ୟ ମଧ୍ୟରେ କବି ଗୃହିଦାସଙ୍କ 'ଗୋପୀଚନ୍ଦନ', ଦେବ-ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ', ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ','ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି', ଭକ୍ତଚରଣ ଦାସଙ୍କ 'ମଥୁରାମଙ୍ଗଳ', ବନମାଳୀ ଦାସଙ୍କ 'ବନମାଳୀରାସ' କୃପାସିନ୍ଧୁ ଓ ଦାଶରଥି ଦାସଙ୍କ 'ବ୍ରଜବିହାର', କେଶବରାଜ ହରିଚନ୍ଦନଙ୍କ ପ୍ରଣୀତ 'ରସସିନ୍ଧୁ ସୁଲକ୍ଷଣା', ଦୀନବନ୍ଧୁ ହରିଚନ୍ଦନଙ୍କ 'ନବ ବୃନ୍ଦାବନବିହାର' ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ 'ଯୁଗଳରସାମୃତଲହରୀ,' ଜଗନ୍ନାଥ ନାରାୟଣ ଦେବଙ୍କ 'ବୃନ୍ଦାବନଚନ୍ଦ୍ର ବିହାର' ପ୍ରଭୃତିର ନାମ ମୁଖ୍ୟତଃ ଉଲ୍ଲେଖନୀୟ । ଏହି କାବ୍ୟଗୁଡ଼ିକରେ ପ୍ରସଙ୍ଗକ୍ରମେ ଓଡ଼ିଶାର ସ୍ମୃତିସମ୍ମତ ସାମାଜିକ ରୀତିନୀତି ଓ ପରମ୍ପରା ବର୍ଣ୍ଣନାରୁ ଓଡ଼ିଆ ସାହିତ୍ୟର ସ୍ମୃତିଶାସ୍ତ୍ରୀୟ ପ୍ରଭାବର ନିରବଚ୍ଛିନ୍ନତା ଲକ୍ଷ୍ୟ କରାଯାଏ ।

---

୧୨୭ । ସୁଭଦ୍ରା ପରିଣୟ—ଲକ୍ଷ୍ମୀନାରାୟଣ ପ୍ରେସ, ଛାନ୍ଦ-୫, ୫୨, ଛାନ୍ଦ-୭, ୨୨ ଛାନ୍ଦ-୯-୧୮ ଓ ଛାନ୍ଦ-୧୭-୭୫-୮୪ ।

୧୨୮ । ରସଲେଖା—ଧର୍ମଗ୍ରନ୍ଥ ଷ୍ଟୋର, ଛାନ୍ଦ-୫, ୨୦-୨୪, ଛାନ୍ଦ-୧୭, ୨୩ ଓ ଛାନ୍ଦ-୧୨, ୨୩-୨୭

## (ଖ) ଓଡ଼ିଆ ଭାଷାରେ ଅନୂଦିତ ସ୍ମୃତିଗ୍ରନ୍ଥ—

ସ୍ମୃତିଶାସ୍ତ୍ରର ପ୍ରଭାବ କେବଳ ଓଡ଼ିଆ ମହାଭାରତ, ରାମାୟଣ, ଭାଗବତ, ପୁରାଣ, ଭକ୍ତିଗ୍ରନ୍ଥ ଓ କାବ୍ୟ-ସାହିତ୍ୟ ମଧ୍ୟରେ ସୀମାବଦ୍ଧ ହୋଇ ରହି ନଥିଲା । ଓଡ଼ିଶାର ଜନସାଧାରଣଙ୍କ ବ୍ୟବହାର ନିମିତ୍ତ ବହୁ ସ୍ମୃତିଗ୍ରନ୍ଥ ଓଡ଼ିଆ ଭାଷାରେ ଅନୁବାଦ କରାଯାଇଥିଲା । ଓଡ଼ିଆ ଭାଷାରେ-ଅନୂଦିତ ସ୍ମୃତିଗ୍ରନ୍ଥ ବହୁସଂଖ୍ୟାରେ ଉପଲବ୍ଧ ନ ହେଲେ ମଧ୍ୟ ଯେଉଁ କେତେଖଣ୍ଡି ଗ୍ରନ୍ଥ ସଂଗୃହୀତ ହୋଇଛି ତନ୍ମଧ୍ୟରେ 'ମନୁସ୍ମୃତି'ର ନାମ ସର୍ବାଦୌ ଉଲ୍ଲେଖନୀୟ । ଏହାର ଏକମାତ୍ର ନକଲ ଏପର୍ଯ୍ୟନ୍ତ ମିଳିଛି । ପ୍ରାଚୀନ ଶୈଳୀରେ ସରଳ ଓଡ଼ିଆ ଗଦ୍ୟରେ ଏହା ଅନୁବାଦ କରାଯାଇଛି । ଶ୍ଳୋକଗୁଡ଼ିକର ପାଠ ଓ ସଂଖ୍ୟାରେ ପ୍ରାୟ କୌଣସି ବ୍ୟତିକ୍ରମ ଦେଖାଯାଏ ନାହିଁ ।୧୨୯। ବହୁ ସଂଖ୍ୟାରେ ମିଳୁଥିବା ସ୍ମୃତିଗ୍ରନ୍ଥ ମଧ୍ୟରେ ଶ୍ରୀନିବାସକୃତ 'ଶୁଦ୍ଧିଦୀପିକା' ବା 'ଶ୍ରୀନିବାସ ଦୀପିକା'ର ନାମ ସ୍ମରଣୀୟ । ସରଳ ଓଡ଼ିଆ ଗଦ୍ୟରେ ଏହା ଅନୂଦିତ ହୋଇଛି ।୧୩୦। କାଳିଦାସ ଚମ୍ପତିଙ୍କ ପ୍ରଣୀତ 'ଶୁଦ୍ଧି ଚନ୍ଦ୍ରିକା' ସ୍ମୃତିଗ୍ରନ୍ଥ ଓଡ଼ିଆ ଗଦ୍ୟ ଓ ପଦ୍ୟରେ ଅନୁବାଦ କରାଯାଇଥିବାର ଦେଖାଯାଏ ।୧୩୧। ପରାଶର ସଂହିତା ବା ପରାଶର ଧର୍ମଶାସ୍ତ୍ରର ବହୁସଂଖ୍ୟକ ଅନୁବାଦ ମିଳେ ।୧୩୨। ତନ୍ମଧ୍ୟରେ ଦୁଇଟି ମୁଦ୍ରିତ ଓଡ଼ିଆ ପୁସ୍ତକ ଦେଖାଯାଏ । ପ୍ରଥମଟି ତାଳଚେରର ରାଜା ରାମଚନ୍ଦ୍ର ବୀରବର ହରିଚନ୍ଦନଙ୍କ ଦ୍ୱାରା ଅନୂଦିତ ଓ ଦ୍ୱିତୀୟଟି ସ୍ୱର୍ଗୀୟ ସୁଦର୍ଶନ ନନ୍ଦଙ୍କ ଦ୍ୱାରା ଅନୂଦିତ ହୋଇ ପ୍ରକାଶ ପାଇଛି । ଦ୍ୱାଦଶ ଅଧ୍ୟାୟ ସମ୍ବଳିତ ପରାଶର ସଂହିତାର ଏହି ଦୁଇଟି ସଂସ୍କରଣରେ ଶ୍ଳୋକସଂଖ୍ୟା ଯଥାକ୍ରମେ ୫୯୨ ଓ ୬୯୬ ଥିବାର ଦେଖାଯାଏ । ୧୩୩। କିନ୍ତୁ ପ୍ରଥମ ପୁସ୍ତକଟି ବନାରସ ଓ କଲିକତାରୁ ପ୍ରକାଶ ପାଇଥିବା ପରାଶର ସଂହିତା ସହିତ ସମାନ ଥିବାବେଳେ ଦ୍ୱିତୀୟ ପୁସ୍ତକରେ

---

୧୨୯ । ମନୁସ୍ମୃତି—OSM Ms. Dh. No. 252, 253

୧୩୦ । ଶ୍ରୀନିବାସ ଦୀପିକା—OSM. Ms. Dh.
No. 58, 461, 662, 683, 796, 893, 1064, 1079 etc.

୧୩୧ । ଶୁଦ୍ଧି ଚନ୍ଦ୍ରିକା—OSM. Ms. Dh.
No. 587, 1163, 1250, OR Pr. 16.

୧୩୨ । ପରାଶର ସଂହିତା - OSM. Ms. Dh. No. 43, 625, 951.

୧୩୩ । (କ) ଏତତ୍ ପାରାଶରଂ ଶାସ୍ତ୍ରଂ ଶ୍ଳୋକାନାଂ ଶତପଞ୍ଚକମ୍ ।
ଦ୍ୱିନବତ୍ୟା ସମାଯୁକ୍ତଂ ଧର୍ମଶାସ୍ତ୍ରସ୍ୟ ସଂଗ୍ରହ ॥ ୧୨-୭୪ ॥
(ପରାଶର ସଂହିତା—କଟକ ପ୍ରିଣ୍ଟିଂ କମ୍ପାନି, କଟକ, ୧୮୮୮)

(ଖ) ଏତତ୍ ପାରାଶରଂ ଶାସ୍ତ୍ରଂ ଶ୍ଳୋକ ଷଟ୍କଂ ତଥା ।
ଷଣ୍ଣବତ୍ୟା ସମାଯୁକ୍ତଂ ଧର୍ମସାର ସମୁଚ୍ଚୟମ୍ ॥୧୨-୭୦॥
(ପରାଶର ସଂହିତା—ଅରୁଣୋଦୟ ପ୍ରେସ, କଟକ, ୧୯୨୮)

ବହୁ ପ୍ରକ୍ଷିପ୍ତ ଶ୍ଳୋକ ଦିଆଯାଇ କେବଳ କଳେବର ବୃଦ୍ଧି କରାଯାଇଛି ।୧୩୪। ପରାଶର ସଂହିତାର ଆଉ ଏକ ଅପ୍ରକାଶିତ ପୋଥିରେ ଶ୍ଳୋକସଂଖ୍ୟା ୫୭୨ ଥିବାର ଦେଖାଯାଏ । ଏହି ପୋଥିଟି ୧୭୫୭ ଶକାବ୍ଦ ବା ୧୮୩୫ ଖ୍ରୀଷ୍ଟାବ୍ଦରେ ନକଲ କରାଯାଇଛି ।୧୩୫। ପ୍ରକାଶିତ ପୁସ୍ତକଗୁଡ଼ିକର ପ୍ରାୟ ୭୫ ବର୍ଷ ପୂର୍ବରୁ ଏହା ନକଲ କରାଯାଇଥିବାର ଜଣାଯାଏ । ସେ ଯାହାହେଉ ପରାଶର ସଂହିତାର ୫୯୨ ସଂଖ୍ୟାକ ଶ୍ଳୋକକୁ ବହୁ ଅନୁବାଦକ ଗ୍ରହଣ କରିଛନ୍ତି । ତଦ୍‌ବ୍ୟତୀତ କର୍ମବିପାକ, ଗୋବଧ ପ୍ରାୟଶ୍ଚିତ୍ତ, ମଣ୍ଡଳବଧି, ହରିଭକ୍ତି କଳ୍ପଲତା ପ୍ରଭୃତି ଗ୍ରନ୍ଥର ଓଡ଼ିଆ ଗଦ୍ୟାନୁବାଦ ସଂଗୃହୀତ ହୋଇଛି ।୧୩୬।

ସ୍ମୃତିକାର ଶମ୍ଭୁକର ମିଶ୍ରଙ୍କ 'ଦୁର୍ବଳ କୃତ୍ୟ', ବାସୁଦେବ ତ୍ରିପାଠୀଙ୍କ ପ୍ରଣୀତ'ବୀରପରାକ୍ରମ' ଓ ଅଜ୍ଞାତ ଲେଖକଙ୍କ ବିଭିନ୍ନ ବ୍ରତକଥା ଓ ଗ୍ରହାଭିଧାନ ସ୍ମୃତିଗ୍ରନ୍ଥର ଓଡ଼ିଆ ଗଦ୍ୟାନୁବାଦ ସଂଗୃହୀତ ହୋଇଛି ।୧୩୭। ବିଷ୍ଣୁପୁରୀଙ୍କ ପ୍ରଣୀତ 'ଭକ୍ତି ରତ୍ନାବଳୀ' ଗ୍ରନ୍ଥଟି ଓଡ଼ିଆ ଗଦ୍ୟ ଓ ପଦ୍ୟରେ ଅନୁବାଦ କରାଯାଇଛି । ଏହାର ଗଦ୍ୟାନୁବାଦକଙ୍କ ନାମ ଅଜ୍ଞାତ ।୧୩୮। କବି କବି ରାମଦାସ ଭାଗବତ ବୃତ୍ତରେ ଉକ୍ତ ଗ୍ରନ୍ଥର ପଦ୍ୟାନୁବାଦ କରିଛନ୍ତି । ଏହି ପଦ୍ୟାନୁବାଦ ମୂଳଶ୍ଳୋକ ଓ ଶ୍ରୀଧର ସ୍ୱାମୀଙ୍କ ଟୀକାସହିତ ପ୍ରକାଶ ପାଇଛି ।୧୩୯। ଭକ୍ତିରତ୍ନାବଳୀର ଅପ୍ରକାଶିତ ଗଦ୍ୟାନୁବାଦ ପୋଥି ଓ ପ୍ରକାଶିତ ପଦ୍ୟାନୁବାଦ ପୁସ୍ତକର ଶ୍ଳୋକପାଠରେ ସାମାନ୍ୟ ପାର୍ଥକ୍ୟ ଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ ମୁଦ୍ରିତ ପୁସ୍ତକର ପ୍ରଥମ ବିରଚନ ଅଷ୍ଟମ ଶ୍ଳୋକରେ ଥିବା 'ମହାର୍ଘ୍ୟଂ' ଓ 'ଗୃଦ୍ୟଂ' ସ୍ଥାନରେ ଯଥାକ୍ରମେ 'ମହାତ୍ମ୍ୟଂ' ଓ 'ସଦ୍ୟୋ'

---

୧୩୪ । (କ) ପରାଶର ସଂହିତା— ସମ୍ପାଦକ, ମନ୍ମଥନାଥ ଦତ୍ତ, କଲିକତା ୧୯୦୯
(ଖ) ତଦୈବ – ଚୌଖମ୍ବା ସଂସ୍କୃତ ସିରିଜ, ବନାରସ, ୧୯୬୮

୧୩୫ । ପରାଶର ସଂହିତା—OSM. Ms. Dh. No. 1100.

୧୩୬ । କର୍ମବିପାକ—OSM. Ms. Dh. 43.
ଗୋବଧ ପ୍ରାୟଶ୍ଚିତ୍ତ—OSM. Ms. Dh. 1015
ପ୍ରାୟଶ୍ଚିତ୍ତ—OSM. Ms. Dh. No-926.
ମଣ୍ଡଳବଧି—OSM. Ms. Dh. No-850.
ହରିଭକ୍ତି କଳ୍ପଲତା—OSM. Ms. Dh. No. 1034, 1284, OL. No.-1280, ORPR. No. 57.

୧୩୭ । ଦୁର୍ବଳ କୃତ୍ୟ—OSM. Ms. Dh. No. 255, 357.
ବୀର ପରାକ୍ରମ—OSM. Ms. Dh. No. 336.
ବିଭିନ୍ନ ବ୍ରତକଥା—OSM. Ms. Dh. No. 95.
ଗ୍ରହାଭିଧାନ—OSM. Ms. Dh. No. 689.

୧୩୮ । ଭକ୍ତି ରତ୍ନାବଳୀ—OSM. Ms. Dh. No. 24, 34.

୧୩୯ । ଭକ୍ତି ରତ୍ନାବଳୀ—ରାମଦାସ, ଅରୁଣୋଦୟ ପ୍ରେସ, କଟକ, ୧୯୦୦ ।

ପୋଥିପାଠ ରହିଛି ।୧୪୦। ଭକ୍ତିରତ୍ନାବଳୀର ପ୍ରୟାଗ ସଂସ୍କରଣରେ ସେହି ପଦ ଦୁଇଟି 'ମହାର୍ଘଂ' ଓ 'ମାସାଦ୍ୟମାଦ୍ୟାନ୍ନିଧିବର' ରୂପେ ମୁଦ୍ରିତ ହୋଇଛି ।୧୪୧। ତଦ୍‌ବ୍ୟତୀତ ଏହି ଉଭୟ ସଂସ୍କରଣର ଶ୍ଳୋକସଂଖ୍ୟାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ପ୍ରୟାଗ ସଂସ୍କରଣରେ ଥିବା ପ୍ରଥମ ବିରଚନର ୪୬, ୭୫, ୭୬ ଶ୍ଳୋକ ଓଡ଼ିଶାର ସଂସ୍କରଣରେ ନାହିଁ । ସେହିପରି ଓଡ଼ିଶା ସଂସ୍କରଣରେ ଥିବା ପଞ୍ଚମ ବିରଚନର ୩୨, ଷଷ୍ଠର ୨୬ ଓ ନବମର ୪ ସଂଖ୍ୟକ ଶ୍ଳୋକ ପ୍ରୟାଗ ସଂସ୍କରଣରେ ଦେଖାଯାଏ ନାହିଁ । କବି ରାମଦାସ ଶ୍ରୀଧର ସ୍ୱାମୀଙ୍କ ଟୀକା ଅନୁସାରେ ଅନୁବାଦ କରିଥିବାରୁ ଓଡ଼ିଶାର ସଂସ୍କରଣଟି ଅଧିକ ପ୍ରାମାଣିକ ମନେହୁଏ । ଅନୁବାଦକ କବି ରାମ ଦାସ ଛତିଶ ଅଧ୍ୟାୟରେ 'ହରିଭକ୍ତି ଚନ୍ଦ୍ରୋଦୟ' ନାମକ ଓଡ଼ିଆ ଭକ୍ତିଗ୍ରନ୍ଥଟିଏ ଭାଗବତ ବୃତ୍ତରେ ରଚନା କରିଛନ୍ତି । ଓଡ଼ିଆ ଭକ୍ତି ସାହିତ୍ୟ ମଧ୍ୟରେ ଏହାର ସ୍ଥାନ ଉଲ୍ଲେଖଯୋଗ୍ୟ । ହରିଭକ୍ତି ଚନ୍ଦ୍ରୋଦୟ ଗ୍ରନ୍ଥର ବହୁ ପୋଥି ମିଳୁଥିବାରୁ ଓଡ଼ିଆ ଭକ୍ତମାନଙ୍କଠାରେ ଏକଦା ଏହା ବିଶେଷ ଆଦୃତ ହୋଇଥିବାର ଜଣାଯାଏ । ଭକ୍ତି ସାହିତ୍ୟ ଅନ୍ତର୍ଗତ ମହିମ୍ନ ସ୍ତୋତ୍ର, ନବଗ୍ରହ ସ୍ତୋତ୍ର, କଣୋରିଷ୍ଟକ, ପତିତପାବନାଷ୍ଟକ, ଜଗନ୍ନାଥାଷ୍ଟକ, ସ୍ତୋତ୍ରକବଚ ପ୍ରଭୃତି କେତେକ ଉପାଦେୟ କ୍ଷୁଦ୍ରଗ୍ରନ୍ଥର ଅନୁବାଦ ବିଶେଷ ପ୍ରସାର ଲାଭ କରିଛି ।୧୪୨। ଏହି ଅନୁବାଦଗୁଡ଼ିକରୁ ସ୍ମୃତିଶାସ୍ତ୍ରର ଉପାଦେୟତା ଓ ଓଡ଼ିଆ ସାହିତ୍ୟରେ ତାହାର ପ୍ରଭାବ ଲକ୍ଷ୍ୟ କରିଯାଇପାରେ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ ବିଂଶ ଶତାବ୍ଦୀର ତୃତୀୟ ଦଶକ ମଧ୍ୟରେ କର୍ମକାଣ୍ଡ, ସ୍ତୁତି-ସ୍ତୋତ୍ର, ବୈଦିକ ମନ୍ତ୍ରାବଳୀ ପ୍ରୟୋଗ ସମ୍ବନ୍ଧୀୟ କେତେଖଣ୍ଡି ଗ୍ରନ୍ଥର ଭାବାନୁବାଦ ଦେଖାଯାଏ । ତନ୍ମଧ୍ୟରେ ବିହାରୀ କର୍ମକାଣ୍ଡ, ପୁରୋହିତ ସର୍ବସ୍ୱ, ପୁରୋହିତ ଦର୍ପଣ, ପଣ୍ଡିତ ସର୍ବସ୍ୱ, ଠାକୁର ପୂଜାପଦ୍ଧତି, ମଧୁସୂଦନ ଦାସଙ୍କ 'ପ୍ରେମଭକ୍ତି ସାଧନା', ଗୋପାଳ ଦାସଙ୍କ 'ବୈଷ୍ଣବ ଧର୍ମ ରତ୍ନାକର', ଶ୍ରୀବତ୍ସ ପଣ୍ଡାଙ୍କ 'ପଞ୍ଚ ଯଜ୍ଞବିଧି' ପ୍ରଭୃତିର ନାମ ଉଲ୍ଲେଖନୀୟ । ଏଗୁଡ଼ିକ ଓଡ଼ିଆ ଜନସାଧାରଣଙ୍କ ବ୍ୟବହାର ଉଦ୍ଦେଶ୍ୟରେ ପ୍ରକାଶ କରିଯାଇଥିବାର ମନେ ହୁଏ ।

---

୧୪୦ । ତଦିଦମତିମହାର୍ଘ୍ୟଂ ଭକ୍ତିରତ୍ନଂ ମୁରାରେ—
ରହିମଧିକ ସଯତ୍ନୈଃ ପ୍ରୀତୟେ ବୈଷ୍ଣବାନାମ୍ ।
ହୃଦଗତ ଜଗଦୀଶା ଦେଶମାସାଦ୍ୟ ଗୃଦ୍ୟଂ
ନ୍ନିଧିବରମିଦ ତସ୍ମାଦ୍ ବାରଧେରୁଦ୍ଧରାମି ॥ ୧-୮

୧୪୧ । ଭକ୍ତିରତ୍ନାବଳୀ—ଇଣ୍ଡିୟାନ୍ ପ୍ରେସ୍, ପ୍ରୟାଗ-୧୯୧୪ ।

୧୪୨ । ମହିମ୍ନ ସ୍ତୋତ୍ର—ନବଗ୍ରହ ସ୍ତୋତ୍ର—OSM. Ms. Dh. No. 1235
କଣୋରିଷ୍ଟକ—ପତିତପାବନାଷ୍ଟକ—OSM. Ms. Dh. No 513
ସ୍ତୋତ୍ର କବଚ—OSM.. Ms. Dh. No. 509

ମାନବ ସମାଜକୁ ସୁସ୍ଥ, ନିୟମିତ ଓ ଆଦର୍ଶସ୍ଥାନୀୟ କରି ଗଢ଼ିବା ସ୍ମୃତିଶାସ୍ତ୍ରର ପ୍ରଧାନ ଲକ୍ଷ୍ୟ । ଏହାକୁ ସମାଜଶାସ୍ତ୍ର କୁହାଯାଏ । ସ୍ମୃତିଶାସ୍ତ୍ରରେ ବ୍ୟକ୍ତି, ପରିବାର ଓ ସମାଜର ମଙ୍ଗଳ ପାଇଁ ଯଥାର୍ଥ ମାର୍ଗ ନିର୍ଦ୍ଦେଶ ନିମିତ୍ତ କୁଳ, ପରମ୍ପରା ଓ ଶାସ୍ତ୍ର ନିର୍ଦ୍ଧାରିତ ଧର୍ମ ଓ କର୍ମର ସମନ୍ୱୟ ସାଧିତ ହୋଇଛି । ସାହିତ୍ୟ ସମାଜର ଆଲେଖ୍ୟ । ପୁରାଣ, ଇତିହାସ, କାବ୍ୟକବିତା ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାବରେ ଆଦର୍ଶ ସମାଜ ଓ ସୁନ୍ଦର ଜୀବନ ଗଠନର ଉଦ୍ୟମ କରାଯାଇଥାଏ । ଓଡ଼ିଆ ସାହିତ୍ୟର ସାମାଜିକ ଚିତ୍ରରେ ତାହାହିଁ ରୂପାୟିତ ହୋଇଛି । ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟରେ କ୍ରାନ୍ତଦର୍ଶୀ କବିଗଣ ସେହି ସତ୍ୟର ପ୍ରତିଷ୍ଠା ନିମିତ୍ତ ବ୍ୟକ୍ତି, ପରିବାର ଓ ସମାଜର କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟ ପ୍ରସଙ୍ଗରେ ସ୍ମୃତିବିଧାନ ଗୁଡ଼ିକର ଉପଯୋଗ କରିଛନ୍ତି । ସେଥିପାଇଁ ସାରଳାଦାସଙ୍କ ଠାରୁ ଉପେନ୍ଦ୍ରଭଞ୍ଜଙ୍କ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଅଧ୍ୟୟନ ଦ୍ୱାରା ଧର୍ମ, ସମାଜ ଓ ସଂସ୍କୃତି କ୍ଷେତ୍ରରେ ଓଡ଼ିଆ ସମାଜ ଅଦ୍ୟାବଧି ପ୍ରେରଣା ପାଇ-ଆସୁଥିବାର ପରିଲକ୍ଷିତ ହୁଏ ।

□□□

# ସପ୍ତମ ଅଧ୍ୟାୟ

## ଉପସଂହାର

ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ସଂସ୍କୃତ ସାହିତ୍ୟକୁ ଉତ୍କଳର ଅବଦାନ ଉଲ୍ଲେଖ-ଯୋଗ୍ୟ । ଓଡ଼ିଆ କବି ଓ ପଣ୍ଡିତମାନଙ୍କ ରଚିତ ବହୁ ଉତ୍କୃଷ୍ଟ ଗ୍ରନ୍ଥ ପ୍ରକାଶନ ଓ ପରିପ୍ରସାର ଅଭାବରୁ ସଂସ୍କୃତ ସାହିତ୍ୟର ଇତିହାସରେ ଯଥାର୍ଥ ସ୍ଥାନ ଲାଭ କରିପାରିନାହିଁ । ତଦ୍‌ବ୍ୟତୀତ ଓଡ଼ିଶାର ସଂସ୍କୃତ ଗ୍ରନ୍ଥ ସମ୍ବନ୍ଧୀୟ ଆଲୋଚନାର ମଧ୍ୟ ବିଶେଷ ଅଭାବ ପରିଲକ୍ଷିତ ହୁଏ । ଓଡ଼ିଶାର ସଂସ୍କୃତ ସାହିତ୍ୟ ଓ ଓଡ଼ିଆ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ଅଦ୍ୟାବଧି ଆରମ୍ଭ ହୋଇନାହିଁ ବୋଲି କୁହାଯାଇ ପାରେ । ତେଣୁ ପ୍ରସ୍ତୁତ ନିବନ୍ଧର ପୂର୍ବ ଅଧ୍ୟାୟରେ ପ୍ରଥମ କରି ସ୍ମୃତିଶାସ୍ତ୍ର ଓ ଓଡ଼ିଆ ସାହିତ୍ୟର ତୁଳନାତ୍ମକ ସମୀକ୍ଷା କରିଯାଇଛି । ଏହି ଅଧ୍ୟାୟରେ ଉତ୍କଳୀୟ ସ୍ମୃତିଶାସ୍ତ୍ରର ସାଂସ୍କୃତିକ ଓ ଐତିହାସିକ ଗୁରୁତ୍ୱ ଓ ବୈଶିଷ୍ଟ୍ୟ ସମ୍ବନ୍ଧୀୟ ଆଲୋଚନାକୁ ସେହି ଦୃଷ୍ଟିରୁ ପ୍ରଥମ ପ୍ରୟାସଭାବେ ଗ୍ରହଣ କରିଯାଇପାରେ ।

ସଂସ୍କୃତ ସାହିତ୍ୟର ଉପନିଷଦ୍, ପୁରାଣ, ସ୍ମୃତି, ତନ୍ତ୍ର, ଜ୍ୟୋତିଷ, ଆୟୁର୍ବେଦ, କାବ୍ୟ-ନାଟକାଦି ବିଭାଗରେ ଓଡ଼ିଶାର ପଣ୍ଡିତମାନେ ବହୁ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି ।[୧] ଆଲୋଚ୍ୟ ସ୍ମୃତି ବିଭାଗରେ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ପୂର୍ବରୁ କୌଣସି ପୂର୍ଣ୍ଣାଙ୍ଗ ଗ୍ରନ୍ଥ ଲୋକ-ଲୋଚନକୁ ଆସି ନ ଥିଲେ ମଧ୍ୟ ପ୍ରାଚୀନ ଉତ୍କଳର ମାଠର, ଶୈଳୋଦ୍ଭବ, ଭୌମକର, ସୋମ ଓ ଗଙ୍ଗବଂଶୀୟ ରାଜାମାନଙ୍କ ପ୍ରଦତ୍ତ ଦାନପତ୍ରଗୁଡ଼ିକରୁ ତତ୍କାଳୀନ ପଣ୍ଡିତଗଣ ବେଦ, ବେଦାଙ୍ଗ, ଇତିହାସ, ପୁରାଣ, ନ୍ୟାୟ, ମୀମାଂସା, ଧର୍ମଶାସ୍ତ୍ରାଦି ବିଦ୍ୟାରେ ପ୍ରବୀଣ ବିଦ୍ୱାନ୍ ଥିବାର ପ୍ରମାଣ ମିଳେ । ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟରେ ତାହା ଆଲୋଚିତ ହୋଇଛି ।

ଶତାନନ୍ଦ ଆଚାର୍ଯ୍ୟଙ୍କ(୧୧ଶ ଶତାବ୍ଦୀ) ପ୍ରଣୀତ 'ଶତାନନ୍ଦ ସଂଗ୍ରହ' ଓଡ଼ିଶାର ପ୍ରଥମ ସ୍ମୃତି-ଗ୍ରନ୍ଥ ବୋଲି କୁହାଯାଉଥିଲେ ମଧ୍ୟ ଏହା ଗ୍ରନ୍ଥ ଆକାରରେ ଅଦ୍ୟାବଧି ହସ୍ତଗତ ହୋଇନାହିଁ । କିନ୍ତୁ ଓଡ଼ିଶାର ପରବର୍ତ୍ତୀ ସ୍ମୃତିକାରଗଣ ଏହି ଗ୍ରନ୍ଥ ଓ ଗ୍ରନ୍ଥକାରଙ୍କ ନାମକୁ ବିଭିନ୍ନ ସିଦ୍ଧାନ୍ତରେ ବାରମ୍ବାର ଉଦ୍ଧାର କରିଛନ୍ତି । ତେଣୁ ଶତାନନ୍ଦ ସଂଗ୍ରହ ଗ୍ରନ୍ଥଟି ସଙ୍କଳିତ ହୋଇ

---

୧ । An Alphabetical Catalogue of Sanskrit Manuscripts—Part-I, Page-1-109 ।

ପ୍ରକାଶ ପାଇଲେ, ଓଡ଼ିଶାର ସାଂସ୍କୃତିକ ଇତିହାସରେ ଏହା ଯେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିବ, ସେଥିରେ ସନ୍ଦେହର ଅବକାଶ ରହେନାହିଁ । ଏହି ଗ୍ରନ୍ଥଟି 'ଧର୍ମଶାସ୍ତ୍ର ଇତିହାସ' ଗ୍ରନ୍ଥର ପୁସ୍ତକ ତାଲିକାରେ ସ୍ଥାନ ପାଇଥିବାର ଦେଖାଯାଏ ।୨।

ପରବର୍ତ୍ତୀ ସ୍ମୃତିକାର ଶମ୍ଭୁକର ମିଶ୍ର ବାଜପେୟୀ (୧୩ଶ ଶତାବ୍ଦୀ) କେବଳ ଓଡ଼ିଶାରେ ନୁହେଁ, ସର୍ବଭାରତୀୟ ସ୍ତରରେ ମଧ୍ୟ ଖ୍ୟାତିଲାଭ କରିଥିଲେ । ଶମ୍ଭୁକରଙ୍କ ପ୍ରଣୀତ 'ବିବାହ ପଦ୍ଧତି', 'ଶ୍ରାଦ୍ଧ ପଦ୍ଧତି' ଓ 'ଦୁର୍ବଳ କୃତ୍ୟ ପଦ୍ଧତି' ବା 'ପ୍ରେତକୃତ୍ୟ ପଦ୍ଧତି' ଅଦ୍ୟାବଧି ଓଡ଼ିଶାରେ ପ୍ରଚଳିତ ରହିଛି । ଏହି ତିନୋଟି ଗ୍ରନ୍ଥ ମଧ୍ୟରୁ ପ୍ରଥମ ଦୁଇଟି ଉତ୍କଳାକ୍ଷରରେ ମୁଦ୍ରିତ ହୋଇଥିବାର ଜଣାଯାଏ ।୩। ତଦ୍‌ବ୍ୟତୀତ ଶ୍ରୌତଯଜ୍ଞ ଓ ପ୍ରାୟଶ୍ଚିତ୍ତ ସମ୍ବନ୍ଧୀୟ 'ଶମ୍ଭୁକର ପଦ୍ଧତି' ନାମକ ଗ୍ରନ୍ଥଟି ତାଙ୍କର ଶ୍ରେଷ୍ଠ ଅବଦାନ । ବିଭିନ୍ନ ପ୍ରକାର ଯଜ୍ଞାନୁଷ୍ଠାନ କାର୍ଯ୍ୟରେ ଏହି ଗ୍ରନ୍ଥର ଉପାଦେୟତାକୁ ଅସ୍ୱୀକାର କରାଯାଇ ନପାରେ ।

ବିଦ୍ୟାକର ମିଶ୍ର ବାଜପେୟୀଙ୍କ (୧୪ଶ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'ନିତ୍ୟାଚାର ପଦ୍ଧତି' ଓଡ଼ିଶାର ଅନ୍ୟତମ ଉପାଦେୟ ସ୍ମୃତିଗ୍ରନ୍ଥ । ଏହି ଗ୍ରନ୍ଥକୁ ବଙ୍ଗଳାର ପ୍ରସିଦ୍ଧ ସ୍ମୃତିକାର ରଘୁନନ୍ଦନ 'ଆହ୍ନିକତତ୍ତ୍ୱ'ରେ ଓ ଦାକ୍ଷିଣାତ୍ୟ ସ୍ମୃତିକାର ବିଶ୍ୱେଶ୍ୱର ଭଟ୍ଟ 'ମଦନ ପାରିଜାତ' ଗ୍ରନ୍ଥରେ ଉଦ୍ଧାର କରିଛନ୍ତି । ଏଥିରୁ ଗ୍ରନ୍ଥଟିର ପ୍ରସିଦ୍ଧି ଓ ବ୍ୟାପକତା ସହଜରେ ଅନୁମେୟ । ନାମତଃ ନିତ୍ୟକର୍ମ ବିଷୟକ ହୋଇଥିଲେ ମଧ୍ୟ ଏଥିରେ ସ୍ମୃତିଶାସ୍ତ୍ରର ବିଭିନ୍ନ ପ୍ରସଙ୍ଗ ଆଲୋଚିତ ହୋଇଛି । ପଞ୍ଚଦେବତା ପୂଜା, ଉପନୟନ ଓ ବିବାହ ସଂସ୍କାର ଏହାର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଗ୍ରନ୍ଥଟିର ଉପାଦେୟତା ଅନୁଭବ କରି ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ଏହାକୁ ୧୯୦୩ ମସିହାରେ ପ୍ରକାଶ କରାଯାଇଛି । ନିତ୍ୟାଚାର ବ୍ୟତୀତ ବୈଦିକ ପଦ୍ଧତିର ବିଶେଷ କରି ତାନ୍ତ୍ରିକ ପଦ୍ଧତିର ଉପାସନା ନିର୍ଦ୍ଦେଶହିଁ ଏହି ଗ୍ରନ୍ଥର ବିଶେଷତ୍ୱ ।୪। ଏହା ଧର୍ମ-ଶାସ୍ତ୍ର ଇତିହାସରେ ସ୍ଥାନ ପାଇଛି । ୫ ।

ପରବର୍ତ୍ତୀ ସ୍ମୃତିକାର ବୃହସ୍ପତି ସୂରିଙ୍କ (୧୪ଶ ଶତାବ୍ଦୀ) ପ୍ରଣୀତ 'କୃତ୍ୟ କୌମୁଦୀ' ଗ୍ରନ୍ଥଟି ଓଡ଼ିଶାର ପର୍ବପର୍ବାଣୀ ସମ୍ବନ୍ଧୀୟ ଏକ ପ୍ରାମାଣିକ ଗ୍ରନ୍ଥ । ଏଥିରେ ବିଭିନ୍ନ ପ୍ରକାର ବ୍ରତ ପାଳନ ବିଷୟରେ ବିସ୍ତୃତ ଆଲୋଚନା କରାଯାଇଛି । ତଦ୍‌ବ୍ୟତୀତ ଏହି ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ 'ଗୁଣ୍ଡିଚା ଯାତ୍ରା' ଓ 'ପ୍ରଥମାଷ୍ଟମୀ' ଉତ୍ସବ ପାଳନର ପ୍ରଥମ ଉଲ୍ଲେଖ ମିଳେ । ଏଣୁ

---

୨ । History of Dharmashastra—Vol. I, P. 633 ।

୩ । A descriptive Catalogue of Sanskrit Manuscripts—Vol. I, PP. IX ।

୪ । Nityachar Paddhati—Preface—P. 1-2.

୫ । History of Dharmsahastra. P. 513 & 572.

ଓଡ଼ିଶାର ସାଂସ୍କୃତିକ ଓ ଐତିହାସିକ ଜୀବନରେ ଏହି ଗ୍ରନ୍ଥ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଛି ।

ବାଜପେୟୀ ରାମଚନ୍ଦ୍ର ଦାସ (୧୫ଶ ଶତାବ୍ଦୀ) ଥିଲେ ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ସ୍ମୃତିକାର । ଭାରତର ସ୍ମୃତି ଇତିହାସରେ ସେ, ରାମଚନ୍ଦ୍ର ବାଜପେୟୀ, ସୂର୍ଯ୍ୟଦାସ ପୁତ୍ର ଓ ନୈମିଷାରଣ୍ୟବାସୀ ନାମରେ ସୁବିଦିତ । ସେ ଏଗାରଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରେ ବିଭିନ୍ନ ପ୍ରକାର ଯଜ୍ଞକୁଣ୍ଡ ନିର୍ମାଣ ସମ୍ବନ୍ଧୀୟ 'କୁଣ୍ଡଲକ୍ଷଣ ବିବୃତି' ଏକ ଉପାଦେୟ ଗ୍ରନ୍ଥ । ଭିନ୍ନ ଭିନ୍ନ ନାମରେ ଏହାର ବିଭିନ୍ନ ନକଲ ମିଳୁଥିବାରୁ ଗ୍ରନ୍ଥଟିର ଲୋକପ୍ରିୟତା ସହଜରେ ଅନୁମେୟ । ସର୍ବଭାରତୀୟ ସ୍ତରରେ ଲିଖିତ କୁଣ୍ଡ ସମ୍ବନ୍ଧୀୟ ପ୍ରାୟ ଅର୍ଦ୍ଧଶତ ସଂଖ୍ୟକ ଗ୍ରନ୍ଥ ମଧ୍ୟରେ ରାମ ବାଜପେୟୀଙ୍କ ପ୍ରଣୀତ ପୂର୍ବୋକ୍ତ ଗ୍ରନ୍ଥଟି ପ୍ରଥମ ରଚନା । ପରବର୍ତ୍ତୀ କାଳରେ ରଚିତ କୁଣ୍ଡ ସମ୍ବନ୍ଧୀୟ ପ୍ରାୟ ସମସ୍ତ ଗ୍ରନ୍ଥରେ ରାମ ବାଜପେୟୀଙ୍କ ନାମ ଓ ଗ୍ରନ୍ଥର ନାମ ଉଦ୍ଧୃତ ହୋଇଥିବାର ଦେଖାଯାଏ । ତେଣୁ ସର୍ବଭାରତୀୟ ସ୍ତରରେ 'କୁଣ୍ଡଲକ୍ଷଣ ବିବୃତି'ର ସ୍ଥାନ ଉଲ୍ଲେଖଯୋଗ୍ୟ । ୬ । ଏତଦ୍‌ବ୍ୟତୀତ ପୁଂସବନଠାରୁ ବିବାହ ବିଧି ସଂସ୍କାରକୁ ନେଇ ରଚିତ 'କର୍ମାଙ୍ଗ ପଦ୍ଧତି' ଗ୍ରନ୍ଥଟି ସେ ସମୟରେ ଓଡ଼ିଶାରେ ଲୋକପ୍ରିୟତା ଅର୍ଜନ କରିଥିଲା । ଓଡ଼ିଶାର ସ୍ମୃତିଶାସ୍ତ୍ର ରଚନା କ୍ଷେତ୍ରରେ ଗ୍ରନ୍ଥ ଦୁଇଟିର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ସେଥିରେ ସନ୍ଦେହ ନାହିଁ । ରାମ ବାଜପେୟୀଙ୍କ ପ୍ରଥମ ଗ୍ରନ୍ଥଟି ଧର୍ମଶାସ୍ତ୍ର ଇତିହାସରେ ସ୍ଥାନଲାଭ କରିଛି ।

ଗଜପତି ରାଜତ୍ୱକାଳୀନ (୧୪୩୫-୧୫୩୩ ଖ୍ରୀ:ଅ:) ପ୍ରସିଦ୍ଧ ସ୍ମୃତିକାରମାନଙ୍କ ମଧ୍ୟରେ କାଳିଦାସ ଚୟନଙ୍କ ନାମ ଅବିସ୍ମରଣୀୟ । ତାଙ୍କ ପ୍ରଣୀତ 'ଶୁଦ୍ଧି ଚନ୍ଦ୍ରିକା' ମୃତାଶୌଚ ସମ୍ବନ୍ଧୀୟ ଏକ କ୍ଷୁଦ୍ରତମ ସ୍ମୃତିଗ୍ରନ୍ଥ । ଓଡ଼ିଶାରେ ଏକଦା ଏହି ଗ୍ରନ୍ଥ ବିଶେଷ ଆଦୃତି ଲାଭ କରିଥିଲା । ସେଥିପାଇଁ ପଣ୍ଡିତ ଶାନ୍ତିରଥ ଓ ଏକାମ୍ରନିବାସୀ ବିଦ୍ୟାବାଗୀଶ ଏହି ଗ୍ରନ୍ଥର ଦୁଇଟି ସଂସ୍କୃତ ଟୀକା ରଚନା କରିଥିଲେ । ତଦ୍‌ବ୍ୟତୀତ ଓଡ଼ିଆ ଭାଷାରେ ଏହାର ଏକାଧିକ ଗଦ୍ୟାନୁବାଦ ଓ ପଦ୍ୟାନୁବାଦ କରାଯାଇଥିବାର ଦେଖାଯାଏ । ତେଣୁ କ୍ଷୁଦ୍ରାକାର ହେଲେ ମଧ୍ୟ ଗ୍ରନ୍ଥଟିର ଉପାଦେୟତା ସହଜରେ ଅନୁମେୟ ।

ଗଜପତି ପୁରୁଷୋତ୍ତମ ଦେବଙ୍କ ପ୍ରଣୀତ 'ମୁକ୍ତି ଚିନ୍ତାମଣି' ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ । ତାଙ୍କର ଅନ୍ୟତମ ସ୍ମୃତିଗ୍ରନ୍ଥ 'ଗୋପାଳାର୍ଚ୍ଚନ ବିଧି'ରେ ଶ୍ରୀଜଗନ୍ନାଥଙ୍କ ପୂଜାବିଧି ନିର୍ଦ୍ଦେଶ କରାଯାଇଛି । ଏହି ଗ୍ରନ୍ଥଟି ଗୋପାଳାର୍ଚ୍ଚନ ପଦ୍ଧତି, ନୀଳାଦ୍ରି-ନାଥ ପୂଜାବିଧି ବା ନୀଳାଦ୍ରିମହୋଦୟାର୍ଚ୍ଚନବିଧି ନାମରେ ପ୍ରଚଳିତ ଥିବାର ଦେଖାଯାଏ । ତେଣୁ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ଜିଜ୍ଞାସୁ ପଣ୍ଡିତମାନଙ୍କ ପକ୍ଷରେ ଏହି ଗ୍ରନ୍ଥ ଦୁଇଟିର ଯେ ଯଥେଷ୍ଟ ଆବଶ୍ୟକତା ରହିଛି, ଏଥିରେ ସନ୍ଦେହ ନାହିଁ । ତନ୍ମଧ୍ୟରୁ କେବଳ 'ମୁକ୍ତିଚିନ୍ତାମଣି'ଟି ଧର୍ମଶାସ୍ତ୍ର ତାଲିକାରେ ସ୍ଥାନ ପାଇଥିବାର ଦେଖାଯାଏ । ୭ ।

---

୬ । History of Dharmashastra—P-531-534 & 599.

୭ । History of Dharmashastra—P-605

ଗଜପତି ପ୍ରତାପରୁଦ୍ର ଦେବଙ୍କ ପ୍ରଣୀତ 'ସରସ୍ୱତୀ ବିଳାସ' ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ସ୍ମୃତିଗ୍ରନ୍ଥ । ପ୍ରାଚୀନ ଭାରତର ପ୍ରଶାସନ ଓ ବିଚାର କ୍ଷେତ୍ରରେ ଏହାର ଉପଯୋଗିତା ସମଗ୍ର ଭାରତରେ ପ୍ରସିଦ୍ଧି ଲାଭକରିଥିଲା । ସାର୍ ଚାର୍ଲସ୍ ଗ୍ରେ ଓ ପଣ୍ଡିତ ପଞ୍ଚାଭିରାମ ଶାସ୍ତ୍ରୀଙ୍କ ଉଲ୍ଲେଖ ଅନୁସାରେ 'ସରସ୍ୱତୀ ବିଳାସ' ନ୍ୟାୟାଳୟର ବିଚାରକ୍ଷେତ୍ରରେ ଓଡ଼ିଶା ସହିତ ସମଗ୍ର ଦକ୍ଷିଣ-ଭାରତରେ ଅଦ୍ୟାପି ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । 'ସରସ୍ୱତୀ ବିଳାସ' ଗ୍ରନ୍ଥ ସର୍ବଭାରତୀୟ ସ୍ତରରେ ଏକ ପ୍ରାମାଣିକ ଶାସ୍ତ୍ରଭାବେ ଏପରି ଲୋକପ୍ରିୟତା ଅର୍ଜନ କରିଥିଲା ଯେ ଥୋମାସ୍ ଫାଲ୍‌କେ ନାମରେ ଜଣେ ବୈଦେଶିକ ପଣ୍ଡିତ ଏହାକୁ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ । ୮ । ଓଡ଼ିଶାର ଅନ୍ୟାନ୍ୟ ପ୍ରସିଦ୍ଧ ସ୍ମୃତିଗ୍ରନ୍ଥ ମଧ୍ୟରେ ଏହି ଗ୍ରନ୍ଥଟି ଡକ୍ଟର ଆର୍ ଶର୍ମା ଶାସ୍ତ୍ରୀଙ୍କ ଦ୍ୱାରା ସମ୍ପାଦିତ ହୋଇ ୧୯୨୭ ଖ୍ରୀଷ୍ଟାବ୍ଦରେ ମହୀଶୂରରୁ ପ୍ରକାଶ ପାଇବାଦ୍ୱାରା ଭାରତର ବିଚାର ବ୍ୟବହାର କ୍ଷେତ୍ରରେ ଓଡ଼ିଶାର ଗୌରବ ପ୍ରତିଷ୍ଠିତ ହୋଇପାରିଥିଲା । ତେଣୁ 'ସରସ୍ୱତୀ ବିଳାସ' ଯେ ଏକ ଉପାଦେୟ ସ୍ମୃତିଗ୍ରନ୍ଥ ଏଥିରେ ସନ୍ଦେହର ଅବକାଶ ନାହିଁ । ଧର୍ମଶାସ୍ତ୍ର ଇତିହାସରେ ଏହାର ବିଶଦ ଆଲୋଚନା କରାଯାଇଛି । ୯ ।

ପରବର୍ତ୍ତୀ ପ୍ରସିଦ୍ଧ ସ୍ମୃତିକାର ହେଉଛନ୍ତି ତାନ୍ତ୍ରିକ ଗୋଦାବର ମିଶ୍ର । ସେ ଗଜପତି ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ଓ ଗୁରୁ ଥିଲେ । ସେ ଦଶଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରେ 'ଜୟ ଚନ୍ତାମଣି' ଓ 'ଶାରଦା ଶରଦର୍ଚ୍ଚନ ପଦ୍ଧତି' ଗ୍ରନ୍ଥ ଦୁଇଟିର ନାମ ଉଲ୍ଲେଖଯୋଗ୍ୟ । ପ୍ରଥମଟି ଏକ ପ୍ରସିଦ୍ଧ ଯୁଦ୍ଧଶାସ୍ତ୍ର । ଯୁଦ୍ଧଯାତ୍ରାକାଳ ଓ ଯୁଦ୍ଧରେ ଶତ୍ରୁକୁ ଜୟ କରିବାର ବିଭିନ୍ନ ଉପାୟ ଏଥିରେ ପର୍ଯ୍ୟାଲୋଚିତ ହୋଇଛି । ଦ୍ୱିତୀୟଟି ଶରତ୍କାଳୀନ ଦୁର୍ଗାପୂଜା ଉପରେ ଲିଖିତ ଏକ ପ୍ରାମାଣିକ ଗ୍ରନ୍ଥ । ଶାକ୍ତ ଉପାସନା କ୍ଷେତ୍ରରେ ଏହାର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି । ଅଦ୍ୟାବଧି ଏହି ପଦ୍ଧତି ଓଡ଼ିଶାରେ ଦୁର୍ଗାପୂଜାରେ ଅନୁସୃତ ହେଉଥିବାର ଜଣାଯାଏ ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ପ୍ରଣୀତ 'କୃଷ୍ଣଭକ୍ତି କଳ୍ପଲତା' ଭକ୍ତି ପ୍ରସଙ୍ଗରେ ଏକ ଉପାଦେୟ ଗ୍ରନ୍ଥ । ଏହା ପ୍ରକାଶିତ । କିନ୍ତୁ ତାଙ୍କ ପ୍ରଣୀତ ଓ ଅପ୍ରକାଶିତ 'ନୀଳାଦ୍ରି ବିଳାସ' ଶ୍ରୀଜଗନ୍ନାଥଙ୍କ ଉପାସନା ବିଷୟରେ ଅନ୍ୟତମ ଉତ୍କୃଷ୍ଟ ଗ୍ରନ୍ଥ । 'ନିତ୍ୟଗୁପ୍ତ ଚୂଡ଼ାମଣି'ରେ ସ୍ମୃତିକାର ଜଗନ୍ନାଥ ଦାସ କୃଷ୍ଣ-ଜଗନ୍ନାଥଙ୍କ ଲୀଳା ବର୍ଣ୍ଣନା କରିଛନ୍ତି । ପ୍ରଥମ ଓ ଦ୍ୱିତୀୟ ଗ୍ରନ୍ଥ ଦୁଇଟିରେ ଶ୍ରୀକ୍ଷେତ୍ର, ଶ୍ରୀଜଗନ୍ନାଥ ଓ ମହାପ୍ରସାଦର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି ।୧୦। ଓଡ଼ିଆ ଭାଷାରେ ଲିଖିତ ତାଙ୍କ 'ଭାଗବତ ଗ୍ରନ୍ଥ' ସେ ସମୟରେ ଭାରତର ପୂର୍ବାଞ୍ଚଳରେ ବିଶେଷ ପ୍ରସିଦ୍ଧିଲାଭ କରିଥିଲା । ତେଣୁ ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଗବତ ମୁଦ୍ରିତ ହୋଇଥିବାର ଦେଖାଯାଏ ।

---

୮ । Administration and Society in Medieval Andhra—Dr. C.V Kama Chandra Rao P-281-282

୯ । History of Dharmashastra-Vol. III-P-220-455

୧୦ । (କ) ନୀଳାଦ୍ରିବିଳାସ—OSM. Ms. No.-567
(ଖ) ନିତ୍ୟଗୁପ୍ତ ଚୂଡ଼ାମଣି—OSM. Ms. L. No.-150,

ଓଡ଼ିଶାରେ ଶିକ୍ଷା-ପ୍ରସାର କ୍ଷେତ୍ରରେ 'ଓଡ଼ିଆ ଭାଗବତ'ର ଐତିହାସିକ ଭୂମିକା ଅବିସ୍ମରଣୀୟ । ଓଡ଼ିଶାବାସୀ ଏହାକୁ ଧର୍ମଶାସ୍ତ୍ର ରୂପେ ସମ୍ମାନ ଦିଅନ୍ତି ଓ ପୂଜା କରନ୍ତି ।

ସ୍ମୃତିକାର ମୁରାରି ମିଶ୍ରଙ୍କ ପ୍ରଣୀତ 'ପ୍ରାୟଶ୍ଚିତ୍ତ ମନୋହର' ଏକ ଲୋକପ୍ରିୟ ଗ୍ରନ୍ଥ । ଏଥିରେ ବିଭିନ୍ନ ପ୍ରକାର ପାପର ସ୍ୱରୂପ ଓ ମୁକ୍ତିର ଉପାୟ ନିର୍ଦ୍ଦେଶ କରାଯାଇଛି । ଏହାର ଉପାଦେୟତା ଅନୁଭବ କରି ପଣ୍ଡିତ ଗୋବିନ୍ଦ ରଥ ଗ୍ରନ୍ଥଟିକୁ ଓଡ଼ିଆ ଅକ୍ଷରରେ ୧୯୧୫ ମସିହାରେ ମୁଦ୍ରଣ କରାଇଥିଲେ । ମୁରାରିଙ୍କ ପ୍ରଣୀତ 'ସ୍ମୃତିଚନ୍ଦ୍ରିକା' ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ସ୍ମୃତିଗ୍ରନ୍ଥ । ଏଥିରେ ଅନ୍ୟାନ୍ୟ ବ୍ରତ ସହିତ ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରାର ବିଧି ବର୍ଣ୍ଣିତ ହୋଇଅଛି । 'ପ୍ରାୟଶ୍ଚିତ୍ତ ମନୋହର' ଗ୍ରନ୍ଥଟିର ନାମ ଧର୍ମଶାସ୍ତ୍ର ଇତିହାସରେ ମିଳେ ।[୧୧]

ପରବର୍ତ୍ତୀ ପ୍ରସିଦ୍ଧ ସ୍ମୃତିକାର ହେଲେ ବାଜପେୟୀ ନରସିଂହ ମିଶ୍ର । ସେ ଥିଲେ ଭାରତ-ବିଖ୍ୟାତ ପଣ୍ଡିତ ଓ 'ଅଷ୍ଟାଦଶ ପ୍ରଦୀପ' ଗ୍ରନ୍ଥର ପ୍ରଣେତା । ତାଙ୍କ ପ୍ରଣୀତ 'ନିତ୍ୟାଚାର ପ୍ରଦୀପ' ନାମକ ସ୍ମୃତିଗ୍ରନ୍ଥଟି ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ଦୁଇ ଭାଗରେ ୧୯୦୭ ଓ ୧୯୨୮ ମସିହାରେ ପ୍ରକାଶ ପାଇଛି । ଗ୍ରନ୍ଥଟି ନାମତଃ ନିତ୍ୟକୃତ୍ୟ-ସମ୍ପର୍କୀୟ ହୋଇଥିଲେ ମଧ୍ୟ ଏଥିରେ କାଳନିରୂପଣ, ଅଶୌଚ, ଶୁଦ୍ଧି, ଶ୍ରାଦ୍ଧ, ପ୍ରାୟଶ୍ଚିତ୍ତାଦି ବିଷୟ ସହିତ ପଞ୍ଚଦେବତା-ଉପାସନାର ପର୍ଯ୍ୟାଲୋଚନା କରାଯାଇଛି । ହୋମ, ପ୍ରାୟଶ୍ଚିତ୍ତ, ମନ୍ତ୍ରପୁରଶ୍ଚରଣ ଦ୍ୱାରା ବିଭିନ୍ନ ଅସାଧ୍ୟ ରୋଗରୁ ମୁକ୍ତିଲାଭ କରିବା ନିମିତ୍ତ ଉପାୟ ଓ କର୍ତ୍ତବ୍ୟ ନିର୍ଦ୍ଧାରଣ ହୋଇଛି ଏହି ଗ୍ରନ୍ଥର ବିଶେଷତ୍ୱ । ଏଥିରେ ବେଦ, ବେଦାଙ୍ଗ, ଉପନିଷଦ୍, ପୁରାଣ, ଧର୍ମଶାସ୍ତ୍ର, ତନ୍ତ୍ର ଓ ଆୟୁର୍ବେଦ ବିଷୟକ ଉପାଦେୟ ଆଲୋଚନା କରାଯାଇଛି ।[୧୨] ସର୍ବଭାରତୀୟ ସ୍ତରରେ ଏହାର ଉପଯୋଗିତା ଓ ପ୍ରାମାଣିକତା ଗୃହୀତ ହୋଇଛି ।[୧୩] ଅଦ୍ୟାବଧି ଓଡ଼ିଶାର ତାନ୍ତ୍ରିକ ଓ ସ୍ମାର୍ତ୍ତ ପଣ୍ଡିତମାନଙ୍କ ମଧ୍ୟରେ ଏହା ଆଦୃତ । ତାଙ୍କ ପ୍ରଣୀତ 'ଗ୍ରହଯଜ୍ଞ-ପଦ୍ଧତି' ଓ 'ମହାସୌର-ଶାନ୍ତି' ଅତ୍ୟନ୍ତ ଉପାଦେୟ ସ୍ମୃତିଗ୍ରନ୍ଥ । ପ୍ରଥମଟିରେ ନବଗ୍ରହ ଓ ଦ୍ୱିତୀୟଟିରେ ଗ୍ରହାଧିପ ସୂର୍ଯ୍ୟଙ୍କ ଆବାହନ, ପୂଜା, ହୋମ ନିର୍ଦ୍ଦେଶ ଦିଆଯାଇଛି । ସୌର-ସମ୍ପ୍ରଦାୟ ଅନ୍ତର୍ଗତ ସୂର୍ଯ୍ୟ-ଉପାସକଙ୍କ ପକ୍ଷରେ ଗ୍ରନ୍ଥ ଦୁଇଟିର ଉପଯୋଗିତା ଥିବାର ମନେହୁଏ ।

ପଣ୍ଡିତ ବର୍ଦ୍ଧନ ମହାପାତ୍ରଙ୍କ ପ୍ରଣୀତ ଓ ଗଜପତି ରାମଚନ୍ଦ୍ର ଦେବଙ୍କ (୧୭ଶ ଖ୍ରୀଷ୍ଟାବ୍ଦ) ନାମରେ ଭଣିତ 'ଦୁର୍ଗୋତ୍ସବ ଚନ୍ଦ୍ରିକା' ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ ସ୍ମୃତିଗ୍ରନ୍ଥ । ଗ୍ରନ୍ଥଟିର ଉପାଦେୟତା ଅନୁଭବ କରି ପଣ୍ଡିତ ଗୋବିନ୍ଦ ରଥ ଏହାକୁ ଉତ୍କଳାକ୍ଷରରେ ୧୯୦୪ ମସିହାରେ ପ୍ରକାଶ କରିଥିଲେ । ଏଥିରେ ଦାରୁଦେବୀପୂଜା, ଦୁର୍ଗାଙ୍କର ରଥଯାତ୍ରାର ପ୍ରଥମ

---

୧୧ । History of Dharmashastra—P-993

୧୨ । କୋଣାର୍କ—ପଞ୍ଚସଖା-ବିଶେଷାଙ୍କ—ପୃ. ୩୧-୩୭

୧୩ । History of Dharmashastra—P-972

ସୂଚନା ମିଳେ । ଗ୍ରନ୍ଥଟିର ନାମ ଧର୍ମଶାସ୍ତ୍ର ପୁସ୍ତକ ତାଲିକାରେ ଦେଖାଯାଏ ।୧୪।

ପଣ୍ଡିତ ଶ୍ରୀଧର ମିଶ୍ରଙ୍କ (୧୭ଶ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'ଆଗ୍ନେୟ ଚନ୍ଦ୍ରାମଣି' ଏକ ବଶିଷ୍ଟ ସ୍ମୃତି-ଗ୍ରନ୍ଥ । ଏଥିରେ ନିତ୍ୟନୈମିତ୍ତିକ କୃତ୍ୟ ସହିତ ଅର୍ଚ୍ଚନା, ପ୍ରତିମା ଓ ମନ୍ଦିର ନିର୍ମାଣ ବିଷୟ ପର୍ଯ୍ୟାଲୋଚନା କରାଯାଇଛି । ତଦ୍‌ବ୍ୟତୀତ ଦେବତାଙ୍କ ଆଗରେ ନୃତ୍ୟ-ଗୀତ ଓ ବାଦ୍ୟର ଆୟୋଜନ ଓ ତାର ସୁଫଳ ବିଷୟ ପ୍ରଥମକରି ଏଥିରେ ଉଲ୍ଲେଖ କରାଯାଇଛି । ତାଙ୍କ ପ୍ରଣୀତ 'ଦାନବାକ୍ୟାବଳୀ' ଗ୍ରନ୍ଥରେ ଦାନର ସ୍ୱରୂପ, ସ୍ଥାନ, କାଳ, ପାତ୍ର ଓ ଦାନୀୟ ବସ୍ତୁର ବିସ୍ତୃତ ସମୀକ୍ଷା କରାଯାଇଛି । ଦାନ-ପ୍ରସଙ୍ଗରେ ପ୍ରଥମ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ହୋଇଥିବାରୁ ଏହାର ଉପାଦେୟତା ସ୍ୱୀକାର୍ଯ୍ୟ ।

ହଳଧର ମିଶ୍ର ଥିଲେ ଜଣେ ପ୍ରତିଭାଶାଳୀ କବି । କାବ୍ୟ, ସଙ୍ଗୀତ, ସ୍ମୃତି ଓ ଜ୍ୟୋତିଷ-ବିଦ୍ୟାରେ ତାଙ୍କର ପାଣ୍ଡିତ୍ୟ ଥିଲା ଅନନ୍ୟସାଧାରଣ । ସେ 'ବସନ୍ତୋତ୍ସବ ମହାକାବ୍ୟ'ଓ 'ସଙ୍ଗୀତ କଳ୍ପଲତା' ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ପ୍ରଣୀତ 'ହଳଧର ସଂହିତା' ସ୍ମୃତି ଓ ଜ୍ୟୋତିଷ ସମ୍ବନ୍ଧୀୟ ଏକ ଉପାଦେୟ ଗ୍ରନ୍ଥ । ଏଥିରେ ପୁଷ୍ପବତୀ, ବିବାହ ଓ ଜନ୍ମ ସମ୍ବନ୍ଧରେ ରାଶି-ନକ୍ଷତ୍ରାଦିଙ୍କ ଶୁଭାଶୁଭ ବିଷୟ ପର୍ଯ୍ୟାଲୋଚିତ ହୋଇଛି । 'ହଳଧର ସଂହିତା' ଏ ଧରଣର ପ୍ରଥମ ଗ୍ରନ୍ଥ ହୋଇଥିବାରୁ ଓଡ଼ିଶାର ସ୍ମୃତି ଇତିହାସରେ ଏହାର ଗୁରୁତ୍ୱ ସହଜରେ ଅନୁମେୟ ।

ପରବର୍ତ୍ତୀ ସ୍ମୃତିକାର ବିଶ୍ୱନାଥ ମିଶ୍ରଙ୍କ (୧୭ଶ ଖ୍ରୀଷ୍ଟାବ୍ଦ) ପ୍ରଣୀତ 'ସ୍ମୃତିସାର ସଂଗ୍ରହ' ଗ୍ରନ୍ଥଟି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ମିଳୁଥିବାରୁ ଏକଦା ଏହା ବିଶେଷ ଆଦୃତିଲାଭ କରିଥିବାର ଜଣାଯାଏ । ଏଥିରେ ସ୍ମୃତିକାର ଶମ୍ଭୂକରଙ୍କଠାରୁ ଆରମ୍ଭକରି ହଳଧରଙ୍କ ପର୍ଯ୍ୟନ୍ତ ଲିଖିତ ସ୍ମୃତିଶାସ୍ତ୍ରୀୟ ପ୍ରାୟ ସମସ୍ତ ବିଷୟ ସଙ୍କଳିତ ହୋଇଛି । ତେଣୁ ଏହାର ଉପାଦେୟତା ଓ ଲୋକପ୍ରିୟତା ପ୍ରତି ଦୃଷ୍ଟିଦେଇ ପଣ୍ଡିତ ଗୋବିନ୍ଦ ରଥ ସ୍ମୃତିସାର ସଂଗ୍ରହ ଗ୍ରନ୍ଥକୁ ଉତ୍କଳାକ୍ଷରରେ ୧୯୧୫ ମସିହାରେ ପ୍ରକାଶ କରିଥିଲେ । ଏହା ନାଗରାକ୍ଷରରେ ମୁଦ୍ରିତ ହୋଇଥିଲେ ସ୍ମୃତିକାର ବିଶ୍ୱନାଥ ସର୍ବଭାରତୀୟ ସ୍ତରରେ ଯେ ବିଖ୍ୟାତ ହୋଇଥାନ୍ତେ, ସେଥିରେ ସନ୍ଦେହ ନାହିଁ । ତାଙ୍କ ଗ୍ରନ୍ଥଟି ଧର୍ମଶାସ୍ତ୍ର-ପୁସ୍ତକ ତାଲିକାରେ ଉଲ୍ଲେଖ ଥିବାର ଦେଖାଯାଏ ।୧୫।

ଓଡ଼ିଶାର ସ୍ମୃତିକାରମାନଙ୍କ ମଧ୍ୟରେ ଦିବ୍ୟସିଂହ ମହାପାତ୍ରଙ୍କ (୧୭ଶ ଖ୍ରୀଷ୍ଟାବ୍ଦ) ଅବଦାନ ଉଲ୍ଲେଖଯୋଗ୍ୟ । ଶ୍ରାଦ୍ଧଦୀପ, କାଳଦୀପ ଓ 'ଦିବ୍ୟସିଂହ-କାରିକା' ନାମରେ ତିନିଖଣ୍ଡ ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରୁ ପ୍ରଥମଟି ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ୧୯୭୭ ମସିହାରେ ପ୍ରକାଶ ପାଇଛି । ଏଥିରେ ମୁଖ୍ୟତଃ ଶ୍ରାଦ୍ଧ-ପ୍ରସଙ୍ଗ ଓ ଦ୍ୱିତୀୟଟିରେ ବିଭିନ୍ନ ବ୍ରତ ଓ ପର୍ବପର୍ବାଣୀର କାଳବିଚାର କରାଯାଇଛି । ଦ୍ୱିତୀୟ ଗ୍ରନ୍ଥଟି 'କାଳପ୍ରଦୀପ' ନାମରେ ପଣ୍ଡିତ ଗୋପୀନାଥ କରଙ୍କ ଦ୍ୱାରା ସଂଶୋଧିତ ହୋଇ ଉତ୍କଳାକ୍ଷରରେ ପ୍ରକାଶ

୧୪ । Ibid, P-938. 999

୧୫ । History of Dharmashastra—P-674.

ପାଇଛି ।୧୬। ଓଡ଼ିଶାର ସ୍ମୃତିଗ୍ରନ୍ଥ ମଧ୍ୟରେ ଶ୍ରାଦ୍ଧ ଓ କାଳ ନିରୂପଣ ବିଷୟରେ ଏ ଦୁଇଟି ପ୍ରଥମ ସ୍ୱତନ୍ତ୍ର ଗ୍ରନ୍ଥ । 'ହରିବଂଶସିଂହ-କାଶିକା'ରେ କାଳ, ଶୁଦ୍ଧି, ଶ୍ରାଦ୍ଧ, ଆହ୍ନିକ ସ୍ନାନଯୋଗ, ଉପନୟନ ଓ ବିବାହ-ସଂସ୍କାରର ତାତ୍ତ୍ୱିକ ପର୍ଯ୍ୟାଲୋଚନା କରାଯାଇଛି । ତେଣୁ ହରିବଂଶସିଂହଙ୍କ ଜ୍ୟୋତିଷଯାକ ଗ୍ରନ୍ଥ ସର୍ବଭାରତୀୟ କ୍ଷେତ୍ରରେ ଧର୍ମଶାସ୍ତ୍ର-ତାଲିକାରେ ସ୍ଥାନ ପାଇଥିବାର ଦେଖାଯାଏ ।୧୭।

ସ୍ମୃତିଶାସ୍ତ୍ରରେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଜଳାଶୟ ଖୋଦନ, ଆରାମ ଓ ପ୍ରାସାଦ ନିର୍ମାଣ ପ୍ରଭୃତି ପୂର୍ତ୍ତିକର୍ମରୂପେ ଅଭିହିତ । ଏଗୁଡ଼ିକର ନିର୍ମାଣ, ପ୍ରତିଷ୍ଠା ଓ ଉତ୍ସର୍ଗୀକରଣକୁ ବିଶେଷ ଗୁରୁତ୍ୱ ଦିଆଯାଇଛି । ଓଡ଼ିଶାର ସ୍ମୃତିକାରମାନଙ୍କ ମଧ୍ୟରେ ମାଗୁଣି ମିଶ୍ରଙ୍କ ପ୍ରଣୀତ 'ପ୍ରତିଷ୍ଠା-ପଦ୍ଧତି' ଏ ସମ୍ବନ୍ଧୀୟ ପ୍ରଥମ ଗ୍ରନ୍ଥ । ତେଣୁ ଏହାର ଗୁରୁତ୍ୱ ସହଜରେ ଅନୁମେୟ । ଏହି ଗ୍ରନ୍ଥଟି ସର୍ବଭାରତୀୟ ସ୍ତରରେ ଧର୍ମଶାସ୍ତ୍ର ପୁସ୍ତକ ତାଲିକାରେ ଅନ୍ତର୍ଗତ ହୋଇଛି ।୧୮।

ମାଗୁଣି ମିଶ୍ରଙ୍କ ଅନ୍ୟତମ ଗ୍ରନ୍ଥ 'ଶୈବ-ପଦ୍ଧତି' ଓ ଲକ୍ଷ୍ମୀଧର ମିଶ୍ରଙ୍କ ପ୍ରଣୀତ 'ଶୈବ-ଚନ୍ଦ୍ରାମଣି' ଓ 'ଶୈବ କଳ୍ପଦ୍ରୁମ' ଜ୍ୟୋତିଷଯାକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ଓଡ଼ିଶାର ଶୈବଧର୍ମ ଓ ଶୈବ ସମ୍ପ୍ରଦାୟ ଅନ୍ତର୍ଗତ ଶିବୋପାସକମାନଙ୍କ ପକ୍ଷରେ ଏହି ଗ୍ରନ୍ଥଦ୍ୱୟର ଅନୁଶୀଳନ ଏକାନ୍ତ ଅନିବାର୍ଯ୍ୟ ମନେହୁଏ । ଏଥିରୁ ଶୈବ କଳ୍ପଦ୍ରୁମ ଗ୍ରନ୍ଥଟି ଧର୍ମଶାସ୍ତ୍ର-ତାଲିକାରେ ଥିବାର ଦେଖାଯାଏ ।୧୯।

ଓଡ଼ିଶାର ପରବର୍ତ୍ତୀ ସ୍ମୃତିକାର ହେଲେ ଭାରତବିଖ୍ୟାତ ପଣ୍ଡିତ ରାଜଗୁରୁ ଗଦାଧର ମହାପାତ୍ର । ସେ ଥିଲେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧକାଳୀନ ସ୍ମୃତିକାର । ଗଦାଧର ଅଷ୍ଟାଦଶ ସାର ରଚନା କରିଥିବାର ଜଣାଯାଏ । କିନ୍ତୁ କାଳସାର, ଆଚାରସାର, ଶୁଦ୍ଧିସାର ଓ ଦାନସାର ନାମରେ ମାତ୍ର ଚାରୋଟି ଗ୍ରନ୍ଥ ବ୍ୟତୀତ ଅନ୍ୟ ଗ୍ରନ୍ଥ ଏପର୍ଯ୍ୟନ୍ତ ଆଲୋଚକମାନଙ୍କର ହସ୍ତଗତ ହୋଇନାହିଁ । ଉପଲବ୍ଧ ଗ୍ରନ୍ଥ ମଧ୍ୟରେ ପ୍ରଥମ ଦୁଇଟି ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ଯଥାକ୍ରମେ ୧୯୦୬ ଓ ୧୯୦୮ ମସିହାରେ ପ୍ରକାଶ ପାଇଛି । ତୃତୀୟଟି ଅଦ୍ୟାବଧି ଅପ୍ରକାଶିତ ରହିଛି । ଚତୁର୍ଥଟି ନାମତଃ ଗଦାଧରଙ୍କ ରଚନା ବୋଲି ମନେହେଲେ ମଧ୍ୟ ଏଥିରେ ଗ୍ରନ୍ଥକର୍ତ୍ତାଙ୍କ ନାମ ସୂଚନା ମିଳେନାହିଁ ।

'କାଳସାର' ଗ୍ରନ୍ଥରେ ଓଡ଼ିଶାର ପୂର୍ବସୂରିଗଣଙ୍କ ଆଲୋଚିତ ପ୍ରସଙ୍ଗ ସହିତ ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ଓ ଶ୍ରୀଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା ପ୍ରସଙ୍ଗ ଆଲୋଚିତ ହୋଇଛି । ସେହିପରି ଆଚାରସାର ଗ୍ରନ୍ଥରେ ଏକ ଅହୋରାତ୍ର ମଧ୍ୟରେ ବ୍ୟକ୍ତିବିଶେଷର ନିତ୍ୟ-କୃତ୍ୟ ନିରୂପିତ

---

୧୬ । କାଳପ୍ରଦୀପ—ଅରୁଣୋଦୟ ପ୍ରେସ, କଟକ, ୧୯୧୪

୧୭ । History of Dharmashastra—P-929, 962, 649

୧୮ । Ibid – P-941,999

୧୯ । Ibid—P-941

ହୋଇଛି । ପଞ୍ଚମହାଯଜ୍ଞ ଓ ଭକ୍ଷ୍ୟାଭକ୍ଷ୍ୟ ବିଷୟର ଗୁରୁତ୍ୱପୂର୍ଣ୍ଣ ସମୀକ୍ଷା ଏଥିରେ କରାଯାଇ- ଥିବାର ଦେଖାଯାଏ । ତୃତୀୟ ଗ୍ରନ୍ଥ 'ଶୁଦ୍ଧିସାର'ରେ କାଳ, ଦ୍ରବ୍ୟ ଓ କର୍ତ୍ତାର ବାହ୍ୟ ଓ ଆଭ୍ୟନ୍ତର ଶୁଦ୍ଧି ପ୍ରସଙ୍ଗ ଆଲୋଚିତ ହୋଇଛି । ଏହି ତିନୋଟିଯାକ ଗ୍ରନ୍ଥ ଓଡ଼ିଶାର ଜନ- ସାଧାରଣଙ୍କଠାରେ ବିଶେଷ ସୁପରିଚିତ । ଏହି ଗ୍ରନ୍ଥତ୍ରୟର ସିଦ୍ଧାନ୍ତ ଅନୁସାରେ ଓଡ଼ିଶାର ସାମାଜିକ ଓ ଧାର୍ମିକ ଜୀବନର ଧାରା ଅଦ୍ୟାପି ନିୟନ୍ତ୍ରିତ ହେଉଛି । ତେଣୁ ଗଦାଧରଙ୍କ ତିନୋଟିଯାକ ଗ୍ରନ୍ଥ ଓଡ଼ିଶାର ସ୍ମୃତିଗ୍ରନ୍ଥ ମଧ୍ୟରେ ଲୋକପ୍ରିୟତା ଅର୍ଜନ କରିଛି । ଏଗୁଡ଼ିକର ନାମ ଧର୍ମଶାସ୍ତ୍ର-ତାଲିକାରେ ଥିବାର ଦେଖାଯାଏ ।[୨୦]

ଗଦାଧର ରାଜଗୁରୁଙ୍କ ସମସାମୟିକ ପଣ୍ଡିତ ବାସୁଦେବ ରଥ ମଧ୍ୟ ଅଷ୍ଟାଦଶ ପ୍ରକାଶ ଗ୍ରନ୍ଥ ରଚନା କରିଥିଲେ । ତନ୍ମଧ୍ୟରୁ 'ସ୍ମୃତି ପ୍ରକାଶ' ଓ 'ମଣ୍ଡଳ ପ୍ରକାଶ' ବ୍ୟତୀତ ଅନ୍ୟ ଗ୍ରନ୍ଥ ଉପଲବ୍ଧ ନୁହେଁ । ଏହି ଗ୍ରନ୍ଥ ଦୁଇଟି ମଧ୍ୟରେ 'ମଣ୍ଡଳ ପ୍ରକାଶ' ଏକ ଉପାଦେୟ ଗ୍ରନ୍ଥ । ଏଥିରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ମଣ୍ଡଳର ସ୍ୱରୂପ ଓ ପୂଜାବିଧି ବର୍ଣ୍ଣିତ ହୋଇଛି । ବଙ୍ଗଳାର ଏସିଆଟିକ୍ ସୋସାଇଟି ପକ୍ଷରୁ ୧୯୨୨ ମସିହାରେ 'ସ୍ମୃତିପ୍ରକାଶ'ର କେତେକ ଅଂଶ ପ୍ରକାଶ ପାଇଛି ।

ପଣ୍ଡିତ ବାସୁଦେବ ତ୍ରିପାଠୀଙ୍କ ପ୍ରଣୀତ 'ଗୋପାଳାର୍ଚ୍ଚନ ପଦ୍ଧତି', 'ପ୍ରାୟଶ୍ଚିତ୍ତ ବିଲୋଚନ' 'ବୀର ପରାକ୍ରମ' ଓ 'କୃତ୍ୟ ରତ୍ନାବଳୀ' ନାମକ ଚାରିଖଣ୍ଡ ଗ୍ରନ୍ଥ ମଧ୍ୟରେ ପ୍ରଥମ ଓ ତୃତୀୟ ଗ୍ରନ୍ଥ ଦୁଇଟିର ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ରହିଛି । ପ୍ରଥମଟିରେ ଶ୍ରୀଜଗନ୍ନାଥ ଚତୁର୍ଦ୍ଧାମୂର୍ତ୍ତିଙ୍କ ନିତ୍ୟପୂଜାବିଧି ଓ ଦ୍ୱିତୀୟଟିରେ ଯୁଦ୍ଧରେ ବିଜୟଲାଭ ନିମିତ୍ତ ବିଭିନ୍ନ ପ୍ରକାର ଚକ୍ରର ପର୍ଯ୍ୟାଲୋଚନା କରାଯାଇଛି । ତେଣୁ ଓଡ଼ିଶାର ସ୍ମୃତିଶାସ୍ତ୍ର ମଧ୍ୟରେ ଏହି ଗ୍ରନ୍ଥଦ୍ୱୟର ଗୁରୁତ୍ୱକୁ ଅସ୍ୱୀକାର କରାଯାଇ ନ ପାରେ ।

ପରବର୍ତ୍ତୀ ପ୍ରସିଦ୍ଧ ସ୍ମୃତିକାର ହେଲେ ପଣ୍ଡିତ କବି ରଘୁନାଥ ଦାସ । ସେ ନ୍ୟାୟ, ଧର୍ମ- ଶାସ୍ତ୍ର, ବ୍ୟାକରଣଶାସ୍ତ୍ରରେ ପ୍ରବୀଣ ପଣ୍ଡିତ ଥିଲେ । ତାଙ୍କ ପ୍ରଣୀତ କାଳନିର୍ଣ୍ଣୟ, ଶ୍ରାଦ୍ଧନିର୍ଣ୍ଣୟ ଓ ଉତ୍ପାତ-ତରଙ୍ଗିଣୀ ନାମକ ତିନୋଟି ସ୍ମୃତିଗ୍ରନ୍ଥ ମଧ୍ୟରେ ପ୍ରଥମ ଓ ଶେଷ ଗ୍ରନ୍ଥ ଦୁଇଟିର ନାମ ଅବିସ୍ମରଣୀୟ । କାଳନିର୍ଣ୍ଣୟ ଗ୍ରନ୍ଥରେ ରାଜଗୁରୁ ଗଦାଧର ମହାପାତ୍ରଙ୍କ 'କାଳସାରେ'- ଲିଖିତ ବିଷୟ ସହିତ ପ୍ରଥମ କରି ଗୋବର୍ଦ୍ଧନପୂଜାବିଧି, ଲଳିତା ସପ୍ତମୀ, ରାଧାଷ୍ଟମୀ ବ୍ରତ ଓ ରାଧାଦାମୋଦରପୂଜାର ଉଲ୍ଲେଖ ମିଳେ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ପାଦ ବେଳକୁ ଓଡ଼ିଶାରେ ଶ୍ରୀରାଧା-ଉପାସନା ଆରମ୍ଭ ହୋଇଥିବାର ଅନୁମାନ କରାଯାଏ । ତେଣୁ ସମଗ୍ର ଓଡ଼ିଶାରେ ପୂଜିତ ହେଉଥିବା ପ୍ରସ୍ତରନିର୍ମିତ ମାଧବ, ଗୋପୀନାଥ, ଗୋପାଳ, ଗୋପୀକୃଷ୍ଣ ବା ଗୋପାଳବଲ୍ଲଭ ମୂର୍ତ୍ତିଙ୍କ ସହିତ ଧାତୁନିର୍ମିତ ରାଧାଙ୍କ ପ୍ରତିମା ପ୍ରତିଷ୍ଠା ଓ ପୂଜା 'ରାଧାକୃଷ୍ଣ-ଉପାସନା' ଭାବେ ଗୃହୀତ ହୋଇଥିଲା । ରାଧାକୃଷ୍ଣ-ଉପାସନା ବିଶେଷ ଲୋକ-

୨୦ । History of Dharmashastra—P-930, 939, 640.

ପ୍ରିୟତା ଅର୍ଜନ କରିବା ଫଳରେ ମନ୍ଦିର, ମଠ, ଏପରିକି ବିଷ୍ଣୁଭକ୍ତ ଗୃହସ୍ଥଙ୍କ ଘରେ ଘରେ ଧାତବ ରାଧାପ୍ରତିମାପୂଜା ଆରମ୍ଭ ହୋଇଗଲା । ଲୋକସମାଜରେ ପ୍ରଚଳିତ ଉପାସନା-ପଦ୍ଧତିକୁ ସମ୍ମାନ ଦେଇ ସମ୍ଭବତଃ ସ୍ମୃତିକାର ରଘୁନାଥ ଦାସ ପ୍ରଥମେ ଶ୍ରୀରାଧାସମ୍ପର୍କିତ-ବ୍ରତବିଧାନର ଉଲ୍ଲେଖ କରିଥିଲେ । ତେଣୁ ଓଡ଼ିଶାରେ ରାଧାକୃଷ୍ଣ-ଉପାସନାର କ୍ରମବିକାଶ ଅଧ୍ୟୟନରେ 'କାଳନିର୍ଣ୍ଣୟ' ଗ୍ରନ୍ଥର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି । ତଦ୍‌ବ୍ୟତୀତ ଏହି ଗ୍ରନ୍ଥରେ ଏକାମ୍ର କ୍ଷେତ୍ରରେ ପାଳିତ ହେଉଥିବା ବିଭିନ୍ନ ପ୍ରକାର ଶୈବ ଓ ବୈଷ୍ଣବ ପର୍ବ-ପର୍ବାଣୀ ଏବଂ ଅର୍କକ୍ଷେତ୍ର କୋଣାର୍କରେ ଅନୁଷ୍ଠିତ ହେଉଥିବା ମାଘସପ୍ତମୀ ମେଳା ଓ ଚନ୍ଦ୍ରଭାଗା-ସ୍ନାନର ମହତ୍ତ୍ୱ ବିଷୟରେ ପ୍ରଥମ ଉଲ୍ଲେଖ ଥିବାର ଜଣାଯାଏ । ସ୍ମୃତିକାର ରଘୁନାଥଙ୍କ ପ୍ରଣୀତ 'ଉତ୍ପାତ-ତରଙ୍ଗିଣୀ' ମଧ୍ୟ ବିଭିନ୍ନ ଉତ୍ପାତ ସମ୍ବନ୍ଧୀୟ ଏକ ଉତ୍କୃଷ୍ଟ ଗ୍ରନ୍ଥ ।

ସ୍ମୃତିକାର ଗୋପୀନାଥ ପଟ୍ଟନାୟକଙ୍କ (୧୮ଶ ଶତାବ୍ଦୀ) ପ୍ରଣୀତ 'ଶୂଦ୍ରାହ୍ନିକପଦ୍ଧତି' ଗ୍ରନ୍ଥଟି କେବଳ ଉତ୍କଳୀୟ ସ୍ମୃତିଶାସ୍ତ୍ର କାହିଁକି, ସର୍ବଭାରତୀୟ ସ୍ତରର ସ୍ମୃତିଶାସ୍ତ୍ର ମଧ୍ୟରେ ଉଲ୍ଲେଖଯୋଗ୍ୟ ସ୍ଥାନ ଗ୍ରହଣ କରିପାରେ । ସ୍ମୃତିକାରଗଣ ବର୍ଣ୍ଣାଶ୍ରମଧର୍ମର ଆଲୋଚନା ପ୍ରସଙ୍ଗରେ ଶୂଦ୍ରବର୍ଣ୍ଣର କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ କରିଥିଲେହେଁ ସେମାନଙ୍କ ପାଇଁ ମୁଷ୍ଟିମେୟ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରିଥିବାର ଦେଖାଯାଏ । ବ୍ରାହ୍ମଣେତର ସ୍ମୃତିକାରଙ୍କ ମଧ୍ୟରେ ଗୋପୀନାଥଙ୍କ ନାମ ଅବିସ୍ମରଣୀୟ । 'ଶୂଦ୍ରାହ୍ନିକ ପଦ୍ଧତି'ରେ ସେ ଶୂଦ୍ରମାନଙ୍କ ବ୍ରହ୍ମବିଦ୍ୟା ଅଧିକାର,—ବୈଷ୍ଣବଧର୍ମ ଅଧିକାର, ଆହ୍ନିକ କୃତ୍ୟ, ତର୍ପଣ, ଶ୍ରାଦ୍ଧ, ଶୁଦ୍ଧି ବିଷୟାଦିର ତାତ୍ତ୍ୱିକ ସମୀକ୍ଷା କରିଛନ୍ତି । ତେଣୁ ଓଡ଼ିଶାର 'ଶୂଦ୍ରାହ୍ନିକ ପଦ୍ଧତି' ସ୍ମୃତିଗ୍ରନ୍ଥଟି ଭାରତୀୟ ସ୍ମୃତିଶାସ୍ତ୍ରକୁ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ରୂପେ ଗ୍ରହଣ କରାଯାଇପାରେ ।

ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ଲିଖିତ 'ପ୍ରତିଷ୍ଠାସାର ସଂଗ୍ରହ' ଓ 'ପୁରଶ୍ଚରଣ ଦୀପିକା' ମଧ୍ୟରେ ଦ୍ୱିତୀୟଟି ଏକ ଉପାଦେୟ ଗ୍ରନ୍ଥ । ଏଥିରେ ତାନ୍ତ୍ରିକ ପଦ୍ଧତିର ଦୀକ୍ଷା, ମାଳା, ମନ୍ତ୍ର-ପୁରଶ୍ଚରଣ, ବୀରସାଧନ ଓ ପରକାୟପ୍ରବେଶାଦି ବିଷୟ ଆଲୋଚନା କରାଯାଇଛି । ଶାକ୍ତସାଧକମାନଙ୍କ ପକ୍ଷରେ ଏହାର ଅଧ୍ୟୟନ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ସ୍ମୃତିକାର ଧର୍ମପୁରୀଙ୍କ 'କାଳଚନ୍ଦ୍ରିକା' ଗ୍ରନ୍ଥ ଓଡ଼ିଶାର ସ୍ମୃତିଶାସ୍ତ୍ର ମଧ୍ୟରେ ଉଲ୍ଲେଖ-ଯୋଗ୍ୟ ସ୍ଥାନ ଗ୍ରହଣ କରେ । ଏଥିରେ ପ୍ରଥମ କରି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଜନ୍ମୋତ୍ସବ ପାଳନ ବିଷୟ ଉଲ୍ଲେଖ କରାଯାଇଛି ।

ପରବର୍ତ୍ତୀ ସ୍ମୃତିକାର ହେଲେ ମହାମହୋପାଧ୍ୟାୟ କୃଷ୍ଣ ମିଶ୍ର । ତାଙ୍କ ପ୍ରଣୀତ 'କାଳସର୍ବସ୍ୱ' ଓ 'ଶୁଦ୍ଧିସର୍ବସ୍ୱ' ଗ୍ରନ୍ଥ ଦୁଇଟି ଓଡ଼ିଶାର ଉଲ୍ଲେଖଯୋଗ୍ୟ ସ୍ମୃତିଶାସ୍ତ୍ର । ପ୍ରଥମ ଗ୍ରନ୍ଥରେ ଓଡ଼ିଶାର ବ୍ରତ ଓ ପର୍ବପର୍ବାଣୀ ସହିତ ବୈଷ୍ଣବମାନଙ୍କ ଉଦ୍ଦେଶ୍ୟରେ ଦୀକ୍ଷା ଓ ବ୍ରତାଦି ପାଳନର ସ୍ୱତନ୍ତ୍ର ବିଧାନମାନ ପର୍ଯ୍ୟାଲୋଚିତ ହୋଇଛି । ସେହିପରି ଦ୍ୱିତୀୟ ଗ୍ରନ୍ଥ 'ଶୁଦ୍ଧିସର୍ବସ୍ୱ'ରେ ବିଭିନ୍ନ ପ୍ରକାର ଅଶୌଚ, ଶୁଦ୍ଧି ଓ ଶ୍ରାଦ୍ଧ ସହିତ କ୍ଷୌରକର୍ମ ବିଷୟରେ ସ୍ୱତନ୍ତ୍ର ବ୍ୟବସ୍ଥା

ଉଲ୍ଲେଖ କରାଯାଇଛି । ତେଣୁ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାର ସାମାଜିକ ବ୍ୟବହାର, ବିଭିନ୍ନ ବୈଷ୍ଣବ ସମ୍ପ୍ରଦାୟ ଅନ୍ତର୍ଗତ ଉପାସକଙ୍କ ଉପାସନା ପ୍ରଣାଳୀ ଓ ପର୍ବପର୍ବାଣୀ ଏବଂ ରାଧାକୃଷ୍ଣ-ଉପାସନାର କ୍ରମବିକାଶ ଅନୁଶୀଳନରେ ଏହି ଗ୍ରନ୍ଥ ଦୁଇଟିର ଗୁରୁତ୍ୱକୁ ଅସ୍ୱୀକାର କରାଯାଇନପାରେ ।

ଗୋବିନ୍ଦ କବିଭୂଷଣ ସାମନ୍ତରାୟଙ୍କ ପ୍ରଣୀତ 'ସ୍ମୃତିସର୍ବସ୍ୱ' ଏକ ଉପାଦେୟ ସ୍ମୃତିଗ୍ରନ୍ଥ । ଏଥିରେ ବୈଦିକ ଓ ତାନ୍ତ୍ରିକ ଉଭୟ ପଦ୍ଧତିର ବ୍ୟବସ୍ଥା ପର୍ଯ୍ୟାଲୋଚନା କରାଯାଇଛି । ବୈଦିକ କର୍ମାନୁଷ୍ଠାନ କ୍ଷେତ୍ରରେ ଏହି ଗ୍ରନ୍ଥ ସମଗ୍ର ଓଡ଼ିଶାରେ ଅଦ୍ୟାପି ଅନୁସୃତ ହେଉଥିବାର ଲକ୍ଷ୍ୟ କରାଯାଏ ।

ଖଣ୍ଡୁ ଗୋବିନ୍ଦ ଦାସଙ୍କ ପ୍ରଣୀତ 'ସର୍ବ-ସ୍ମୃତିସାର ସଂଗ୍ରହ'ରେ କାଳ, ଅଶୌଚ ଓ ଶ୍ରାଦ୍ଧ ବିଷୟ ସହିତ ଦକ୍ଷିଣ ଓଡ଼ିଶାରେ ପ୍ରଚଳିତ ବ୍ରହ୍ମୋତ୍ସବର ବିଶେଷ ସମୀକ୍ଷା କରାଯାଇଛି । ଏହି ବ୍ରହ୍ମୋତ୍ସବ ଦୀର୍ଘ ସାତଦିନଧରି ମଞ୍ଜୁଷା ଅଞ୍ଚଳରେ ଅନୁଷ୍ଠିତ ହୁଏ । ଏହାହିଁ ଉକ୍ତ ଗ୍ରନ୍ଥର ବିଶେଷତ୍ୱ ।

ଟିଗିରିଆର ରାଜା ଗୋପୀନାଥ ତୁଙ୍ଗଙ୍କ ପ୍ରଣୀତ 'ବୀରସର୍ବସ୍ୱ' ରାଜଧର୍ମ ସମ୍ବନ୍ଧୀୟ ଏକ ଉତ୍କୃଷ୍ଟ ଗ୍ରନ୍ଥ । ଏଥିରେ କ୍ଷତ୍ରିୟର କୁଳଧର୍ମ, ରାଜା, ରାଜ୍ୟାଙ୍ଗ, ବୈଦିକ ଓ ତାନ୍ତ୍ରିକ କର୍ମାନୁ-ଷ୍ଠାନ, ଅସ୍ତ୍ରଶସ୍ତ୍ର, ଷଟ୍‌କର୍ମ, ତନ୍ତ୍ରସାଧନାଦି ବିଷୟଗୁଡ଼ିକ ପର୍ଯ୍ୟାଲୋଚିତ ହୋଇଛି । ଏହି ଗ୍ରନ୍ଥଟି ସୋନପୁର ରାଜା ବୀରମିତ୍ରୋଦୟଙ୍କ ପକ୍ଷରୁ ୧୯୨୨ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଛି । ଓଡ଼ିଶାର ସାମାଜିକ ସଂସ୍କୃତି ଓ ରାଜକୃତ୍ୟ ଅଧ୍ୟୟନରେ ଏହି ଗ୍ରନ୍ଥର ସହାୟତାକୁ ଅସ୍ୱୀକାର କରାଯାଇ ନ ପାରେ ।

ଓଡ଼ିଶାରେ ଇଂରେଜ ରାଜତ୍ୱ ପୂର୍ବରୁ ବାଲୁଙ୍କ ପାଠୀ ହେଉଛନ୍ତି ଶେଷ ସ୍ମୃତିକାର । ଶ୍ରୀକ୍ଷେତ୍ର, ଶ୍ରୀଜଗନ୍ନାଥ ଓ ଶ୍ରୀଜଗନ୍ନାଥଙ୍କ ଯାତ୍ରା-ମହୋତ୍ସବ ବିଷୟକୁ ନେଇ ସେ 'ଯାତ୍ରା ଭାଗବତ' ସ୍ମୃତିଗ୍ରନ୍ଥ ରଚନା କରିଛନ୍ତି । ଶ୍ରୀଜଗନ୍ନାଥ-ସଂସ୍କୃତିକୁ ଏହାର ଅବଦାନ ଉଲ୍ଲେଖ-ଯୋଗ୍ୟ ।

ପ୍ରସ୍ତୁତ ଗ୍ରନ୍ଥର ପ୍ରଥମରୁ ତୃତୀୟ ଅଧ୍ୟାୟ ମଧ୍ୟରେ ସ୍ମୃତିର ମୂଳ ଉତ୍ସ, ବିକାଶ ଓ ସମୟାନୁ-ପୂର୍ବିକ ଉତ୍କଳୀୟ ସ୍ମୃତି ଓ ସ୍ମୃତିକାରଙ୍କ ପରିଚୟ ଦିଆଯାଇଛି । ଚତୁର୍ଥ ଅଧ୍ୟାୟରେ ଉତ୍କଳୀୟ ସ୍ମୃତିସିଦ୍ଧାନ୍ତସମୂହର ଗୁରୁତ୍ୱ ଓ ବୈଶିଷ୍ଟ୍ୟ ଏବଂ ପଞ୍ଚମ ଅଧ୍ୟାୟରେ ସ୍ମୃତିର ଉପାଦେୟତା ଓ ଓଡ଼ିଶାର ଲୋକାଚାର ବିଷୟ ଆଲୋଚିତ ହୋଇଛି । ଓଡ଼ିଆ ସାହିତ୍ୟରେ ସ୍ମୃତିଶାସ୍ତ୍ରର ପ୍ରଭାବ ପ୍ରସଙ୍ଗ ଅଦ୍ୟାବଧି ଆଲୋଚକମାନଙ୍କ ଆଲୋଚନାରେ ସ୍ଥାନ ପାଇନାହିଁ । ଏହାର ଷଷ୍ଠ ଅଧ୍ୟାୟରେ ସର୍ବପ୍ରଥମ ଉକ୍ତ ବିଷୟରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ଏହି ନିବନ୍ଧର ତାହା ହିଁ ଅନ୍ୟତମ ବୈଶିଷ୍ଟ୍ୟ । ସପ୍ତମ ଓ ଶେଷ ଅଧ୍ୟାୟରେ ଓଡ଼ିଶାର ଉପାଦେୟ ସ୍ମୃତିଗ୍ରନ୍ଥ ଓ ସେଗୁଡ଼ିକର ଐତିହାସିକ ଗୁରୁତ୍ୱ ଓ ସାଂସ୍କୃତିକ ବୈଶିଷ୍ଟ୍ୟ ପ୍ରତିପାଦନ କରାଯାଇଛି । ତେଣୁ

ଏହି ଆଲୋଚନାକୁ ପ୍ରସ୍ତୁତ ଗ୍ରନ୍ଥର ନିର୍ଯାସ ରୂପେ ଗ୍ରହଣୀୟ । ଏହି ନିବନ୍ଧ ଗ୍ରନ୍ଥରେ ଉତ୍କଳୀୟ ସ୍ମୃତି ଓ ସ୍ମୃତିକାରମାନଙ୍କର ଐତିହାସିକ କ୍ରମ, ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନ ଓ ଓଡ଼ିଶାର ସାମାଜିକ ପୃଷ୍ଠଭୂମିରେ ସେ ସବୁର ବୈଶିଷ୍ଟ୍ୟ ଉପସ୍ଥାପନ ନିମିତ୍ତ ଯଥାସାଧ୍ୟ ଚେଷ୍ଟା କରାଯାଇଛି । ଉତ୍କଳୀୟ ସ୍ମୃତିଶାସ୍ତ୍ରର ସର୍ବେକ୍ଷଣ ଓ ସମୀକ୍ଷା କ୍ଷେତ୍ରରେ ଏହି ଗ୍ରନ୍ଥଟି ପ୍ରାଥମିକ ଉଦ୍ୟମରୂପେ ଗ୍ରହଣୀୟ ।

□□□

# ପ୍ରଥମ ପରିଶିଷ୍ଟ

## ଉତ୍କଳୀୟ ସ୍ମୃତିବିଷୟାନୁକ୍ରମଣିକା

—ଅ—

—ଆ—

—ଇ—



—ଈ—



—ଉ—

—କ୍ଷ—

—ଛ—



—ଜ—

—ତ—

—ଧ—



—ନ—

—ପ—

—ଫ—



—ବ—



—ଭ—

—ମ—

—ବ—

—ଷ—



—ସ—

—ହ—

# ଦ୍ୱିତୀୟ ପରିଶିଷ୍ଟ

## ଉତ୍କଳୀୟ ସ୍ମୃତିସମୁଦ୍ଧୃତ ପ୍ରାଚୀନଶାସ୍ତ୍ର ଓ ଶାସ୍ତ୍ରକାର

### ଉପନିଷଦ



### ପୁରାଣ-ସଂହିତା-ମାହାତ୍ମ୍ୟ

### କାବ୍ୟ-ନାଟକ-ଇତିହାସ



### ତନ୍ତ୍ର

### ସୂତ୍ର



### ବେଦ-ସ୍ମୃତି-ଜ୍ୟୋତିଷ-ଧର୍ମଶାସ୍ତ୍ର

## ସ୍ମୃତିଶାସ୍ତ୍ରକାର

# ତୃତୀୟ ପରିଶିଷ୍ଟ

## ଓଡ଼ିଶାର ଓଷା, ବ୍ରତ ଓ ପର୍ବପର୍ବାଣୀ

ଅକ୍ଷୟତୃତୀୟା—ବୈଶାଖ ଶୁକ୍ଳ-୩
*ଅକ୍ଷୟା ତୃତୀୟା—ଚତୁର୍ଥୀଯୁକ୍ତ ମଙ୍ଗଳବାର
ଅଖଣ୍ଡଦ୍ୱାଦଶୀ—ଆଷାଢ଼ ଶୁକ୍ଳ-୧୨
ଅଘୋର ଚତୁର୍ଦ୍ଦଶୀ—ଭାଦ୍ରବ କୃଷ୍ଣ-୧୪
ଅନଙ୍ଗତ୍ରୟୋଦଶୀ—ମାର୍ଗଶିର ଶୁକ୍ଳ-୧୩
ଅନନ୍ତଚତୁର୍ଦ୍ଦଶୀ—ଭାଦ୍ର ଶୁକ୍ଳ-୧୪
ଅନନ୍ତତୃତୀୟା—ଭାଦ୍ର ଶୁକ୍ଳ-୩
ଅପରାଜିତା ସପ୍ତମୀ—ଭାଦ୍ର-ଶୁକ୍ଳ-୭
ଅପରାଜିତାଦଶମୀ—ଆଶ୍ୱିନ ଶୁକ୍ଳ-୧୦
ଅୟନବ୍ରତ—ମକର ଓ ମିଥୁନ ସଂକ୍ରାନ୍ତ
ଅଯାଚିତବ୍ରତ—ବିନାଭିକ୍ଷାରେ ବ୍ରତପାଳନ
ଆରଣ୍ୟଦ୍ୱାଦଶୀ—ମାର୍ଗଶିର ଶୁକ୍ଳ-୧୨
ଅରଣ୍ୟଷଷ୍ଠୀ ବା
ଶୀତଳଷଷ୍ଠୀ—ଜ୍ୟେଷ୍ଠ ଶୁକ୍ଳ-୬
*ଅର୍ଥ ଉଦଆ ରବିବାର—ମାଘ-ରବିବାର ।
ଅର୍ଦ୍ଧୋଦୟ ବ୍ରତ ବା
ଅର୍ଦ୍ଧୋଦୟାମାବାସ୍ୟା—ପୌଷ ବା ମାଘ
ମାସ ଶ୍ରବଣାଯୁକ୍ତ ରବିବାରରେ ଚନ୍ଦ୍ରଗ୍ରହଣ
ବା ସୂର୍ଯ୍ୟୋପରାଗ ।
ଅଶୋକାଷ୍ଟମୀ—ଚୈତ୍ର ଶୁକ୍ଳ-୮
*ଆମଳକୀ ଦ୍ୱାଦଶୀ—ମାଘ ଶୁକ୍ଳ-୧୨
*ଆଲୋକାମାବାସ୍ୟା—ଭାଦ୍ରବ କୃଷ୍ଣ-୧୫
ଇନ୍ଦ୍ରଧ୍ୱଜୋତ୍ସବ ବା
ଇନ୍ଦ୍ର ପୂର୍ଣ୍ଣିମା—ଭାଦ୍ର ଶୁକ୍ଳ-୧୫
*ଉରୂସଣୀ ଓଷା—ଆଶ୍ୱିନ-ମାର୍ଗ-ମାଘ
ଓ ବୈଶାଖର ପ୍ରଥ ମଙ୍ଗଳବାର ।

*ଉତ୍ଥାପନଏକାଦଶୀ—କାର୍ତ୍ତିକ ଶୁକ୍ଳ-୧୧
ଉମାମହେଶ୍ୱରବ୍ରତ—ବୈଶାଖ ଶୁକ୍ଳ-୧୪
ଋଷି ପଞ୍ଚମୀ ବା
ଗୁରୁ ପଞ୍ଚମୀ—ଭାଦ୍ର ଶୁକ୍ଳ-୫
*କାନ୍ତିଅଁଳା ଓଷା—ମାର୍ଗଶିର କୃଷ୍ଣ-୯
କାମଦେବ ତ୍ରୟୋଦଶୀ—ଚୈତ୍ରଶୁକ୍ଳ-୧୩
କାର୍ତ୍ତିକେୟବ୍ରତ—କାର୍ତ୍ତିକ ସଂକ୍ରାନ୍ତ ।
କାର୍ତ୍ତିକ ପୂର୍ଣ୍ଣିମା—କାର୍ତ୍ତିକ ଶୁକ୍ଳ-୧୫
*କାଳିକାବ୍ରତ ବା
ବଡ଼ମହାକାଳୀବ୍ରତ—କାର୍ତ୍ତିକ କୃଷ୍ଣ-୧୪
କୁକ୍‌କୁଟୀବ୍ରତ—ଭାଦ୍ର ଶୁକ୍ଳ-୭
*କୁମାରପୂର୍ଣ୍ଣିମା—ଆଶ୍ୱିନ ଶୁକ୍ଳ-୧୫
କୁଷ୍ମାଣ୍ଡଦଶମୀ—ଆଶ୍ୱିନ ଶୁକ୍ଳ-୧୦
କୃଷ୍ଣଜନ୍ମାଷ୍ଟମୀ ବା
କୃଷ୍ଣଜୟନ୍ତୀ ବା
ଜନ୍ମାଷ୍ଟମୀବ୍ରତ—ଶ୍ରାବଣ କୃଷ୍ଣ-୮
*କେଦାରବ୍ରତ—କାର୍ତ୍ତିକ ଶୁକ୍ଳ-୧୫
*କେଦାରମାବ୍ରତ—ଯେକୌଣସି ଶୁକ୍ଳ-୧୫
*କୌମୁଦୀମହୋତ୍ସବ—ଆଶ୍ୱିନ ଶୁକ୍ଳ-୧୫
*ଖୁଦୁରୁକୁଣୀ ଓଷା ବା
ଭଅପୋଇ ଓଷା—ଭାଦ୍ରବ ପ୍ରଥ ରବିବାର ।
ଗଣେଶ ଚତୁର୍ଥୀ ବା
ସିଦ୍ଧିବିନାୟକବ୍ରତ ବା
ବିନାୟକବ୍ରତ ବା
ବିନାୟକଚତୁର୍ଥୀ—ଭାଦ୍ରବ ଶୁକ୍ଳ-୪

* ଏହି ଓଷା, ବ୍ରତ ଓ ପର୍ବପର୍ବାଣୀଗୁଡ଼ିକ ଓଡ଼ିଶାରେ ବିଶେଷଭାବେ ପାଳିତ ହୁଏ ।

*ଗୁଣ୍ଡିଚ୍ଚାଯାତ୍ରା ବା
ଶ୍ରୀଗୁଣ୍ଡିଚ୍ଚା—ଆଷାଢ଼ ଶୁକ୍ଳ-୨
ଗୁରୁପଞ୍ଚମୀ—ପଞ୍ଚମୀତିଥିଯୁକ୍ତ ଗୁରୁବାର
ଗୋବର୍ଦ୍ଧନପୂଜା—କାର୍ତ୍ତିକ ଶୁକ୍ଳ-୨
ଗୋବନ୍ଦଦ୍ୱାଦଶୀ—ଫାଲ୍ଗୁନ ଶୁକ୍ଳ-୧୨
ଗୋବନ୍ଦଶୟନ ବା
ହରିଶୟନ—ଆଷାଢ଼ ଶୁକ୍ଳ-୧୧
ଗୋଷ୍ଠାଷ୍ଟମୀ ବା
ଜଗଦ୍ଧାତ୍ରୀପୂଜା—କାର୍ତ୍ତିକ ଶୁକ୍ଳ-୮
*ଗୌରୀଗଣେଶଚତୁର୍ଥୀ—ଯେକୌଣସି ଚତୁର୍ଥୀ
ଗୌରୀଚତୁର୍ଥୀ—ମାଘ ଶୁକ୍ଳ-୪
ଗୌରୀତୃତୀୟା ବା
ହରିତାଳିକା ବ୍ରତ ବା
*ବାଲୃତୃତୀୟା ବା
*ତିକ୍ତବ୍ରତ—ଭାଦ୍ରବ ଶୁକ୍ଳ-୩
ଘୋଟକ ପଞ୍ଚମୀ—ଆଷାଢ଼ କୃଷ୍ଣ-୫
*ଚତୁର୍ମାସ୍ୟା ଗୁରୁବାର ଓଷା—ଶ୍ରାବଣଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ପ୍ରତି ଗୁରୁବାର ।
*ଚମ୍ପକଦ୍ୱାଦଶୀ—ଜ୍ୟେଷ୍ଠ ଶୁକ୍ଳ-୧୨
*ଚୈତ୍ରମଙ୍ଗଳବାର ଓଷା—ଚୈତ୍ର ମଙ୍ଗଳବାର ।
*ଜୟନ୍ତୀଦ୍ୱାଦଶୀ—ଶ୍ରବଣୀଯୁକ୍ତ ଶୁକ୍ଳ-୧୨
*ଜାଡ଼ଖିଆ ଓଷା—ଦଶମୀଠାରୁ ପୂର୍ଣ୍ଣିମାବଧି
ଜାଗରଦ୍ ଗୌରୀ ପଞ୍ଚମୀ ବା
ଜାଗୁଲାଇ ପଞ୍ଚମୀ—ଶ୍ରାବଣ ଶୁକ୍ଳ-୫
ଦମନକୋତ୍ସବ ବା
ଦମନକ ଚତୁର୍ଦ୍ଦଶୀ—ଚୈତ୍ର ଶୁକ୍ଳ-୧୪
ଦଶହରା—ଜ୍ୟେଷ୍ଠ ଶୁକ୍ଳ-୧୦
*ଦାଣ୍ଡପଞ୍ଚୁଁରା ବାଟଓଷା—ମାର୍ଗ କୃଷ୍ଣ-୨

ଦୀପାବଳୀ ବା
ପ୍ରଦୀପାମାବାସ୍ୟା ବା
ସୁଖରାତ୍ରି ଅମାବାସ୍ୟା ବା
*ପିତୃମେଇ ଅମାବାସ୍ୟା—କାର୍ତ୍ତିକ କୃଷ୍ଣ-୧୫
*ଦୁତିବାମନ ବ୍ରତ ବା
ଦୁତିଆ ଓଷା—ଆଶ୍ୱିନ କୃଷ୍ଣ-୮
ଦୁର୍ଗାନବମୀ—ଆଶ୍ୱିନ-ଶୁକ୍ଳ-୯
ଦୁର୍ଗାଷ୍ଟମୀ—ଆଶ୍ୱିନ ଶୁକ୍ଳ-୮
ଦୂର୍ବାଷ୍ଟମୀ—ଭାଦ୍ରବ ଶୁକ୍ଳ-୮
*ଦେବସ୍ନାନ ବା
ସ୍ନାନଯାତ୍ରା—ଜ୍ୟେଷ୍ଠ ଶୁକ୍ଳ-୧୫
ଦୋଲଯାତ୍ରା ବା
*ଦୋଳାଯାତ୍ରା ବା
ହୋଲକୋତ୍ସବ ବା
ଚୈତନ୍ୟଜନ୍ମ—ଫାଲ୍ଗୁନ ଶୁକ୍ଳ-୧୫
*ଧାନମାଣିକିଆ ଓଷା—
ମାର୍ଗଶିର ପ୍ରତି ଗୁରୁବାର
ନରକଚତୁର୍ଦ୍ଦଶୀ—କାର୍ତ୍ତିକ କୃଷ୍ଣ-୧୪
ନରସିଂହଚତୁର୍ଦ୍ଦଶୀ ବା
ନରସିଂହଜନ୍ମ ବା
*ନୃସିଂହଜୟନ୍ତୀ—ବୈଶାଖ ଶୁକ୍ଳ-୧୪
ନାଗଚତୁର୍ଥୀ ବା
*ନାଗଲଚଉଠି—କାର୍ତ୍ତିକ ଶୁକ୍ଳ-୪
ନାଗପଞ୍ଚମୀ ବା
ଫଣୀପଞ୍ଚମୀ ବା
ମନସା ପଞ୍ଚମୀ—ଶ୍ରାବଣ ଶୁକ୍ଳ-୫
*ନିତ୍ୟାନ୍ନଗୁରୁବାର ଓଷା—ଯେକୌଣସି ଗୁରୁବାର ।
ନିର୍ଜଳୈକାଦଶୀ ବା
ବସୁମତୀ ସ୍ନାନ ବା
ଦେବବବାହ ଏକାଦଶୀ—ଜ୍ୟେଷ୍ଠ ଶୁକ୍ଳ- ୧

*ନଶାମଙ୍ଗଳବାର ଓଷା—
ପ୍ରଥମଙ୍ଗଳବାର ରାତି ।
*ନେତ୍ରୋତ୍ସବ—ଆଷାଢ଼ ଶୁକ୍ଳ-୧
*ପଣ୍ଡୁ ଓଷା—ମାର୍ଗ ଶୁକ୍ଳ-୧୫
ପରଶୁରାମାଷ୍ଟମୀ—ଆଷାଢ଼ ଶୁକ୍ଳ-୮
*ପବନରୋପଣ—ଶ୍ରାବଣ ଶୁକ୍ଳ-୧୪
*ପାଞ୍ଚମାସୀ ବ୍ରତ ବା
ଷୋଳପାଳି ମଙ୍ଗଳବାରଓଷା—ଆଶ୍ୱିନ-
ପୂର୍ଣ୍ଣିମାଠାରୁ ଫାଲ୍‌ଗୁନପୂର୍ଣ୍ଣିମା
*ପାପନାଶିନୀ ଏକାଦଶୀ—ଫାଲ୍‌ଗୁନ-
ଗୁରୁବାର ପୁଷ୍ୟାନକ୍ଷତ୍ରଯୁକ୍ତ ଶୁକ୍ଳ-୧୧
*ପାପନାଶିନୀ ଦ୍ୱାଦଶୀ—ପୁଷ୍ୟାନକ୍ଷତ୍ରଯୁକ୍ତ
ଶୁକ୍ଳ-୧୨
*ପାର୍ଶ୍ୱପରିବର୍ତ୍ତନ—ଭାଦ୍ର ଶୁକ୍ଳ-୧୧
ପାଷାଣଚତୁର୍ଦ୍ଦଶୀ—ମାର୍ଗଶିର ଶୁକ୍ଳ-୧୪
ପିପୀତକୀଦ୍ୱାଦଶୀବ୍ରତ—ବୈଶାଖ ଶୁକ୍ଳ-୧୨
*ପୁଷରବିବାର—ପୌଷ ପ୍ରଥ ରବିବାର
*ପୁଷ୍ୟାଭିଷେକ ବା
ଅଭିଷେକୋତ୍ସବ ବା
ପୌଷପୂର୍ଣ୍ଣିମା—ପୌଷ ଶୁକ୍ଳ-୧୫
*ପୃଥ୍ୱୀରଜସ୍ୱଳା ବା
ଭୂମିରଜସ୍ୱଳା ବା
ରଜପର୍ବ—ବୃଷର ମାସନ୍ତ ଓ ମିଥୁନର
ପ୍ରଥମ ଦୁଇଦିନ ।
*ପ୍ରଥମାଷ୍ଟମୀ—ମାର୍ଗଶିର କୃଷ୍ଣ-୮
ପ୍ରବୋଧିନୀ ଚତୁର୍ଦ୍ଦଶୀ-କାର୍ତ୍ତିକ ଶୁକ୍ଳ-୧୪
ପ୍ରାବରଣଷଷ୍ଠୀ ବା
ପ୍ରାବରଣୋତ୍ସବ—ମାର୍ଗଶିର ଶୁକ୍ଳ-୬
ବଳଦେବଜନ୍ମ ବା
ରାକ୍ଷୀପୂର୍ଣ୍ଣିମା ବା
ଗହ୍ମାପର୍ବ—ଶ୍ରାବଣ ଶୁକ୍ଳ-୧୫

ବଳଗ୍ରକୋତ୍ସବ—କାର୍ତ୍ତିକ ଶୁକ୍ଳ-୧
*ବସନ୍ତୋତ୍ସବ—ମାଘ ଶୁକ୍ଳ-୧୫
*ବୁଧ ମଙ୍ଗଳବାର ଓଷା--ମାର୍ଗଶିରଠାରୁ
ଚୈତ୍ରମାସ ପର୍ଯ୍ୟନ୍ତ ତେରପାଳି ।
*ବୁଧେଇ ଓଷା—ଭାଦ୍ରବ ପ୍ରଥମ ବୁଧବାର
*ବେଣାକଥା ଚଉଠି—ମକର ସଂକ୍ରାନ୍ତି
*ଭଦ୍ରାଷ୍ଟମୀ—ପୌଷ ଶୁକ୍ଳ-୮
ଭୀମଦ୍ୱାଦଶୀ—ମାଘ ଶୁକ୍ଳ-୧୨
ଭୀଷ୍ମ ପଞ୍ଚକ ବା
ପଞ୍ଚକବ୍ରତ ବା
ବିଷ୍ଣୁପଞ୍ଚକବ୍ରତ—କାର୍ତ୍ତିକ ଶୁକ୍ଳ-୧୧-୧୫
ଭୀଷ୍ମାଷ୍ଟମୀ—ମାଘ ଶୁକ୍ଳ-୮
*ଭୂତଚତୁର୍ଦ୍ଦଶୀ—ମାଘ ଶୁକ୍ଳ-୧୪
*ଭୂପାଳତ୍ରୟୋଦଶୀ—ଶ୍ରାବଣ କୃଷ୍ଣ-୧୩
ଭୈମୀ ଏକାଦଶୀ—ମାଘ ଶୁକ୍ଳ-୧୧
ଭୌମବ୍ରତ—୨୧ଶ ପାଳି ମଙ୍ଗଳବାର ।
*ମଙ୍ଗଳଚଣ୍ଡୀବ୍ରତ—ଜ୍ୟେଷ୍ଠ-ଶୁକ୍ଳ
ମଙ୍ଗଳବାର ।
*ମଙ୍ଗଳ ସଂକ୍ରାନ୍ତି—ମଙ୍ଗଳବାର ଯୁକ୍ତ ସଂକ୍ରାନ୍ତି
ମନସାବ୍ରତ—ଜ୍ୟେଷ୍ଠ ଶୁକ୍ଳ ହସ୍ତାନକ୍ଷତ୍ର-
ଯୁକ୍ତ ନବମୀ ବା ଦଶମୀ ।
*ମହାଦୁଃଖୀ ମଙ୍ଗଳବାର—ଯେ କୌଣସି
ମଙ୍ଗଳବାର ।
ମହାକାଳୀବ୍ରତ ବା
*ଫୁଲେଇ ଓଷା—ଆଶ୍ୱିନ କୃଷ୍ଣ-୧୫
ମହାଲକ୍ଷ୍ମୀ ପୂଜା—ଆଶ୍ୱିନ ଶୁକ୍ଳ-୧୫
*ମହାଚୈତ୍ରୀ—ଚୈତ୍ର-ଶୁକ୍ଳ-୧୫
*ମହାବୈଶାଖୀ—ବୈଶାଖ ଶୁକ୍ଳ-୧୫
*ମହାଜ୍ୟୈଷ୍ଠୀ—ଜ୍ୟେଷ୍ଠ ଶୁକ୍ଳ-୧୫
*ମହା କାର୍ତ୍ତିକୀ—କାର୍ତ୍ତିକ ଶୁକ୍ଳ-୧୫
*ମହାପୌଷୀ—ପୌଷ ଶୁକ୍ଳ-୧୫

